# ବିରୂପାକ୍ଷ ପ୍ରବନ୍ଧାବଳୀ

ସମ୍ପାଦନା :
ଡକ୍ଟର ବାଉରୀବନ୍ଧୁ କର



ଓଡ଼ିଶା ବୁକ୍ ଷ୍ଟୋର

Digitized by srujanika@gmail.com

# ବିରୂପାକ୍ଷ ପ୍ରବନ୍ଧାବଳୀ

ସମ୍ପାଦନା :

ଡକ୍ଟର ବାଉରୀବନ୍ଧୁ କର

ପ୍ରକାଶକ :

ଶ୍ରୀ ଗୋବିନ୍ଦ ଚରଣ ପାତ୍ର

ଓଡ଼ିଶା ବୁକ୍‌ଷ୍ଟୋର,

ବିନୋଦ ବିହାରୀ,

କଟକ-୭୫୩ ୦୦୨

ପ୍ରଥମ ପ୍ରକାଶ : ୧୯୯୩

ମୁଦ୍ରଣ :

ଆନନ୍ଦ ପ୍ରେସ୍

ପିଠାପୁର କଟକ-୧

ମୂଲ୍ୟ —ପଚାଶ ଟଙ୍କା ମାତ୍ର

# BIRUPAKSHYA PRABANDHABALI

Edited by :

**Dr. Bauribandhu Kar**

Published by :

**Sri Gobinda Charan Patra**

Orissa Book Store

Cuttack-753 002

**Ist Edition-1993**

Price Rs. **50/—**

Digitized by srujanika@gmail.com

# ସୂଚୀପତ୍ର



—*—

Digitized by srujanika@gmail.com

# ମୁଖବନ୍ଧ

ବିଶ୍ୱର ଶ୍ରେଷ୍ଠ ଗାଳ୍ପିକ ଚେକଭ୍ ଥରେ ସକୌତୁକ ମନ୍ତବ୍ୟ କରିଥିଲେ, "Medicine is my lawful wife and Literature is my mistress" ଜୀବିକାରେ ସେ ଥିଲେ ଚିକିତ୍ସକ; କିନ୍ତୁ ଜୀବନରେ ସାହିତ୍ୟିକ— ଏକାଧାରରେ ଗାଳ୍ପିକ ଓ ନାଟ୍ୟକାର । ଚିକିତ୍ସକ ଚେକଭ୍ କାହିଁ କୁଆଡ଼େ ହଜିଗଲେଣି, ଅଥଚ କାନ୍ତା ପ୍ରେମିକାଟି ପ୍ରସାଦରୁ ସେ ଚିରଂଜୀବୀ ରହିଛନ୍ତି । ବୋଧହୁଏ ସବୁଦିନେ ଧର୍ମପତ୍ନୀ ଅପେକ୍ଷା ପ୍ରେମିକାର ପ୍ରେରଣା ବଳବତ୍ତର ନୁହେଁ, ବେଶି ଶୁଭଙ୍କର ମଧ୍ୟ । ଆମ ବିରୂପାକ୍ଷ କର ଥିଲେ ଜୀବିକାରେ ଆଇନଜୀବୀ; କିନ୍ତୁ ଜୀବନରେ ସ୍ୱଭୂମି ପ୍ରୀତି ସମ୍ପୃକ୍ତ ସଚେତନ ଗବେଷକଟିଏ । ଆଇନ ବ୍ୟବସାୟ ତାଙ୍କର ବୈଧ ପତ୍ନୀ; କିନ୍ତୁ ଗବେଷଣା ତାଙ୍କର ମିଷ୍ଟ୍ରେସ୍ । ଲୋକେ କୁଆଡ଼େ ଦୁଇଟି ଲୋକଙ୍କୁ ଏକାନ୍ତ ଆପଣାର ଭାବି ତାଙ୍କ ଆଗରେ ସତକଥା କହିଥାନ୍ତି ; ଜଣେ ଡାକ୍ତର ଆଉ ଜଣକ ଓକିଲ । କିନ୍ତୁ ଏ ଦୁହେଁ ଯେତେବେଳେ ବ୍ୟବସାୟ ସୂତ୍ରରୁ ଓହ୍ଲାଇ ଆସନ୍ତି ସେତେବେଳେ କ୍ୱଚିତ୍ ଲୋକଙ୍କ ଶ୍ରଦ୍ଧା ଓ ସମ୍ମାନଭାଜନ ହୋଇଥାନ୍ତି । ଡାକ୍ତରଙ୍କ ଅପେକ୍ଷା ଓକିଲଙ୍କ ଅବସ୍ଥା ବେଶି ଶୋଚନୀୟ । ସ୍ପେସିଆଲିଷ୍ଟ ଡାକ୍ତରଙ୍କୁ କୁହାଯାଏ ପୋଲିସ୍ କୁକୁର । ଏ କୁକୁର ଗନ୍ଧବାରି ଅପରାଧୀକୁ ସନାକ୍ତ କରିଥାଏ, ଡାକ୍ତର ଲକ୍ଷଣ ଦେଖି ରୋଗ ଚିହ୍ନିଥାନ୍ତି ଆଉ ଓକିଲ ଶୃଗାଳ । ରାଜଦ୍ୱାରେ ଶ୍ମଶାନେ ଚ ଯ ତିଷ୍ଠତି ସ ବାନ୍ଧବଃ ! ସାହିତ୍ୟିକମାନେ ତାଙ୍କୁ କ୍ୱଚିତ୍ ଭଲପାଆନ୍ତି । ଫକୀର ମୋହନ ତାଙ୍କ ମଶାମାଛିଙ୍କ କଲ୍ୟାଣାର୍ଥେ ଜାଲମେଲି ଅପେକ୍ଷା କରିଥିବା ବୁଢ଼ୀଆଣୀଙ୍କ ସହ ତୁଳନା କରିଛନ୍ତି । ପ୍ରକୃତରେ ଆଇନ ବ୍ୟବସାୟୀଙ୍କ ବୈଧପତ୍ନୀଟି ସୁଖଦା ଓ ଶୁଭଦା ହୋଇପାରନ୍ତି; କିନ୍ତୁ ଆନନ୍ଦମୟୀ ହୋଇଥାନ୍ତି କ୍ୱଚିତ୍ । ତେଣୁ ବୋଧହୁଏ ଓକିଲାତି କରୁଥିବା ଭଦ୍ରବ୍ୟକ୍ତିମାନେ ପତ୍ନୀଙ୍କୁ ନେଇ ବେଶି ଉତ୍ସାହିତ ହୋଇପାରନ୍ତି ନାହିଁ କି ସନ୍ତୋଷ ଦେଖନ୍ତି ନାହିଁ ; ବାହାରେ ପ୍ରେମିକା ଖୋଜନ୍ତି । ଏହି ସୂତ୍ରରେ ତାରିଣୀ ଚରଣ ରଥ, ଚନ୍ଦ୍ରମଣି ଆଚାର୍ଯ୍ୟ, ଜଗବନ୍ଧୁ ସିଂହ, ରମାଶଙ୍କର ରାୟ, ପଦ୍ମଚରଣ ପଟ୍ଟନାୟକ, ଗୋପାଳ ଚନ୍ଦ୍ର

Digitized by srujanika@gmail.com

ପ୍ରହ୍ଲାଦ ଓ ଭିକାରୀ ଚରଣ ପଟ୍ଟନାୟକ ପ୍ରମୁଖ ଓଡ଼ିଆ ପରକାଷ୍ଠା-ସାଧକ । ବୃତ୍ତିରେ ଓକିଲ, କିନ୍ତୁ କୃତତ୍ୱରେ ସାହିତ୍ୟିକ । ଏହି ସୁସ୍ଥ ପରଂପରାରେ ବିରୂପାକ୍ଷ କରଙ୍କୁ ବୁଝିବାକୁ ହୁଏ । ଏମାନେ ଜୀବିକାକୁ ଯେଉଁ ଜୀବନଟିକୁ ଉତ୍ସର୍ଗ କରି ଦେଇନଥାନ୍ତି । ସବୁ ବ୍ୟସ୍ତତା ଓ ବାସ୍ତବତା ଭିତରେ ସାରସ୍ୱତ ସାଧନା ପାଇଁ ଅବକାଶ ଖୋଜି ଯେଉଁଥାନ୍ତି ଆଉ ଅଭୂତ ଭାବରେ ଅନେକଟା ସିଦ୍ଧି ଲଭିଥାନ୍ତି । ଓକିଲ ଭାବରେ ମରିହଜି ଯାଆନ୍ତି, କିନ୍ତୁ ସାହିତ୍ୟସାଧକ ଭାବରେ ବଞ୍ଚି ରହନ୍ତି ଦୀର୍ଘକାଳ । ସେଇଥିପାଇଁ ଆଜି ବଞ୍ଚିଛନ୍ତି ଗବେଷକ ବିରୂପାକ୍ଷ କର । କିନ୍ତୁ ଦୁଃଖର କଥା ଏହି ପରଂପରାଟି ଲୁପ୍ତ ହେବାକୁ ଯାଉଛି । ଆଜି ବିରୂପାକ୍ଷଙ୍କ ଜନ୍ମର ଶତବାର୍ଷିକୀରେ ଓକିଲମାନେ ବଞ୍ଚିବାର ପ୍ରେରଣା ଖୋଜନ୍ତୁ । ଓକିଲାତିରେ ଜୀଇ ହୁଏ, କିନ୍ତୁ ବଞ୍ଚିହୁଏ ସାହିତ୍ୟ ସୃଷ୍ଟିରେ, ଗବେଷଣା କି ଅନ୍ୟ ଯେକୌଣସି କ୍ଷେତ୍ରର ସର୍ଜନଶୀଳତାରେ ।

ବିରୂପାକ୍ଷ କର ଭୂମିଷ୍ଠ ହୋଇଥିଲେ ୧୮୯୩ରେ । ଏହି ବର୍ଷଟିର ଐତିହାସିକ ଗୁରୁତ୍ୱ କିଛି କମ୍ ନୁହେଁ । ଏହି ବର୍ଷ ସ୍ୱାମୀ ବିବେକାନନ୍ଦ ସିକାଗୋ ସହରର ବିଶ୍ୱଧର୍ମ ସମ୍ମେଳନରେ ତାଙ୍କ ସୁବିଖ୍ୟାତ ଭାଷଣ ପ୍ରଦାନ କରିଥିଲେ । ଏହି ବର୍ଷ ଗାନ୍ଧିଜୀ ଦକ୍ଷିଣ ଆଫ୍ରିକାରେ ପଦାର୍ପଣ କରି ସତ୍ୟ ଓ ଅହିଂସାକୁ ଯେଉଁ ନୂତନ ପରୀକ୍ଷାରେ ପ୍ରବୃତ୍ତ ହୋଇଥିଲେ ଆଉ ଏହି ବର୍ଷ ବି ଇଂଲଣ୍ଡରୁ ଫେରିଥିଲେ ସ୍ୱଦେଶକୁ ଶ୍ରୀ ଅରବିନ୍ଦ ଯୋଗୀ ହେବାକୁ । ବର୍ଷଟି ପ୍ରକୃତରେ ବହୁ ପବିତ୍ର ସ୍ମୃତି ବିଜଡ଼ିତ । ଏହି ବର୍ଷ ଭୂମିଷ୍ଠ ହୋଇଥିବାରୁ ବିରୂପାକ୍ଷ ବଡ଼ ଭାଗ୍ୟବାନ ନିଶ୍ଚୟ । ତାଙ୍କ ଜନ୍ମବର୍ଷଟିକୁ ମନେରଖିବା ସହଜ । ଜନ୍ମସ୍ଥାନ ଓମପଡ଼ାଗଡ଼ । କାଳ ସେପ୍ଟେମ୍ବର ୧୭ । ଶିକ୍ଷାଗତ ଯୋଗ୍ୟତା ବି. ଏ. ଓ ବି. ଏଲ. । ଇତିହାସ ଥିଲା ତାଙ୍କର ପ୍ରିୟ ପାଠ୍ୟବସ୍ତୁ—ସବ୍ଜେକ୍ଟ । ତେଣୁ ଇତିହାସ-ରଙ୍ଗସ୍ଥଳୀ ଯାଜପୁର ତାଙ୍କୁ ମୁଗ୍ଧ କରିଥିବା ବିଚିତ୍ର ନୁହେଁ । ଓକିଲାତି ପାଇଁ ସେ ଉର୍ବର ଯାଜପୁରକୁ କର୍ମକ୍ଷେତ୍ର ଭାବରେ ବାଛି ନିଅନ୍ତି ଓ ସେହି ପବିତ୍ର ବିରଜାକ୍ଷେତ୍ରର ପୁଣ୍ୟପ୍ରେରଣାରୁ ପ୍ରାଚୀନ ଉତ୍କଳର ଇତିହାସ ପ୍ରତି ଆକୃଷ୍ଟ ହୁଅନ୍ତି । ସମାନ୍ତରାଳ ଭାବରେ ଓକିଲାତି କରନ୍ତି ଓ ଗବେଷଣାତ୍ମକ ନିବନ୍ଧ ଲେଖନ୍ତି । ଉଭୟରେ ବି ଯଶସ୍ୱୀ ହୁଅନ୍ତି । ପ୍ରବନ୍ଧ ସଂଖ୍ୟା ଅବଶ୍ୟ ମୁଷ୍ଟିମେୟ । କିନ୍ତୁ ସେଦିନର ନିଷ୍ଠା ଓ ପ୍ରତିପତ୍ତିରେ ସେଗୁଡ଼ିକ ଆଦୌ ଉପେକ୍ଷଣୀୟ ନୁହନ୍ତି । ସେଦିନ ସେଗୁଡ଼ିକ ଆମର ସମ୍ଭ୍ରାନ୍ତ ପତ୍ରିକା ସତ୍ୟବାଦୀ, ଉତ୍କଳ ସାହିତ୍ୟ ଓ ନବଭାରତର ପୃଷ୍ଠା ମଣ୍ଡନ କରି ନିଜର ସାରସ୍ୱତ ଆଭିଜାତ୍ୟ ପ୍ରତିଷ୍ଠା କରିପାରିଛି । ଏବେ ବି ଅଧିକାଂଶ ପାଠଯୋଗ୍ୟତା ହରାଇ ନାହାନ୍ତି । ବିଶେଷତଃ ପ୍ରାଚୀନ ଉତ୍କଳରେ ଜଳଯାତ୍ରା, ପ୍ରାଚୀନ ଯାଜପୁର, ବିରଜା, ମାଘ ଅମାବାସ୍ୟା ଓ

Digitized by srujanika@gmail.com

କାଠ ବସ୍ତୁର ଆଦି ପ୍ରବନ୍ଧ ସେମିତି ସତେଜ ଅଛନ୍ତି, ପଢ଼ିଲେ ଯେକୌଣସି ବରୂପାକ୍ଷଙ୍କ ମନନ ଓ ଉପଲବ୍ଧିରେ ମୁଗ୍ଧ ଓ ଚକିତ ହେବେ ।

ବରୂପାକ୍ଷଙ୍କର ଦୀର୍ଘ ରଚନାଗୁଡ଼ିକ ଇତିହାସାତ୍ମକ । 'କେଶରୀବଂଶ' (୧୯୦୧), 'ପ୍ରାଚୀନ ଉତ୍କଳରେ ଜଳଯାତ୍ରା' (୧୯୧୦) ଓ 'ଉତ୍କଳରେ ବୌଦ୍ଧଯୁଗର ଇତିହାସ' (୧୯୧୧) ଆଦି ରଚନାକୁ ପ୍ରବନ୍ଧ କହିବା ସମୀଚୀନ ନୁହେଁ । ଏଗୁଡ଼ିକ ଆର୍ଟିକ୍ଲ (Article) ଜାତୀୟ; ତେଣୁ ଏଗୁଡ଼ିକୁ ଗବେଷଣାତ୍ମକ ନିବନ୍ଧ ନାମରେ ଅଭିହିତ କରିବାକୁ ହୁଏ । ପ୍ରକୃତରେ ସେ ପ୍ରାବନ୍ଧିକ ନଥିଲେ, ଥିଲେ ଗବେଷକ । ସେଦିନ ଦେଶାତ୍ମବୋଧ ସହିତ ଇତିହାସ ଉଦ୍ଧାରର ଘନିଷ୍ଠ ସମ୍ବନ୍ଧ ଥିଲା । ଚିନ୍ତାନାୟକମାନେ ଜାତୀୟ ଇତିହାସରୁ ଗୌରବମୟ ବସ୍ତୁ ସନ୍ଧାନ କରି ଜାତିକୁ ଐତିହ୍ୟସଚେତନ ଓ ଆତ୍ମପ୍ରତିଷ୍ଠ କରିବାକୁ ଚାହିଁଛନ୍ତି । ବରୂପାକ୍ଷଙ୍କ ଇତିହାସ ଚର୍ଚ୍ଚା ସେହି ସ୍ୱଦେଶହିତୈଷଣାର ସମ୍ପଦ । ଇତିହାସର ଲୋକଶିକ୍ଷା ଓ ଲୋକକଲ୍ୟାଣକର ଦିଗ ଅଛି । ଜାତି ଇତିହାସ ଜାତିର ଦର୍ପଣ । ସ୍ୱଭୂମିକୁ ନ ଚିହ୍ନିଲେ ଆତ୍ମପରିଚୟ ମିଳେ ନାହିଁ, ଆତ୍ମସମ୍ମାନବୋଧ ଆସେ ନାହିଁ, ଫଳତଃ ଚେର ହଜିଯାଏ । ବରୂପାକ୍ଷ କର ପ୍ରକୃତରେ 'ଉତ୍କଳରେ ବୌଦ୍ଧଯୁଗର ଇତିହାସ' ଓ 'କେଶରୀବଂଶ' ନାମକ ଗବେଷଣା-ନିବନ୍ଧ ଦୁଇଟିରେ ଓଡ଼ିଶାର ଇତିହାସ ରଚନା କରିବାର ଉଦ୍ୟମ କରିଛନ୍ତି । ପ୍ରଥମଟି ପୁରାଣ ଯୁଗରୁ ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀର ପର୍ବାର୍ଦ୍ଧ ପର୍ଯ୍ୟନ୍ତ କାଳର ଇତିହାସ; ଦ୍ୱିତୀୟଟି ତତ୍ପରବର୍ତ୍ତୀକାଳର କଥା । ଜାତି ନିଜକୁ ଚିହ୍ନୁ ଓ ଆତ୍ମପ୍ରବୁଦ୍ଧ ହେଉ । ନିବନ୍ଧ ଦୁଇଟି ସେଦିନର ଉପଲବ୍ଧ ତଥ୍ୟ ଓ ବରୂପାକ୍ଷଙ୍କ ନିଜସ୍ୱ ଯୁକ୍ତିଶୀଳତାରେ ଯେମିତି ସମୃଦ୍ଧ, ଠିକ୍ ସେମିତି ସ୍ୱଜାତି ପ୍ରେମର ଗଭୀର ଆବେଗରେ ଉଦ୍ଭାସିତ । 'ପ୍ରାଚୀନ ଉତ୍କଳରେ ଜଳଯାତ୍ରା' ନିବନ୍ଧଟି ସେହି ଇତିହାସର ସାଂସ୍କୃତିକ ଦିଗନ୍ତ ମାତ୍ର । ଏଟି ଅବଶ୍ୟ ଅଧିକ ମୂଲ୍ୟବାନ ତଥ୍ୟରେ ପରିପୂର୍ଣ୍ଣ ଓ ସାରଗର୍ଭ, ଅଧିକନ୍ତୁ ଅପେକ୍ଷାକୃତ ଅଧିକ ମୌଳିକ ଗବେଷଣା ଓ ବହୁଦର୍ଶୀ ପାଣ୍ଡିତ୍ୟର ପରିଚୟବାହୀ । ସେଦିନ ସେ ମ୍ୟୁଜିୟମକୁ ଯାଇଛନ୍ତି, ଅଭିଲେଖ ଖୋଜିଛନ୍ତି । ପ୍ରାଚୀନ କାବ୍ୟ ପୁରାଣରୁ ପ୍ରମାଣ ଅନୁସନ୍ଧାନ କରିଛନ୍ତି ଓ ଉପଲବ୍ଧ ଐତିହାସିକ ପତ୍ରପତ୍ରିକା ଓ ଗ୍ରନ୍ଥ ପଢ଼ିଛନ୍ତି । 'ପ୍ରାଚୀନ ଉତ୍କଳରେ ଜଳଯାତ୍ରା' ନିବନ୍ଧଟିର Biblingraphyଟି ଦ୍ରଷ୍ଟବ୍ୟ । ଓଡ଼ିଶାରେ ସଂଗ୍ରହାଳୟଟିଏ ନଥିବାବେଳେ ଐତିହାସିକ ଗବେଷଣାର ସତତା ଓ ସଦାଶୟତା ରକ୍ଷା କରିବାକୁ କର ମହୋଦୟ ଆପ୍ରାଣ ଉଦ୍ୟମ କରିଛନ୍ତି । ପଢ଼ିଛନ୍ତି ଯାହାସବୁ ପଢ଼ିବାର କଥା ସେଦିନ । ତେଣୁ ତାଙ୍କ ତଥ୍ୟନିଷ୍ଠ ଇତିହାସାନୁରାଗ ଓ ସ୍ୱାଧୀନ ଚିନ୍ତାପ୍ରସୂତ ଅନୁସନ୍ଧାନ-ପଦ୍ଧତିକୁ ସମ୍ମାନ ନଦେଲେ ଅପରାଧ ହେବ ।

Digitized by srujanika@gmail.com

ଗବେଷକଟିର ଦାୟଦାୟିତ୍ୱ ପ୍ରତି ସେ ସର୍ବଦା ବିଶ୍ୱସ୍ତ । ଆଜି ଓଡ଼ିଶା ଇତିହାସରେ କେଶରୀବଂଶ ଅସ୍ୱୀକୃତ ଅବଶ୍ୟ । ତତ୍ ପରିବର୍ତ୍ତେ ମାଠର, ଶୈଳୋଦ୍ଭବ, ଶରଭପୁରୀୟ, ଭୌମକର ଓ ସୋମବଂଶୀ ରାଜାଙ୍କର ଇତିହାସ ଆବିଷ୍କୃତ ହୋଇଛି । ଓଡ଼ିଶା ଇତିହାସ ବେଶ୍ ଅଗ୍ରସରଶୀଳ । ତାହା ବିରୂପାକ୍ଷଙ୍କ ବିଚାରସ୍ତର ଅତିକ୍ରମ କଲାଣି କେବେଠାରୁ । ତେବେ କୌଣସି ଉଦ୍ୟମ ବ୍ୟର୍ଥ ହୁଏନାହିଁ ବୋଲି ମନେରଖିବା ଉଚିତ । "ଯେ ନଦୀ ମରୁପଥେ ହାରାଲୋ ଧାରା /ଜାନି ହେ ଜାନି ତାଓ ହୟନି ହାରା ।" ବିରୂପାକ୍ଷଙ୍କ ଦ୍ୱାରା ସଂଗୃହୀତ ତଥ୍ୟ ଓ ପ୍ରମାଣ ସବୁ ନଷ୍ଟ ହୋଇଯାଇ ନାହିଁ, ତାହା ନୂଆ ତଥ୍ୟ ଓ ପ୍ରମାଣ ମିଳିବା ପରେ ଭିନ୍ନ ଭାବରେ ବ୍ୟବହୃତ ହୋଇଛି ଯାହା । ଭବିଷ୍ୟତର ଐତିହାସିକମାନେ ସେଗୁଡ଼ିକର ସଦୁପଯୋଗ କରିଛନ୍ତି । ତେଣୁ ତାଙ୍କ ନିବନ୍ଧର ଅସମ୍ପୂର୍ଣ୍ଣତା ଯେନି ସଙ୍କୁଚିତ ହୋଇପଡ଼ିବାର କୌଣସି କାରଣ ନାହିଁ, ବରଂ ସେଗୁଡ଼ିକ ନବଦ୍ୱାର ଉନ୍ମୋଚନ କ୍ଷେତ୍ରରେ ସେଦିନର ପ୍ରାଥମିକ ଉଦ୍ୟମ ଭାବରେ ବେଶ୍ କୃତକୃତ୍ୟ । କବି ରବୀନ୍ଦ୍ରଙ୍କ ଭାଷାରେ ଯେପରି କହିଛନ୍ତି—

"ଜୀବନେ ଆଜଓ ଯାହା ରହିଛେ ପିଛେ
ଜାନି ହେ ଜାନି ତାହା ହୟ ନି ମିଛେ
ଆମାର ଅନାଗତ ଆମାର ଅନାହତ
ତୋମାର ବୀଣା ତାରେ ବାଜିଛେ ତାରା
ଜାନି ହେ ଜାନି ତାଓ ହୟନି ହାରା ।"

—ଅସମାପ୍ତ ।

ବିରୂପାକ୍ଷଙ୍କ ଉଦ୍ୟମ ମିଛ ହୋଇ ଉଠିନାହିଁ, ତାହା ପରବର୍ତ୍ତୀ ଜ୍ଞାନାର୍ଥୀଙ୍କ ପଥ ସୁଗମ କରିଛି, ସେମାନଙ୍କ ବୀଣାତାରରେ ନୂଆ ସ୍ୱର ସଂଯୋଗ କରିଛି । ଉଦ୍ୟମ ମାତ୍ରେ ଅସମାପ୍ତ । ଆଉ ନିବନ୍ଧ ମାତ୍ରେ ତ ଉଦ୍ୟମଟିଏ ଭିନ୍ନ ଆଉ କିଛି ହୋଇପାରେ ନାହିଁ । ତେଣୁ ବିରୂପାକ୍ଷଙ୍କ ଇତିହାସବୋଧ ଓ ବିଚାର ପଦ୍ଧତି ତଥା କାଣ୍ଡଜ୍ଞାନକୁ ଅସମ୍ମାନ କରି ହେବ ନାହିଁ । ତାଙ୍କର ଅସମ୍ପୂର୍ଣ୍ଣତା ପରବର୍ତ୍ତୀ କାଳରେ ଅନେକାଂଶରେ ଦୂରୀଭୂତ ହୋଇଥିବାରୁ ସେ ବଞ୍ଚିଥିଲେ ବେଶ୍ ଆଶ୍ୱସ୍ତ ହୋଇଥାନ୍ତେ ନିଶ୍ଚୟ । ସେ ସେଦିନ ଯେ ଦେଶପ୍ରୀତିର ପ୍ରବର୍ତ୍ତନାରେ ଇତିହାସ ସେବାରେ ଅପକ୍ଷପାତ କୌତୂହଳ ଯେନି ଏକନିଷ୍ଠ ଗବେଷକ ଭାବରେ ଆତ୍ମନିୟୋଗ କରିଥିଲେ, ସେହି ସଦୁଦ୍ୟମରେ ସେ ବଞ୍ଚି ରହିବେ ଚିରକାଳ ।

Digitized by srujanika@gmail.com

କେବଳ ଇତିହାସ ନୁହେଁ, ବିରୂପାକ୍ଷ ମଧ୍ୟ ସଂସ୍କୃତି ଓ ସମାଜ ଦର୍ଶନ ପ୍ରତି ଅନୁଭବିତ ଥିଲେ । ସେ କେବଳ ମାତ୍ର ତତ୍ତ୍ୱାନୁସନ୍ଧାନକାରୀ ଗବେଷକ ନୁହନ୍ତି, ସାମାଜିକ କଲ୍ୟାଣବୋଧର ଉଦ୍‌ଗାତା ମଧ୍ୟ । କେବଳ ବିଶୁଦ୍ଧ ଜ୍ଞାନଚର୍ଚ୍ଚା ହିଁ ସେ ପ୍ରବନ୍ଧ ଲେଖିନାହାନ୍ତି, ବରଂ ଦେଶର ଜୀବନଯାତ୍ରା ଓ ସମସ୍ୟା ପ୍ରତି ଯଥାସମ୍ଭବ ଅବହିତ ଥାଆନ୍ତି, ଜାତୀୟ ସଂସ୍କୃତି ପ୍ରତି ଶ୍ରଦ୍ଧାଶୀଳ ରହିଥାନ୍ତି । ସଂସ୍କୃତିକୁ ଛାଡ଼ି ସେ ଇତିହାସର କଳ୍ପନା କରିପାରନ୍ତି ନାହିଁ କି ସୁସ୍ଥ ସମାଜ ବ୍ୟବସ୍ଥାର ସମ୍ଭାବନା ଦେଖନ୍ତି ନାହିଁ । ଅବଶ୍ୟ 'ଆମ ସଂସ୍କୃତି' ପ୍ରବନ୍ଧରେ ସଂସ୍କାରମୂଳ ଶବ୍ଦରେ ମୃତ୍ତିକାଗତ ଆତ୍ମପ୍ରତ୍ୟୟଟିକୁ ସେ ଅତୁଟ ରଖି ପାରିନାହାନ୍ତି, ରକ୍ଷଣଶୀଳତା ପ୍ରତି ପକ୍ଷପାତିତା ପ୍ରଦର୍ଶନ କରିଛନ୍ତି ବେଶି । ତେବେ ଆମ ସଂସ୍କୃତିର ଅନେକ ସୁସ୍ଥ ବ୍ୟବସ୍ଥା ପ୍ରତି ଆତ୍ମସର୍ବସ୍ୱ ଶିକ୍ଷିତ ସମାଜର ଦୃଷ୍ଟି ଆକର୍ଷଣ କରିପାରିଛନ୍ତି । 'ଜାତିବର୍ଣ୍ଣ'' ପ୍ରବନ୍ଧଟି କିନ୍ତୁ ପ୍ରାସଙ୍ଗିକତା ହରାଇ ନାହିଁ ଆଦୌ, ବରଂ ଆଜିର 'ମଣ୍ଡଳ' କୋଳାହଳ ଭିତରେ ମହାନ୍ ସମାଜାଦର୍ଶ ପରିକଳ୍ପନା ଯେପରି ଆମକୁ ପ୍ରବୁଦ୍ଧ କରୁଛି ଯଥେଷ୍ଟ । ସେଦିନ ଜାତ୍ୟାଭିମାନ ଥିଲା, ଆଜି କିନ୍ତୁ ଧୂର୍ତ୍ତ ରାଜନୀତିର ଚକ୍ରାନ୍ତରୁ ସମସ୍ତେ ପଛୁଆ ଜାତିରେ ନାମ ଲେଖାଇବାକୁ ବ୍ୟାକୁଳ ହୋଇ ଉଠିଛନ୍ତି । ଏତିକି ପ୍ରଭେଦ ଯାହା । ମିଛ ଅଭିମାନ ଉଚିତ ନଥିଲା, ଆଜି ମାନ ପରିହାର ବି ଉଚିତ ହେଉନାହିଁ । ଜାତି ବିଭାଗ ବଢ଼ୁଛି, ୧୮୧୬ଟି ପଛୁଆ ଜାତି ଚିହ୍ନଟ କରାଯାଇଛି, ଏତଦ୍ଦ୍ୱାରା ଜାତି-ବିଦ୍ୱେଷ କମିବ କିପରି ? ଆମ ମିଛ ଗଣତନ୍ତ୍ର ବ୍ୟବସ୍ଥା ସମସ୍ତଙ୍କୁ ସମାନ ଭାବରେ ଇତର କରିଦେବାକୁ ଯେଉଁ ସୁବ୍ୟବସ୍ଥା କରୁଛି ଲୋକେ ତାକୁ ସର୍ବାନ୍ତଃ କରଣରେ ସ୍ୱାଗତ କରୁଛନ୍ତି । ଦୁଃଖ ଓ ପରିତାପ କଥା । କିନ୍ତୁ ଚେତାବନୀ ଶୁଣାଇବାକୁ ବିରୂପାକ୍ଷ କରଙ୍କ ପରି ନିର୍ଭୀକ ଚିନ୍ତାନାୟକ କାହାନ୍ତି ? ବିରୂପାକ୍ଷ ଜାତିବର୍ଣ୍ଣର କ୍ଷେତ୍ରରେ ଆଦୌ ରକ୍ଷଣଶୀଳ ନଥିଲେ । ସେ ସ୍ପଷ୍ଟ କହିଛନ୍ତି, "ଆମ ସମାଜର ସବୁ ଜାତିର ଲୋକ ଏକ ଜାତିର ଅନ୍ତର୍ଗତ ଓ ପ୍ରକୃତତଃ ଭେଦଭାବ ବିହୀନ । ଈଶ୍ୱର କରନ୍ତୁ, ଶୀଘ୍ର ଆମମାନଙ୍କର ସେହି ସୂଚନା ଆସୁ ।" ଈଶ୍ୱରଙ୍କର କର୍ତ୍ତିତ୍ୱ କାହିଁ ? ଜାତିର ସୂଚନା ଆସିବ କେଉଁଠୁ ? ଶାସନ ଓ କର୍ତ୍ତୃତ୍ୱ ଯେଉଁମାନଙ୍କ ହାତରେ ଅଛି ସେମାନେ ଜାତି ବିଦ୍ୱେଷକୁ ବଞ୍ଚାଇ ରଖି ସେଥିରୁ ଲାଭ ଉଠାଉଛନ୍ତି, ଜାତି ବର୍ଣ୍ଣର ଊର୍ଦ୍ଧ୍ୱରେ ରହି ସମାଜର ସବୁଶ୍ରେଣୀର ଲୋକଙ୍କ କଲ୍ୟାଣ କଥା ଭାବି ପାରୁନାହାନ୍ତି । ସ୍ତୁତରାଂ ତେବେ କ'ଣ ଭିନ୍ନ ପନ୍ଥା ନାହିଁ ? ବିରୂପାକ୍ଷଙ୍କ ରଚନା ମଧ୍ୟରେ ଏହି 'ଜାତିବର୍ଣ୍ଣ'ଟି ଏକମାତ୍ର ଉପାଦେୟ ପ୍ରବନ୍ଧ—ଉଭୟ ସାରସ୍ୱତ ଧର୍ମ ଓ ସମସାମୟିକ ପ୍ରାସଙ୍ଗିକତା ଦୃଷ୍ଟିରୁ । ଏଥିରେ ପ୍ରବନ୍ଧସୁଲଭ ଯୁକ୍ତିଧର୍ମିତା ଓ ପ୍ରତିପାଦ୍ୟ ବିଷୟ ସଂପର୍କରେ ସ୍ୱଚ୍ଛଚିନ୍ତା ତଥା ସୁସ୍ପଷ୍ଟ ସିଦ୍ଧାନ୍ତ ଲକ୍ଷ୍ୟ କରାଯାଏ ।

Digitized by srujanika@gmail.com

ବିଭୂତିପାଣ୍ଡେ କର ସଚେତନ ଭାବରେ ସାହିତ୍ୟ ସାଧନା କରିନାହାନ୍ତି । ସେ ଜାତୀୟ କଲ୍ୟାଣବୋଧର ପ୍ରେରଣାରୁ ଜ୍ଞାନ ଚର୍ଚ୍ଚା କରିଛନ୍ତି ଓ ଗବେଷଣା କୌଶଳ ପ୍ରଦର୍ଶନ କରିଛନ୍ତି । ସେ ମୁଖ୍ୟତଃ ସାର୍ଥକ ଗବେଷକଟିଏ । ଅଖଣ୍ଡ ଜ୍ଞାନ ସ୍ପୃହା ଥିଲା, ଥିଲା ବି ଜ୍ଞାନ ପ୍ରତିର ଆଗ୍ରହ । ଦୃଷ୍ଟିଭଙ୍ଗୀ ବୁଦ୍ଧିଦୀପ୍ତ । ଭାଷାଭଙ୍ଗୀ ସ୍ୱଚ୍ଛ ଓ ସୁଖପାଠ୍ୟ । ପ୍ରମାଣ ବିଶ୍ଳେଷଣ ଯଥାସମ୍ଭବ ସୂକ୍ଷ୍ମପୂର୍ଣ । ତେଣୁ ତାଙ୍କର ଲେଖା ଐତିହାସିକ ସିଦ୍ଧାନ୍ତ ଦୃଷ୍ଟିରୁ ଖଣ୍ଡିତ ହୋଇଯାଇଥିଲେ ମଧ୍ୟ ସମ୍ପୂର୍ଣ୍ଣ ଆବେଦନ ହରାଇ ନାହିଁ । ଅଧିକନ୍ତୁ ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ ସମୃଦ୍ଧ କରିବାର ଯଥେଷ୍ଟ କ୍ଷମତା ତାଙ୍କର ଥିଲା ; କିନ୍ତୁ ସେ ଗବେଷଣା କାର୍ଯ୍ୟରେ ବ୍ୟାପୃତ ରହି କ୍ଷମତାଟିର ଯଥୋଚିତ ବ୍ୟବହାର କରି ପାରି ନାହାନ୍ତି । ତଥାପି ତାଙ୍କ ଲେଖାର ଭାଷାରୂପ ମଧ୍ୟରେ ଯେଉଁ ବଳିଷ୍ଠ ସାହିତ୍ୟିକ ସମ୍ଭାବନା ବର୍ତ୍ତମାନ, ତାହାକୁ କେବେ ଅସ୍ୱୀକାର କରି ହେବନାହିଁ । ଓଡ଼ିଆ ଗଦ୍ୟସାହିତ୍ୟର ଇତିହାସରେ ତାଙ୍କୁ ଯଥୋଚିତ ସ୍ଥାନଟି ମିଳିବ ନିଶ୍ଚୟ । ଆଜି ତାଙ୍କ ଜନ୍ମର ଶତବର୍ଷ ପୂର୍ତ୍ତି ଉପଲକ୍ଷେ ଆମେ ତାଙ୍କୁ ସ୍ମରଣକରି ଧନ୍ୟ ହେଉଛୁ । ଆସନ୍ତୁ ତାଙ୍କ କର୍ମ, ମନନ ଓ ଉପଲବ୍ଧିକୁ ଆମ ଚିନ୍ତା ଭାବନା ଦାୟିତ୍ୱବୋଧ ସହିତ ମିଳାଇ ଦେଖିବା, କେବଳମାତ୍ର ଉତ୍ସବରେ ମାତି ସଭାଶୋଭନତା ଭିତରେ ତାଙ୍କୁ ନେଇ ଆଡ଼ମ୍ବର ଦେଖାଇବା ନାହିଁ । ଆମ ଜୀବନର ସମସ୍ୟା ଓ ଆମ ଜାତୀୟ ସଂସ୍କୃତିର ଦାୟିତ୍ୱବୋଧ ସହିତ ଯେବେ ତାଙ୍କ ଚିନ୍ତା ଓ ଆଦର୍ଶର କୌଣସି ସଂଯୋଗ ରହିବ ନାହିଁ, ତେବେ ଏ ଶତବର୍ଷ ପୂର୍ତ୍ତିର ତାତ୍ପର୍ଯ୍ୟ କ'ଣ ? ସେ ବଞ୍ଚିଥିଲେ ଜାତିକୁ ଇତିହାସବୋଧରେ ଦୀକ୍ଷିତ କରାଇ ଐତିହ୍ୟ ସଚେତନ କରିବେ ଓ ଆତ୍ମପ୍ରତିଷ୍ଠା ଦେବେ । ତାଙ୍କ ଉଦ୍ଦେଶ୍ୟ କ'ଣ ଏବେ ବି ଚରିତାର୍ଥ ହୋଇଛି ?

ବିଭୂତିପାଣ୍ଡେ କର ଶତବାର୍ଷିକୀ ସମାରୋହର କର୍ମକର୍ତ୍ତାଗଣ 'ବିଭୂତିପାଣ୍ଡେ ପ୍ରବନ୍ଧାବଳୀ' ପ୍ରକାଶ କରି ମହତ୍ କାର୍ଯ୍ୟଟିଏ କରିଛନ୍ତି । ଜାତି ଆଗରେ କର ମହୋଦୟ ଉପସ୍ଥାପିତ ହେଉଛନ୍ତି । ଆନନ୍ଦର କଥା । ଗଦ୍ୟରଚନା ସହିତ ତାଙ୍କ ପଦ୍ୟରଚନା ଏକତ୍ର ସଙ୍କଳିତ ହୋଇଥିଲେ ଆହୁରି ଭଲ ହୋଇଥାନ୍ତା । ଲେଖକ କର୍ମକର୍ତ୍ତାଙ୍କୁ ସାଧୁବାଦ ଜ୍ଞାପନ କରୁଛୁ ତଥାପି । ଅଧିକନ୍ତୁ ତାହାକୁ ମୁଖବନ୍ଧ ଲେଖିବାର ଆନନ୍ଦଦାୟକ ସୁଯୋଗଟି ପ୍ରଦାନ କରାଯାଇଥିବାରୁ ସେ କୃତାର୍ଥ ହେଉଛି ।

**ଦାଶରଥି ଦାସ**

ପ୍ରଫେସର ଓଡ଼ିଆ ବିଭାଗ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

ରାସପୂର୍ଣ୍ଣିମା—୧୯୯୩

Digitized by srujanika@gmail.com

# ଭୂମିକା

ପ୍ରାବନ୍ଧିକ ବିରୂପାକ୍ଷ କର ଶତବାର୍ଷିକୀ ସମାରୋହ ଅବସରରେ 'ବିରୂପାକ୍ଷ ପ୍ରବନ୍ଧାବଳୀ' ପ୍ରକାଶ ପାଇବା ଅତି ଆନନ୍ଦର ବିଷୟ । ଜଣେ ପ୍ରଥିତଯଶା ପ୍ରାବନ୍ଧିକ ଭାବେ ବିରୂପାକ୍ଷ କରଙ୍କ ସାଧନା ସ୍ମରଣୀୟ । ଆମ ସଂସ୍କୃତି, ଇତିହାସ, ପୁରାଣ ଓ ପ୍ରାଚୀନ କିମ୍ବଦନ୍ତୀକୁ ନେଇ ପ୍ରବନ୍ଧ ରଚନାରେ ତାଙ୍କର କୃତିତ୍ୱ ଦେଖିଲେ ବିସ୍ମିତ ହେବାକୁ ହୁଏ । ସେ ଥିଲେ ଏକାଧାରରେ ସମାଜସଂସ୍କାରକ, ଐତିହାସିକ, ପୁରାତତ୍ତ୍ୱବିତ୍ ଓ ଘଟନାବହୁଳ କିମ୍ବଦନ୍ତୀମାନଙ୍କର ସଂଗ୍ରାହକ । ସେ ପୂର୍ବକଥା, ଜନଶ୍ରୁତି ଓ ସାହିତ୍ୟ ଭିତରେ ଇତିହାସ ଖୋଜିଛନ୍ତି । ପୁଣି ସମକାଳୀନ ସାହିତ୍ୟକୁ ଐତିହାସିକର ଅନ୍ୟତମ ସହାୟକ ଉପାଦାନ ରୂପେ ଗ୍ରହଣ କରିଛନ୍ତି । ଏ ସମ୍ପର୍କରେ ପ୍ରାବନ୍ଧିକଙ୍କ ଉକ୍ତିଟି ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । "ଇତିହାସର ପ୍ରକୃତ ଅର୍ଥ 'ପୂର୍ବକଥା' । ପ୍ରତ୍ୟେକ ଲୋକର ତଥା ପ୍ରତ୍ୟେକ ଜାତିର କିଛି ହେଲେ 'ପୂର୍ବକଥା' ଅଛି । ସେହି ଘଟନାଗୁଡ଼ିକ ଉକ୍ତ ଦେଶ ବା ଜାତିର 'ପୂର୍ବକଥା' ବା ଇତିହାସ । ଇତିହାସ କିନ୍ତୁ ସବୁବେଳେ ସମସ୍ତଙ୍କୁ ଜଣା ନଥାଏ । ପୂର୍ବକଥାଗୁଡ଼ିକ ନାନାଭାବରେ ଲୁଚି ରହିଥାଏ । ଇତିହାସ ଲେଖକ ସେଗୁଡ଼ିକୁ ଖୋଜି ସଂଗ୍ରହ କରି ପୁସ୍ତକାକାରରେ ଲିପିବଦ୍ଧ କରନ୍ତି । ଘଟନା ଘଟିଲାବେଳେ ହୁଏତ ସେ ବିଷୟରେ କେହି କିଛି ଲେଖିଥାଏ । ଇତିହାସ ଲେଖକ ସେହି ଲେଖାକୁ ସମସାମୟିକ ସାହିତ୍ୟ 'Contemporary Literature' ବୋଲି କହନ୍ତି । ସମସାମୟିକ ସାହିତ୍ୟ ଐତିହାସିକର ଏକ ପ୍ରଧାନ ସହାୟ ।" (୧) ସୁତରାଂ ସାହିତ୍ୟ, ପୂର୍ବକଥା ଓ ସାଂସ୍କୃତିକ ଭାବ-ପ୍ରବାହ ଭିତରୁ ସେ ଇତିହାସର ଆଲୋଚନା କରିଛନ୍ତି ।

ବିରୂପାକ୍ଷ କରଙ୍କ ପ୍ରବନ୍ଧ ଆଲୋଚନା ପରିପ୍ରେକ୍ଷୀରେ ତାଙ୍କ ଜୀବନୀ ସମ୍ପର୍କରେ ସମ୍ୟକ୍ ଆଲୋଚନାର ଆବଶ୍ୟକତା ରହିଛି । ୧୮୯୩ ମସିହା ସେପ୍ଟେମ୍ବର ୧୮ ତାରିଖରେ ବାଙ୍କୀର ଇତିହାସ ପ୍ରସିଦ୍ଧ ଡମପଡ଼ା ଗଡ଼ରେ

(୧) ଉତ୍କଳ ସାହିତ୍ୟ—୨୪/୨ ଆଲୋଚନା - ବିରୂପାକ୍ଷ କର-ପୃ ୭୦ ।

Digitized by srujanika@gmail.com

ତାଙ୍କର ଜନ୍ମ ୀ ପ୍ରାକୃତିକ ଦୃଶ୍ୟଭରା ଏହି ଗଡ଼ର ନୈସର୍ଗିକ ସୁଷମା ବାଲ୍ୟକାଲରୁ ତାଙ୍କୁ ପ୍ରଭାବିତ କରିଥିଲା । ସେ ଜନ୍ମସ୍ଥାନର ପ୍ରସ୍ତର ପାହାଡ଼, ଝର୍କିଲ ଅନୁର୍ବର ଭୂମିର ଗୁଳ୍ମ-ଲତା, ମେଘ ଅଁକାଶର ଶୋଭା, ଅନତିଦୂରରେ ମହାନଦୀର ନୀଳ ଜଳରାଶି, ଅମ୍ରକାନନବେଷ୍ଟିତ ଗଡ଼ର ଛାୟା-ଶୀତଳ ପରିବେଶ ଦେଖି ହେଉଥିଲେ ବିମୋହିତ । ପିଲାଦିନରୁ ଡମପଡ଼ା ଓ ଏହାର ଆଖପାଖ ଅଞ୍ଚଳର ଇତିହାସ ଜାଣିବା ପାଇଁ ତାଙ୍କର ଥିଲା ପ୍ରବଳ ଆଗ୍ରହ । ସପ୍ତଶଯ୍ୟା, ସର୍ପେଶ୍ୱର, ଭଟ୍ଟାରିକା, ନରାଜ, ଶାରଙ୍ଗଗଡ଼ ସମ୍ପର୍କରେ ସେ ବହୁ କଥା ପିଲାଦିନରୁ ଜାଣିଥିଲେ । ତାଙ୍କର ବଡ଼ଭାଇ ପ୍ରସିଦ୍ଧ ଶିକ୍ଷକ ଚନ୍ଦ୍ରାମଣି କରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସେ ଶିକ୍ଷାଲାଭ କରିଥିଲେ । ବାଙ୍କୀରୁ ବାଲ୍ୟଶିକ୍ଷା ଶେଷ କରି ସେ ପୁରୀ ଜିଲ୍ଲାସ୍କୁଲରେ ୧୯୦୮ ମସିହାରେ ପ୍ରବେଶ କଲେ । ସେତେବେଳକୁ ପୁରୀ ଜିଲ୍ଲାସ୍କୁଲରେ ପ୍ରଧାନଶିକ୍ଷକ ଥାଆନ୍ତି ବିଦ୍ୟାବିନୋଦ ମଧୁସୂଦନ ଦାଶ । 'ନୀଳାଚଳ' କାବ୍ୟର ରଚୟିତା, ଉତ୍କଳ ସାହିତ୍ୟ ପତ୍ରିକାରେ ବିଭିନ୍ନ ପ୍ରବନ୍ଧର ଲେଖକ ଭାବେ ସେ ବେଶ୍ ସୁନାମ ଅର୍ଜ୍ଜନ କରିଥିଲେ । ବିରୂପାକ୍ଷ ଜଣେ ମେଧାବୀ ଛାତ୍ର ଓ ସାହିତ୍ୟ ଅନୁରାଗୀ ହୋଇଥିବାରୁ ପ୍ରଧାନଶିକ୍ଷକଙ୍କ ସ୍ନେହଭାଜନ ହୋଇଥିଲେ । ୧୯୧୨ ମସିହାରେ ପ୍ରଥମଶ୍ରେଣୀରେ ପୁରୀ ଜିଲ୍ଲା-ସ୍କୁଲରୁ ସେ ମାଟ୍ରିକ୍ ପାଶ୍ କରିଥିଲେ । ସ୍କୁଲ ଅଧ୍ୟୟନ ସମୟରେ ତାଙ୍କର ଅନ୍ୟତମ ବନ୍ଧୁ ଥିଲେ ଲିଙ୍ଗରାଜ ମିଶ୍ର । ତାଙ୍କର ଏହି ବନ୍ଧୁଜଣକ ତାଙ୍କୁ ସାହିତ୍ୟ, ଇତିହାସ ଆଲୋଚନାରେ ଯଥେଷ୍ଟ ପ୍ରେରଣା ଦେଇଥିଲେ । ମାଟ୍ରିକ୍ ପରେ ସେ କଲିକତାରେ ବି. ଏ. ଅଧ୍ୟୟନ କରିଥିଲେ । ୧୯୧୬ ମସିହାରେ ସେ କୃତିତ୍ୱର ସହିତ ଡିଷ୍ଟିଙ୍କସନ୍ ପାଇ ବି. ଏ. ପାଶ୍ କରିଥିଲେ । ବି. ଏ. ପାଶ୍ ପରେ ସେ କିଛିକାଲ ଶିକ୍ଷକତା କରି ପରେ ବି. ଏଲ୍ ପାଶ୍‌କଲେ । ମଧୁପୁର ରାଜାଙ୍କ ଦେଓ୍ୱାନ୍‌ଭାବରେ କାର୍ଯ୍ୟ କରି ସେ ବିଚକ୍ଷଣତାର ପରିଚୟ ଦେଇଥିଲେ । ଦେଓ୍ୱାନ୍ ଥିବା ସମୟରେ ସେ ବିଭିନ୍ନ କାର୍ଯ୍ୟରେ ଯାଜପୁର ଆସୁଥିଲେ । ଯାଜପୁରର ସପ୍ତମାତୃକା, ବିରଜା ମନ୍ଦିର, ଦଶାଶ୍ୱମେଧ ଘାଟ, ସିଦ୍ଧେଶ୍ୱର, ତ୍ରିଲୋଚନେଶ୍ୱର ପ୍ରଭୃତି ଐତିହାସିକ ସ୍ଥାନ ତାଙ୍କୁ ଏହି ସ୍ଥାନକୁ ଆକୃଷ୍ଟ କରି ଆଣିଥିଲା । ଫଳରେ ଜଣେ ଆଇନଜୀବୀ ଭାବରେ ଯାଜପୁରକୁ ବିରୂପାକ୍ଷକର ନିଜର କର୍ମକ୍ଷେତ୍ର ରୂପେ ଗ୍ରହଣ କରିନେଲେ । ସେ ଯାଜପୁରର ସାଂସ୍କୃତିକ ବିକାଶପାଇଁ ବହୁବିଧ ଉଦ୍ୟମ କରିଥିଲେ । ବିଶେଷ କରି ଶିକ୍ଷାପ୍ରସାର କ୍ଷେତ୍ରରେ ସେ ଯେଉଁ ଗଠନମୂଳକ ମନୋଭାବ ନେଇ ନରସିଂହ ଚୌଧୁରୀ କଲେଜକୁ ଗଢ଼ିଥିଲେ ତାହା ବାସ୍ତବରେ ପ୍ରଶଂସନୀୟ । ଯାଜପୁରର ଐତିହାସିକ କୀର୍ତ୍ତି ସଂରକ୍ଷଣ ପାଇଁ ସେ ବାରମ୍ବାର ସରକାରଙ୍କ ଦୃଷ୍ଟି ଆକର୍ଷଣ କରୁଥିଲେ । ଏହାର ପ୍ରାଚୀନ କୀର୍ତ୍ତିମାନଙ୍କ

Digitized by srujanika@gmail.com

ସର୍ବେକ୍ଷଣ କରି ଏକ ଚମତ୍କାର ବିବରଣୀ ସେ ପ୍ରସ୍ତୁତ କରିଥିଲେ । ତାଙ୍କର ବ୍ୟବସାୟ ଥିଲା ଆଇନ ମତ; କିନ୍ତୁ ସେ ଥିଲେ ଇତିହାସ-ପ୍ରାଣ । ଜଣେ ଐତିହାସିକର ସମସ୍ତ ସଦ୍‌ଗୁଣ ତାଙ୍କର ଥିଲା । ସତ୍ୟ,ନିରପେକ୍ଷତା,ସର୍ବଧର୍ମସମନ୍ୱୟ ଭାବଧାରାର ସେ ଥିଲେ ପୋଷକ । ପ୍ରସଙ୍ଗକ୍ରମେ ଏଠାରେ ଇତିହାସ ଓ ଐତିହାସିକ ସମ୍ପର୍କିତ ଏହି ଉକ୍ତିଟି ଉଦ୍ଧାର କରାଯାଇପାରେ । "The compiler of history must be a man of trust, veracity and impartiality. If he records the virtues of a king or a celebrated personality, he should not hide his vices and weaknesses. The historian must on the basis of religion, belief truth and conscience be a recorder of truth and truth alone." (୧)

ଇତିହାସ ସଙ୍କଳନକାରୀ ନିଶ୍ଚିତ ଭାବରେ ଜଣେ ବିଶ୍ୱସ୍ତ ଅନୁସନ୍ଧିତ୍ସୁ ଏବଂ ଅପକ୍ଷପାତୀ ବ୍ୟକ୍ତି ହେବା ବିଧେୟ । ସେ ଯଦି ଜଣେ ରାଜା ବା ସମ୍ମାନିତ ବ୍ୟକ୍ତିଙ୍କ ବିଷୟ ଲିପିବଦ୍ଧ କରନ୍ତି, ତେବେ ତାଙ୍କର ଦୋଷ ଦୁର୍ବଳତା ସବୁକୁ ଘୋଡ଼ାଇବାକୁ ଚେଷ୍ଟା ଯେପରି ନ କରନ୍ତି । ଧର୍ମ, ବିଶ୍ୱାସ, ସତ୍ୟ ଏବଂ ବିବେକ ଦୃଷ୍ଟିରୁ ଐତିହାସିକ କେବଳ ସତ୍ୟକୁ ହିଁ ଲିପିବଦ୍ଧ କରିବେ । ସେ ଇତିହାସକୁ ଏକ ପବିତ୍ର ରଚନା ରୂପେ ଗ୍ରହଣ କରିଥିଲେ ଓ ସତ୍ୟଦୃଷ୍ଟିକୁ ଇତିହାସର ଅପରିହାର୍ଯ୍ୟ ଆବଶ୍ୟକତା ଭାବେ ଧରି ନେଇଥିଲେ । ଜୀବନବ୍ୟାପୀ ସେ ଓଡ଼ିଶାର ଇତିହାସ, ସଂସ୍କୃତି ଓ ଜନଜୀବନ ସମ୍ପର୍କରେ ସତ୍ୟାନୁସନ୍ଧାନ କରିଛନ୍ତି । ଏହି ସତ୍ୟସନ୍ଧାନ ପାଇଁ ପ୍ରାଚୀନ ଉତ୍କଳର ନୌପରମ୍ପରାଠାରୁ ଆରମ୍ଭ କରି କାଡିବସ୍ତ୍ର ପର୍ଯ୍ୟନ୍ତ ସବୁଠି ସେ ଦୃଷ୍ଟି ବୁଲାଇଛନ୍ତି । ଇତିହାସ ପ୍ରତି ଶ୍ରଦ୍ଧା ଓ ସମ୍ମାନ ଦେଖାଇ ଏହି ସଂସ୍କୃତିସଚେତନ ପ୍ରାବନ୍ଧିକ ବିରୂପାକ୍ଷ ୧୯୬୮ମସିହା ଡିସେମ୍ବର '୬ତାରିଖରେ ଇହଲୋକରୁ ବିଦାୟ ନେଇଛନ୍ତି ।

ବିରୂପାକ୍ଷ କରଙ୍କ ପ୍ରବନ୍ଧଗୁଡ଼ିକୁ ଆଲୋଚନାର ସୁବିଧା ଦୃଷ୍ଟିରୁ ତିନି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ (କ) ପ୍ରାଚୀନ ଉତ୍କଳସମ୍ବନ୍ଧୀୟ ଐତିହାସିକ ଗବେଷଣାମୂଳକ ପ୍ରବନ୍ଧ । (ଖ) ପୌରାଣିକ ପରମ୍ପରା ଓ କିମ୍ବଦନ୍ତୀ ଆଶ୍ରୟରେ ରଚିତ ପ୍ରବନ୍ଧ । (ଗ) ସଂସ୍କୃତି ସମ୍ବନ୍ଧୀୟ ପ୍ରବନ୍ଧ । ଏହି ତିନି ପ୍ରକାରର ପ୍ରବନ୍ଧରେ

---

୧ । R. C. Majumdar– Historiography in Modern India Asha Publishing House (1970) Page 25

Digitized by srujanika@gmail.com

ସେ ସବୁଠ ଜଣେ ଗବେଷକ, ଐତିହାସିକ ଓ ସାହିତ୍ୟସାଧକର ପରିଚୟ ଦେଇଛନ୍ତି । ସେ ଐତିହାସିକ ପ୍ରବନ୍ଧଲେଖକଭାବେ କେବଳ ତଥ୍ୟ ସଂଗ୍ରହ କରି ନାହାନ୍ତି, ଅଧିକନ୍ତୁ ମାନବସମାଜର ମୁକ୍ତିକାମନା ସହିତ ଜାତିର ଜୀବନ-ନାଟକରେ ଘଟିଥିବା ସ୍ମରଣୀୟ ଘଟନାବଳୀର ଲିପିବଦ୍ଧ କରିଛନ୍ତି । ତାଙ୍କର ଇତିହାସ ରଚନାର ଏହି ଢଙ୍ଗ ପ୍ରତି ଆଲୋକପାତ କଲାବେଳେ ବିଶିଷ୍ଟ ଐତିହାସିକ ରମେଶଚନ୍ଦ୍ର ମଜୁମଦାରଙ୍କ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ ।

> "It is said that the historians merely land on their basis, while the real task of history is to reveal the spirit of humanity and trace the course of progress towards liberty." (୩)

ସାଧାରଣତଃ ଦେଖାଯାଏ ଯେ ଐତିହାସିକ କେବଳ ନିଜ ପଦ୍ଧତିରେ ଲିପିବଦ୍ଧ କରିଯାଆନ୍ତି । ବାସ୍ତବିକ୍ କ୍ଷେତ୍ରରେ ଇତିହାସର କର୍ତ୍ତବ୍ୟ ହେଉଛି ମାନବିକତା ଧର୍ମ ଉନ୍ମୋଚନ କରିବା ତଥା ମୁକ୍ତିର ପଥ ନିର୍ଦ୍ଦେଶ କରିବା । ପ୍ରକୃତରେ ବହୁପାଠଙ୍କ ପ୍ରବନ୍ଧଗୁଡ଼ିକ ଇତିହାସର ଶୁଷ୍କ ସନ, ତାରିଖ ସମ୍ବଳିତ ରାଜବଂଶର ବିବରଣୀ ନୁହେଁ ବରଂ ଏହା ଭିତରେ ଜୀବନ, ଜଗତ ସମ୍ବନ୍ଧୀୟ ଯାବତୀୟ ପ୍ରସଙ୍ଗ, ସୌନ୍ଦର୍ଯ୍ୟବୋଧ, ରସିକତା ପ୍ରକଟିତ ।

ପ୍ରାଚୀନ ଉତ୍କଳ ସମ୍ବନ୍ଧୀୟ ଐତିହାସିକ ଗବେଷଣାମୂଳକ ପ୍ରବନ୍ଧମାନଙ୍କ ମଧ୍ୟରେ, 'ଉତ୍କଳରେ ବୌଦ୍ଧ ଯୁଗର ଇତିହାସ','ପ୍ରାଚୀନ ଉତ୍କଳରେ ଜଳଯାତ୍ରା', 'ପ୍ରାଚୀନ ଯାଜପୁର', 'ଯାଜପୁର', 'ବିରଜା', 'କେଶରୀବଂଶ', 'ଗଜସିଂହ ଓ କେଶରୀବଂଶ' ପ୍ରଭୃତି ପ୍ରଧାନ । ଉତ୍କଳରେ ବୌଦ୍ଧଯୁଗର ଇତିହାସ ଏକ ଦୀର୍ଘ ପ୍ରବନ୍ଧ । ଏଥିରେ ସେ କହିଛନ୍ତି ଯେ, ଓଡ଼ିଶାରେ ବୌଦ୍ଧଯୁଗରେ କୌଣସି ରାଜା ରାଜତ୍ୱ କରିନାହାନ୍ତି । ବହୁପାଠୀ କରଙ୍କ ଏହି ମତକୁ ପରବର୍ତ୍ତୀ ସମୟରେ ଐତିହାସିକ ସତ୍ୟନାରାୟଣ ରାଜଗୁରୁ ତାଙ୍କର 'ଓଡ଼ିଶାରେ ବୌଦ୍ଧଧର୍ମର ପ୍ରଭାବ' ପ୍ରବନ୍ଧରେ ଅସ୍ୱୀକାର କରିଛନ୍ତି । 'ପ୍ରାଚୀନ ଉତ୍କଳରେ ଜଳଯାତ୍ରା' ପ୍ରବନ୍ଧଟି ବହୁପାଠୀ ପ୍ରବନ୍ଧମାନଙ୍କର ସର୍ବଶ୍ରେଷ୍ଠ ନିଦର୍ଶନ । ଅତୀତ ଓଡ଼ିଶାର ବାଣିଜ୍ୟ

---

୩ । R. C. Majumdar-Historiography in Modern India—Asha Publishing House (1970)—Page-50

Digitized by srujanika@gmail.com

ବ୍ୟବସାୟର ମଧୁର ସ୍ମୃତିଚିତ୍ରଣ ସେ ଏଥିରେ କରିଛନ୍ତି । ଏ ପୁସ୍ତକଟି ତାଙ୍କର ଏକ ଗବେଷଣାତ୍ମକ ପୁସ୍ତକ । ପ୍ରାଚୀନ ଉତ୍କଳର ବହିଃସମ୍ପର୍କ ଓ ନୌବାଣିଜ୍ୟର ପ୍ରାମାଣିକ ପୁସ୍ତକ ରୂପେ ଏହା ଏବେସୁଦ୍ଧା ପାଠକ ମହଲରେ ଅଦୃତ । ପୁରାଣର ପ୍ରସଙ୍ଗମାନଙ୍କୁ ଓ କିମ୍ବଦନ୍ତୀକୁ ଆଧାର କରି ଏଥିରେ ସେ ତୁଳନାତ୍ମକ ଭାବେ ଇତିହାସ ସହ ବିଶ୍ଳେଷଣ କରି ପ୍ରାଚୀନ ଉତ୍କଳର ଜଳଯାତ୍ରାର ଇତିହାସ ଲେଖିଛନ୍ତି । ଏହି ପୁସ୍ତକଟି ଅଧ୍ୟୟନ କଲେ ପ୍ରାବନ୍ଧିକଙ୍କ ପାଣ୍ଡିତ୍ୟ ଓ ବିଶ୍ଳେଷଣ ଶକ୍ତି ନିକଟରେ ପାଠକର ମଥା ନଇଁ ଆସେ । ବିଂଶ ଶତକର ଆଦ୍ୟ ପାଦରେ ସେ ପ୍ରବନ୍ଧ ରଚନା ପାଇଁ ଯେଉଁ ଶ୍ରମସ୍ୱୀକାର କରିଛନ୍ତି, ତାହା ତାଙ୍କର ଗମ୍ଭୀର ଅନ୍ୱେଷା ଓ ବହୁ ଶାସ୍ତ୍ରଜ୍ଞାନର ଦ୍ୟୋତକ । 'ପ୍ରାଚୀନ ଉତ୍କଳରେ ଜଳଯାତ୍ରା'ର ଇତିହାସ ଦେବା ପାଇଁ ସେ ଋଗ୍‌ବେଦ, **Beal's Life of Hiuen Tsang, Cunningham's Geography of Ancient India, Indian Antiquiry** ପତ୍ରିକା, ଓଡ଼ିଆରେ ପ୍ରକାଶିତ ବିଭିନ୍ନ ପାଲିବହିର ସାହାଯ୍ୟ ମଧ୍ୟ ନେଇଛନ୍ତି । ଉଚ୍ଚକୋଟିର ଗବେଷଣା ପୁସ୍ତକ ରୂପେ 'ପ୍ରାଚୀନ ଉତ୍କଳରେ ଜଳଯାତ୍ରା' ପୁସ୍ତକର ଶ୍ରେଷ୍ଠତା କେବେ କ୍ଷୁଣ୍ଣ ହେବ ନାହିଁ । 'ପ୍ରାଚୀନ ଯାଜପୁର', 'ଯାଜପୁର', 'ବିରଜା', ଏଇ ତିନୋଟି ପ୍ରବନ୍ଧରେ ସେ ଯାଜପୁରର ଅତୀତ, ବର୍ତ୍ତମାନର ଏକ ତୁଳନାତ୍ମକ ଚିତ୍ର ଆଙ୍କିଛନ୍ତି । ଅତୀତର କୀର୍ତ୍ତିଭୂମିର ଯାଜପୁର ଆଜି ଅବହେଳିତ । ଏହାର ଧ୍ୱଂସାବଶେଷ ଉପରେ କିଏ ସୌଧ ନିର୍ମାଣ କରିଛି ତ କେଉଁଠି ଏହା ରାଜପଥର ଭିତରେ ଲୋକମାନଙ୍କ ଗୋଡ଼ ମାଡ଼ିବାର ସାମଗ୍ରୀ ହୋଇଛି । ମହିମାମଣ୍ଡିତ ଐତିହାସିକ ପୀଠ ବୈତରଣୀ ତୀର୍ଥ ବିରଜା କ୍ଷେତ୍ରର ଦୁର୍ଦ୍ଦଶାରେ ପ୍ରାବନ୍ଧିକ ମ୍ରିୟମାଣ । ଏଇ ଧ୍ୱଂସାବଶେଷ, ବିଲୁପ୍ତ ରତ୍ନମୟୀ କୀର୍ତ୍ତିର ସଂରକ୍ଷଣ ପାଇଁ ପ୍ରାବନ୍ଧିକଙ୍କ ଆବେଗଭରା ଆହ୍ୱାନ, ଯଥାର୍ଥରେ ତାଙ୍କର ଇତିହାସ ଅନୁରାଗୀ ପ୍ରାଣର ସ୍ୱାକ୍ଷର ବହନ କରିଛି । 'କେଶରୀ ବଂଶ' ଏକ ଦୀର୍ଘ ପ୍ରବନ୍ଧ । ଏହି ପ୍ରବନ୍ଧଟିର ପ୍ରାସଙ୍ଗିକତା ସମ୍ପ୍ରତି ଯେ ଆଉ ନାହିଁ, ଏହା ନିଃସଂକୋଚରେ କୁହାଯାଇପାରେ । କାରଣ ସୋମବଂଶୀ ରାଜା-ମାନଙ୍କ ସମ୍ପର୍କରେ ଶିଳାଲେଖ, ତାମ୍ରଫଳକରୁ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ନୂତନ ତଥ୍ୟ ପ୍ରକାଶ କରିବା ପରେ ବିରୂପାକ୍ଷ କରଙ୍କ 'କେଶରୀବଂଶ' ପ୍ରବନ୍ଧଟିର ଆଉ କିଛି ବିଶେଷ ମୂଲ୍ୟ ନାହିଁ । କେବଳ 'ଗଜସିଂହ ଓ କେଶରୀବଂଶ' ପ୍ରବନ୍ଧଟି ତତ୍କାଳୀନ କଳା, ସ୍ଥାପତ୍ୟ ସମ୍ପର୍କରେ ପାଠକଙ୍କୁ ଧାରଣା ଦେଉଥିବାରୁ ଏବେ ସୁଦ୍ଧା ଏକ ଗୁରୁତ୍ୱପୂର୍ଣ୍ଣ ପ୍ରବନ୍ଧ ରୂପେ ଏହାର ମର୍ଯ୍ୟାଦା ରହିଛି । ବିରୂପାକ୍ଷ କରଙ୍କ ଏସବୁ ପ୍ରବନ୍ଧମାନଙ୍କରେ ଐତିହାସିକର କାଳସଚେତନତା, ଗବେଷକର ସନ୍ଧାନୀ ଦୃଷ୍ଟି, ସ୍ୱଦେଶପ୍ରେମୀର ଜାତି ପ୍ରତି ଶ୍ରଦ୍ଧା ଓ ସାହିତ୍ୟସାଧକର ରସିକତା ତଥା ସୌନ୍ଦର୍ଯ୍ୟବୋଧ ଫୁଟି ଉଠିଛି ।

Digitized by srujanika@gmail.com

ବିରୂପାକ୍ଷ କରଙ୍କ ପୌରାଣିକ ପରମ୍ପରା ଓ କିମ୍ବଦନ୍ତୀ ଆଶ୍ରୟରେ ରଚିତ ପ୍ରବନ୍ଧଗୁଡ଼ିକ ମଧ୍ୟରେ 'ଆଲୋଚନା', 'ମାଘ ଅମାବାସ୍ୟା', 'ସରସ୍ୱତୀ ପୂଜା,' 'ସୋମପୂଜା' ପ୍ରଧାନ । 'ଆଲୋଚନା' ପ୍ରବନ୍ଧଟି ଲୋକମାନସରେ ପ୍ରଚଳିତ ଏକ ଲୋକପ୍ରିୟ କବିତାକୁ ଆଧାର କରି ରଚିତ । "ଆହେ ନୀଳାଦ୍ରିବିହାରୀ, କଟକେ ଅଟକ ହେବାକୁ ମୋ ଧନ ସରୁନାହିଁ ଝୁରି ଝୁରି" ଏଇ କବିତାଟିକୁ ନେଇ ସେ ବିଶ୍ଳେଷଣ କରି ଓଡ଼ିଆ ଜାତିର ଅତୀତ ଇତିହାସ ଆଲୋଚନା କରିଛନ୍ତି । 'ମାଘ ଅମାବାସ୍ୟା' ପ୍ରବନ୍ଧରେ ଓଡ଼ିଶାର ସାମରିକ ବିଭବ ସମ୍ପର୍କରେ ଅନେକ ଅବହେଳିତ ଅଧ୍ୟାୟ ଆଲୋଚନା କରାଯାଇଛି । ଓଡ଼ିଶାର ଉତ୍ତରାଞ୍ଚଳରେ ରହୁଥିବା କ୍ଷତ୍ରିୟମାନଙ୍କ ଅତୀତ ଗୌରବର ସ୍ମୃତିଚିତ୍ରଣ ପ୍ରାବନ୍ଧିକ ଏଥିରେ କରିଛନ୍ତି । ସରସ୍ୱତୀ ପୂଜାର ପରମ୍ପରା ସମ୍ପର୍କରେ ଏକ ପ୍ରାମାଣିକ ପ୍ରବନ୍ଧ ହେଉଛି 'ସରସ୍ୱତୀ ପୂଜା' । ସରସ୍ୱତୀଙ୍କ ପ୍ରାଚୀନତା ସମ୍ପର୍କରେ ସେ ବିଭିନ୍ନ ସୂଚନା ଦେଇ ଶେଷରେ ତାଙ୍କୁ ବୈଦିକ ଦେବୀ ଭାବରେ ଆଲୋଚନା କରିଛନ୍ତି । 'ସୋମପୂଜା' ପ୍ରବନ୍ଧରେ ପ୍ରାବନ୍ଧିକ ପ୍ରକୃତିରୁ କିପରି ବିଭିନ୍ନ ଦେବତା ସୃଷ୍ଟି ହୋଇଛନ୍ତି, ତାହା ସେ ଦର୍ଶାଇଛନ୍ତି । ଆର୍ଯ୍ୟମାନେ ପ୍ରକୃତିର ବିଭିନ୍ନ ପରିପ୍ରକାଶମାନଙ୍କୁ ଦେବତା ରୂପରେ ଆରାଧନା କରିଥାନ୍ତି । ତା'ର ଅନ୍ୟତମ ଆରାଧନା ହେଉଛି ସୋମପୂଜା ।

ପ୍ରାବନ୍ଧିକ ପୌରାଣିକ ପ୍ରସଙ୍ଗମାନଙ୍କ ଆଧାରରେ ଯେଉଁ ପ୍ରବନ୍ଧ ଲେଖିଛନ୍ତି, ସେ ପ୍ରବନ୍ଧଗୁଡ଼ିକରେ ଅମର ପରମ୍ପରା, ଚଳଣି ଓ ପ୍ରଚଳିତ ଲୋକଉକ୍ତି ସମ୍ପର୍କରେ ନାନା କଥା ରହିଛି । ସେ ଏ ସବୁର ଉପାଦାନ ନେଇ ତା'ର ଐତିହାସିକ ସ୍ୱରୂପ ପାଠକମାନଙ୍କୁ ଏଥିରେ ଦେଖାଇଛନ୍ତି । ଏସବୁ ପ୍ରବନ୍ଧରେ ସେ ପ୍ରାଚୀନ ପରମ୍ପରା ସହିତ ସାମ୍ପ୍ରତିକ ଜନମାନସର ଏକ ସୁସମ୍ବନ୍ଧ ପ୍ରତିଷ୍ଠା କରିଛନ୍ତି । ଏ ଜାତିର ଲୁପ୍ତ ଐଶ୍ୱର୍ଯ୍ୟ ଓ ପ୍ରାଚୀନ ଗୌରବକୁ ଦେଖାଇବାରେ ଏ ଧରଣର ପ୍ରବନ୍ଧଗୁଡ଼ିକ ବହୁମାତ୍ରାରେ ସହାୟକ ହୋଇଛନ୍ତି ।

ବିରୂପାକ୍ଷ କର ଐତିହାସିକ ପ୍ରବନ୍ଧର ଲେଖକ ରୂପେ ଗୌରବ ଅର୍ଜ୍ଜନ କରିଥିଲେ ସୁଦ୍ଧା, ସେ ଯେ ସଂସ୍କୃତି-ସଚେତନ, ତାହା ତାଙ୍କର 'ଜାତି ବିଗ୍ରହ', 'ଆମ ସଂସ୍କୃତି', 'ଗୋପବନ୍ଧୁଙ୍କ ସମ୍ପର୍କରେ' ପ୍ରବନ୍ଧରୁ ପ୍ରମାଣ ମିଳେ । 'ଜାତି ବିଗ୍ରହ' ଏକ ଦୀର୍ଘ ପ୍ରବନ୍ଧ । ଏହି ପ୍ରବନ୍ଧଟି ଧାରାବାହିକ ଭାବରେ ନବଭାରତ ପତ୍ରିକାରେ ପ୍ରକାଶ ପାଇଥିଲା । (୦) ଗାନ୍ଧିଜୀ ଯେଉଁ ସମୟରେ ଅସ୍ପୃଶ୍ୟତା

---

(୪) ନବଭାରତ- /୧୧, ୨/୨, ୨/ , ୨/ -୭, ୨/୧୨ ସଂଖ୍ୟାମାନଙ୍କରେ ଏହା ପ୍ରକାଶିତ ।

Digitized by srujanika@gmail.com

ନିବାରଣ ପାଇଁ ଜାତିଧର୍ମର ଭେଦଭାବ ଭାଙ୍ଗି ମାନବଧର୍ମ ତଥା ଜାତିହୀନ ସମାଜର ପରିକଳ୍ପନା କରିଥିଲେ, ସେ ସମୟରେ ତାଙ୍କ ଆଦର୍ଶର ଏକାନ୍ତ ଅନୁକାଙ୍କ୍ଷୀ ଭାବରେ ବିରୂପାକ୍ଷ କର ବାସ୍ତବ ଜୀବନରେ ଓ ଲେଖାରେ ଜାତିପ୍ରଥା ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ହରିଜନ ଗହଣରେ ଖାଇବା ଓ ଜାତିମାନଙ୍କ ଭିତରେ ରହିଥିବା ବିଭେଦର ତୋରଣକୁ ଅପସାରଣ କରିବାରେ ତାଙ୍କ ଭୂମିକା କିଛି କମ୍ ନୁହେଁ । ଜଣେ ନୈଷ୍ଠିକ ବ୍ରାହ୍ମଣ ହେଲେ ବି ସେ ଯାଜପୁରରେ ସବୁ ଜାତିର ଲୋକ ମେଳରେ ବସି ପଂକ୍ତିଭୋଜନ କରିଥିଲେ । ପୁଣି ତାଙ୍କର ପ୍ରସିଦ୍ଧ 'ଜାତିବିଚାର' ପ୍ରବନ୍ଧରେ ସେ ଲେଖିଛନ୍ତି,"ଆଜି ସମାଜରେ ଯେଉଁ ଜାତି-ବିଦ୍ୱେଷ ଭାରତକୁ ଛିନ୍ନଭିନ୍ନ କରୁଅଛି,ତାହାର ମୂଳ ଆମ୍ଭମାନଙ୍କର ଅବିବେକିତା । ଆମ୍ଭମାନଙ୍କ ଶାସ୍ତ୍ର ଓ ପୁରାଣ ସବୁ ସତ୍ୟ; କିନ୍ତୁ ଆମ୍ଭେମାନେ ସେଗୁଡ଼ିକର ପ୍ରକୃତ ଅର୍ଥ ନବୁଝି ଅନ୍ଧ । ଯେଉଁମାନେ ଶାସ୍ତ୍ର ପୁରାଣର ଦ୍ୱାହି ଦେଇ ବୃଥାଭିମାନରେ ପରସ୍ପରକୁ ଘୃଣା କରନ୍ତି, ସେମାନେ ସେହି ପୁରାଣ ଶାସ୍ତ୍ର ଆଦିକୁ ସୁଚିନ୍ତିତ ଭାବରେ ବୁଝନ୍ତୁ, ଦେଖିବେ, ଆମ ସମାଜର ସବୁ ଜାତିର ଲୋକେ ଏକ ଜାତିର ଅନ୍ତର୍ଗତ ଓ ପ୍ରକୃତରେ ଭେଦଭାବବିହୀନ ।" (*) ପ୍ରାବନ୍ଧିକଙ୍କ ଏ ଚିନ୍ତାଧାରାରେ ଜୀବନ ପ୍ରତି ଉଦାରତା, ସବୁ ଜାତି ପ୍ରତି ସମଦର୍ଶୀଭାବ ଓ ମନୀଷ ପ୍ରତି ଶ୍ରଦ୍ଧା ପ୍ରକାଶ ପାଇଛି । ସଂସ୍କୃତି ପ୍ରତି ପ୍ରାବନ୍ଧିକଙ୍କ ଦୃଷ୍ଟିକୋଣ 'ଆମ ସଂସ୍କୃତି'ରେ ସାର୍ଥକ ରୂପେ ପ୍ରକାଶିତ । ସଂସ୍କୃତିକୁ ପ୍ରାଚୀନ ଐତିହ୍ୟ ଓ କୀର୍ତ୍ତିର ସ୍ମାରକୀ ଭାବରେ ଗ୍ରହଣ ନ କରି ଏହାକୁ ମାନବିକ ଚଳଣିର ସୂଚୀପତ୍ର ରୂପେ ପ୍ରାବନ୍ଧିକ ତାଙ୍କର ଏହି ପ୍ରବନ୍ଧରେ ବିଚାର କରିଛନ୍ତି । ସୁତରାଂ ପ୍ରାବନ୍ଧିକଙ୍କ ମତରେ ସଂସ୍କୃତି ହେଉଛି ଦେଶ ବା ଜାତିର ସର୍ବାଙ୍ଗୀନ ବିକାଶର ଇତିହାସ । ସମାଜର ଗଠନ ଓ ସୁରକ୍ଷଣ ସକାଶେ ଯେଉଁ ସମୟରେ ଯେଉଁସବୁ ନିୟମ, ଧର୍ମନୀତି, ରାଜନୀତି, ଅର୍ଥନୀତି ପ୍ରଚଳିତ, ସଂସ୍କୃତି, ଅନେକାଂଶରେ ତା'ର ଭିତରେ ପ୍ରତିଫଳିତ । ସଂସ୍କୃତିକୁ ଏପରି ବିଶ୍ଲେଷଣ ଦ୍ୱାରା ତାହା ଯେ ଜୀବଧର୍ମୀ ହୋଇଛି, ଏଥିରେ ସନ୍ଦେହ ନାହିଁ ।

'ଗୋପବନ୍ଧୁଙ୍କ ସମ୍ପର୍କରେ' ଏକ କ୍ଷୁଦ୍ର ପ୍ରବନ୍ଧ । ବିବେକାନନ୍ଦଙ୍କ ଆଦର୍ଶ କର୍ମ, କୃତିତ୍ୱ ଓ ଜୀବନଦୃଷ୍ଟି ସହିତ ଗୋପବନ୍ଧୁଙ୍କୁ ସେ ତୁଳନାତ୍ମକ ଭାବରେ ଏହି ପ୍ରବନ୍ଧଟିରେ ବିଚାର କରିଛନ୍ତି । ଗୋପବନ୍ଧୁଙ୍କୁ ଜଣେ ମହାପୁରୁଷ ଭାବରେ ବିଶ୍ଳେଷଣ କରିବାରେ ତାଙ୍କର ସ୍ୱାତନ୍ତ୍ର୍ୟ ଏହି ପ୍ରବନ୍ଧଟିରେ ପରିଲକ୍ଷିତ ।

---

(*) ନବଭାରତ-୬/୧୨-ପୃ : ୭୬୮ ।

Digitized by srujanika@gmail.com

ବିରୂପାକ୍ଷ ସଂସ୍କୃତି ସମ୍ବନ୍ଧୀୟ ପ୍ରବନ୍ଧମାନଙ୍କରେ ସଂସ୍କୃତିକୁ ଅପସଂସ୍କୃତି କବଳରୁ ରକ୍ଷା କରିବାପାଇଁ ଆହ୍ୱାନ ଦେଇଛନ୍ତି । ସମାଜରୁ ଧର୍ମ, ଜାତି ନାମରେ ରହିଥିବା କୁସଂସ୍କାରର ଅର୍ଗଳକୁ ଅତିକ୍ରମ କରିବା ପାଇଁ ସେ ଶାସ୍ତ୍ର; ଯୁକ୍ତିର ବ୍ୟାଖ୍ୟା ଦେଇ କେତେ କଥା କହିଛନ୍ତି । ଏକ ସୁସ୍ଥ ମାନବବାଦୀ ସମାଜର ପରିକଳ୍ପନାରେ ବିଭୋର ହୋଇ ସେ ଏପରି ପ୍ରସଙ୍ଗମାନଙ୍କର ଅବତାରଣା ତାଙ୍କ ପ୍ରବନ୍ଧମାନଙ୍କରେ କରିଛନ୍ତି ।

ବିରୂପାକ୍ଷ କରଙ୍କ ପ୍ରବନ୍ଧଗୁଡ଼ିକର ରଚନାଶୈଳୀ ପାଠକକୁ ପ୍ରଭାବିତ କରେ । ସେ ଯୁକ୍ତିନିଷ୍ଠ ଭାବରେ ଶାସ୍ତ୍ର ପ୍ରମାଣ ଦେଇ ଗଦ୍ୟ ଲେଖିଛନ୍ତି । ବିଶ୍ଳେଷଣ ଦ୍ୱାରା ସେ ତାଙ୍କର ଚିନ୍ତାକୁ ପାଠକର ସମୀପବର୍ତ୍ତୀ କରିଛନ୍ତି । ବିଷୟ ନିର୍ବାଚନରେ ପ୍ରାସଙ୍ଗିକତା, ପରିବେଷଣରେ ପ୍ରାଞ୍ଜଳତା ତାଙ୍କ ଗଦ୍ୟକୁ ସୁଖପାଠ୍ୟ କରିଛି । ତା'ଛଡ଼ା ସେ ଅପୂର୍ବ ବିଶ୍ଳେଷଣଶକ୍ତିର ପରିଚୟ ତାଙ୍କ ପ୍ରବନ୍ଧମାନଙ୍କରେ ଦେଇଛନ୍ତି । ଶିଷ୍ଟରୀତିରେ ବିଦ୍ରୂପ କରିବାରେ ତାଙ୍କର ମଧ୍ୟ କୁଣ୍ଠା ନ ଥିଲା । ଏଠାରେ ତାଙ୍କ ଗଦ୍ୟର ନମୂନା ସ୍ୱରୂପ 'ଆମ ସଂସ୍କୃତି'ରୁ କିୟଦଂଶ ଉଦ୍ଧାର କରାଯାଇପାରେ । ସେଥିରେ ସେ ଲେଖିଛନ୍ତି—ବୃକ୍ଷରୋପଣ ଓ ଜଳାଶୟ ଖନନ ଆମର ପ୍ରାଚୀନ ସଂସ୍କୃତି । ଲୋକେ, କେବଳ ନିଜ ପାଇଁ ନିଜ ଜମିରେ ନୁହେଁ, ସମସ୍ତଙ୍କ ପାଇଁ ସର୍ବସାଧାରଣ ଜମିରେ, ପୁଣ୍ୟକର୍ମ ଜ୍ଞାନରେ ଫଳବୃକ୍ଷରୋପଣ କରୁଥିଲେ ଓ ଜଳାଶୟ ଖନନ କରୁଥିଲେ । ପ୍ରଥମ ଫଳ ଧାରଣ କଲାପରେ ସଙ୍କଳ୍ପବିଧିରେ ବୃକ୍ଷର ପୂଜା କରାଯାଇ ପ୍ରଥମ ଫଳକୁ ବଣ୍ଟନ କରାଯାଉଥିଲା । ତଦ୍ରୂପ ମଧ୍ୟ ଶାସ୍ତ୍ରୀୟ ନିୟମରେ ଜଳାଶୟ ପ୍ରତିଷ୍ଠା କରାଯାଇ ତାହା ବ୍ୟବହୃତ ହେଉଥିଲା । ସଂସ୍କୃତି ପ୍ରତି ଆଦର ହ୍ରାସ ହେବା ସଙ୍ଗେ ସଙ୍ଗେ ଆଜି ଫଳବୃକ୍ଷର ଅବାଧ ଛେଦନ ହେଉଛି, ଅଥଚ କେହି ବୃକ୍ଷରୋପଣ ପାଇଁ ଆଗ୍ରହୀ ନୁହନ୍ତି । ସଂସ୍କୃତିର ବିଲୟ ବେଳେ ସାମୟିକ ବୃକ୍ଷରୋପଣ ସପ୍ତାହ ପାଳନ କରିବା ପାଇଁ ଲୋକଙ୍କୁ ଉପଦେଶ ଦେବାଦ୍ୱାରା ପୂର୍ବାବସ୍ଥା ଫେରିଆସିବା ଅସମ୍ଭବ ମନେହୁଏ ।" (ଉତ୍କଳରେ ବୌଦ୍ଧଯୁଗର ଇତିହାସ ଓ ଅନ୍ୟାନ୍ୟ ପ୍ରବନ୍ଧ, ପୃ ୫୯) ପ୍ରାବନ୍ଧିକଙ୍କ ଗଦ୍ୟ କେତେକାଂଶରେ ଉଦ୍‌ବୋଧନଧର୍ମୀ । ସେ ପାଠକକୁ ଶିକ୍ଷା ଦେବା ପରି ରୀତିରେ ବାରମ୍ବାର ତାଙ୍କ ବକ୍ତବ୍ୟକୁ ବୁଝାଇଛନ୍ତି । ପ୍ରବନ୍ଧଗୁଡ଼ିକରେ ସେ ଆବଶ୍ୟକସ୍ଥଳେ ଶାସ୍ତ୍ରରୁ ଉଦ୍ଧୃତ ଦେବା ସଙ୍ଗେ ସଙ୍ଗେ ଲୋକପ୍ରିୟ ଉକ୍ତିମାନଙ୍କ ମଧ୍ୟ ଉଦ୍ଧାର କରିଛନ୍ତି । ଭାଷା ପ୍ରୟୋଗରେ ପ୍ରାବନ୍ଧିକ ଯଥାସମ୍ଭବ କ୍ଲିଷ୍ଟ ଶବ୍ଦ ପରିହାର କରିଥିଲେ ସୁଦ୍ଧା ।ଧ୍ୱନିଶବ୍ଦର ସାର୍ଥକ ବ୍ୟବହାରର ପ୍ରଲୋଭନକୁ ଏଡ଼ାଇ ପାରିନାହାନ୍ତି । ଫଳରେ ତାଙ୍କ

Digitized by srujanika@gmail.com

ପ୍ରବନ୍ଧରେ ଲୌକିକ ଭଙ୍ଗୀର ଊର୍ଦ୍ଧ୍ୱ ସ୍ତରର ଏକ ଶିକ୍ଷକସୁଲଭ ଭାଷା ଦେଖିବାକୁ ମିଳେ ।

ବିଂଶ ଶତକର ପ୍ରଥମ ପର୍ଯ୍ୟାୟରେ ବିରୂପାକ୍ଷ କର ଐତିହାସିକ ପ୍ରବନ୍ଧ ରଚନାରେ ମନୋନିବେଶ କରିଥିଲେ । ସେତେବେଳକୁ ପରମାନନ୍ଦ ଆଚାର୍ଯ୍ୟ, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଏ ଦିଗରେ ଧ୍ୟାନ ଦେଇ ନ ଥିଲେ । କେବଳ ଚନ୍ଦ୍ରମଣି ଆଚାର୍ଯ୍ୟ ସେକାଳରେ ଐତିହାସିକ ପ୍ରବନ୍ଧ ଲେଖୁଥିଲେ । ଓଡ଼ିଶା ଇତିହାସ ସମ୍ପର୍କରେ ବିଶେଷ କିଛି ଉପାଦାନ ବିରୂପାକ୍ଷ କରଙ୍କ ଆଗରେ ନଥିଲା । ତଥାପି ସେ ସ୍ୱଳ୍ପସଂଖ୍ୟକ କିମ୍ବଦନ୍ତୀ, କେତେକ ପ୍ରାଚୀନ ପ୍ରସଙ୍ଗକୁ ଆଧାର କରି ଯେପରି ଭାବରେ ପ୍ରବନ୍ଧ ଲେଖିଛନ୍ତି ତାହା ତାଙ୍କର ତୀକ୍ଷ୍ଣ ଧୀଶକ୍ତି ଓ ପ୍ରତିଭାର ପରିଚାୟକ । ସେ ଇତିହାସକୁ କେବେହେଲେ ନିର୍ଜୀବ ରୂପେ ଦେଖି ନାହାନ୍ତି । ଇତିହାସକୁ ପ୍ରାଣବନ୍ତ କରିବା ପାଇଁ ତା' ଭିତରେ ଚିରନ୍ତନ ମାନବର ଜୀବନସତ୍ତା ସନ୍ଧାନ କରିଛନ୍ତି । ସେ ଇତିହାସ ଭିତରେ ମାନବାତ୍ମାର ସନ୍ଧାନ କରିଥିଲେ ଓ ମଣିଷର ପ୍ରକୃତ ମୂଲ୍ୟ ବୁଝିଥିଲେ । ସେଥିପାଇଁ ଏବେ ଯୁକ୍ତ ସେ ସ୍ମରଣକୁ ଆସନ୍ତି । ତାଙ୍କ ପ୍ରବନ୍ଧଗୁଡ଼ିକୁ ପାଠକଲେ **R. G. Collingwood**ଙ୍କ ଉକ୍ତିଟି ବାରମ୍ବାର ମନକୁ ଆସେ । ତାହା ହେଉଛି, **' The value of history, then is that it teaches us what man has done and thus what man is. '' (The Idea of History-1st Indian Impression—1985 Page 10).**

ପରିଶେଷରେ ଏଠାରେ ଆଉ କେତେକ କଥା ଏହି ଗ୍ରନ୍ଥ ସମ୍ପର୍କରେ କହିବାକୁ ଉଚିତ ମଣୁଛି । ବିରୂପାକ୍ଷ କରଙ୍କ ପ୍ରବନ୍ଧଗୁଡ଼ିକୁ ଏକାଠି କରି ଛାପିବା ପାଇଁ ଶତବାର୍ଷିକୀ ସମାରୋହର ସଭାପତି ତଥା ବିଶିଷ୍ଟ ଭାଷାବିତ୍ ପ୍ରଫେସର ଡକ୍ଟର ଖଗେଶ୍ୱର ମହାପାତ୍ରଙ୍କ ଉତ୍ସାହ ଏ ଦିଗରେ ଅତୁଳ୍ୟ ହୋଇ ରହିବ । ବିରୂପାକ୍ଷ ପ୍ରବନ୍ଧାବଳୀ ସମ୍ପର୍କରେ ଓଡ଼ିଆ ସାହିତ୍ୟର ବିଶିଷ୍ଟ ସମୀକ୍ଷକ ପ୍ରଫେସର ଦାଶରଥି ଦାସ ମୁଖବନ୍ଧଟିଏ ଲେଖି ଦେଇଥିବାରୁ ତାଙ୍କୁ ଏହି ଅବସରରେ କୃତଜ୍ଞତା ଜ୍ଞାପନ କରୁଅଛି । ବିରୂପାକ୍ଷ କରଙ୍କ ପ୍ରବନ୍ଧଗୁଡ଼ିକୁ ଛାପିବା ପାଇଁ ତାଙ୍କର ପୁତ୍ର ସଚ୍ଚିଦାନନ୍ଦ କର ଅନୁମତି ଦେଇଥିବାରୁ ତାଙ୍କୁ ଏହି ଅବସରରେ ସାଧୁବାଦ ଜଣାଉଛି । ଏହି ପୁସ୍ତକ ପ୍ରକାଶ ପାଇଁ ଶତବାର୍ଷିକୀ ସମାରୋହର ସମ୍ପାଦକ ତଥା ଗାଳ୍ପିକ ଶ୍ରୀ ସୌମ୍ୟବନ୍ଧୁ କର ସବୁପ୍ରକାର ସହଯୋଗ କରିଥିବାରୁ ତାଙ୍କୁ ଧନ୍ୟବାଦ ଜଣାଉଛି । ନିଷ୍ଠାର ସହିତ ପ୍ରୁଫ୍ ସଂଶୋଧନ

Digitized by srujanika@gmail.com

କର ପୁସ୍ତକ ପ୍ରକାଶରେ ସବୁପ୍ରକାର ସାହାଯ୍ୟ କରିଥିବାରୁ ଅନୁବାଦକ ତଥା ଅବସରପ୍ରାପ୍ତ ପ୍ରାଧ୍ୟାପକ ଡକ୍ଟର ଶ୍ୟାମସୁନ୍ଦର ମିଶ୍ରଙ୍କୁ ମୁଁ କୃତଜ୍ଞତା ଜ୍ଞାପନ କରୁଛି । ଓଡ଼ିଶା ବୁକ୍ ଷ୍ଟୋରର ଶ୍ରୀ ବିଜୟ ଶଙ୍କର ପାଣିଙ୍କ ଉଦ୍ୟମରେ ଏ ପୁସ୍ତକଟି ଆଲୋକକୁ ଆସିଥିବାରୁ ତାଙ୍କର ଶୁଭକାମନା କରିବା ସହିତ ତାଙ୍କୁ ସାଧୁବାଦ ଜଣାଉଛି । ପୁସ୍ତକଟି ଗବେଷକ, ଶିକ୍ଷକ ଓ ଛାତ୍ରମାନଙ୍କ ନିକଟରେ ଆଦୃତ ହେଲେ ଏହା ପ୍ରାବନ୍ଧିକ ବିରୂପାକ୍ଷଙ୍କ ପ୍ରତି ସର୍ବୋତ୍କୃଷ୍ଟ ଶ୍ରଦ୍ଧାଞ୍ଜଳି ହେବ ବୋଲି ଏହି ସଙ୍କଳକ ମନେକରେ ।

ବାଉରୀବନ୍ଧୁ କର

ରାସ ପୂର୍ଣ୍ଣିମା, ୧୯୯୩

ମୁଖ୍ୟ, ସ୍ନାତକୋତ୍ତର ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଭଞ୍ଜବିହାର
ବ୍ରହ୍ମପୁର-୭୬୦୦୦୭ ।

—✳—

Digitized by srujanika@gmail.com

# ଉତ୍କଳର ବୌଦ୍ଧଯୁଗର ଇତିହାସ

**ସୂଚନା :**

କବି କହିଅଛନ୍ତି, ଆମ୍ଭମାନଙ୍କର ଭାରତଭୂମି ଶସ୍ୟଶ୍ୟାମଳା । ବାସ୍ତବରେ ବର୍ଷର ପ୍ରତ୍ୟେକ ଋତୁରେ ଏ ଦେଶରେ ନାନାଜାତୀୟ ଶସ୍ୟ ଉତ୍ପାଦିତ ହୁଏ । ଏ ଦେଶର ମୃତ୍ତିକା ବହୁ ନଦୀ ଏବଂ ଜଳୋଚିତ ବୃଷ୍ଟି ହେତୁ ସର୍ବଦା ଉର୍ବର । ଜୀବନ ଧାରଣର ପ୍ରତ୍ୟେକ ସାମଗ୍ରୀ ଏ ଦେଶର ଲୋକେ ଅଳ୍ପ ଆୟାସରେ ଭୂପୃଷ୍ଠରୁ ଉତ୍ପାଦନ କରନ୍ତି । ସେଥିପାଇଁ ମରୁପ୍ରାନ୍ତରବାସୀ ଆରବୀୟମାନଙ୍କ ପରି ଏ ଦେଶବାସୀମାନଙ୍କୁ ବର୍ମସାଜ ଜୀବନସଂଗ୍ରାମ କରିବାକୁ ହୁଏ ନାହିଁ ।

ଖାଦ୍ୟପେୟର ଉକ୍ତରୂପ ସୁଲଭତା ହେତୁରୁ ଏ ଦେଶବାସୀମାନଙ୍କର ଅବସର ଅନ୍ୟାନ୍ୟ ଦେଶବାସୀମାନଙ୍କ ତୁଳନାରେ ଅପେକ୍ଷାକୃତ ବେଶୀ ଏବଂ ପ୍ରାଚୀନତମ କାଳରୁ ଭାରତୀୟମାନେ ଏହି ପ୍ରଚୁର ଅବସର ବୃଥା କ୍ଷେପଣ କରି ନାହାନ୍ତି । ସେମାନେ ପ୍ରଗାଢ଼ ଜ୍ଞାନଚର୍ଚ୍ଚା ଦ୍ୱାରା ପୃଥିବୀର ନିଗୂଢ଼ ତତ୍ତ୍ୱମାନଙ୍କର ଉଦ୍ଭାବନ କରି ଅଛନ୍ତି । ଆବହମାନକାଳରୁ ଅଦ୍ୟାବଧି କେତେ ମହାଭାବ ଭାରତବର୍ଷକୁ ପ୍ଲାବିତ କରିଅଛି । ଭାରତୀୟ ଏହି ମହାଭାବର ପ୍ରବର୍ତ୍ତକମାନଙ୍କୁ ଜାତୀୟ ଇତିହାସରେ ଅମରାକ୍ଷରରେ ଲେଖିରଖି ସେମାନଙ୍କୁ ଦେବତା ଜ୍ଞାନ କରି ପୂଜା କରୁଛନ୍ତି । ଏହି ପ୍ରବର୍ତ୍ତକମାନଙ୍କ ପ୍ରତି ଭାରତୀୟର ମନୋଭାବ ଭଗବାନ ଶ୍ରୀକୃଷ୍ଣଙ୍କ ମୁଖରେ ନିମ୍ନୋକ୍ତ ଭାବରେ କଥିତ ହୋଇଅଛି ।

"ଯଦା ଯଦା ହି ଧର୍ମସ୍ୟ ଗ୍ଳାନିର୍ଭବତି ଭାରତ ।
ଅଭ୍ୟୁତ୍ଥାନ ମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ ।"

ବିଶାଳ ଭାରତବର୍ଷରେ ଯେତେବେଳେ ଯେଉଁ ମହାଭାବ ସମୁତ୍ଥିତ ହୋଇଅଛି, ଆମ୍ଭମାନଙ୍କର ଉତ୍କଳ ଭୂମି ସେତେବେଳେ ତାହାକୁ ଭକ୍ତିବ୍ୟଞ୍ଜକ ସନ୍ତାନପରି ଅମ୍ଳାନ ବଦନରେ ଗ୍ରହଣ କରିଅଛି । ଉତ୍କଳୀୟ କୌଣସି ମହାଭାବର ପ୍ରତ୍ୟାଖ୍ୟାନ କରି ନାହିଁ । ବରଂ କୌଣସି ମହାଭାବ ଜନ୍ମସ୍ଥାନରେ ବହିଷ୍କୃତ

Digitized by srujanika@gmail.com

ଖ୍ରୀଷ୍ଟୀୟ ତୃତୀୟ ଓ ଚତୁର୍ଥ ଶତାବ୍ଦୀର ପୂର୍ବରେ ସ୍ଥାନ ଦେଇ ନପାରୁଁ । ପଶ୍ଚାତ୍ରେ କଳିଙ୍ଗର ନାମ ଗୌତମବୁଦ୍ଧଙ୍କର ସମସାମୟିକ ଥିଲାପରି ବୋଧହୁଏ ।

ଲଳିତବିସ୍ତର ଖ୍ରୀଷ୍ଟପୂର୍ବ ୩୦୦ ଓ ୪୫୦ ଅବ୍ଦ ମଧ୍ୟରେ ରଚିତ ହୋଇଥିଲା । ଏଥିରେ କଳିଙ୍ଗ ଏକ ସ୍ୱତନ୍ତ୍ର ସ୍ୱାଧୀନ ରାଜ୍ୟ ସ୍ୱରୂପ ବର୍ଣ୍ଣିତ ହୋଇଅଛି । କିନ୍ତୁ ଏଥିରେ ଓଡ୍ର ଓ ଉତ୍କଳର ନାମୋଲ୍ଲେଖ ନାହିଁ । ଯେଉଁସବୁ ବୌଦ୍ଧ ଗ୍ରନ୍ଥରେ ଶେଷୋକ୍ତ ଦୁଇଟି ନାମର ଉଲ୍ଲେଖ ଅଛି, ସେ ସବୁ ପରବର୍ତ୍ତୀ ଯୁଗର ରଚନା ।

ମହାରାଜ ଅଶୋକ ଖ୍ରୀଷ୍ଟପୂର୍ବ ୨୬୧ ଅବ୍ଦରେ କଳିଙ୍ଗ ଜୟକରି ପୁରୀ ଜିଲ୍ଲାର ଧଉଳି ଓ ଗଞ୍ଜାମ ଜିଲ୍ଲାର ଜଉଗଡ଼ଠାରେ ଅନୁଶାସନ ଖୋଦିତ କରାଇଥିଲେ । କଳିଙ୍ଗ ସେତେବେଳେ ଏକ ସମୃଦ୍ଧିଶାଳୀ ରାଜ୍ୟ ଥିଲା ।

ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ ଖାରବେଳ ନାମରେ କଳିଙ୍ଗରେ ଜଣେ ପରାକ୍ରାନ୍ତ ରାଜା ଥିଲେ । ସେ ଭୁବନେଶ୍ୱର ନିକଟସ୍ଥ ଖଣ୍ଡଗିରି ପାହାଡ଼ରେ ସ୍ୱକୀୟ ଜୀବନ ଖୋଦାଇଥିଲେ । କିନ୍ତୁ ଏହି ଅନୁଶାସନରେ ଓଡ୍ର ବା ଉତ୍କଳ ବୋଲି କୌଣସି ନାମ ନାହିଁ । ଖାରବେଳଙ୍କ ରାଜ୍ୟର ନାମ କଳିଙ୍ଗ—

'କଳିଙ୍ଗାଧିପତିନା ସିରି ଖାରବେଳେନ'

ଉପରୋକ୍ତ ଆଲୋଚନାରୁ ପ୍ରତୀୟମାନ ହୁଏ ଯେ, ଋଗ୍ବେଦର ରଚନା ସମୟରୁ ଆରମ୍ଭ କରି ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀଯାଏ 'ଓଡ୍ର' ଓ ଉତ୍କଳ ନାମର ପ୍ରଚଳନ ନଥିଲା । ଏହି କେତେକ ଶତାବ୍ଦୀ ମଧ୍ୟରେ ବୋଧହୁଏ କଳିଙ୍ଗର ସୀମା ସୁହ୍ମଦେଶର ଦକ୍ଷିଣସୀମା; ଅର୍ଥାତ୍ କପିଶା ନଦୀଠାରୁ ଦକ୍ଷିଣରେ ସ୍ଥୂଳତଃ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଅର୍ଥାତ୍ 'କପିଶାଠାରୁ ଗୋଦାବରୀ ପର୍ଯ୍ୟନ୍ତ ସମସ୍ତ ଭୂଖଣ୍ଡ କଳିଙ୍ଗ ନାମରେ ଅଭିହିତ ହେଉଥିଲା । ସ୍ଥାନେ ସ୍ଥାନେ କଳିଙ୍ଗର ଦକ୍ଷିଣ ସୀମା କୃଷ୍ଣାନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । କପିଶା ଶବ୍ଦ କପିଶାବତୀ ଶବ୍ଦର ସଂକ୍ଷିପ୍ତାକୃତି । ଏହି ନଦୀ ଆଜିକାଲି କସାଇ ବା କଂସାଇ ନାମରେ ମେଦିନୀପୁର ଜିଲ୍ଲା ମଧ୍ୟରେ ପ୍ରବାହିତ ହେଉଅଛି । କିନ୍ତୁ କଳିଙ୍ଗର ଏହି ସୁଦୀର୍ଘ କଳେବର ଆଉ ବେଶୀକାଳ ଅକ୍ଷୁଣ୍ଣ ରହିପାର ନଥିଲା । କାଳକ୍ରମେ ଏହା ତିନିଧା ବିଭକ୍ତ ହୋଇ ପ୍ରତ୍ୟେକ ଭାଗର ଏକ ସ୍ୱତନ୍ତ୍ର ନାମ ଦ୍ୱାରା ଚିହ୍ନିତ ହେଲା ଏବଂ ସେହିଦିନୁ ତ୍ରିକଳିଙ୍ଗ ଶବ୍ଦର ଉଦ୍ଭବ ହେଲା । ଓଡ଼ିଶାର ରାଜାମାନେ ବହୁକାଳଯାଏ 'ତ୍ରିକଳିଙ୍ଗାଧିପତି' ଉପାଧି ଗ୍ରହଣ

Digitized by srujanika@gmail.com

ଥିଲେ । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ମଧ୍ୟରେ ପ୍ଲିନି ଏହି ଦେଶ ଭାଗରେ ବିଭିନ୍ନ ନାମ ଉଲ୍ଲେଖ କରିଅଛନ୍ତି । ଯଥା :—କଳିଙ୍ଗ (Calingae) ମକୋ କଳିଙ୍ଗ (Macco-Calingae) ଓ ଗଙ୍ଗାରେଡସ କଳିଙ୍ଗ (Gangarides Calingae) । ବୋଧହୁଏ ଗଙ୍ଗାସାଗର ସନ୍ନିକଟରେ ଥିବାରୁ ପ୍ଲିନି ଉତ୍ତର ଭାଗକୁ 'ଗଙ୍ଗାରେଡସ କଳିଙ୍ଗ' ନାମ ଦେଇଥିଲେ । ଅଥବା ମଧ୍ୟ ଅନ୍ୟ ଦୁଇଟି ଦେଶର ଉତ୍ତରରେ ଅବସ୍ଥିତ ଥିବାରୁ କ୍ରମେ ଲୋକମୁଖରେ ଏହାର 'ଉତ୍ତର କଳିଙ୍ଗ' ନାମ ହୋଇଥିବ । 'ଉତ୍ତର କଳିଙ୍ଗ' ନାମ କ୍ରମଶଃ ସଂକ୍ଷିପ୍ତ ହୋଇ ଯଥାକ୍ରମେ 'ଉତ୍କଳିଙ୍ଗ' ବା 'ଉତ୍କଳ' ଶବ୍ଦରେ ପରିଣତ ହୋଇଥିବ ।

କିନ୍ତୁ ମକୋ କଳିଙ୍ଗ ବା ମଧ୍ୟ କଳିଙ୍ଗ ନାମର କୌଣସି ସ୍ୱତନ୍ତ୍ର ଚିହ୍ନ ଦେଖାଯାଏ ନାହିଁ । ବୋଧହୁଏ ଏହାର କିୟଦଂଶ ଉତ୍କଳିଙ୍ଗ ଓ କିୟଦଂଶ କଳିଙ୍ଗ ବା ଦକ୍ଷିଣ କଳିଙ୍ଗର ଅନ୍ତର୍ଭୁକ୍ତ ହୋଇଗଲା । ତଥାପି 'ତ୍ରିକଳିଙ୍ଗ' ନାମ ବହୁ କାଳଯାବତ୍ ଜନଶ୍ରୁତିରେ ଜାଗ୍ରତ ଥିଲାପରି ବୋଧହୁଏ । ଆଲେକ୍‌ଜାଣ୍ଡର କନିଂହାମ୍ ତ୍ରିକଳିଙ୍ଗ ଅର୍ଥରେ ଅମରାବତୀ, ଔରଙ୍ଗଲ୍ ଓ ରାଜମାହେନ୍ଦ୍ରୀ ଏହି ତିନୋଟି ସ୍ଥାନ ବୁଝିଅଛନ୍ତି । ସେ ଏହି ମତର କୌଣସି କାରଣ ଦେଇ ନାହାନ୍ତି । କିନ୍ତୁ ଉପରୋକ୍ତ ସଂକ୍ଷିପ୍ତ ଆଲୋଚନାର ଦୃଷ୍ଟିରେ ତାଙ୍କର ଏହି ଅନୁମାନ ଭ୍ରାନ୍ତ ବୋଲି ବୋଧହୁଏ ।

ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀ ବେଳକୁ ମଧ୍ୟ କଳିଙ୍ଗ ଉତ୍କଳ ନାମଧାରୀ ଉତ୍କଳିଙ୍ଗ ବା ଉତ୍ତର କଳିଙ୍ଗ ଓ କଳିଙ୍ଗ ବା ଦକ୍ଷିଣ କଳିଙ୍ଗର ଅନ୍ତର୍ଭୁକ୍ତ ହୋଇ ଯାଇଥିଲା । ସେଥିପାଇଁ ଏହି ଶତାବ୍ଦୀର ପ୍ରଥମ ଭାଗରେ କାଳିଦାସ ରଘୁଙ୍କର ଦିଗ୍‌ବିଜୟ ବର୍ଣ୍ଣନା କଲାବେଳେ ବଙ୍ଗୋପସାଗରର ଉପକୂଳରେ 'ଉତ୍କଳ' ଓ 'କଳିଙ୍ଗ' ନାମକ ଦୁଇଟି ବିଭିନ୍ନ ଦେଶର ଉଲ୍ଲେଖ କରିଛନ୍ତି ।

"ସ ତୀର୍ତ୍ତ୍ୱା କପିଶାଂ ସୈନ୍ୟୈ—
ର୍ବଦ୍ଧ ଦ୍ୱିରଦ ସେତୁଭିଃ
ଉତ୍କଳା ଦର୍ଶିତାପଥଃ
କଳିଙ୍ଗାଭିମୁଖୋ ଯଯୌ ।"

ରଘୁବଂଶ—ଚତୁର୍ଥଶ୍ଳୋକ—୩୮

ଉପରୋକ୍ତ ପଂକ୍ତିରୁ ଜଣାଯାଏ ଯେ, ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀ ବେଳକୁ ପ୍ରାଚୀନ କଳିଙ୍ଗ ରାଜ୍ୟ 'ଉତ୍କଳ' ଓ 'କଳିଙ୍ଗ' ନାମକ ଦୁଇଟି ବିଭିନ୍ନ ରାଜ୍ୟରେ ପରିଣତ ହୋଇଥିଲା । ଉତ୍କଳ ରାଜ୍ୟ ଉତ୍ତରରେ କପିଶା ବା କଂସାଇ ନଦୀଠାରୁ ଦକ୍ଷିଣରେ ବୈତରଣୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଯେହେତୁ ପାଣ୍ଡବମାନେ

Digitized by srujanika@gmail.com

ଉତ୍କଳରାଜ୍ୟ ଆକ୍ରମଣ କରି ଏକ ସମୟରେ ବୈତରଣୀ ନଦୀ ଓ କଳିଙ୍ଗ ରାଜ୍ୟରେ ଉପସ୍ଥିତ ହୋଇଥିଲେ । ମହାଭାରତରେ ଅଛି :—

"ତତଃ ସମୁଦ୍ରତୀରେଣ ଜଗାମ ବସୁଧାଧିପଃ ।
ଭ୍ରାତୃଭିଃ ସହିତୋ ବୀରଃ କଳିଙ୍ଗାନ୍ ପ୍ରତିଭାରତ ।
ଲୋମଶ ଉବାଚ
ଏତେ କଳିଙ୍ଗାଃ କୌନ୍ତେୟ ଯତ୍ର ବୈତରଣୀ ନଦୀ
ଯତ୍ରାଽଯଜତ ଧର୍ମୋପି ଦେବାଚ୍ଛରଣମେତ୍ୟବୈ ।"

—ବନପର୍ବ

ଉତ୍କଳ ଓ କଳିଙ୍ଗ ମଧ୍ୟରେ ଅର୍ଥାତ୍ କପିଶାଠାରୁ କୃଷ୍ଣା ପର୍ଯ୍ୟନ୍ତ ସମସ୍ତ ଉପକୂଳବର୍ତ୍ତୀ ଭୂଖଣ୍ଡ ମଧ୍ୟରେ ଉତ୍କଳ ଓ କଳିଙ୍ଗ ବ୍ୟତୀତ ଅନ୍ୟ କୌଣସି ରାଜ୍ୟ ଥିଲାପରି ବୋଧହୁଏ ନାହିଁ ।

ଆମ୍ଭେମାନେ ପୂର୍ବେ କହିଅଛୁଁ, ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ରାମାୟଣ ଓ ମହାଭାରତ ପ୍ରଚଳିତ ଆକାରରେ ରଚିତ ହୋଇଥିଲା । ସୁତରାଂ ଏଥି ବର୍ଣ୍ଣିତ ଦେଶମାନଙ୍କୁ ଆମ୍ଭେମାନେ ଅନ୍ୟ କୌଣସି ନିଶ୍ଚିତ ପ୍ରମାଣ ନଥିବାସ୍ଥଳେ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର ପ୍ରାକ୍‌କାଳୀନ ଇତିହାସ ମଧ୍ୟରେ ସ୍ଥାନ ଦେଇନାହୁଁ । ମହାଭାରତର ସଭାପର୍ବ ଓ ଭୀଷ୍ମ ପର୍ବରେ 'ଉଡ୍ର' ବା 'ଔଡ୍ର' ବା 'ଓଡ୍ର' ନାମର ଉଲ୍ଲେଖ ଦେଖାଯାଏ । ପାର୍ଜିଟର କହନ୍ତି, ମାନଭୂମ ଜିଲ୍ଲା, ମେଦିନୀପୁରର ପଶ୍ଚିମାଞ୍ଚଳ, ସିଂହଭୂମିର ପୂର୍ବାଞ୍ଚଳ ଏବଂ ବାଙ୍କୁଡ଼ା ଜିଲ୍ଲାର ଦକ୍ଷିଣ ଅଞ୍ଚଳକୁ ନେଇ ଏହି ଉଡ୍ରଦେଶ ଗଠିତ ହୋଇଥିଲା । ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ରଘୁଙ୍କର ଦିଗ୍‌ବିଜୟ ଓ ପାଣ୍ଡବମାନଙ୍କର ତୀର୍ଥଯାତ୍ରା ବର୍ଣ୍ଣନାରେ 'ଉଡ୍ର' ନାମର ଅଭାବ ପାର୍ଜିଟରଙ୍କ ଏହି ଅନୁମାନକୁ ସପ୍ରମାଣ କରୁଅଛି । ପୂର୍ବାଞ୍ଚଳ ବାଟେ ଯାତ୍ରା କରିଥିବାରୁ ଉଡ୍ରଦେଶ ସେମାନଙ୍କ ମାର୍ଗରେ ପଡ଼ି ନଥିବ ।

ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀର ଶେଷଭାଗରେ ଯଯାତିକେଶରୀ ବଙ୍ଗୋପସାଗର ପର୍ଯ୍ୟନ୍ତ ସମସ୍ତ ଭୂଖଣ୍ଡ ଜୟ କରିଥିଲେ । ଉପରୋକ୍ତ ଉତ୍କଳ ଓ କଳିଙ୍ଗ ରାଜ୍ୟ ତାଙ୍କର ହସ୍ତଗତ ହେଲା । ସେ ଉତ୍ତର ଭାରତରୁ ଅନେକ ବ୍ରାହ୍ମଣ ଆଣାଇ ସ୍ୱଦେଶରେ ସେମାନଙ୍କୁ ଭୂମିଦାନ କରି ରଖାଇଥିଲେ । ତାଙ୍କ ରାଜତ୍ୱର ନବମବର୍ଷ, ଅର୍ଥାତ୍ ୪୮୬ ଖ୍ରୀଷ୍ଟାବ୍ଦରେ ପ୍ରଦତ୍ତ ତାମ୍ରଶାସନ ଅଛି—

"ମଧ୍ୟଦେଶୀୟ ଶ୍ରୀବଲ୍ଲଭଗ୍ରାମ ବିନିର୍ଗତାୟ ଓଡ୍ରଦେଶେ ଖାଗିଲାଭଞ୍ଜ ପାଟୀ ବାସ୍ତବ୍ୟାୟ·········ଶ୍ରୀ ଗଙ୍ଗାପାଣି ନାମ୍ନେ ଦିବାକର ପୁତ୍ରାୟ··········

Digitized by srujanika@gmail.com

ଯଯାତି ଗଙ୍ଗାପାଣିଙ୍କୁ ମଧ୍ୟଦେଶରୁ ଆଣି ଓଡ୍ର ଦେଶସ୍ଥ ଖିଲାଭଞ୍ଜ ପାଟୀ ନାମକ ସ୍ଥାନରେ ରଖାଇଥିଲେ । ତାହାହେଲେ, ଖିଲାଭଞ୍ଜ ପାଟୀ ତଥା ଉଡ୍ର ଦେଶ ତାଙ୍କ ରାଜ୍ୟର ଅନ୍ତର୍ଭୁକ୍ତ ଥିବ । ଏଥିରୁ ଅନୁମିତ ହୁଏ, ଉପରୋକ୍ତ ଓଡ୍ର, ଉତ୍କଳ ଓ କଳିଙ୍ଗ ସମସ୍ତେ ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ଯଯାତିଙ୍କର ଶାସନାଧୀନରେ ଥିଲେ ।

ବୋଧହୁଏ ଓଡ୍ର, ଉତ୍କଳ ଓ କଳିଙ୍ଗ ଉପରୋକ୍ତ ମତେ କିଯତ୍‌କାଳଯାଏ ଏକଛତ୍ରର ଅଧୀନରେ ରହିବାରୁ କାଳକ୍ରମେ ଏହି ତିନୋଟି ନାମ ପରସ୍ପର ପ୍ରତି ପ୍ରଯୁକ୍ତ ହେଲା । 'ଉଡ୍ର' ନାମ ଉତ୍ତର-ପଶ୍ଚିମ ଅଞ୍ଚଳରେ ବହୁକାଳ ସୀମାବଦ୍ଧ ରହି ନଥିଲା । ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ଯେଉଁ ଭୂଖଣ୍ଡ ଉତ୍କଳ ନାମରେ ଅଭିହିତ ହେଉଥିଲା, ତାହାକୁ ହିଁ ସପ୍ତମ ଶତାବ୍ଦୀରେ ହୁଏନ୍‌ସାଂ ଉଡ୍ ବା ଉଡ୍ ନାମ ଦେଇଛନ୍ତି । ସେ ଉତ୍କଳର ନାମ ପର୍ଯ୍ୟନ୍ତ ଉଲ୍ଲେଖ କରିନାହାନ୍ତି ।

ଏହି ଶତାବ୍ଦୀରେ ଗୋଟିଏ ନୂତନ ନାମର ଆବିର୍ଭାବ ଦେଖାଯାଏ । ଉତ୍କଳର ଦକ୍ଷିଣ ଅର୍ଥାତ୍ ପୂର୍ବୋକ୍ତ କଳିଙ୍ଗର ଉତ୍ତରାଂଶ ଏହି ସମୟରେ ଗଞ୍ଜାମ ନାମରେ ଅଭିହିତ ହେଉଥିଲା । ହୁଏନ୍‌ସାଂ ଏହାର ନାମୋଲ୍ଲେଖ କରିଅଛନ୍ତି ଏବଂ କଳିଙ୍ଗକୁ ଏହାର ଦକ୍ଷିଣରେ ସ୍ଥାନ ଦେଇ ଅଛନ୍ତି । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ, କଳିଙ୍ଗ ନାମ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ବେଳକୁ ଆଧୁନିକ ଗଞ୍ଜାମ ଜିଲ୍ଲାର ଦକ୍ଷିଣରେ ସୀମାବଦ୍ଧ ହୋଇଥିଲା ।

ଗଞ୍ଜାମର ଅନ୍ୟ ନାମ କଙ୍ଗୋଦ ବା କଙ୍ଗଅନ-ଯୃମୋ । ଏହା ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ସମସ୍ତେ ସମୟେ ଉଡ୍ ବା ଓଡ୍ର ନାମରେ ଅଭିହିତ ହେଉଥିଲା । ଖୁବ୍ ସମ୍ଭବ, ଏହି ଭୂଖଣ୍ଡ ମଧ୍ୟ କେଶରୀବଂଶୀୟମାନଙ୍କ ସମୟରେ ଓଡ୍ର ଓ ଉତ୍କଳ ସହିତ ଏକଛତ୍ରର ଅଧୀନରେ ରହିବାରୁ ଏହା ଉତ୍କଳ ପରି କାଳକ୍ରମେ ଉଡ୍ର ବା ଓଡ୍ର ନାମ ଧାରଣ କଲା । କିନ୍ତୁ ଏହି ଶତାବ୍ଦୀରେ ଗଞ୍ଜାମର କଳିଙ୍ଗ ନାମ ସ୍ଥାନେ ସ୍ଥାନେ ବ୍ୟବହୃତ ହେଉଥିଲା । ପ୍ରାୟ ଏହି ଶତାବ୍ଦୀ ଲିଖିତ ଶକ୍ତି ସଙ୍ଗମ ତନ୍ତ୍ରରେ ଅଛି—

"ଜଗନ୍ନାଥାତ୍ ପୂର୍ବ ଭାଗାତ୍ କୃଷ୍ଣାତୀରାନ୍ତଗଂ ଶିବେ ।
କଳିଙ୍ଗ ଦେଶ ସମ୍ପ୍ରୋକ୍ତଃ ବାମମାର୍ଗ ପରାୟଣଃ ।"

ସ୍ଥୂଳତଃ ଦେଖିବାକୁ ଗଲେ କପିଶା ବା କଂସାଇଠାରୁ ଗୋଦାବରୀ ପର୍ଯ୍ୟନ୍ତ ସମସ୍ତ ଭୂଭାଗ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ବେଳକୁ 'ଓଡ୍ର' 'ଉଡ୍ର' ବା 'ଔଡ୍ର' ନାମରେ ଅଭିହିତ ହେଉଥିଲା । ଅବଶ୍ୟ ବେଳେବେଳେ ଏହି ସୀମା ମଧ୍ୟରେ

Digitized by srujanika@gmail.com

ଉତ୍କଳ ଓ କଳିଙ୍ଗ ନାମର ବ୍ୟବହାର ଥିଲା । ସିଦ୍ଧକ ନାମକ ବୌଦ୍ଧଗ୍ରନ୍ଥ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଲିଖିତ । ଏଥିରେ 'ଉଡ୍ର' ଦକ୍ଷିଣ କୋଶଳ ଓ ପ୍ରାଚୀନ କଳିଙ୍ଗର ନାମୋଲ୍ଲେଖ ଅଛି । ଲେଖକ ବୋଧହୁଏ ଗଞ୍ଜାମ ଓ ଉତ୍କଳକୁ ପ୍ରଥମ ଶତାବ୍ଦୀରେ ପ୍ରାଚୀନ କଳିଙ୍ଗ ବୋଲି ଲେଖିଅଛନ୍ତି ।

ଉଲ୍ଲିଖିତ ଆଲୋଚନାଗୁଡ଼ିକୁ ଆମ୍ଭେମାନେ ଅଳ୍ପୋକ୍ତ ଭାବରେ ସଂକ୍ଷିପ୍ତ କରିପାରୁ । ପ୍ରାଚୀନତମ କାଳରେ କପିଶା ଓ କୃଷ୍ଣାନଦୀର ମଧ୍ୟବର୍ତ୍ତୀ ଭୂଭାଗ କଳିଙ୍ଗ ନାମରେ ଅଭିହିତ ହେଉଥିଲା । କାଳକ୍ରମେ ଏହି ଭୂଭାଗ ବିଭକ୍ତ ହୁଅନ୍ତେ ବିଭିନ୍ନ ଭୂଖଣ୍ଡମାନ ଯଥାକ୍ରମେ 'ଉଡ୍ର' ଉତ୍କଳ ଓ କଳିଙ୍ଗ ଆଦି ଭିନ୍ନ ନାମ ଧାରଣ କଲା । ପରେ କପିଶା ଓ ଗୋଦାବରୀର ମଧ୍ୟବର୍ତ୍ତୀ ଭୂଭାଗ କେଶରୀବଂଶୀୟ ରାଜାମାନଙ୍କ ସମୟରେ ଏକଶାସନାଧୀନ ହେବାରୁ ଏହା ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ବେଳକୁ ଅର୍ଥ ନିର୍ବିଶେଷରେ ଉଡ୍ର ବା ଉତ୍କଳ ନାମରେ ଆଖ୍ୟାତ ହେଉଥିଲା । କଳିଙ୍ଗ ନାମ ଗୋଦାବରୀ ନଦୀର ଦକ୍ଷିଣକୁ ସ୍ଥାନାନ୍ତରିତ ହୋଇଥିଲା । ଏହା କାହାର କାହାର ଦ୍ୱାରା ଗଞ୍ଜାମ କିମ୍ବା ଉତ୍କଳର ଅନ୍ୟ କୌଣସି ଅଞ୍ଚଳ ପ୍ରତି ପ୍ରଯୁକ୍ତ ହେଉଥିଲେହେଁ ତାହା ଅତ୍ୟଳ୍ପ ହେବ । ସୁତରାଂ କପିଶା ଓ ଗୋଦାବରୀର ମଧ୍ୟବର୍ତ୍ତୀ ସମଗ୍ର ଭୂଭାଗ ପ୍ରଥମ ଶତାବ୍ଦୀଠାରୁ ଉଡ୍ର, ଉତ୍କଳ କଳିଙ୍ଗ ନାମଦ୍ୱାରା ଆଖ୍ୟାତ ହୋଇପାରେ ।

ଏହି ବିଶାଳ ଉତ୍କଳ ରାଜ୍ୟ ଗଙ୍ଗବଂଶୀୟ ରାଜାମାନଙ୍କ ସମୟରେ ବିଶାଳତର ଆକାର ଧାରଣ କରିଥିଲା । ପ୍ରାୟ ୧୧୦୦ ଖ୍ରୀଷ୍ଟାବ୍ଦରେ ଉତ୍କଳୀୟ ଧୀବରମାନେ ତାମ୍ରଲିପ୍ତି ଜୟକଲେ । ଅନଙ୍ଗ ଭୀମଦେବ ରାଜତ୍ୱର ଦ୍ୱାଦଶ ବର୍ଷରେ ପୁରୀ ମନ୍ଦିର ମଧ୍ୟରେ ଯେଉଁ ଫଳକ ଦେଇଥିଲେ, ସେଥିରେ ସେ କହିଅଛନ୍ତି ଯେ, ଉତ୍କଳ ସାମ୍ରାଜ୍ୟ ଗଙ୍ଗବଂଶୀୟ ରାଜାମାନଙ୍କ ସମୟରେ ଦାମୋଦର ନଦୀ ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା । ସେହିଦିନୁ ତାମ୍ରଲିପ୍ତି ଉତ୍କଳ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା । ରଜା ଟୋଡ଼ରମଲ୍ଲଙ୍କ ବନ୍ଦୋବସ୍ତ ସମୟରେ ତାମ୍ରଲିପ୍ତି ଜଲେଶ୍ୱର ମାହାଲ ଅନ୍ତର୍ଭୁକ୍ତ ହୋଇଥିଲା । ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀ ପୂର୍ବରୁ ତାମ୍ରଲିପ୍ତି କେତେବେଳେ ସ୍ୱାଧୀନ, କେତେବେଳେ ଅବା ପାର୍ଶ୍ୱବର୍ତ୍ତୀ କୌଣସି ରାଜ୍ୟର ଅଧୀନସ୍ଥ ଥିଲା । କିନ୍ତୁ ଏହି ଶତାବ୍ଦୀ ପୂର୍ବରୁ କୌଣସି ସମୟରେ ତାମ୍ରଲିପ୍ତି ଉତ୍କଳ ସାମ୍ରାଜ୍ୟର ଅଧୀନସ୍ଥ ହୋଇଥିଲା କି ନାହିଁ, ସେ ସମ୍ବନ୍ଧରେ ପ୍ରମାଣ ଅଦ୍ୟାବଧି ହସ୍ତଗତ ହୋଇନାହିଁ । ଯେ ଯାହାହେଉ, ଉଲ୍ଲିଖିତ କାରଣରୁ ଆମ୍ଭେମାନେ ଏହି ପ୍ରବନ୍ଧରେ ଉତ୍କଳ ଶବ୍ଦକୁ କଂସାଇଠାରୁ ଗୋଦାବରୀ ପର୍ଯ୍ୟନ୍ତ ସମସ୍ତ ଭୂଖଣ୍ଡ ଅର୍ଥରେ ବ୍ୟବହାର କରିଅଛୁଁ ।

Digitized by srujanika@gmail.com

ଉକ୍ତ ଉତ୍କଳ ଓ କଳିଙ୍ଗ ଶବ୍ଦର ଐତିହାସିକ ତଥ୍ୟ ଆଲୋଚିତ ହୋଇ ଅଛି । ବର୍ତ୍ତମାନ ଓଡ଼ିଶା ଇତିହାସର ଅନ୍ୟ ଗୋଟିଏ ନାମ ଆଲୋଚ୍ୟ । କେଶରୀ-ବଂଶୀୟ ରାଜାମାନଙ୍କ ତାମ୍ର ଶାସନରେ 'କୋଶଳ' ବା ଦକ୍ଷିଣକୋଶଳ' ଶବ୍ଦ ଉତ୍କଳର କେଉଁ ଅଞ୍ଚଳ ପ୍ରତି ପ୍ରଯୁକ୍ତ ହୋଇଥିଲା ଏବଂ କାହିଁକି ?

କେଶରୀ-ବଂଶୀୟ ରାଜାମାନଙ୍କର ପିତୃ-ପିତାମହ ପ୍ରାଚୀନ ମେକଳର ଦକ୍ଷିଣ ଅର୍ଥାତ୍ ମଧ୍ୟଦେଶର ପୂର୍ବାଞ୍ଚଳରେ ରାଜତ୍ୱ କରୁଥିଲେ । ଏହି ଅଞ୍ଚଳକୁ ପୂର୍ବେ ମହାକୋଶଳ ବା ଦକ୍ଷିଣ କୋଶଳ କୁହାଯାଉଥିଲା । କେହି କେହି ଅନୁମାନ କରନ୍ତି, କୋଷାକୃତି ହେତୁ ଏହି ଅଞ୍ଚଳର ଈଦୃଶ ନାମ ହୋଇଥିଲା । ଏ ସବୁ ବିଷୟରେ ସବିଶେଷ ଆଲୋଚନା କିନ୍ତୁ ବର୍ତ୍ତମାନ ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହେଁ । ବୋଧହୁଏ, ଜନମେଜୟ ଓ ଯଯାତି ଉତ୍କଳ ଜୟ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ପୈତୃକ ରାଜ୍ୟର ନାମ 'କୋଶଳ' ଉତ୍କଳକୁ ଆନୀତ ହୋଇଥିଲା । କେଶରୀ ବଂଶୀୟ ରାଜାମାନେ ସମୟ ସମୟରେ ଉତ୍କଳ ସ୍ଥଳରେ କୋଶଳ ଶବ୍ଦ ବ୍ୟବହାର କରୁଥିଲେ । ଯଥା :—

× × × ଶ୍ରୀ ମହାଭବ ଗୁପ୍ତଦେବ କୁଶଳୀ କୋଶଳ ଦେଶେ ଯୋଙ୍ଗା ବିଷୟୀ ଦାଣ୍ଡୀ ଗ୍ରାମେ ତଥା ଟଲାଣ୍ଡଲ ଗ୍ରାମେ ବ୍ରାହ୍ମଣାନ୍ ସମ୍ପୂଜ୍ୟ × × ×

"ଶ୍ରୀ ମହାଶିବଗୁପ୍ତ ଦେବଃ କୁଶଳୀ । ଦକ୍ଷିଣ କୋଶଳାୟା ମରୁତବିଷୟୀୟ ଗୃହ ଗ୍ରାମେ × × × ।" ଇତ୍ୟାଦି ।

ପୁରୀ ଓ ଅନୁଗୁଳର ଅନେକ ଅଞ୍ଚଳ ଅଦ୍ୟାବଧି 'କୋଶଳ' ନାମରେ ଅଭିହିତ ହେଉଅଛି । ପୁରୀ ଜିଲ୍ଲାସ୍ଥ ଧଉଳି ପାହାଡ଼ ନିକଟରେ ଯେଉଁ ହ୍ରଦର ଚିହ୍ନ ମାତ୍ର ଅଛି, ତାହାର ନାମ ତୋଷଳ ଗଙ୍ଗା କିମ୍ବା କୋଶଳ ଗଙ୍ଗା, କୌଶଲ୍ୟା ଗଙ୍ଗା ନୁହେଁ । ତୋଷଳ ଅଶୋକଙ୍କର ରାଜଧାନୀ ତୋଷଳି ବା ଆଧୁନିକ ଧଉଳିର ରୂପାନ୍ତର ।

କିନ୍ତୁ ଉତ୍କଳର ପ୍ରାଥମିକ ରାଜାମାନଙ୍କ ଅପେକ୍ଷା ପରବର୍ତ୍ତୀ ରାଜାମାନଙ୍କ ସମୟରେ କୋଶଳ ଶବ୍ଦର ବ୍ୟବହାର ଅପେକ୍ଷାକୃତ ଅତି ଅଳ୍ପ । ଏହାର କାରଣ, ବୋଧହୁଏ କେଶରୀ ବଂଶୀୟ ରାଜାମାନେ ଉତ୍କଳ ଜୟ କରିବା ସଙ୍ଗେ ସଙ୍ଗେ ପୈତୃକ ରାଜ୍ୟର ନାମ 'କୋଶଳ' ଉତ୍କଳକୁ ଆନୀତ ହୋଇଥିଲେ ହେଁ, ତାହା ସର୍ବାଦୃତ ନ ହେବାରୁ କାଳକ୍ରମେ ବିଲୁପ୍ତ ହେଲା । କୋଶଳାଶାଗ ବା କୋଶଳା ଗଡ ଶାଗ ଓ କୋଶଳୀ ଡଙ୍ଗା ବା କୋଶଳାଗଡ ଡଙ୍ଗା, କେବଳ ଏହିପରି ଦୁଇଟି

Digitized by srujanika@gmail.com

ଗୋଟିଏ ଦେଶୀୟ ଶବ୍ଦଦ୍ୱାରା ପୂର୍ବ ପ୍ରଚଳିତ 'କୋଶଳ' ନାମ ଅଦ୍ୟାବଧି ଚଳନ୍ତି ହେଉଅଛି ।

ଡାକ୍ତର ରାଜେନ୍ଦ୍ରଲାଲ କହନ୍ତି, 'ଉତ୍କଳ' ଶବ୍ଦ 'ଉତ୍' ଓ 'କୋଲ' ଶବ୍ଦରୁ ନିର୍ମିତ । 'ଉତ୍'ର ଅର୍ଥ ଓଡ୍ର ବା ଓଡ଼ିଆ ଏବଂ କୋଲ ଅନାର୍ଯ୍ୟ ଜାତି-ମାନଙ୍କର ସାଧାରଣ ନାମ । ସୁତରାଂ ସେ କହନ୍ତି, 'ଉତ୍କଳ'ର ଅର୍ଥ—'ଓଡ୍ର' ଶ୍ରେଣୀୟ କୋଲ ବା ଅନାର୍ଯ୍ୟ । ଏହି 'ଓଡ୍ର' ଶ୍ରେଣୀୟ ଅନାର୍ଯ୍ୟ ଜାତିର ନାମାନୁସାରେ 'ଉତ୍କଳ' ଦେଶର ନାମକରଣ ହୋଇଅଛି । ରାଜେନ୍ଦ୍ରଲାଲ ତାଙ୍କ ଉପରୋକ୍ତ ଅନୁମାନର ସପକ୍ଷରେ ନିଦାନ୍ତ ଶେଷ ଲିଖିତ "ଓଡ୍ରା ଉତ୍କଳନାମାନଃ" ବାକ୍ୟ ଉଦ୍ଧାର କରିଅଛନ୍ତି । କିନ୍ତୁ ତାଙ୍କର ଏହି ଅନୁମାନ ସମ୍ପୂର୍ଣ୍ଣ କାଳ୍ପନିକ ବୋଲି ବୋଧହୁଏ । ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ବେଳକୁ 'ଓଡ୍ର' ଓ 'ଉତ୍କଳ'ର ପାର୍ଥକ୍ୟ ବିସ୍ମୃତ ହେଲାପରେ ଉପରୋକ୍ତ ସଂସ୍କୃତ ବାକ୍ୟ ଲିଖିତ ହୋଇଥାଇପାରେ ।

କାହାରି କାହାରି ମତରେ ଆଧୁନିକ ମୟୂରଭଞ୍ଜ, କେନ୍ଦୁଝର ଓ ନୀଳଗିରି ପ୍ରାଚୀନ କାଳରେ 'ଉତ୍କଳ' ନାମରେ ଅଭିହିତ ଥିଲା । ଆଧୁନିକ ଗଙ୍ଗାପୁର ଏହାର ପଶ୍ଚିମ ସୀମା ଥିଲା । ଆମ୍ଭେମାନେ କିନ୍ତୁ ଏଭଳି ମତର ସପକ୍ଷରେ କୌଣସି କାରଣ ଦେଖୁ ନାହୁଁ । ଉକ୍ତ ମତାବଲମ୍ବୀ ମଧ୍ୟ କାରଣ ସମ୍ବନ୍ଧରେ ସମ୍ପୂର୍ଣ୍ଣ ନୀରବ ।

ପୁଣି ମୟୂରଭଞ୍ଜ ଓ କେନ୍ଦୁଝର ସୀମାଠାରୁ ମହାନଦୀ ପର୍ଯ୍ୟନ୍ତ ସମସ୍ତ ଅରଣ୍ୟ ଦେଶ ପୂର୍ବେ ଓଡ୍ର ନାମରେ ଅଭିହିତ ଥିଲା ବୋଲି ଉକ୍ତ ମତାବଲମ୍ବୀ କହନ୍ତି । ତାଙ୍କର ଏହି ମତର କାରଣ, ଭରୁମଲସ୍ୱ ଅନୁଶାସନର ଦାସ୍ୱର ନିକଳଙ୍ଗ ଜୟକରି ଓଡ୍ର ଦେଶ ମଧ୍ୟ ଦେଇ କୋଶଳକୁ ଯାଇଥିଲେ । ଅନୁଶାସନ-ଦାସ୍ୱର ଓଡ୍ର ଦେଶବାଟେ କୋଶଳକୁ ଯାଇଥିଲେ ବୋଲି ଓଡ୍ର ଦେଶକୁ ମହାନଦୀ ଓ କେନ୍ଦୁଝରର ସୀମା ମଧ୍ୟରେ ସ୍ଥାନଦେବା ଅପ୍ରାସଂଗିକ ଅଟେ ।

ସ୍ୱର୍ଗୀୟ ପ୍ୟାରୀମୋହନ ଆଚାର୍ଯ୍ୟ ଖୋର୍ଦ୍ଧା ଅଞ୍ଚଳକୁ ପ୍ରାଚୀନ ଓଡ୍ର ଦେଶ ବୋଲି ଅନୁମାନ କରି ଅଛନ୍ତି । ଏହି ଅଞ୍ଚଳରେ ଓଡ୍ର ଚଷାମାନଙ୍କର ସଂଖ୍ୟାଧିକ୍ୟ ଉକ୍ତ ଅନୁମାନର ପ୍ରଧାନ କାରଣ ।

କିନ୍ତୁ ବାଲେଶ୍ୱରର ଉତ୍ତର ଓ ଉତ୍ତର-ପଶ୍ଚିମ ଅଞ୍ଚଳରେ ମଧ୍ୟ ଅନେକ ଓଡ୍ରଚଷା ଅଛନ୍ତି । ପୁଣି ଖୋର୍ଦ୍ଧା ଅଞ୍ଚଳକୁ ଆଜକାଲି ଲୋକେ ଓଡ଼ିଶା ବୋଲି କହନ୍ତି । ଏହା ଅବଶ୍ୟ ଆଚାର୍ଯ୍ୟଙ୍କ ଉକ୍ତବିଧ ଅନୁମାନର ସହାୟ ହୋଇ ନ

Digitized by srujanika@gmail.com

ପାରେ । ସାଧାରଣ ଲୋକେ ଖୋର୍ଦ୍ଧା ଅଞ୍ଚଳକୁ ଓଡ଼ିଶା କହିବାର କାରଣ, ବିଶାଳ ଓଡ଼ିଶା ବା ଉତ୍କଳ ରାଜ୍ୟ କାଳକ୍ରମେ ସଙ୍କୁଚିତ ହୋଇ ଅବଶେଷରେ ଖୋର୍ଦ୍ଧା ମଧ୍ୟରେ ସୀମାବଦ୍ଧ ହୋଇଥିଲା । ଲୋକେ ପ୍ରାଚୀନ ତତ୍ତ୍ୱ ଭୁଲିଯାଇ କେବଳ ଖୋର୍ଦ୍ଧା ରାଜକୁକୁ ମନେରଖି ଅଛନ୍ତି, ସେଥିପାଇଁ ସେମାନେ ଓଡ଼ିଶା-ରାଜ୍ୟକୁ କେବଳ ଏହି କ୍ଷୁଦ୍ର ଖୋର୍ଦ୍ଧା ଅଞ୍ଚଳ ବୋଲି ମନେକରି ଅଛନ୍ତି । ସୁତରାଂ ଉଡ୍ର ରାଜ୍ୟର ପ୍ରାଚୀନ ଅବସ୍ଥାନ ସମ୍ବନ୍ଧରେ ଆମ୍ଭେମାନେ ଅସନ୍ଦିଗ୍ଧ ଗ୍ରହଣକରି ନ ପାରୁଁ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଉଡ୍ର ଓ ଉତ୍କଳୀୟମାନେ ସଜାତିକ ନ ଥିଲେ । ଉଭୟଜାତି ଏକଛତ୍ରାଧୀନ ହୁଅନ୍ତେ କାଳକ୍ରମେ ଉଭୟ ନାମର ପାର୍ଥକ୍ୟ ବିସ୍ମୃତ ହେଲା । ସେହିଦିନୁ ଲୋକମୁଖରେ ଉଡ୍ରମାନେ ଉତ୍କଳୀୟ ଏବଂ ଉତ୍କଳୀୟମାନେ ଉଡ୍ର ବୋଲି ପରିଗଣିତ ହେଲେ । ସେଥିପାଇଁ ଅଭିଧାନ ଶେଷରେ ଅଛି, "ଓଡ୍ରା ଉତ୍କଳନାମାନଃ" । ବହୁ ଉଡ୍ର ଉତ୍ତର-ପଶ୍ଚିମ ଅଞ୍ଚଳରୁ ଆସି କାଳକ୍ରମେ ଉତ୍କଳର ସ୍ଥାନଅତେ ବସତି ସ୍ଥାପନ କଲେ । ଏହା ହିଁ ଖୋର୍ଦ୍ଧା ପ୍ରଭୃତି ଅଞ୍ଚଳରେ ବହୁ ଉଡ୍ର ଥିବାର କାରଣ ।

ଆମ୍ଭେମାନେ ଉଡ୍ର, ଉତ୍କଳ, କୋଶଳ ଓ କଳିଙ୍ଗର ଐତିହାସିକ ତଥ୍ୟ ସମ୍ବନ୍ଧରେ ଯଥାଶକ୍ତି ଆଲୋଚନା କରିଅଛୁଁ । ପରବର୍ତ୍ତୀ ଯୁଗରେ 'କଳିଙ୍ଗ' ନାମ ଦକ୍ଷିଣକୁ ବିତାଡ଼ିତ ହେଲା; 'କୋଶଳ' ନାମ କାଳକ୍ରମେ ଜନସମାଜରୁ ବିସ୍ମୃତ ହେଲା । କେବଳ ଉଡ୍ର ଓ ଉତ୍କଳ ନାମ କପିଶାଠାରୁ ଗୋଦାବରୀ ପର୍ଯ୍ୟନ୍ତ ସମସ୍ତ ଭୂଖଣ୍ଡ ପ୍ରତି ପ୍ରଯୁକ୍ତ ହେଲା । ଉଡ୍ର ବା ଉତ୍କଳର କଳେବର କ୍ରମଶଃ ପରିବର୍ଦ୍ଧିତ ହୋଇ କାଳକ୍ରମେ ତାମ୍ରଲିପ୍ତି ପ୍ରଭୃତିକୁ ଅନ୍ତର୍ଭୁକ୍ତ କଲା । 'ଉତ୍କଳ' ନାମ ସର୍ବଜ ପରିଚିତ, ଏବଂ ଏଥିରେ ପ୍ରାଚୀନ କଳିଙ୍ଗ ନାମର ଚିହ୍ନ ଅଛି । ସେଥିପାଇଁ ଆମ୍ଭେମାନେ ପ୍ରବନ୍ଧରେ ଏହି 'ଉତ୍କଳ' ନାମକୁ ଅବଲମ୍ବନ କରିଅଛୁଁ । ବିଶେଷତଃ ବୌଦ୍ଧ ଯୁଗର ଐତିହାସିକ ଉପାଦାନ ମଧ୍ୟରେ ଉଡ୍ର, ଉତ୍କଳ ଓ କଳିଙ୍ଗ ପ୍ରଭୃତି ବିଭିନ୍ନ ନାମରେ ଉଲ୍ଲେଖ ଦେଖାଯାଏ । ସୁତରାଂ ପାଠକମାନଙ୍କର ସୁବିଧାପାଇଁ ଆମ୍ଭେମାନେ 'ଉତ୍କଳ' ଶବ୍ଦକୁ 'ଉଡ୍ର', ଉତ୍କଳ ଓ କଳିଙ୍ଗ ପ୍ରଭୃତି ବିଭିନ୍ନ ନାମର ଅର୍ଥରେ ବ୍ୟବହାର କରିଅଛୁ ।

**ଶାସନ କ୍ରମ :**

କଥିତ ଅଛି ବୁଦ୍ଧ ଖ୍ରୀ: ପୂ: ୪୭୭ ଅବ୍ଦରେ ଦେହତ୍ୟାଗ କରିଥିଲେ । ମୃତ୍ୟୁ ପରେ କ୍ଷେମ ନାମରେ ବୁଦ୍ଧଦେବଙ୍କର ଜନୈକ ଶିଷ୍ୟ ତାଙ୍କର ଗୋଟିଏ

Digitized by srujanika@gmail.com

ଦନ୍ତ ଅଣି କଳିଙ୍ଗ ବା ଉତ୍କଳର ନତାମାନ୍ଦନ ରାଜା ବ୍ରହ୍ମଦତ୍ତଙ୍କୁ ଉପହାର ଦେଇଥିଲେ । ରାଜା ଏହି ଦନ୍ତଟିକୁ ମହାସମାରୋହରେ ସ୍ୱୀୟ ରାଜଧାନୀ ଦନ୍ତପୁରଠାରେ ସ୍ଥାପନ କରିଥିଲେ । ବ୍ରହ୍ମଦତ୍ତଙ୍କ ମୃତ୍ୟୁ ପରେ ଯଥାକ୍ରମେ ତାହାଙ୍କର ପୁତ୍ର କାଶି ଏବଂ ପୌତ୍ର ସୁନନ୍ଦ ଉତ୍କଳରେ ରାଜତ୍ୱ କରିଥିଲେ । କାଶି ଏବଂ ସୁନନ୍ଦ ଦୁହେଁ ମଧ୍ୟ ବୌଦ୍ଧ ଥିଲେ । କିନ୍ତୁ ସୁନନ୍ଦଙ୍କ ପରବର୍ତ୍ତୀ ରାଜାମାନେ ଦନ୍ତପୁର ପ୍ରତିଷ୍ଠିତ ବୁଦ୍ଧଦନ୍ତକୁ ସେହି ଭାବରେ ପୂଜା କରୁଥିଲେ. ଏଥିରୁ ଅନୁମିତ ହୁଏ ଯେ, ସେମାନଙ୍କ ସମୟରେ ବୌଦ୍ଧ ଧର୍ମ ଉତ୍କଳର ରାଜଧର୍ମ ନ ଥିଲା ।

ବ୍ରହ୍ମଦତ୍ତ, କାଶି ଓ ସୁନନ୍ଦ ପ୍ରଭୃତି ନାମରୁ ଜଣାଯାଏ ଯେ, ଏହି ରାଜାମାନେ ଆର୍ଯ୍ୟ ଥିଲେ । କିନ୍ତୁ ଏମାନେ କେଉଁ ବଂଶର ରାଜା ବା ଏମାନଙ୍କ ବଂଶର ପ୍ରଥମ ରାଜା କିଏ ବା କେତେକାଳ ଏମାନଙ୍କ ବଂଶ ଉତ୍କଳରେ ରାଜତ୍ୱ କରିଥିଲେ, ଏ ବିଷୟରେ କୌଣସି ପ୍ରମାଣ ମିଳେ ନାହିଁ ।

ଭାରତୀୟ ଯାଦୁଘରେ ରକ୍ଷିତ ଓଡ଼ିଆ ଲିପିଲିଖିତ ଖଣ୍ଡିଏ ହସ୍ତଲିପିରେ ଅଛି—

"ଏ ବେ ନାମ ରାଜାଭୂତ୍ ସ୍ୱୋତ୍କଳେ ବଦ୍ୟତେପୁରେ ।
ଅହିଂସାଧର୍ମମାଶ୍ରିତ୍ୟ ବୁଦ୍ଧଧର୍ମପରାୟଣଃ ।
ନନ୍ଦରାଜସୁବଖ୍ୟାତଃ ମଗଧେ ବଦ୍ୟତେ ତଦା ।
ଶାକାରିପାଷଣ୍ଡୋ ନନ୍ଦଃ ବେଦଧର୍ମପରାୟଣଃ ।
ନନ୍ଦସ୍ୟ ସହିତୋ ଯୁଦ୍ଧେ ଐରେ କୃତବାନ ଭବେତ୍ ।"

ଉପରୋକ୍ତ ସଂସ୍କୃତ ଶ୍ଳୋକର ଗୋଟିଏ ଦୁଇଟି ବ୍ୟାକରଣଗତ ଦୋଷ ପରିଲକ୍ଷିତ ହୁଏ । ବୋଧହୁଏ, ହସ୍ତଲିପି ଲେଖକ ସ୍ୱୟଂ ଏହି ଶ୍ଳୋକର ରଚୟିତା ନଥିଲେ । ସେ ଅନ୍ୟ କୌଣସି ହସ୍ତଲିପିର ନକଲ କରିଥିଲେ ଏବଂ ସେ ଯେଉଁ ହସ୍ତଲିପିର ନକଲ କରିଥିଲେ, ତାହା ସେ ପ୍ରାଚୀନତର ଅନ୍ୟ କୌଣସି ହସ୍ତଲିପିର ନକଲ ହୋଇ ନ ଥିବ ଏହା କିଏ କହିପାରେ ? ପୂର୍ବେ ଶାସ୍ତ୍ରାନୁଯାୟୀ ଖଣ୍ଡିଏ ପୁସ୍ତକ ଜୀର୍ଣ୍ଣ ହୋଇଗଲେ ତାହାର ନକଲ କରାଯାଉଥିଲା । ସୁତରାଂ ଆମ୍ଭମାନଙ୍କର ଆଲୋଚିତ ହସ୍ତଲିପି ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ବା ଷୋଡ଼ଶ ଶତାବ୍ଦୀରେ ଲିଖିତ ହୋଇ ଅନୁମିତ ହେଲେ ହେଁ ଉପରୋକ୍ତ ଶ୍ଳୋକଗୁଡ଼ିକ ବହୁ ପ୍ରାଚୀନ ହୋଇପାରେ । ଏପରିକି, ସେ ସବୁ ତଦବର୍ଣ୍ଣିତ ଘଟଣାବଳୀର ସମସାମୟିକ ହୋଇପାରେ ।

Digitized by srujanika@gmail.com

ଉପରୋକ୍ତ ଶ୍ଳୋକରୁ ଜଣାଯାଏ ଯେ ବ୍ରାହ୍ମଣଧର୍ମାବଲମ୍ବୀ ମଗଧ-ରାଜ ନନ୍ଦ ବୌଦ୍ଧଧର୍ମାବଲମ୍ବୀ ଉତ୍କଳ ରାଜବଂଶକୁ ଯୁଦ୍ଧରେ ପରାଜିତ କରିଥିଲେ । ମହାପଦ୍ମ ନନ୍ଦ ଖ୍ରୀଷ୍ଟପୂର୍ବ ୪୧୩ କିମ୍ବା ୩୭୯ ଅବ୍ଦରେ ମଗଧରେ ନନ୍ଦବଂଶ ସ୍ଥାପନ କରିଥିଲେ । ଆମ୍ଭେମାନେ ପୂର୍ବେ କହିଅଛୁଁ, ଖ୍ରୀଷ୍ଟପୂର୍ବ ୪୭୭ ଅବ୍ଦରେ ବ୍ରହ୍ମଦତ୍ତ ଉତ୍କଳରେ ରାଜତ୍ୱ କରୁଥିଲେ । ଯଦି ବ୍ରହ୍ମଦତ୍ତ, କାଶି ଓ ସୁନନ୍ଦଙ୍କ ଏହି ବର୍ଷଠାରୁ ମୋଟରେ ୯୦ ବର୍ଷର ରାଜତ୍ୱ ଧରାଯାଏ, ତାହା ହେଲେ ଆମ୍ଭେମାନେ ଖ୍ରୀଷ୍ଟପୂର୍ବ ୩୮୭ ଅବ୍ଦରେ ଉପନୀତ ହେଉଅଛୁ । ଅନ୍ୟ କୌଣସି ରାଜାଙ୍କ ଦ୍ୱାରା ବିଜିତ ହେବା ପୂର୍ବରୁ ସୁନନ୍ଦଙ୍କ ବଂଶଧର ପନ୍ଦର ବା କୋଡ଼ିଏ ବର୍ଷକାଳ ରାଜତ୍ୱ କରିଥାଇପାରନ୍ତି । ତାହାହେଲେ ଖ୍ରୀଷ୍ଟପୂର୍ବ ୩୭୨ ଓ ୩୬୭ଅବ୍ଦ ମଧ୍ୟରେ ଉତ୍କଳ ବିଜିତ ହୋଇଥିବ । ଏହି ସମୟରେ ନନ୍ଦରାଜାମାନେ ମଗଧରେ ରାଜତ୍ୱ କରୁଥିଲେ । ବୋଧହୁଏ, ନନ୍ଦବଂଶର ପ୍ରଥମରାଜା ମହାପଦ୍ମନନ୍ଦ ଉତ୍କଳରେ ସୁନନ୍ଦଙ୍କ ବଂଶଧରଙ୍କୁ ପରାଜିତ କରି ସେଠାରେ ବ୍ରାହ୍ମଣଧର୍ମର ପୁନଃସ୍ଥାପନ କରିଥିଲେ । ସେଥିପାଇଁ ଦଳଦାବଂଶ ଓ ଦନ୍ତଧାତୁବଂଶ କହନ୍ତି, ସୁନନ୍ଦଙ୍କ ବଂଶଧରମାନଙ୍କ ସମୟରେ ଦନ୍ତପୁର ପ୍ରତିଷ୍ଠିତ ଦନ୍ତର ପୂଜା ହେଉ ହୋଇ-ଯାଇଥିଲା । ମଧ୍ୟ ପାର୍ଜିଟରଙ୍କ ପୁରାଣ ଆଲୋଚନାରୁ ଜଣାଯାଏ ଯେ, ମହାପଦ୍ମନନ୍ଦ ଉତ୍କଳର ରାଜବଂଶକୁ ସିଂହାସନଚ୍ୟୁତ କରିଥିଲେ ।

ଉପରୋକ୍ତ ଯାଦୁଘର-ସ୍ଥିତ ଶ୍ଳୋକରୁ ଦେଖାଯାଏ ଯେ, ମହାପଦ୍ମଙ୍କର ଶତ୍ରୁ ଉତ୍କଳରାଜ ଐର ନାମରେ ପରିଚିତ ଥିଲେ । କିନ୍ତୁ 'ଐର' ଏହି ରାଜାଙ୍କର ବ୍ୟକ୍ତିଗତ ନାମ ଥିଲା କି ? ଉପରୋକ୍ତ ହସ୍ତଲିପିରେ ମଧ୍ୟ ଅଶୋକଙ୍କ ସମସାମୟିକ ଉତ୍କଳରାଜ ଐର ନାମରେ ବର୍ଣ୍ଣିତ ହୋଇଅଛନ୍ତି । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ ଲିଖିତ ହାତୀ ଗୁମ୍ଫା ଅନୁଶାସନରେ ଖାରବେଳଙ୍କ ପ୍ରତି ଐର ଶବ୍ଦ ପ୍ରଯୁକ୍ତ ହୋଇଅଛି । ସେଥିରୁ ସ୍ପଷ୍ଟ ଅନୁମିତ ହୁଏ ଐର ଶବ୍ଦ କୌଣସି ରାଜାଙ୍କର ବ୍ୟକ୍ତିଗତ ନାମ ନଥିଲା । ଏହା ପୂର୍ବ ଅନାର୍ଯ୍ୟସ୍ଥଳୀ ଉତ୍କଳରେ ନବାଗତ ଆର୍ଯ୍ୟ ରାଜାମାନଙ୍କ ପ୍ରତି କେବଳ ଆର୍ଯ୍ୟ ଅର୍ଥରେ ବ୍ୟବହୃତ ହେଉଥିଲା ।

ବ୍ରହ୍ମଦତ୍ତଙ୍କ ବଂଶ ବୌଦ୍ଧ ଉତ୍କଳର ପ୍ରଥମ ରାଜବଂଶ ଅଟେ । ଏହି ବଂଶ ବିତାଡ଼ିତ ହେବାପରେ ଉତ୍କଳ କେତେକାଳ ନନ୍ଦ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା, ଜଣା ନାହିଁ । ତେବେ ଏହା ଅନ୍ତତଃ କିଛୁକାଳ ପାଇଁ ନନ୍ଦ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିବା ବିଷୟରେ କାହାରି ସନ୍ଦେହ ହୋଇ ନପାରେ । ଯେହେତୁ ମେଗାସ୍ଥିନିଜ୍ (Megasthens) ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ନନ୍ଦରାଜାମାନଙ୍କୁ ପ୍ରାଚୀ (ମଗଧ) ଓ ଗଙ୍ଗାରାଦେଶ ଉଭୟର ଅଧୀଶ୍ୱର ବୋଲି ବର୍ଣ୍ଣନା କରିଅଛନ୍ତି ।

Digitized by srujanika@gmail.com

ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କର ଅବ୍ୟବହିତ ପୂର୍ବରେ ନନ୍ଦବଂଶୀୟ ରାଜାମାନେ ଦୁର୍ବଳ ହେବାରୁ ଉତ୍କଳ ସ୍ୱାଧୀନତା ଘୋଷଣା କରିଥିଲା । ମେଗାସ୍ଥିନସ୍ କହନ୍ତି, ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ସମୟରେ ଉତ୍କଳ ଏକ ସ୍ୱାଧୀନ ପରାକ୍ରାନ୍ତ ରାଜ୍ୟ ଥିଲା । କିନ୍ତୁ କେଉଁ ରାଜା କେବେ ମଗଧଠାରୁ ସ୍ୱାଧୀନତା ଘୋଷଣା କରିଥିଲେ ଜଣାନାହିଁ । ଯେ ଯାହାହେଉ, ନନ୍ଦବଂଶର ଅଧୀନରେ ସ୍ୱାଧୀନତା ଘୋଷଣା କଲାପରେ ଖ୍ରୀଷ୍ଟପୂର୍ବ ୨୭୯ ଅବଧିଏ, ଉତ୍କଳରେ ଯେଉଁ ରାଜାମାନେ ରାଜତ୍ୱ କରିଥିଲେ, ସେମାନଙ୍କୁ ବୌଦ୍ଧ ଉତ୍କଳର ଦ୍ୱିତୀୟ ରାଜବଂଶ କୁହାଯାଇ-ପାରେ ।

ପୂର୍ବୋକ୍ତ ଯାଦୁଘର ରକ୍ଷିତ ହସ୍ତଲିପିରେ ଅଛି—

"ଐରେ ଜମ୍ବୁମାପ୍ନୋତି ମହାଦୁଷ୍ଟେନ ମାନସଃ
ସ୍ୱଧର୍ମ ଶ୍ଚୋତ୍କଳେ ଖ୍ୟାତଃ ବେଦଧର୍ମବିନାଶକଃ ।
ଅଶୋକସ୍ୟ ମହାମିତ୍ରଃ ଐରଃ ଉତ୍କଳେଶ୍ୱରଃ
ଏକ ପ୍ରସ୍ତର ଖଣ୍ଡେ ରୁ ପୁଷ୍ପଣଃ ହଟକୋଦ୍ଭମଃ ।
ଖଣ୍ଡଗିରିତ ନାମାନ୍ ମହନ୍ତୁ ଶ୍ଚୋତ୍କଳେ ଭୁବ
ନବାଯକର୍ଣୋର୍ଥ ସ୍ୱ ଦୈବବାଣୀ ରୁ ପ୍ରାପ୍ତବାନ୍ ।
ଅସ୍ମିନ୍ କବସରୁ ରାଜନ୍ ଯାବନ୍ତୁ ତିଷ୍ଠତ ମେଦନୀ ।"

ଉପରୋକ୍ତ ଶ୍ଲୋକରୁ ଅନୁମିତ ହୁଏ ଯେ, ଐର ବା ଉତ୍କଳର ଜଣେ ଆର୍ଯ୍ୟ ରାଜା ନନ୍ଦବଂଶର ଅଧୀନରେ ସ୍ୱାଧୀନତା ଘୋଷଣାକରି ବୌଦ୍ଧ ଉତ୍କଳରେ ଦ୍ୱିତୀୟ ରାଜବଂଶ ସ୍ଥାପନ କରିଥିଲେ । ଏହି ବଂଶର ରାଜାମାନେ ବେଦଧର୍ମ-ବିନାଶକ ଥିଲେ । ମହାରାଜା ଅଶୋକଙ୍କର ସମସାମୟିକ ଏହି ବଂଶର ଜଣେ ରାଜା ଦୈବ ନିର୍ଦେଶାନୁସାରୀ ଖଣ୍ଡଗିରିଠାରେ ରାଜଧାନୀ ସ୍ଥାପନ କରିଥିଲେ । ବୋଧହୁଏ, ତତ୍ପୂର୍ବରେ ଏହି ବଂଶର ରାଜାମାନେ ବୌଦ୍ଧ ଉତ୍କଳର ପ୍ରଥମ ରାଜଧାନୀ ଦନ୍ତପୁରଠାରେ ରାଜତ୍ୱ କରୁଥିଲେ । ଖଣ୍ଡଗିରି ଯେଉଁ ସ୍ଥାନରେ ଅବସ୍ଥିତ, ତାହାକୁ ପୂର୍ବେ ପ୍ରସ୍ତରଖଣ୍ଡ କୁହାଯାଉଥିଲା । ପ୍ରସ୍ତର-ବାହୁଲ୍ୟ ହେତୁରୁ ଏହି ସ୍ଥାନର ପ୍ରସ୍ତରଖଣ୍ଡ ନାମ ଯଥାର୍ଥ ଥିଲା ।

କିନ୍ତୁ ଅଶୋକଙ୍କ ସମସାମୟିକ ଉତ୍କଳରାଜ ନୂତନ ରାଜଧାନୀ ସ୍ଥାପନ କରିବା ପୂର୍ବରୁ ଖଣ୍ଡଗିରି ଦର୍‌ବଦଗଡରେ ବହୁ ପ୍ରତିଷ୍ଠା ଲାଭ କରିଥିବ । ସେଥିପାଇଁ ବୋଧହୁଏ ପ୍ରସ୍ତରଖଣ୍ଡ ବା ଖଣ୍ଡଗିରିର ନାମ ଉତ୍କଳର ରାଜଧାନୀ ସ୍ୱରୂପ ଚନ୍ଦ୍ରଗୁପ୍ତ

Digitized by srujanika@gmail.com

ମୌର୍ଯ୍ୟଙ୍କ ସମସାମୟିକ କାଳରେ ମେଗାସ୍ଥିନିସ୍‌ଙ୍କ ନିକଟରେ ଉପସ୍ଥିତ ହୋଇଥିଲା ଏବଂ ମେଗାସ୍ଥିନିସ୍ ଏହି ଜନଶ୍ରୁତି ଉପରେ ନିର୍ଭର କରି ପ୍ରସ୍ତର ଖଣ୍ଡକୁ ଚନ୍ଦ୍ରଗୁପ୍ତଙ୍କ ସମୟରେ ଉତ୍କଳର ରାଜଧାନୀ ବୋଲି ମନେକରି ତାହାକୁ ପର୍ଥାଲି ନାମରେ ଲିପିବଦ୍ଧ କରିଗଲେ । ପର୍ଥାଲି ବୋଧହୁଏ ବିଦେଶୀୟ ମୁଖରେ ପ୍ରସ୍ତରଖଣ୍ଡ ଶବ୍ଦର ରୂପାନ୍ତର ।

ଆମ୍ଭେମାନେ କହିଅଛୁ, ବୌଦ୍ଧ ଉତ୍କଳର ଦ୍ୱିତୀୟ ବଂଶୀୟ ରାଜାମାନେ ତଥା ଅଶୋକଙ୍କର ସମସାମୟିକ ଉତ୍କଳରାଜ ବେଦଧର୍ମ ବିଜ୍ଞାଣକ ଥିଲେ । ଅଶୋକ ଖ୍ରୀ: ପୂ: ୨୬୧ ଅବ୍ଦରେ ଉତ୍କଳ ଆକ୍ରମଣ କଲେ । ସେ ସେତେବେଳକୁ ଅହିଂସା ଧର୍ମ ଅବଲମ୍ବନ କରି ନ ଥିଲେ । ପ୍ରତ୍ୟହ ରାଜଭବନ ପାଇଁ ଶତଶତପ୍ରାଣୀ ପ୍ରାଣଦାନ କରୁଥିଲେ । ଉତ୍କଳରାଜ ସେତେବେଳେ ମହାପରାକ୍ରାନ୍ତ ଥିଲେ । ସୁତରାଂ ଅଶୋକଙ୍କର କଳିଙ୍ଗ ଯୁଦ୍ଧ ଅତି ଭୀଷଣ ହେବା ସ୍ୱାଭାବିକ । ଏହି ଯୁଦ୍ଧରେ ଉତ୍କଳ ରାଜାଙ୍କର ପ୍ରାୟ ଦେଢ଼ଲକ୍ଷ ସୈନ୍ୟ ହତ ଓ ଆହତ ଏବଂ ପ୍ରାୟ ଏକଲକ୍ଷ ସୈନ୍ୟ ବନ୍ଦୀ ହୋଇଥିଲେ । ଏହି ଭୀଷଣ ନରହତ୍ୟା ଦେଖି ଅଶୋକଙ୍କର ବୈରାଗ୍ୟ ଜାତ ହେଲା । ସେ ଉତ୍କଳକୁ ସ୍ୱ-ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କଲେ ସତ୍ୟ; ମାତ୍ର ସେହିଦିନୁ ସେ ଅସ୍ତ୍ର ଜୟ ପରିହାର କରି ପ୍ରେମର ଜୟ ପାଇଁ ଯତ୍ନବାନ୍ ହେଲେ । ଖ୍ରୀ: ପୂ: ୨୬୧ ଅବ୍ଦରେ ବୌଦ୍ଧ ଉତ୍କଳର ଦ୍ୱିତୀୟ ରାଜବଂଶ ବିଲୁପ୍ତ ହେଲା ।

ଖୁବ୍ ସମ୍ଭବ, ଏହି ଦ୍ୱିତୀୟ ବଂଶୀୟ ରାଜାମାନେ ଜୈନ ଥିଲେ । ସେମାନେ ଦନ୍ତପୁରଠାରୁ ରାଜଧାନୀ ଉଠାଇ ଆଣି ଖଣ୍ଡଗିରିଠାରେ ସ୍ଥାପନ କରିବାର କାରଣ, ପ୍ରଥମୋକ୍ତ ସ୍ଥାନ ପ୍ରଥମ ବଂଶୀୟ ରାଜାମାନଙ୍କ ସମୟରେ ବୌଦ୍ଧଧର୍ମର କେନ୍ଦ୍ରସ୍ଥଳୀ ଥିଲା । ଅତଏବ ଅନୁମିତ ହୁଏ, ଦ୍ୱିତୀୟ ବଂଶୀୟ ରାଜାମାନଙ୍କ ପୂର୍ବରୁ ଜୈନଧର୍ମ ଉତ୍କଳରେ ପ୍ରବେଶ କରି ସମାଜ ମଧ୍ୟରେ ପୋଷକତା ଲାଭ କରିଥିଲା ଏବଂ ଜୈନଧର୍ମାବଲମ୍ବୀମାନେ ଖଣ୍ଡଗିରିକୁ ସେମାନଙ୍କର ଧର୍ମପୀଠ କରିଥିଲେ । ଖଣ୍ଡଗିରି ଓ ଚନ୍ଦ୍ରଗିରି ହିତ ପାହାଡ଼ ଦୁଇ ଭାଗରେ ବିଭକ୍ତ ; ଖଣ୍ଡଗିରି ଓ ଉଦୟଗିରି । ଖଣ୍ଡଗିରିରେ ଜୈନଧର୍ମର ଭଗ୍ନାବଶେଷ ଦେଖାଯାଏ । ଏହାର ଶିଖରରେ ଜୈନମାନଙ୍କର ପୂଜାପୀଠ ପରେଶନାଥ ମନ୍ଦିର ଅବସ୍ଥିତ, ପ୍ରତିବର୍ଷ ମାଘ ସପ୍ତମୀ ଦିନ ଏଠାରେ ଅନେକ ଜୈନ ସମବେତ ହୁଅନ୍ତି । ଭୁବନେଶ୍ୱର ଅଞ୍ଚଳରେ ଗୋଟିଏ କିମ୍ବଦନ୍ତୀ ଅଛି ଯେ, ଖଣ୍ଡଗିରିଠାରେ ପୂର୍ବେ ଐରରାଜା ବାସ କରୁଥିଲେ । ଏଥିରୁ ସ୍ପଷ୍ଟ ପ୍ରତିପନ୍ନ ହୁଏ ଯେ, ଐର ଉପାଧିଧାରୀ ବୌଦ୍ଧ ଉତ୍କଳର ଦ୍ୱିତୀୟ ବଂଶୀୟ ଅର୍ଯ୍ୟରାଜାମାନେ

Digitized by srujanika@gmail.com

ଜୈନଧର୍ମାବଲମ୍ବୀ ଥିଲେ ଏବଂ ସେମାନେ ଉଦୟପୁରଠାରୁ ଜୈନକେନ୍ଦ୍ର ଖଣ୍ଡଗିରିଠାରୁ ରାଜଧାନୀ ଉଠାଇ ନେଇଥିଲେ ।

ଅଶୋକଙ୍କର ଧଉଳି ବିଜୟ ପରେ ବୌଦ୍ଧ ଉତ୍କଳ ମୌର୍ଯ୍ୟ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ମହାରାଜ ଅଶୋକ ବୌଦ୍ଧଧର୍ମ ଅବଲମ୍ବନ କଲେ । ଦେଶ-ବିଦେଶରେ ସ୍ୱଧର୍ମର ପ୍ରଚାର କରିବା ତାଙ୍କର ପ୍ରଧାନ ଲକ୍ଷ୍ୟ ହେଲା । ବୋଧହୁଏ, ଦ୍ୱିତୀୟ ବଂଶୀୟ ରାଜାମାନଙ୍କ ସମୟରେ ରାଜଧାନୀ ଖଣ୍ଡଗିରିର ସୀମା ଭୁବନେଶ୍ୱର ଓ ଧଉଳିକୁ ଅନ୍ତର୍ଭୁକ୍ତ କରିଥିଲା । ସୁତରାଂ ଜୈନ, ବୌଦ୍ଧ ଓ ବ୍ରାହ୍ମଣମାନେ ଯଥାକ୍ରମେ ଏହି ସୀମା ମଧ୍ୟରେ ନିଜ ନିଜର ଧର୍ମପୀଠ ସ୍ଥାପନ କରି ପରସ୍ପର ଧର୍ମର ପ୍ରତିଦ୍ୱନ୍ଦ୍ୱିତା କରିବାକୁ ଲାଗିଲେ । ଉପରୋକ୍ତ ସୀମା ଅବାସ୍ତବ ହେଲେହେଁ ଅସମ୍ଭବ ନୁହେଁ । କପିଳସଂହିତା ଓ ଏକାମ୍ର ଚନ୍ଦ୍ରିକାରେ ବର୍ଣ୍ଣିତ ଭୁବନେଶ୍ୱରର ପ୍ରାଚୀନ ସୀମା ଅନେକ ପରିମାଣରେ ଆମ୍ଭମାନଙ୍କର ଅନୁମାନକୁ ସପ୍ରମାଣ କରୁଅଛି । ଲେଖାଅଛି ଯେ, ଭୁବନେଶ୍ୱରର ସୀମା ଉତ୍ତରରେ ବାଲହା ବା ବଗଳା ଦେବୀଙ୍କଠାରୁ ଦକ୍ଷିଣରେ ଧଉଳି ପାହାଡ଼ସ୍ଥ ଧଉଳେଶ୍ୱର ଏବଂ ପୂର୍ବରେ ଝଙ୍କପାଣି ଗ୍ରାମ ସନ୍ନିକଟସ୍ଥ କୁଣ୍ଡଳେଶ୍ୱରଙ୍କଠାରୁ ପଶ୍ଚିମରେ ଖଣ୍ଡଗିରି ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏହି ସୀମାନ୍ତର୍ଗତ ସ୍ଥାନଖଣ୍ଡ ଉତ୍କଳର ଇତିହାସରେ ସୁପ୍ରସିଦ୍ଧ ନଥିଲେ, ଅଶୋକ ଓ ଖାରବେଳ ଏଠାରେ ଅନୁଶାସନ ଖୋଦନ କରାଇ ନଥାନ୍ତେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଅଶୋକଙ୍କର ଧଉଳି ଅନୁଶାସନ କେବଳ କୌଣସି ଗ୍ରାମ ବା ରାଜଧାନୀ ପାଇଁ ଉଦ୍ଦିଷ୍ଟ ନଥିଲା । ଏହା ସମଗ୍ର ଉତ୍କଳର ଅଧିବାସୀମାନଙ୍କ ପାଇଁ ଖୋଦିତ ହୋଇଥିଲା । ସୁତରାଂ ଧଉଳି ଓ ତତ୍ସନ୍ନିହିତ ଖଣ୍ଡଗିରି ପ୍ରଭୃତି ଅଞ୍ଚଳ ଅନୁଶାସନ କାଳରେ ସମସ୍ତ ଉତ୍କଳ-ଅଧିବାସୀମାନଙ୍କର ସମବେତ ସ୍ଥାନ ହୋଇଥିବ ।

ମହାରାଜ ଅଶୋକ ଜୈନପୀଠ ଖଣ୍ଡଗିରିର ସମ୍ମୁଖରେ ଖଣ୍ଡଗିରି ନଗରୀର ଅନ୍ୟ ସୀମାରେ ନୂତନ ରାଜଧାନୀ ସ୍ଥାପନ କଲେ । ସ୍ଥାନର ନାମାନୁସାରେ ରାଜଧାନୀର ନାମ ତୋଷଳି ହେଲା । ତୋଷଳି ନାମ ଯଥାକ୍ରମେ ତୋହଲି, ଦୋହଲି ଓ ଧଉଳି ନାମରେ ପରିଣତ ହୋଇଅଛି । ଧଉଳି ପାହାଡ଼ରେ ଅନେକ ଭଗ୍ନାବଶେଷ ଅଛି ଏବଂ ଯେଉଁଠାରେ ଭଗ୍ନାବଶେଷମାନ ଅଛି, ସେହିଠାରେ ପୂର୍ବେ ରାଜପ୍ରାସାଦ ଅବସ୍ଥିତ ଥିଲା ବୋଲି ସାଧାରଣ ଲୋକେ କହନ୍ତି । ନିକଟବର୍ତ୍ତୀ ଅଞ୍ଚଳର ଗ୍ରାମବାସୀମାନେ ଧନଲୁବ୍ଧନ ଏହି ଭଗ୍ନାବଶେଷର ଲୋପ ସାଧନ କରୁଅଛନ୍ତି । ରାଜପ୍ରାସାଦର ଅନୁମିତ ସ୍ଥାନ ଅଦ୍ୟାବଧି ତିନିପଟରେ ଧଉଳିର ଉନ୍ନତ ଶିଖରଦ୍ୱାରା ପରିବେଷ୍ଟିତ । ଅନ୍ୟ ଏକ ପଟରେ ତୋଷଳଗଙ୍ଗା ହ୍ରଦ ବା ଲୌକିକ

Digitized by srujanika@gmail.com

କୌଶଲ୍ୟାରଙ୍କ ବସ୍ତୁତ ଅଛୁ । ତୋଷଳ ଡଙ୍ଗା ପୂର୍ବଦିଗରେ ଅବସ୍ଥିତ ଏବଂ ବୋଧହୁଏ ଏହାର ପଶ୍ଚିମପାର୍ଶ୍ୱରେ ରାଜପ୍ରାସାଦର ପ୍ରବେଶ ଦ୍ୱାର ନିର୍ମିତ ହୋଇଥିଲା । ପ୍ରଜାମାନେ ରାଜଭବନକୁ ଆସିଲେ ସହଜରେ ଦେଖିପାରିବେ, ଏଥିପାଇଁ ଅଶୋକ ପ୍ରବେଶ ଦ୍ୱାରର ସମକ୍ଷରେ ଦକ୍ଷିଣ ପାର୍ଶ୍ୱରେ ଅନୁଶାସନ ସ୍ଥାପନ କରାଇଥିଲେ । ଅନୁଶାସନଗୁଡ଼ିକ ଯେଉଁ ଖଣ୍ଡଶୈଳ ଦେହରେ ଖୋଦିତ ହୋଇଅଛି; ତାହାର ଶିଖରରେ ଏକ ପୂର୍ବମୁଖ ହସ୍ତୀ ନିର୍ମିତ ହୋଇଅଛି । ସେଥିପାଇଁ ଏହାକୁ ଅଶ୍ୱତ୍ଥମା ଅନୁଶାସନ କୁହାଯାଏ । ବୌଦ୍ଧମତରେ ହସ୍ତୀ ପୂର୍ବଦିଗର ପାଳକ । ସୁତରାଂ ବୌଦ୍ଧରାଜାଙ୍କ ପ୍ରାସାଦର ପୂର୍ବଦ୍ୱାରରେ ବୌଦ୍ଧ ଅନୁଶାସନ ଉପରେ ପୂର୍ବମୁଖ ହସ୍ତୀ ନିର୍ମିତ ହେବା ସ୍ୱାଭାବିକ ।

ମହାରାଜ ଅଶୋକ ଏହି ତୋଷଳୀ ପ୍ରାସାଦଠାରୁ ଉତ୍କଳ ଶାସନ କରୁଥିଲେ । ତାଙ୍କର ଚତୁର୍ଦ୍ଦଶ ଅନୁଶାସନ ମଧ୍ୟରୁ ଏକାଦଶ, ଦ୍ୱାଦଶ ଓ ତ୍ରୟୋଦଶ ଅନୁଶାସନ ଧଉଳିରେ ପରିଦୃଷ୍ଟ ହୁଏ ନାହିଁ । ତତ୍ ପରିବର୍ତ୍ତେ ଏଠାରେ ଦୁଇଟି ସ୍ୱତନ୍ତ୍ର ଅନୁଶାସନ ପରିଲକ୍ଷିତ ହୁଏ । ଏ ଦୁଇଟି କେବଳ ଉତ୍କଳ ପାଇଁ ଉଦ୍ଦିଷ୍ଟ । ସେଥିପାଇଁ ଏ ଦୁଇଟି ବଡ଼ ବଡ଼ ଅକ୍ଷରରେ ସ୍ୱତନ୍ତ୍ର ଭାବରେ ଲିଖିତ ହୋଇଅଛି । ଏହି ସ୍ୱତନ୍ତ୍ର ଅନୁଶାସନ ଦୁଇଟି ମଧ୍ୟ ଏକ ସମୟରେ ଲିଖିତ ନୁହେଁ । ଅଶୋକଙ୍କର ସମସ୍ତ ଅନୁଶାସନରେ "ସ୍ୱୟଂ ଅଶୋକ ବକ୍ତା—ଦେବା ନାମ ପିୟଦର୍ଶୀ ଅଶୋକ ସମାଦପଶତ ।" କିନ୍ତୁ ଉତ୍କଳର ଉପରୋକ୍ତ ଦୁଇଟି ସ୍ୱତନ୍ତ୍ର ଅନୁଶାସନରେ ସେ ବକ୍ତା ନୁହନ୍ତି; ସେ କେବଳ ଆଦେଷ୍ଟା ସ୍ୱରୂପ ବର୍ଣ୍ଣିତ ହୋଇ ଅଛନ୍ତି । "ଦେବନାପିୟସ ବଚନେନ ।" ଏହା ହିଁ ଅଶୋକଙ୍କର ସାଧାରଣ ଅନୁଶାସନ ଓ କଳିଙ୍ଗର ସ୍ୱତନ୍ତ୍ର ଅନୁଶାସନ ମଧ୍ୟରେ ପ୍ରଧାନ ପାର୍ଥକ୍ୟ ।

ଆମ୍ଭେମାନେ କହିଅଛୁଁ, କଳିଙ୍ଗର ସ୍ୱତନ୍ତ୍ର ଅନୁଶାସନ ଦୁଇଟି ଏକ ସମୟରେ ଲିଖିତ ହୋଇ ନଥିଲା । ପ୍ରଥମଟିରେ ତୋଷଳି ନଗରର ମନ୍ତ୍ରୀ ଓ ରାଜ କର୍ମଚାରୀମାନଙ୍କୁ ସମ୍ବୋଧନ କରାଯାଇ ଅଛି—"ତୋସଲିୟଂ ମହାମାତ ନଗଲ ବିୟୋହାଲକ ବତବିୟଂ ।" କିନ୍ତୁ ଦ୍ୱିତୀୟଟିରେ ତଥସ୍ଥ ମନ୍ତ୍ରୀ ଓ ରାଜକୁମାର ସମ୍ବୋଧିତ ହୋଇଅଛନ୍ତି—"ତୋସଲିୟଂ କୁମାଲ ମହାମାତ ଚ ବତବିୟଂ ।" ଏଥିରୁ ସ୍ପଷ୍ଟ ଅନୁମିତ ହୁଏ, ପ୍ରଥମାବସ୍ଥାରେ ଅଶୋକ କେବଳ କେତେକ କର୍ମଚାରୀଙ୍କ ଦ୍ୱାରା ଉତ୍କଳ ଶାସନ କରୁଥିଲେ । ପ୍ରଥମ ସ୍ୱତନ୍ତ୍ର ଅନୁଶାସନ ଏହି କର୍ମଚାରୀମାନଙ୍କ କର୍ତ୍ତୃତ୍ୱ କାଳରେ ଲିଖିତ ହୋଇଥିଲା । ପରେ ରାଜକୁମାର ବୟଃପ୍ରାପ୍ତ ହେଲାପରେ ସେ ସମ୍ରାଟଙ୍କ ପ୍ରତିନିଧି ସ୍ୱରୂପ ତୋଷଳି ନଗରୀରେ ସ୍ଥାପିତ ହେଲେ ଏବଂ କୁମାରଙ୍କ ଶାସନ ସମୟରେ ଦ୍ୱିତୀୟ ସ୍ୱତନ୍ତ୍ର ଅନୁଶାସନ ଲିଖିତ ହେଲା ।

Digitized by srujanika@gmail.com

ଉଭୟ ସ୍ୱତନ୍ତ୍ର ଅନୁଶାସନରେ କଳିଙ୍ଗର ଅଧିବାସୀମାନେ ଷାଡ଼୍ ଓ ଫାଲ୍‌ଗୁନ ମାସରେ ଅନୁଶାସନ ପାଠ କରିବା ପାଇଁ ଆଦିଷ୍ଟ ହୋଇ ଅଛନ୍ତି । ଜୈନ ମତରେ ମଧ୍ୟ ଏହି ଦୁଇମାସ ପବିତ୍ର । ସୁତରାଂ ବୌଦ୍ଧ ଉତ୍କଳର ଦ୍ୱିତୀୟ ବଂଶୀୟ ରାଜାମାନଙ୍କ ସମୟରେ ଜୈନଧର୍ମର ବ୍ୟାପ୍ତି ସମ୍ବନ୍ଧରେ ଆମ୍ଭମାନଙ୍କର ପୂର୍ବୋକ୍ତ ଅନୁମାନ କେତେକ ପରିମାଣରେ ସପ୍ରମାଣ ହେଉଅଛି ।

ସ୍ୱତନ୍ତ୍ର ଅନୁଶାସନର ଲିଖନ ପ୍ରଣାଳୀରୁ ଅନୁମିତ ହୁଏ, ଅଶୋକ ଉତ୍କଳରେ ବୌଦ୍ଧଧର୍ମର ପ୍ରଚାର ପାଇଁ ସାମାନ୍ୟ ଶକ୍ତି ପ୍ରୟୋଗ କରିଥିଲେ । 'ମୋର ଅଭିଳାଷ ଦୁର୍ବାର', 'ରାଜ କର୍ମଚାରୀମାନେ ଦେଖିବେ', ଯେପରି ନିୟମର କଦାପି ବ୍ୟତିକ୍ରମ ନ ହୁଏ ।' ଏତାଦୃଶ ଭାବବିଶିଷ୍ଟ ବାକ୍ୟମାନ ଆମ୍ଭମାନଙ୍କ ଅନୁମାନର ପକ୍ଷପାତୀ । ବୌଦ୍ଧମତରେ ଏଦୃଶ ବାକ୍ୟ ସମୀଚୀନ ନୁହେଁ । ତଥାପି ଉତ୍କଳ ସମ୍ବନ୍ଧରେ ଅଶୋକ ଏଦୃଶ ଅମର୍ଷିତା ବ୍ୟବହାର କରିବାର କାରଣ ଦ୍ୱିବିଧ ହୋଇପାରେ, ଯଥା—(୧) ଉତ୍କଳର ବିଦ୍ରୋହ ଅବସ୍ଥା । (୨) ଏ ଦେଶରେ ଜୈନଧର୍ମର ତଦାନୀନ୍ତନ ପ୍ରଭାବ ।

ଖ୍ରୀ: ପୂ: ୨୩୨ ଅବ୍ଦରେ ଅଶୋକଙ୍କର ମୃତ୍ୟୁ ହେଲା । ତାହାଙ୍କର ବଂଶଧରମାନଙ୍କ ସମୟରେ ମୌର୍ଯ୍ୟ ସମ୍ରାଜ୍ୟ କ୍ରମଶଃ ଦୁର୍ବଳତର ହୋଇ ଆସିଲା । ଉତ୍କଳ ଅଧିବାସୀମାନେ ଏହି ସୁବିଧା ଦେଖି ସ୍ୱାଧୀନତା ଘୋଷଣା କଲେ ଏବଂ ବୌଦ୍ଧ ଉତ୍କଳର ତୃତୀୟ ରାଜବଂଶ ସ୍ଥାପିତ ହେଲା । ଉଦୟଗିରିସ୍ଥ ହାତୀଗୁମ୍ଫା ଅନୁଶାସନର ନାୟକ ଖାରବେଳ ଏହି ତୃତୀୟ ରାଜବଂଶର ପରାକ୍ରାନ୍ତ ରାଜା— "ତତୀୟେ କଳିଙ୍ଗ ରାଜ ବଂଶେ ।"

ତୃତୀୟ ବଂଶର ସ୍ଥାପୟିତା କିଏ, ଜଣା ନାହିଁ । ହାତୀଗୁମ୍ଫା ଅନୁଶାସନରେ ଅଛି, ଖାରବେଳ କେତୁଭଦ୍ରଙ୍କ କାଷ୍ଠ ନିର୍ମିତ ମୂର୍ତ୍ତିର ଶୋଭାଯାତ୍ରା କରାଇ ତାଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିଥିଲେ । ସେ ମଧ୍ୟ ଐର ଉପାଧିଧାରୀ । "ଐରେଣ ମହାରାଜେନ ମହାମେଘବାହନେନ ଚେତ ରାଜବଂଶ ବର୍ଦ୍ଧନେନ ପସଥ ଶୁଭ ଲଖନେନ ଚତୁରଂ ତଲଥାନ ଗୁଣୋପଗତେନ କଲିଙ୍ଗାଧିପତିନା ଶ୍ରୀର ଖାରବେଳେନ ।" ସୁତରାଂ ଅନୁମିତ ହୁଏ, ଖାରବେଳ ଓ ତାହାଙ୍କର ପୂର୍ବ-ପୁରୁଷମାନେ କେତୁଭଦ୍ରଙ୍କ ବଂଶଜ ଆର୍ଯ୍ୟ ରାଜା ଥିଲେ । ମହାଭାରତ ଯୁଦ୍ଧରେ ଉତ୍କଳ ରାଜାଙ୍କର ଜ୍ୟେଷ୍ଠପୁତ୍ର ଜଣେ କେତୁମାନ୍ ଉତ୍କଳ ସେନାର ନାୟକ ଥିଲେ । ପଶ୍ଚାନ୍ତରେ କେତୁଭଦ୍ର ତ୍ରୟୋଦଶ ଶତବର୍ଷ ପୂର୍ବରେ ଜୀବିତ ଥିବା ଆଲେଚତ ଅନୁଶାସନରୁ ପ୍ରକାଶ । ଆଲେଚତ ଅନୁଶାସନ ଖ୍ରୀ: ପୂ: ୨ୟ ଶତାବ୍ଦୀରେ ଲିଖିତ । ସୁତରାଂ ଅନୁଶାସନୋକ୍ତ କେତୁଭଦ୍ର ମହାଭାରତୋକ୍ତ କେତୁମାନ୍ ହୋଇପାରନ୍ତି ।

Digitized by srujanika@gmail.com

ଖାରବେଳ ଖ୍ରୀ: ପୂ: ୨ୟ ଶତାବ୍ଦୀରେ ରାଜତ୍ୱ କରିଥିଲେ । ହାତୀଗୁମ୍ଫା ଓ ତାଙ୍କର ରଚନା ହାତୀଗୁମ୍ଫା ଅନୁଶାସନ ୧୬୫ ମୌର୍ଯ୍ୟ ବଂଶ ବା ଖ୍ରୀ: ପୂ: ୧୫୭ ଅବ୍ଦରେ (ଖ୍ରୀ: ପୂ: ୩୨୨—୧୬୫ = ୧୫୭ ଖ୍ରୀ: ପୂ:) ଖୋଦିତ ହୋଇଥିଲା । ଏହି ଅବ୍ଦ ତାଙ୍କ ରାଜତ୍ୱର ତ୍ରୟୋଦଶ ବା ଚତୁର୍ଦ୍ଦଶ ବର୍ଷ ଅଟେ । ସେ ନିଜର ପଞ୍ଚବିଂଶ ବର୍ଷ ବୟସରେ ରାଜାରୂପେ ଉତ୍କଳ ସିଂହାସନରେ ଅଭିଷିକ୍ତ ହୋଇଥିଲେ । ସୁତରାଂ ଖ୍ରୀ: ପୂ: ୧୯୭ (୧୫୭+୧୪+୨୫=୧୯୭) ଅବ୍ଦରେ ସେ ଜନ୍ମ ଗ୍ରହଣ କରିଥିବେ । ସେ କିନ୍ତୁ ବୋଧେ ଉତ୍କଳରେ ତୃତୀୟ ରାଜବଂଶର ସ୍ଥାପୟିତା ନଥିଲେ । ସେ ଷୋଡ଼ଶ ବର୍ଷ ବୟସରେ ଯୁବରାଜ ରୂପେ ରାଜ୍ୟ ଶାସନ ଆରମ୍ଭ କଲେ । ସୁତରାଂ ଉକ୍ତବର୍ଷ ଯୌବରାଜ୍ୟ ପୂର୍ବରୁ ତାଙ୍କର ପିତା ବା ପିତାମହ ତାଙ୍କ ଯୌବରାଜ୍ୟପାଇଁ ଖ୍ରୀ: ପୂ: ୧୯୭ ଅବ୍ଦର ପୂର୍ବରୁ ଉତ୍କଳରେ ସ୍ୱାଧୀନ ରାଜ୍ୟ ସ୍ଥାପନ କରିଥିଲେ ।

ଖାରବେଳ ତଥା ତୃତୀୟ ବଂଶୀୟ ରାଜାମାନଙ୍କ ସମୟରେ କଳିଙ୍ଗ ବା ଉତ୍କଳରାଜ୍ୟ ଭାରତରେ ସର୍ବାପେକ୍ଷା ପରାକ୍ରାନ୍ତ ଥିଲା । ରାଜ୍ୟାଭିଷେକର ପ୍ରଥମ ବର୍ଷ, ଅର୍ଥାତ୍ ପଞ୍ଚବିଂଶ ବର୍ଷ ବୟସରେ ଖାରବେଳ ରାଜଧାନୀର ଗୃହ, ପ୍ରାଚୀର ଓ ତୋରଣମାନ ମରାମତି କରାଇଥିଲେ । ଦ୍ୱିତୀୟ ଓ ଚତୁର୍ଥ ବର୍ଷରେ ସେ ଯଥାକ୍ରମେ ମୂଷିକ, ରାଷ୍ଟ୍ରିକ ଓ ଭୋଜକମାନଙ୍କୁ ପରାଜିତ କରିଥିଲେ । ରାଜତ୍ୱର ଅଷ୍ଟମ ବର୍ଷରେ ସେ ମଗଧ ରାଜ୍ୟ ଆକ୍ରମଣ କଲେ । ମଗଧରାଜ ଯୁଦ୍ଧ କରିବାକୁ ସାହସ ନକରି ମଥୁରାକୁ ପଳାୟନ କଲେ । ଖାରବେଳ ପଳାତକ ରାଜାଙ୍କର ଅନୁଧାବନ ନକରି ସ୍ୱରାଜ୍ୟକୁ ପ୍ରତ୍ୟାବର୍ତ୍ତନ କଲେ । ରାଜତ୍ୱର ଦଶମ ଓ ଦ୍ୱାଦଶ ବର୍ଷରେ ସେ ଯଥାକ୍ରମେ ଭାରତର ଉତ୍ତର ଓ ଉତ୍ତରପଶ୍ଚିମ ଅଞ୍ଚଳକୁ ଦିଗ୍ବିଜୟାର୍ଥ ସୈନ୍ୟ ପ୍ରେରଣ କରିଥିଲେ । ଶେଷୋକ୍ତ ବର୍ଷରେ ସେ ମଗଧରାଜ ବୃହସ୍ପତି ମିତ୍ରଙ୍କୁ ପରାଜିତ ଓ ଅଧୀନସ୍ଥ କରି ଅଙ୍ଗ ଓ ମଗଧରୁ ନାନା ରାଜସ୍ୱ ଦ୍ରବ୍ୟ ଘେନି ସ୍ୱଦେଶକୁ ଫେରି ଆସିଥିଲେ । ଶୁଙ୍ଗ ବା ମିତ୍ରବଂଶର ସ୍ଥାପୟିତା ପୁଷ୍ୟମିତ୍ରଙ୍କର ଅନ୍ୟନାମ ବୃହସ୍ପତି ମିତ୍ର ଥିଲା । ଆଦି ଜିନଙ୍କର ଯେଉଁ ମୂର୍ତ୍ତି ବା ପଦଚିହ୍ନକୁ ନନ୍ଦରାଜ ଉତ୍କଳରୁ ନେଇଯାଇଥିଲେ, ଖାରବେଳ ଏହିଥର ତାହା ଛଡ଼ାଇ ଆଣିଥିଲେ । ଏହି ବର୍ଷ ମଧ୍ୟ ଅନେକ ହସ୍ତୀ, ଅଶ୍ୱ, ମଣି, ମୁକ୍ତା ଓ ହସ୍ତି ପୋତ ପାଣ୍ଡ୍ୟ ଦେଶରୁ ଉତ୍କଳକୁ ଆନୀତ ହୋଇଥିଲା ।

ଖାରବେଳଙ୍କ ରାଜଧାନୀ କେଉଁଠାରେ ଅବସ୍ଥିତ ଥିଲା ସେ ସମ୍ବନ୍ଧରେ ଆଲୋଚିତ ଅନୁଶାସନ ସମ୍ପୂର୍ଣ୍ଣ ନୀରବ । ବୋଧହୁଏ ରାଜତ୍ୱର ପ୍ରଥମାବସ୍ଥାରେ ସେ ତୋଷଳି ପ୍ରାସାଦରେ ରହି ଶାସନ କରୁଥିଲେ ଓ ପୂର୍ବପର ତାଙ୍କ ରାଜଧାନୀର ସୀମା

Digitized by srujanika@gmail.com

ଖଣ୍ଡଗିରି ଓ ଭୁବନେଶ୍ୱର ପ୍ରଭୃତିକୁ ଅନ୍ତର୍ଭୁକ୍ତ କରିଥିଲା । ଚୂତାସ୍ତ ବଂଶର ତାଙ୍କ ପରବର୍ତ୍ତୀ ରାଜାମାନେ ମଧ୍ୟ ଏହିଠାରେ ବାସ କରୁଥିଲେ । ରାଜତ୍ୱର ନବମ ବର୍ଷରେ ଖାରବେଳ ଭୁବନେଶ୍ୱରର ଉପକଣ୍ଠସ୍ଥ ପ୍ରାଚୀ ନଦୀ ତଟରେ ବହୁ ଅର୍ଥ ବ୍ୟୟ କରି ଏକ ରାଜପ୍ରାସାଦ କରାଇଥିଲେ ।

"ପ୍ରାଚୀ ତଟେ ରାଜ ନିବାସ ମହାବିଜୟ ପ୍ରାସାଦଂ କାରୟତି ଅଠତିସାୟ ଶତ ସହସେହି ।" ସେହି ଦିନୁ ରାଜବଂଶ ଏହି ନୂତନ ପ୍ରାସାଦରେ ବାସ କରିବାକୁ ଲାଗିଲେ । ହାତୀଗୁମ୍ଫା ଅନୁଶାସନର ଆଦ୍ୟରେ ଏକ ସ୍ୱସ୍ତିକ ଚିହ୍ନ ଦେଖାଯାଏ । ଜୈନ, ବୌଦ୍ଧ ଓ ବ୍ରାହ୍ମଣ ସମସ୍ତେ ସ୍ୱସ୍ତିକ ଚିହ୍ନର ଆଦର କରନ୍ତି । ସୁତରାଂ ଏହି ଚିହ୍ନର ଆବଲମ୍ବନରେ କେବଳ ଖାରବେଳଙ୍କୁ ବୌଦ୍ଧ ମନେକରିବା ସୁସଙ୍ଗତ ନୁହେଁ । କିନ୍ତୁ ଅନୁଶାସନର ପ୍ରାନ୍ତରେ ବୋଧିବୃକ୍ଷର ଚିହ୍ନ ସ୍ୱରୂପ ଏକ ଚିହ୍ନ ପରିଦୃଷ୍ଟ ହୁଏ । ଓଡ଼ିଶାର ବୌଦ୍ଧ ସ୍ତୂପରେ ଏହିପରି ଏକ ଚିହ୍ନ ଅଛି । କେହି କେହି ମଧ୍ୟ କହନ୍ତି ଯେ ଏହା ଏକ ବୌଦ୍ଧ ଏକାକ୍ଷର । ପୁଣି ହାତୀଗୁମ୍ଫା ଅନୁଶାସନ ଜୈନପୀଠ ଖଣ୍ଡଗିରିରେ ଖୋଦିତ ନହୋଇ ବୌଦ୍ଧ ସ୍ତୂପ ବେଷ୍ଟିତ ଉଦୟଗିରିରେ ଖୋଦିତ ହୋଇଥିଲା । ଅଧିକ ମଧ୍ୟ ରାଜତ୍ୱର ଏକାଦଶ ବର୍ଷରେ ଯେ କେତୁଭଦ୍ରଙ୍କ କାଷ୍ଠମୂର୍ତ୍ତିର ଯେଉଁ ଶୋଭାଯାତ୍ରା କରାଇ ଥିଲେ ଠିକ୍ ତାହାର ସଦୃଶ ଶୋଭାଯାତ୍ରା ସାଞ୍ଚି ପ୍ରଭୃତି ବୌଦ୍ଧସ୍ତୂପମାନଙ୍କରେ ଚିତ୍ରିତ ହୋଇଅଛି । ପ୍ରାଚୀତଟରେ ନୂତନ ପ୍ରାସାଦ ଖୋଲାଇ ଥିଲେହେଁ ସେ ବୌଦ୍ଧ ଅନୁଶାସନ ସନ୍ନିହିତ ତୋଷଲି ପ୍ରାସାଦକୁ ପରିତ୍ୟାଗ କରିନଥିଲେ । ତୋଷଲି ପ୍ରାସାଦ ବୋଧହୁଏ ପୂର୍ବବତ୍ ଶାସନ କେନ୍ଦ୍ର ହୋଇଥିଲା । ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ ଟୋଲେମି ତୋଷଲିକୁ ରାଜଧାନୀ ବୋଲି କହି ଅଛନ୍ତି । ଏଥିରୁ ସ୍ପଷ୍ଟ ଅନୁମେୟ ଯେ, ଖାରବେଳ ତଥା ଚୂତାସ୍ତ ରାଜାମାନେ ବୌଦ୍ଧଧର୍ମାବଲମ୍ବୀ ଥିଲେ ।

କିନ୍ତୁ ଖାରବେଳ ଅଶୋକଙ୍କ ପରି ଧର୍ମମତ ହୋଇ ରାଜଧର୍ମ ଭୁଲିଯାଇ ନଥିଲେ । ବୌଦ୍ଧଧର୍ମ ଗ୍ରହଣ କଲାଦିନୁ ଅଶୋକ ଯୁଦ୍ଧକାର୍ଯ୍ୟ ଏକାବେଳେ ପରିତ୍ୟାଗ କରିଥିଲେ । କେହି କେହି ଅନୁମାନ କରନ୍ତି, ରାଜ୍ୟ ଶାସନ ପ୍ରତି ତାଙ୍କର ଅଶ୍ରଦ୍ଧା ହେତୁରୁ ମୌର୍ଯ୍ୟ ସାମ୍ରାଜ୍ୟ କ୍ରମଶଃ ଦୁର୍ବଳତର ହୋଇପଡ଼ିଲା । ପକ୍ଷାନ୍ତରେ ଖାରବେଳ ବୌଦ୍ଧ ଥିଲେହେଁ ବିଦେଶ ଆକ୍ରମଣରୁ କ୍ଷାନ୍ତ ହୋଇ ନଥିଲେ । ତାଙ୍କର ଅଭିଷେକ, ପ୍ରାସାଦ ଗଠନ ଓ ଦିଗ୍ବିଜୟ ପ୍ରଭୃତି କାର୍ଯ୍ୟମାନ ସମ୍ପୂର୍ଣ୍ଣ ରାଜଧର୍ମୋଚିତ ଅଟେ ।

ବୌଦ୍ଧଉତ୍କଳର ଚୂତାସ୍ତ ରାଜବଂଶ କେବେ ବିଲୁପ୍ତ ହେଲା ଜଣା ନାହିଁ । ଖାରବେଳଙ୍କ ପରେ ଆମ୍ଭେମାନେ ଏହି ବଂଶର ଅନ୍ୟ କୌଣସି ରାଜାଙ୍କର ନାମ

Digitized by srujanika@gmail.com

ପାରବାନ୍ତି । ବସ୍ତୁତଃ ଖାରବେଳଙ୍କ ବଂଶଧରମାନେ ବହୁକାଳ ଉତ୍କଳରେ ଶାସନ କରି ବୌଦ୍ଧଧର୍ମର ପୋଷକତା କରିଥିଲେ, ସେଥିରୁ ନଗ୍ରକର ବୌଦ୍ଧଗୁମ୍ଫାମାନ ଖ୍ରୀ: ପୂ: ଦ୍ୱିତୀୟ ଓ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ମଧ୍ୟରେ ଖୋଦିତ ହୋଇଥିଲା ପରି ବୋଧହୁଏ ।

ଉତ୍ତର ଦେଶର ପ୍ରାଚୀନ ଗ୍ରନ୍ଥରୁ ଜଣାଯାଏ ଯେ, କନିଷ୍କର ସମସାମୟିକ ଯୁଗରେ ଅର୍ଥାତ୍ ପ୍ରାୟ ୭୮ ଓ ୧୨୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ଚନ୍ଦ୍ରପାଳିତ ନାମରେ ଉତ୍କଳରେ ଜଣେ ବୌଦ୍ଧ ରାଜା ଥିଲେ । ବୌଦ୍ଧଗ୍ରନ୍ଥ ମଞ୍ଜୁଶ୍ରୀ ତାଙ୍କର ନଗରରେ ରହି ଉତ୍କଳରେ ମହାଯାନ ପନ୍ଥା ପ୍ରଚାର କରୁଥିଲେ । କିନ୍ତୁ ଏହି ରାଜାଙ୍କର ପୂର୍ବାପର ସମ୍ବନ୍ଧରେ ଆମ୍ଭେମାନେ କିଛି ଜାଣୁ ନାହିଁ ।

ଯଯାତିକେଶରୀ ୪୭୪ ଖ୍ରୀଷ୍ଟାବ୍ଦରେ ରାଜ୍ୟାରମ୍ଭ କରିଥିବା ବିଷୟ ଆମ୍ଭେମାନେ ଏହି ପ୍ରବନ୍ଧରେ ଗ୍ରହଣ କରିଅଛୁ । ଦେଶୀୟ ଇତିହାସ କହନ୍ତି ଏହି ବର୍ଷର ପୂର୍ବରୁ ଯବନମାନେ ୧୪୬ ବର୍ଷ କାଳ ଉତ୍କଳରେ ରାଜତ୍ୱ କରିଥିଲେ । ଯବନ ରାଜତ୍ୱ ପୂର୍ବରୁ ନିମ୍ନୋକ୍ତ ରାଜାମାନେ ନିମ୍ନୋକ୍ତ କାଳପାଇଁ ଉତ୍କଳର ରାଜା ଥିଲେ ।

| | | |
|---|---|---|
| ଯଥା :— | ବଟକେଶରୀ— | ୫୧ ବର୍ଷ |
| | ତ୍ରିଭୁବନ ଦେବ— | ୪୩ ବର୍ଷ |
| | ନିର୍ମଳଦେବ— | ୪୫ ବର୍ଷ |
| | ଭୀମଦେବ— | ୩୭ ବର୍ଷ |
| | | ୧୭୬ ବର୍ଷ |
| | ଶୋଭନଦେବ | ୧୦ ବର୍ଷ |

୩୧୮ ଖ୍ରୀଷ୍ଟାବ୍ଦରେ ଭୀମଦେବଙ୍କର ମୃତ୍ୟୁହେବାରୁ ଶୋଭନଦେବ ସିଂହାସନ ଆରୋହଣ କଲେ । ତାହାହେଲେ ଦେଶୀୟ ଇତିହାସ ମତରେ ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀଠାରୁ (୩୧୮—୧୭୬=୧୪୨) ୩୨୮ ଖ୍ରୀଷ୍ଟାବ୍ଦ ଯାଏ (୪୭୪—୧୪୬=୩୨୮) ଉପରୋକ୍ତ ପାଞ୍ଚଜଣ ରାଜା ରାଜତ୍ୱ କରିଥିଲେ । ଏହି ରାଜାମାନଙ୍କର ନାମ ଓ ଶାସନକାଳ ଅବିଶ୍ୱାସ୍ୟ ନୁହେଁ । କିନ୍ତୁ ସେ ସବୁ ଅଦ୍ୟାବଧି ଅନ୍ୟ କୌଣସି ପ୍ରମାଣ ଦ୍ୱାରା ପ୍ରମାଣିତ ହୋଇ ନାହିଁ । ସତ୍ୟାଶ୍ରିତ ହେଲେ ସେମାନଙ୍କୁ ବୌଦ୍ଧ ଉତ୍କଳର ଅନ୍ୟ ଏକ ବଂଶୀୟ ବ୍ରାହ୍ମଣ ଧର୍ମାବଲମ୍ବୀ ରାଜା ବୋଲି ଗ୍ରହଣ କରିବାକୁ ହେବ ।

Digitized by srujanika@gmail.com

ଉପରୋକ୍ତ ପାଞ୍ଚଜଣ ରାଜାଙ୍କୁ ଆମ୍ଭେମାନେ ବ୍ରାହ୍ମଣ ଧର୍ମାବଲମ୍ବୀ ବୋଲି ଗ୍ରହଣ କରିବାକୁ ପ୍ରସ୍ତୁତ ହେବାର କାରଣ, ସେମାନେ ଦେଶୀୟ ଇତିହାସରେ ବ୍ରାହ୍ମଣ ଧର୍ମର ପୋଷକ ସ୍ୱରୂପ ବର୍ଣ୍ଣିତ ହୋଇ ଅଛନ୍ତି । ବ୍ରାହ୍ମଣ ଧର୍ମାବଲମ୍ବୀ ନ ହୋଇଥିଲେ ଦେଶୀୟ ଇତିହାସର ବ୍ରାହ୍ମଣ ଲେଖକ ସେମାନଙ୍କ ପ୍ରତି ଯବନ ବା ଅନ୍ୟ କୌଣସି କୁତ୍ସାଶ୍ରିତ ଶବ୍ଦ ପ୍ରୟୋଗ କରିଥାନ୍ତେ ।

୩୧୮ ଖ୍ରୀଷ୍ଟାବ୍ଦରେ ଯବନମାନେ ରକ୍ତବାହୁଙ୍କ ନେତୃତ୍ୱରେ ଜଳପଥରେ ଆସି ଉତ୍କଳ ଅଧିକାର କଲେ । ଭାରତର ପ୍ରାଚୀନ ସାହିତ୍ୟରେ ଯବନଶବ୍ଦ ବିଦେଶୀୟ ବା ସ୍ଥଳବିଶେଷରେ ବୌଦ୍ଧ ବା ବିଧର୍ମୀ ଅର୍ଥରେ ବ୍ୟବହୃତ ହୋଇଅଛି । ଖ୍ରୀ: ପୂ: ୫୩୮ ଓ ୪୧୧ ଅବ୍ଦ ମଧ୍ୟରେ ଯବନମାନେ ଉତ୍ତର ଭାରତକୁ ଆସି ଉତ୍କଳ ଆକ୍ରମଣ କରିଥିବା ବିଷୟ ଉତ୍କଳ ଇତିହାସରୁ ପ୍ରକାଶ । ଏହି ସମୟରେ ବୁଦ୍ଧଙ୍କର ଶିଷ୍ୟ କ୍ଷେମ ପବିତ୍ର ଦନ୍ତ ଘେନି ଉତ୍କଳରେ ପ୍ରବେଶ କରିଥିବା ବିଷୟ ପୂର୍ବେ କଥିତ ହୋଇଅଛି । ଖ୍ରୀ: ପୂ: ପଞ୍ଚମ ଶତାବ୍ଦୀ ଓ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀ ମଧ୍ୟରେ ମଧ୍ୟ ଯବନମାନଙ୍କର ଏକାଧିକ ଉତ୍କଳ ଆକ୍ରମଣ ଦେଶୀୟ ଇତିହାସରେ ଲିଖିତ ଅଛି । ଏହି ଦୁଇ ଶତାବ୍ଦୀ ମଧ୍ୟରେ ବୌଦ୍ଧ ନରପତିମାନେ ବିଭିନ୍ନ ସମୟରେ ଉତ୍କଳରେ ରାଜପଣ କରିଥିବା ବିଷୟ ଆମ୍ଭେମାନେ ପ୍ରମାଣ କରିଅଛୁ । ଏଥିରୁ ଅନୁମିତ ହୁଏ, ଯଯାତିକେଶରୀଙ୍କ ପୂର୍ବରୁ ଯେଉଁ ଯବନମାନେ ୧୪୬ ବର୍ଷ କାଳ ଉତ୍କଳରେ ରାଜତ୍ୱ କରିଥିଲେ, ସେମାନେ ବୌଦ୍ଧ ଏବଂ ଏହି ହେତୁରୁ ଦେଶୀୟ ଲେଖକ ସେମାନଙ୍କୁ ଯବନ ବୋଲି କହି ଅଛନ୍ତି । ଆମ୍ଭେମାନେ ସେମାନଙ୍କୁ ବୌଦ୍ଧ ଉତ୍କଳର ଅନ୍ୟ ଏକ ରାଜବଂଶ ବୋଲି କହିପାରୁ ।

କବି କାଳିଦାସ ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କର ସମସାମୟିକ । ତାଙ୍କ ସମୟରେ କଂସାଇ ଓ ବୈତରଣୀ ମଧ୍ୟବର୍ତ୍ତୀ ଭୂଖଣ୍ଡକୁ ଉତ୍କଳ ଏବଂ ବୈତରଣୀର ଦକ୍ଷିଣ ଅଞ୍ଚଳକୁ କଳିଙ୍ଗ କୁହାଯାଉଥିଲା । ସେତେବେଳେ ଉତ୍କଳ ବା କଂସାଇ ଓ ବୈତରଣୀର ମଧ୍ୟବର୍ତ୍ତୀ ଭୂଖଣ୍ଡରେ ଏକାଧିକ ନରପତି ଥିବାର ଅନୁମିତ ହୁଏ । "ଉତ୍କଳା ଦର୍ଶିତ ପଥଃ କଳିଙ୍ଗାଭିମୁଖୋ ଯଯୌ ।"

ସମୁଦ୍ରଗୁପ୍ତଙ୍କ ଆଲ୍ଲାହାବାଦ ଅନୁଶାସନରୁ ଜଣାଯାଏ ଯେ ସେତେବେଳେ କଳିଙ୍ଗ ବା ବୈତରଣୀର ଦକ୍ଷିଣ ଅଞ୍ଚଳର ରାଜଧାନୀ ଦକ୍ଷିଣସ୍ଥ ମହେନ୍ଦ୍ର ପର୍ବତ ନିକଟରେ ଅବସ୍ଥିତ ଥିଲା । ବୋଧହୁଏ ବୌଦ୍ଧ ବା ଯବନମାନଙ୍କ ଅଧୀନରେ ଉତ୍କଳ ସାମ୍ରାଜ୍ୟ କ୍ଷୁଦ୍ର ରାଜ୍ୟଖଣ୍ଡମାନଙ୍କରେ ବିଭକ୍ତ ହୋଇଥିଲା । ଏହି ବିଭିନ୍ନ ରାଜ୍ୟଖଣ୍ଡର ଅଧୀଶ୍ୱରମାନେ ପରସ୍ପର ସହିତ ନାନା ବିବାଦରେ ପ୍ରବୃତ୍ତ ହେଉଥିବେ ।

Digitized by srujanika@gmail.com

ବୋଧହୁଏ, ଜନ୍ମେଜୟ ଏହି ଅନ୍ତର୍ବିବାଦ ସାହାଯ୍ୟରେ ଉତ୍କଳର ପଶ୍ଚିମ ସୀମାନ୍ତ ପ୍ରଦେଶମାନ ଅଧିକାର କରିଥିଲେ । ପରେ ପ୍ରବଳ ପ୍ରତାପୀ ଯଯାତି କେଶରୀ ସୁବିଧାର ଅନୁଧାବନ କରି ଅସମୁଦ୍ର ହିମନ୍ତ ଉତ୍କଳଖଣ୍ଡ ହସ୍ତଗତ କଲେ । ଏହାପରେ ୪୭୪ ଖ୍ରୀଷ୍ଟାବ୍ଦରେ ବୌଦ୍ଧ ଉତ୍କଳରେ ଶେଷ ରାଜବଂଶର ଲୋପ ସାଧିତ ହେଲା ।

( ୨ )

## ଶାସନ ନୀତି ଓ ସାମାଜିକ ଅବସ୍ଥା :

ଆମ୍ଭେମାନେ ପୂର୍ବ ଅଧ୍ୟାୟରେ କେତେକ କଳ୍ପନା ଓ କ୍ଷୀଣ ଅବଲମ୍ବନ ସାହାଯ୍ୟରେ ବୌଦ୍ଧଯୁଗର ରାଜାମାନଙ୍କର ଏକ ଧାରାବାହିକ ଇତିହାସ ସ୍ଥାପନ କରିବାକୁ ଚେଷ୍ଟା କରିଅଛୁଁ । ବର୍ତ୍ତମାନ ଏମାନଙ୍କ ସମୟରେ ଉତ୍କଳର ଶାସନନୀତି ଓ ସାମାଜିକ ଅବସ୍ଥା ଆଲୋଚନା କରିବୁ । ଏଠାରେ ମନେ-ରଖିବାକୁ ହେବ ଯେ, ଲିଖିତ ଯୁଗରେ ଉତ୍କଳର ଉପକଣ୍ଠ ଅର୍ଥାତ୍ ବାହାର ପ୍ରଭୃତି ପ୍ରଦେଶରେ ଏକାଧିକ ରାଜା ରାଜତ୍ୱ କରୁଥିଲେ । ଏମାନେ ପ୍ରତ୍ୟେକ ଉତ୍କଳୀୟ ହୋଇ ନିଜ ନିଜର କ୍ଷମତା ବୃଦ୍ଧି କରିବାପାଇଁ ସତତ ଯତ୍ନବାନ୍ ଥିଲେ । ସେଥିପାଇଁ ଆମ୍ଭେମାନେ ଆଲୋଚିତ ଯୁଗରେ ଉତ୍କଳ ଏକାଧିକବାର ଦେଖିବାକୁ ପାଉ ।

ପୁଣି ଆଲୋଚିତ ଯୁଗରେ ରାଜାମାନେ ଅନ୍ୟ ଦେଶ ଜୟ କରିବା ସଙ୍ଗେ ସଙ୍ଗେ ତାହାକୁ ସ୍ୱ-ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରି ସ୍ୱୀୟ କର୍ମଚାରୀମାନଙ୍କ ଦ୍ୱାରା ଶାସନ କରୁଥିଲେ । କାରଣ, ପରାଜିତ ରାଜାମାନେ ପୁନରାୟ ସ୍ୱରାଜ୍ୟରେ ଅଧିଷ୍ଠିତ ହେଲେ ସେମାନେ ବିଜେତାଙ୍କ ଅଧୀନରେ ସ୍ୱାଧୀନତା ଘୋଷଣା କରିବା ପାଇଁ ସର୍ବଦା ସୁଯୋଗ ଅନ୍ୱେଷଣ କରୁଥିଲେ । ସେହିହେତୁରୁ ବୌଦ୍ଧଯୁଗରେ ଉତ୍କଳରେ ଗୋଟିଏ ନିରବଚ୍ଛିନ୍ନ ରାଜବଂଶ ଦେଖାଯାଏ ନାହିଁ । ବୋଧହୁଏ, ଉତ୍କଳର ରାଜାମାନେ ବିଜିତ ହେଲପରେ ବିତାଡ଼ିତ ହେଉଥିଲେ । ପରେ ବିଜିତ ରାଜବଂଶର କୌଣସି ବଂଶଧର କିମ୍ବା ଦେଶସ୍ଥ ଅନ୍ୟ କୌଣସି ବ୍ୟକ୍ତି ସୁଯୋଗ ଦେଖି ନୂତନ ସ୍ୱାଧୀନ ରାଜ୍ୟ ସ୍ଥାପନ କରୁଥିଲେ । ହାତୀଗୁମ୍ଫା ଅନୁଶାସନରେ ଅଛି—

"କଳିଙ୍ଗ ରାଜବଂଶେ ପୁରୁଷ ଯୁଗେ
ମହାରାଜାଭିଷେକଂ ପାପୁନାତି ।"

Digitized by srujanika@gmail.com

ଖାରବେଳ ଏକ ପୁରୁଷ ପାଇଁ ଅଭିଷିକ୍ତ ହୋଇଥିଲେ । ଦ୍ୱିପୁରୁଷ ଅଭିଷେକ ଓ ପୁରୁଷାନୁକ୍ରମ ଅଭିଷେକ ତଦୋଭୟ ଯୁଗରେ ଅବଗତ ନଥିବା ସ୍ଥଳରେ ଖାରବେଳ ଏକ ପୁରୁଷ ପାଇଁ ଅଭିଷିକ୍ତ ହୋଇଥିବାର କାରଣ ବୋଧହୁଏ ସେତେବେଳେ ପ୍ରତ୍ୟେକ ରାଜାଙ୍କ ମୃତ୍ୟୁ ପରେ ତାଙ୍କର ପରବର୍ତ୍ତୀ ରାଜା ଲୋକଙ୍କଦ୍ୱାରା କିମ୍ବା ଲୋକମାନଙ୍କର ପ୍ରତିଭୂସ୍ଥାନୀୟ ବ୍ୟକ୍ତିମାନଙ୍କ ଦ୍ୱାରା ନିର୍ବାଚିତ ହେଉଥିଲେ । କିନ୍ତୁ ଏହା ସ୍ୱୀକାର୍ଯ୍ୟ ଯେ, ଲୋକମାନେ ପ୍ରାୟ ମୃତ ରାଜାଙ୍କ ପୁଅ ବା ବଂଶଧର-ମାନଙ୍କୁ ହିଁ ରାଜା ମନୋନୀତ କରୁଥିଲେ ।

ବ୍ରାହ୍ମଣ ମନ୍ତ୍ରୀମାନେ ରାଜକାର୍ଯ୍ୟରେ ରାଜାଙ୍କର ସହାୟତା କରୁଥିଲେ । ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର ପ୍ରାରମ୍ଭରେ ଆମ୍ଭେମାନେ ଉତ୍କଳ ରାଜାଙ୍କର ଭଦ୍ରପାଳିତ ନାମକ ଜଣେ ବ୍ରାହ୍ମଣ ମନ୍ତ୍ରୀଙ୍କର ଉଲ୍ଲେଖ ଦେଖୁଁ । ରାଜାଙ୍କର କାର୍ଯ୍ୟାବଳୀ ମନ୍ତ୍ରୀ ମାନଙ୍କଦ୍ୱାରା ଅନେକ ପରିମାଣରେ ନିୟନ୍ତ୍ରିତ ହେଉଥିଲା । କିନ୍ତୁ ବୋଧହୁଏ ଏହି ନିୟନ୍ତ୍ରଣ କେବଳ ଦୁର୍ବଳ ରାଜାମାନଙ୍କ ସମୟରେ କାର୍ଯ୍ୟକାରୀ ହେଉଥିଲା ।

ବୌଦ୍ଧଯୁଗରେ ଉତ୍କଳର ପିତୃତୁଲ୍ୟ ଥିବା ରାଜାମାନେ ପ୍ରଜାପୁଞ୍ଜର ଉପକାରାର୍ଥେ ନାନା ସାଧାରଣ କାର୍ଯ୍ୟ କରାଉଥିଲେ । ଯାହା ଦେଖି ଯାଏ ପ୍ରଜାମାନଙ୍କ ପକ୍ଷରେ ଉପକାରୀ, ତାହାର ବିସ୍ତର ରାଜାଙ୍କ ଉପରେ ନିର୍ଭର କରୁଥିଲା ।

ରାଜାମାନେ ରାଜଧାନୀରେ ରହି ରାଜ୍ୟ ଶାସନ କରୁଥିଲେ । ବୌଦ୍ଧଯୁଗର ରାଜଧାନୀ ଏକାଧିକ ପ୍ରାଚୀରବେଷ୍ଟିତ ଦୁର୍ଗମାନ । ଏହି ଦୁର୍ଗ ହିଁ ରାଜାଙ୍କର ପ୍ରାସାଦ । ଏହି ଦୁର୍ଗ ବା ପ୍ରାସାଦ ମଧ୍ୟରେ ହିଁ ଶାସନକାର୍ଯ୍ୟ ସମାହିତ ହୁଏ । ତୋଷଳୀ ଏହିପରି ଏକ ରାଜଧାନୀ ଥିଲା । କାର୍ଯ୍ୟ ନିର୍ବାହରେ ଉତ୍କଳର ସେବାଶ୍ରେଣୀସ୍ଥ ଲୋକେ ଶାସକବୃନ୍ଦ ରାଜପ୍ରାସାଦକୁ ଯାଉଥିବାରୁ ଅଶୋକ ଏହାର ଦ୍ୱାରଦେଶରେ ଅନୁଶାସନ ଖୋଦନ କରାଇଥିଲେ । କିନ୍ତୁ ରାଜଧାନୀ ସବୁ ଏକାଧିକ ଗ୍ରାମର ସମଷ୍ଟି ହେଲେହେଁ, ଏଥିରେ ପ୍ରଶସ୍ତ ମାର୍ଗ, ସୁବୃହତ୍ ତୋରଣ, ସୁଦୀର୍ଘ ପ୍ରାଚୀର ଓ ସୁଶୋଭିତ ଗୃହମାନ ଥିଲା । ପୂର୍ବୋକ୍ତ ତୋଷଳୀ ଓ ପ୍ରସ୍ତରଖଣ୍ଡ ଏହିପରି ରାଜଧାନୀ ହୋଇଥିବ । ଖାରବେଳ ରାଜତ୍ୱର ପ୍ରଥମ ବର୍ଷରେ ରାଜଧାନୀର ବାତ୍ୟାଭଗ୍ନ ଗୃହ, ପ୍ରାଚୀର ଓ ତୋରଣମାନ ମରାମତି କରାଇଥିଲେ ।

ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ରାଜଧାନୀ ପାଟଳୀପୁତ୍ର ଛଅଗୋଟି ସଙ୍ଘ ବା ସ୍ୱାୟତ୍ତ ଦ୍ୱାରା ପରିଚାଳିତ ହେଉଥିଲା । ପ୍ରତ୍ୟେକ ସଂଘରେ ପାଞ୍ଚଜଣ ଲୋକେ

Digitized by srujanika@gmail.com

ସଭ୍ୟ ଥିଲେ । ସାମ୍ରାଜ୍ୟର ପ୍ରତ୍ୟେକ ବଡ଼ ବଡ଼ ନଗର ଏବଂ ଏହି ସଂଘଦ୍ୱାରା ପରିଚାଳିତ ହେଉଥିଲା । ରାଜଧାନୀ ଓ ତାହାର ନିକଟରେ ଥିବା ନଗରର ସଂଘମାନ ସମ୍ରାଟଙ୍କ ଶାସନ କେନ୍ଦ୍ରର ଅଧୀନରେ ସଂଶ୍ଳିଷ୍ଟ ଥିଲେ । ପକ୍ଷାନ୍ତରେ, ପ୍ରାଦେଶିକ ରାଜଧାନୀର ଓ ପ୍ରାଦେଶିକ ନିକଟରେ ଥିବା ନଗରର ସଂଘମାନ ପ୍ରାଦେଶିକ ଶାସନକେନ୍ଦ୍ରର ଅଧୀନସ୍ଥ ଥିଲା । ଅଶୋକ ବୋଧହୁଏ ପିତାମହଙ୍କର ଏହି ପ୍ରଣାଳୀ ଅନୁସରଣ କରିଥିଲେ । ତାହାହେଲେ ତାଙ୍କ ସମୟରେ ତୋଷଳି ନଗରୀ ଓ ଉତ୍କଳର ଅନ୍ୟାନ୍ୟ ନଗରମାନେ ପ୍ରଥମେ ମନ୍ତ୍ରୀ ଓ ଧର୍ମମହାମାତ୍ରମାନଙ୍କ ଅଧୀନରେ ଏବଂ ପରେ ରାଜକୁମାର ଏବଂ ଧର୍ମମହାମାତ୍ରମାନଙ୍କ ଅଧୀନରେ ଏହି ସମୟରେ ପରିଚାଳିତ ହେଉଥିବା ନଗରର ଉପରୋକ୍ତ ସଂଘ ବା ପଞ୍ଚାୟତମାନ ବୌଦ୍ଧ ଯୁଗରେ ସ୍ୱାୟତ୍ତଶାସନର ପ୍ରମାଣ ।

ବୌଦ୍ଧଯୁଗରେ ସ୍ୱାୟତ୍ତଶାସନ ଥିବା ହାତୀଗୁମ୍ଫା ଅନୁଶାସନରୁ ସହଜରେ ଅନୁମିତ ହୁଏ । ସେଥିରେ ଅଛି—

"ଅନୁଗହ ଅନେକାନି ଶତ ସହସାନି ବିସଜତି ପୋରଂ ଜାନପଦଂ ।"

ବୋଧହୁଏ, ଉତ୍କଳରେ ଗ୍ରାମ ଓ ନଗରର ଅଧିବାସୀମାନଙ୍କର ସଙ୍ଘ ଥିଲା । ଏହି ପୌର ଓ ଜାନପଦ ସଙ୍ଘମାନଙ୍କ ଉପରେ ପୁର (ନଗର) ଓ ଜନପଦର ପରିଚାଳନ ଭାର ଅର୍ପିତ ହୋଇଥିଲା । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ ଖାରବେଳ ଏହି ସଙ୍ଘମାନଙ୍କୁ କେତେକ ନୂତନ ଅଧିକାର ପ୍ରଦାନ କରିଥିଲେ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ବୌଦ୍ଧଯୁଗରେ ଉତ୍କଳରେ ନଗର ସଂଖ୍ୟା ଅତି ଅଳ୍ପ ଥିଲା । କେବଳ ବୌଦ୍ଧଯୁଗରେ ବା ଉତ୍କଳରେ ନୁହେଁ, ଭାରତରେ ସବୁଯୁଗରେ ନଗର ସଂଖ୍ୟା ଗ୍ରାମ ତୁଳନାରେ ଅତି ଅଳ୍ପ । ଭାରତୀୟମାନଙ୍କର ସାଧାରଣ ବ୍ୟବସାୟ କୃଷି, ବାଣିଜ୍ୟ ନୁହେଁ । ଏହା ହିଁ ନଗରସ୍ୱଳ୍ପତାର ପ୍ରଧାନ କାରଣ । ସେଥିପାଇଁ ଭାରତ-ଇତିହାସରେ ଗ୍ରାମର ଉନ୍ନତି ଓ ଅବନତି ସଙ୍ଗେ ଭାରତର ଉନ୍ନତି ଓ ଅବନତି ସଂଶ୍ଳିଷ୍ଟ । ନିଖିଳ ଭାରତ ପକ୍ଷରେ ଯେଉଁ ନିୟମ ପ୍ରଯୋଜ୍ୟ, ତହିଁରୁ ଆମ୍ଭମାନଙ୍କର ଉତ୍କଳଭୂମି ବହିର୍ଭୂତ ନୁହେଁ ।

ଉପରୋକ୍ତ, ହାତୀଗୁମ୍ଫା ଅନୁଶାସନରୁ ଜଣାଯାଏ ଯେ, ବୌଦ୍ଧଯୁଗରେ ଉତ୍କଳର ଗ୍ରାମମାନଙ୍କରେ ପରିଚାଳନା ସଙ୍ଘ ବିଦ୍ୟମାନ ଥିଲା । ଗ୍ରାମବାସୀମାନେ ଏହି ସଂଘର ସଭ୍ୟ ଥିଲେ । ସ୍ଥଳବିଶେଷରେ ସଙ୍ଘ ପରିବର୍ତ୍ତରେ ଜଣେ ଜଣେ ଗ୍ରାମମୁଖ୍ୟ ବା ଗ୍ରାମପ୍ରଧାନ ଥିଲେ । ଏମାନେ କୌଣସିଠାରେ ଗ୍ରାମବାସୀମାନଙ୍କଦ୍ୱାରା ନିର୍ବାଚିତ ହେଉଥିଲେ । ଏହି ସଙ୍ଘ ବା ଗ୍ରାମମୁଖ୍ୟମାନେ ଗ୍ରାମ ମଧ୍ୟରେ

Digitized by srujanika@gmail.com

କଳହ ବିବାଦ ଆଦିର ବିଚାର କରୁଥିଲେ, ସେହିମାନେ ଗ୍ରାମର ରାଜସ୍ୱ ଆଦାୟ କରି ରାଜକୋଷକୁ ଅର୍ପଣ କରୁଥିଲେ ।

ପ୍ରତ୍ୟେକ ଗ୍ରାମ କୂପ, ପୁଷ୍କରିଣୀ ଓ ସୁଶୀତଳ ଛାୟାବୃକ୍ଷଦ୍ୱାରା ପୂର୍ଣ୍ଣ ଥିଲା । ଗ୍ରାମର ଉପକଣ୍ଠରେ ଶସ୍ୟକ୍ଷେତ୍ରମାନ ବିସ୍ତୃତ ଥିଲା । ଗ୍ରାମବାସୀମାନେ ଆପଣା ଆପଣା ମଧ୍ୟରେ ଏହି କ୍ଷେତ୍ରମାନ ବଣ୍ଟନ କରି ଶସ୍ୟ ଉତ୍ପାଦନ କରି ଗୃହକୁ ନେଉଥିଲେ । କିନ୍ତୁ କୌଣସି ଗ୍ରାମବାସୀ କୌଣସି କ୍ଷେତ୍ରଖଣ୍ଡର ଏକା ଏକା ଅଧିକାରୀ ନଥିଲେ । ସେ ସମସ୍ତ ଗ୍ରାମବାସୀମାନଙ୍କ ଅନୁମତି ବିନା ତାଙ୍କ ଅଧିକୃତ କ୍ଷେତ୍ରଖଣ୍ଡକୁ ଅନ୍ୟ କାହାରିକୁ ଦେଇପାରୁ ନଥିଲେ । ଶସ୍ୟକ୍ଷେତ୍ରର ଅପର ପାର୍ଶ୍ୱରେ ଚତୁର୍ଦ୍ଦିଗରେ ଅରଣ୍ୟ ଓ ଗୋଚର ଭୂମି ବିଦ୍ୟମାନ ଥିଲା । ଅରଣ୍ୟରୁ କାଠ ଆଣିବା ଓ ଗୋଚର ଭୂମିରେ ଗୋମହିଷାଦି ଚରାଇବା ପାଇଁ ସମସ୍ତ ଗ୍ରାମବାସୀମାନଙ୍କର ସମାନ ଅଧିକାର ଥିଲା । କୌଣସି ଗ୍ରାମବାସୀ ତାହାର ସାଧାରଣ ଅଧିକାରରୁ ବଞ୍ଚିତ ହେଉନଥିଲା । ଗ୍ରାମବାସୀମାନେ ମିଳିତହୋଇ ଗ୍ରାମ ମଧ୍ୟରେ ବିଶ୍ରାମ ଗୃହ ସ୍ଥାପନ, ଜଳାଶୟ ଖନନ, ମାର୍ଗ ଓ ସଭାମଣ୍ଡପର ନିର୍ମାଣ ପ୍ରଭୃତି କାର୍ଯ୍ୟମାନ କରୁଥିଲେ । ରାଜାମାନେ ମଧ୍ୟ ପ୍ରଜାଙ୍କର ସୁବିଧାପାଇଁ ହିତକର କାର୍ଯ୍ୟମାନ କରିବାରେ ପଶ୍ଚାତ୍‌ପଦ ନଥିଲେ । ଖାରବେଳ ରାଜତ୍ୱର ପଞ୍ଚମ ବର୍ଷରେ ଜଳସେଚନର ସୁବିଧାପାଇଁ ନନ୍ଦରାଜଙ୍କ ଖୋଳିତ ନାଳକୁ ସ୍ୱୀୟ ରାଜଧାନୀ ପର୍ଯ୍ୟନ୍ତ ଅଣାଇଥିଲେ । ଆଜି ଯେଉଁ ସହଯୋଗର ଅଭାବ ହେତୁରୁ ଉତ୍କଳ ତଥା ଭାରତ-ବର୍ଷର ସର୍ବନାଶ ହୋଇଅଛି, ବୌଦ୍ଧଯୁଗରେ ତାହା ଜାଗ୍ରତ ରହି ଏ ଦେଶର ଗ୍ରାମ ଓ ନଗରମାନଙ୍କୁ ସ୍ୱର୍ଗରେ ପରିଣତ କରିଥିଲା । ଗ୍ରାମବାସୀମାନଙ୍କର ଯେଉଁ ଦ୍ରବ୍ୟମାନ ପ୍ରୟୋଜନୀୟ, ସେହି ଦ୍ରବ୍ୟମାନ ଯୋଗାଇବା ପାଇଁ ପ୍ରତ୍ୟେକ ଗ୍ରାମରେ ବିଭିନ୍ନ ବ୍ୟବସାୟର ଲୋକେ ବାସ କରୁଥିଲେ । ଏହି ବ୍ୟବସାୟୀମାନଙ୍କ ମଧ୍ୟରୁ କେହି କେହି ଅନ୍ୟାନ୍ୟ ଗ୍ରାମବାସୀମାନଙ୍କ ପରି କ୍ଷେତ୍ରଖଣ୍ଡର ଅଧିକାରୀ ଥିଲେ । କେହି ଅବା ପ୍ରଥାନୁଯାୟୀ ବର୍ଷ ଶେଷରେ ପ୍ରତ୍ୟେକ ଗ୍ରାମବାସୀଠାରୁ କିଛି କିଛି ଶସ୍ୟ ସଂଗ୍ରହକରି ବାର୍ଷିକପାଇଁ ଭରଣପୋଷଣର ସଂସ୍ଥାନ କରୁଥିଲେ । ଅଦ୍ୟାବଧି ଶେଷୋକ୍ତ ପ୍ରଥାଟି ଆମ୍ଭମାନଙ୍କ ଦେଶରେ ଧୋବା ଓ ଭଣ୍ଡାରି ପ୍ରଭୃତି ଗ୍ରାମ-ସେବକମାନଙ୍କ ମଧ୍ୟରେ ଜାଗ୍ରତ ରହିଅଛି । ବସ୍ତୁତଃ ବୌଦ୍ଧଯୁଗରେ ଉତ୍କଳର ଗ୍ରାମବାସୀମାନେ କୌଣସି ଦ୍ରବ୍ୟପାଇଁ ବାହାରକୁ ଯାଉ ନଥିଲେ । ସେମାନଙ୍କ ସ୍ୱଳ୍ପ ଅଭାବ ଗ୍ରାମ୍ୟ ଅରଣ୍ୟ ଓ ଶସ୍ୟକ୍ଷେତ୍ରଦ୍ୱାରା ଦୂରୀଭୂତ ହେଉଥିଲା । ଫଳରେ କୌଣସି ଗ୍ରାମରେ ଧନୀ ନ ଥିଲେ ବା ଦରିଦ୍ର ନଥିଲେ । ସମାଜର ଧନ ସମାଜ ମଧ୍ୟରେ ସମାନଭାବରେ ବଣ୍ଟିତ ହେଉଥିଲା ।

Digitized by srujanika@gmail.com

ଯୋଗୀବର ଶଙ୍କର କହୁଅଛନ୍ତି, "ଅର୍ଥମନର୍ଥଂ ଭାବୟ ନିତ୍ୟଂ ।" ଅର୍ଥ ହିଁ ସର୍ବପ୍ରକାର ଅନର୍ଥର ମୂଳ । ଦେଶର ଅର୍ଥ ଉପରୋକ୍ତମତେ ଲୋକମାନଙ୍କ ମଧ୍ୟରେ ସମାନରୂପେ ବଣ୍ଟିତ ହେଉଥିବାସ୍ଥଳରେ ସମାଜରେ ଅନର୍ଥର କୌଣସି କାରଣ ନଥିବା ସ୍ୱାଭାବିକ । ସେଥିପାଇଁ ବୌଦ୍ଧଯୁଗରେ ଅପରାଧର ସଂଖ୍ୟା ଅତି ଅଳ୍ପ ଥିଲା । ସମାଜରେ ଅତ୍ୟାଧିକ ଧନୀ ବା ଅତ୍ୟାଧିକ ଆତତାୟୀ ପ୍ରାୟ ନଥିଲେ । ଲୋକମାନଙ୍କୁ ଅପରାଧରୁ କ୍ଷାନ୍ତ କରିବା ସକାଶେ ସର୍ବୋଚ୍ଚ ଦଣ୍ଡର ଭୟ ଦେଖାଇବା ଆବଶ୍ୟକ ନଥିଲା । କୌଣସି ଲୋକ ଅପରାଧ କଲେ ତାହା ଆକସ୍ମିକ ବିବେଚିତ ହେଉଥିଲା । ମହାରାଜା ଅଶୋକ ସେଥିପାଇଁ କଳିଙ୍ଗର ସ୍ୱତନ୍ତ୍ର ଅନୁଶାସନରେ ନରହତ୍ୟାକାରୀଙ୍କୁ ମଧ୍ୟ କେବଳ କାରାଦଣ୍ଡ ଦେବାପାଇଁ ଆଦେଶ କରିଅଛନ୍ତି ।

କିନ୍ତୁ ଉପରୋକ୍ତ ବର୍ଣ୍ଣନାରୁ କେହି ମନେକରିବେ ନାହିଁ ଯେ ବୌଦ୍ଧ-ଯୁଗରେ ଉତ୍କଳସମାଜ ଏକାବେଳକେ ଦୋଷଶୂନ୍ୟ ଥିଲା; ଏପରିକି କୌଣସି ରାଜା ବା ମହାରାଜା ନଥିଲେ ମଧ୍ୟ ଲୋକମାନେ ସ୍ୱଚ୍ଛନ୍ଦରେ ବାସ କରୁଥିଲେ । ବରଂ ରାଜା ଓ ରାଜପୁରୁଷମାନଙ୍କ ସହାୟତା ହେତୁରୁ ସମାଜରେ ଯଥାବିଧି ଶାନ୍ତି ଓ ଶୃଙ୍ଖଳା ରକ୍ଷାପାଉଥିଲା । ବିଶେଷତଃ ବୌଦ୍ଧ ଉତ୍କଳରେ ରାଜା ଅତି ପ୍ରୟୋଜନୀୟ ଥିଲେ । ଏହାଙ୍କର ଅଭାବରେ ହୁଏତ ଜୈନ, ବୌଦ୍ଧ ଓ ବ୍ରାହ୍ମଣମାନେ ଉତ୍କଳ-ଖଣ୍ଡକୁ ରକ୍ତ-ସ୍ରୋତରେ ଭସାଇଆନ୍ତେ । ଉତ୍ତରାଗତ ଆର୍ଯ୍ୟ ଏବଂ ଆଦିମ ଅଧିବାସୀ ଅନାର୍ଯ୍ୟମାନଙ୍କ ମଧ୍ୟରେ ତୁମୁଳ ଦ୍ୱନ୍ଦ୍ୱ ସଂଘଟିତ ହୋଇଥାନ୍ତା । ଅତଏବ ମଧ୍ୟ ତତ୍କାଳୀନ ଯୁଗରେ ରାଜା, ଜାତିର ପ୍ରତିନିଧି ଓ ଜାତୀୟ ଗୌରବର ପ୍ରତିନିଧି ସ୍ୱରୂପ ବିବେଚିତ ହେଉଥିଲେ । ଏହିସବୁ କାରଣରୁ ହିଁ ବୌଦ୍ଧ ଉତ୍କଳରେ ରାଜଶାସନ ସଂସ୍ଥାପନ ହୋଇଥିଲା ଏବଂ ପିତୃତୁଲ୍ୟ ଶାସନ ହେତୁରୁ ରାଜାମାନଙ୍କର ଭକ୍ତି ଦୃଢ଼ୀଭୂତ ହୋଇଥିଲା । ଲୋକେ ସମସ୍ୱରରେ ରାଜବଂଶର ଚିରସ୍ଥିତି ବାଞ୍ଛାକରୁଥିଲେ ।

ପ୍ରଜାମାନେ ଉତ୍ପନ୍ନ ଶସ୍ୟର ଏକଷଷ୍ଠାଂଶ ରାଜାଙ୍କୁ କର ସ୍ୱରୂପ ଅର୍ପଣ କରୁଥିଲେ । ଏହି କର ପ୍ରାୟ ଶସ୍ୟ ଆକାରରେ ପ୍ରଦତ୍ତ ହେଉଥିଲା । ରାଜା ଏତଦ୍ୱାରା ନିଜର ଓ ଶାସନର ଖର୍ଚ୍ଚ ଚଳାଇ ଅବଶିଷ୍ଟାଂଶକୁ ସାଧାରଣଙ୍କର ହିତକର କାର୍ଯ୍ୟରେ ପ୍ରୟୋଗ କରୁଥିଲେ ।

ଉତ୍କଳର ଚତୁର୍ଦ୍ଦିଗରେ ବିଜୟଲିପ୍ସୁ ରାଜାମାନେ ବେଷ୍ଟନ କରିଥିଲେ । ଅନ୍ତରରେ ମଧ୍ୟ କ୍ଷମତାପ୍ରିୟ ଦଳ ବା ବ୍ୟକ୍ତିବିଶେଷର ଅଭାବ ନଥିଲା । ଆର୍ଯ୍ୟରାଜାମାନେ ଅନାର୍ଯ୍ୟମାନଙ୍କୁ ପରାସ୍ତ କରି ସେମାନଙ୍କୁ ବଶୀଭୂତ କରିବା ଉଦ୍ଦେଶ୍ୟରେ ସ୍ଥାୟୀ ସୈନ୍ୟର ସୂତ୍ରପାତ କରିଥିଲେ । ସେହିଦିନୁ ସ୍ଥାୟୀ ସୈନ୍ୟ

Digitized by srujanika@gmail.com

ପ୍ରଥା ଭାରତରେ ଚଳି ଆସୁଥିଲା । ବୌଦ୍ଧଯୁଗରେ ଉତ୍କଳର ରାଜାମାନେ ଏହି ପ୍ରାଚୀନ ପ୍ରଥା ଅନୁସରଣ କରି ଅନ୍ତଃଶତ୍ରୁ ଓ ବହିଃଶତ୍ରୁର ଦମନାର୍ଥ ସ୍ଥାୟୀ ସୈନ୍ୟ ରଖୁଥିଲେ । ଏହି ସୈନ୍ୟ ପ୍ରାଚୀନ ରୀତି ଅନୁଯାୟୀ ଚତୁଃଶ୍ରେଣୀରେ ବିଭକ୍ତ ଥିଲା । ଯଥା :—ହସ୍ତୀ, ଅଶ୍ୱ, ରଥ ଓ ପଦାତିକ । କଥିତ ଅଛି, ମେଗାସ୍ଥିନସ୍‌ଙ୍କ ସମୟରେ ଉତ୍କଳ ସୈନ୍ୟରେ ୭୦୦ ହସ୍ତୀ, ୧୦୦ ଅଶ୍ୱାରୋହୀ ୬୦,୦୦୦ ପଦାତିକ ଥିଲେ ଏବଂ ଅଶୋକଙ୍କ ଉତ୍କଳ ଯୁଦ୍ଧ ସମୟରେ ଉତ୍କଳ ସେନାର ସଂଖ୍ୟା ଅନେକ ଲକ୍ଷ ଥିଲା ।

ଏହି ବୃହତ୍ ସୈନ୍ୟ ଯୋଗାଇବା ପାଇଁ ଉତ୍କଳର ତଦାନୀନ୍ତନ ଲୋକ-ସଂଖ୍ୟା ତଦନୁରୂପ ବୃହତ୍ ହୋଇଥିବ । ଖାରବେଳଙ୍କ ହାତୀଗୁମ୍ଫା ଅନୁଶାସନରୁ ଜଣାଯାଏ ଯେ, ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ ଉତ୍କଳର ଲୋକସଂଖ୍ୟା ୩୫୦,୦୦୦୦ ଥିଲା । —'ପନତି ସାହି ଶତ ସହସେହି ପକାତିୟୋ' ଅର୍ଥାତ୍ ପଞ୍ଚତିରିଶ ଶହ ହଜାର ପ୍ରକୃତି ବା ପ୍ରଜା ।

ଆମ୍ଭେମାନେ ପୂର୍ବେ କହିଅଛୁଁ, ବୌଦ୍ଧ ଯୁଗରେ ଉତ୍କଳୀୟମାନେ ଗ୍ରାମ ସନ୍ନିକଟସ୍ଥ ପ୍ରକୃତ ରାଜ୍ୟରୁ ଜୀବନଧାରଣର ଉପଯୋଗୀ ଦ୍ରବ୍ୟମାନ ଉତ୍ପାଦନ କରି ଆତ୍ମନିର୍ଭର ଭାବରେ ଗ୍ରାମ ବା ନଗର ମଧ୍ୟରେ ବାସ କରୁଥିଲେ । କିନ୍ତୁ ତାହା ବୋଲି ଦେଶ ମଧ୍ୟରେ ଓ ବିଦେଶ ସଙ୍ଗେ ବାଣିଜ୍ୟ ବ୍ୟବସାୟର ଏକାନ୍ତ ଅଭାବ ନଥିଲା ; ବରଂ ନାନାବିଧ ବାଣିଜ୍ୟ ସମାଜ ମଧ୍ୟରେ ସଙ୍ଗତି ବୃଦ୍ଧିର ସହାୟକ ଥିଲା । ଏକାଧିକ ଲୋକ ମିଳିତ ହୋଇ ଗୋଟିଏ ଗୋଟିଏ ବାଣିଜ୍ୟ ସଙ୍ଘ ସ୍ଥାପନ କରୁଥିଲେ । ସଙ୍ଘର ସଭ୍ୟମାନେ ସମାନ ସ୍ୱତ୍ୱରେ ଜାହାଜ ନିର୍ମାଣର ବ୍ୟୟ ବହନ କରୁଥିଲେ । ଏହି ସଙ୍ଘ ନଦୀ ବା ସମୁଦ୍ରର ବକ୍ଷରେ ଯାଇ ଦେଶ ବିଦେଶରେ ବାଣିଜ୍ୟ କରୁଥିଲେ । ବାଣିଜ୍ୟ ଶିକ୍ଷା ରାଜପୁତ୍ରମାନଙ୍କ ଶିକ୍ଷାର ଏକ ଅଙ୍ଗ ଥିଲା । ଚନ୍ଦ୍ରଗୁପ୍ତଙ୍କ ସମୟରେ ପୋତ ନିର୍ମାଣ ରାଜାମାନଙ୍କର ଏକଚାଟିଆ ଅଧିକାରଭୁକ୍ତ ଥିଲା । କୌଣସି ବ୍ୟକ୍ତି ବା ସଙ୍ଘ ବାଣିଜ୍ୟ କରିବାକୁ ଇଚ୍ଛା କଲେ ସେ ସରକାରଙ୍କ ଠାରୁ ଜାହାଜ ଭଡ଼ା ନେଉଥିଲେ । ଉତ୍କଳର ଉପକୂଳରେ ଅବସ୍ଥିତ ଅନେକ ବନ୍ଦର ପର୍ଯ୍ୟନ୍ତ ଗୋଟିଏ ସମୁଦ୍ର ମାର୍ଗ ବିଦ୍ୟମାନ ଥିଲା । ଏହା ଛଡ଼ା ଦେଶ ମଧ୍ୟରେ ମଧ୍ୟ ବାଣିଜ୍ୟ କରିବା ପାଇଁ ସୁବିଧାଜନକ ମାର୍ଗମାନ ଥିଲା । ସାଗର ବକ୍ଷରେ ପୋତରୁ ପତାକା-ସଙ୍କେତ ଦ୍ୱାରା ପରସ୍ପର ସହିତ କଥାବାର୍ତ୍ତା କରୁଥିଲେ । ହସ୍ତୀଦନ୍ତ ଓ ସୂକ୍ଷ୍ମ ବସ୍ତ୍ର ଉତ୍କଳର ପ୍ରଧାନ ରପ୍ତାନି ଦ୍ରବ୍ୟ ଥିଲା । ଲୋକମାନେ ଦ୍ରବ୍ୟ ବା ସ୍ଥାନ ବିଶେଷର ଅର୍ଥର ବିନିମୟରେ ବାଣିଜ୍ୟ କରୁଥିଲେ । ତାମ୍ର ମୁଦ୍ରା ବହୁ ପରିମାଣରେ ବ୍ୟବହୃତ ହେଉଥିଲା । ପୁରୀ, କଟକ, ବାଲେଶ୍ୱର

Digitized by srujanika@gmail.com

ଓ କୋଣାର୍କ ପ୍ରଭୃତି କେତେକ ସ୍ଥାନ ଏହି ସମୟରେ ବାଣିଜ୍ୟକେନ୍ଦ୍ର ଥିଲା । ଚିଲିକା ହ୍ରଦ, ମହାନଦୀ, ବ୍ରାହ୍ମଣୀ ଓ ବୈତରଣୀ ପ୍ରଭୃତି ନଦୀମାନ ବାଣିଜ୍ୟୋପଯୋଗୀ ଥିଲା । ଏହି ଯୁଗରେ ବ୍ୟବହୃତ ପୋତମାନଙ୍କର ଆକୃତି କ୍ଷୁଦ୍ର ନଥିଲା । ଦ୍ରୋଣ ଦ୍ୱାରା ଜାହାଜର ଗତି ପରିଚାଳିତ ହେଉଥିଲା । ଜାଭା, ବ୍ରହ୍ମ, ସିଂହଳ, ଗ୍ରୀସ ଓ ରୋମ ପ୍ରଭୃତି ଦେଶ ସଙ୍ଗେ ଉତ୍କଳୀୟମାନେ ସମୁଦ୍ର ପଥରେ ଯାଇ ବାଣିଜ୍ୟ କରୁଥିଲେ । ଜଳମାର୍ଗର ଅଭାବ ସ୍ଥଳରେ ଶକଟଯୋଗେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଦ୍ରବ୍ୟ ସବୁ ବହନ କରୁଥିଲେ ।

ତତ୍କାଳୀନ ଉତ୍କଳୀୟମାନଙ୍କର ପାରିବାରିକ ଜୀବନ ଶାନ୍ତିମୟ ଓ ଆମୋଦପୂର୍ଣ୍ଣ ଥିଲା । ଗୃହେ ଗୃହେ ଭାଗ୍ୟଲକ୍ଷ୍ମୀ ବିରାଜମାନ କରୁଥିଲେ । ଆଜି ଯେଉଁ ରମଣୀମାନେ ପୁରୁଷର କେବଳ ସ୍ନେହସଙ୍ଗିନୀ ହୋଇଅଛନ୍ତି, ସେମାନେ ତଦାନୀନ୍ତନ ଯୁଗରେ ସୂଣୀତଳ ବୃକ୍ଷ ଛାୟାରେ ବସି ସୂତା କାଟଣ ଓ ବସ୍ତ୍ର ବୟନ ଦ୍ୱାରା ଗୃହେ ଗୃହେ, ତଥା ସମାଜ ମଧ୍ୟରେ ଐଶ୍ୱର୍ଯ୍ୟ ବୃଦ୍ଧି କରୁଥିଲେ । ଜାଉଁଳିଆ ଅନ୍ନ ଲୋକମାନଙ୍କର ପ୍ରଧାନ ଖାଦ୍ୟ ଥିଲା । ସାଧ୍ୱୀ ପତ୍ନୀ ସ୍ୱାମୀଙ୍କର ଉଚ୍ଛିଷ୍ଟ ଭୋଜନ କରୁଥିଲେ । କର୍ତ୍ତବ୍ୟନିଷ୍ଠ ପୁତ୍ର ପିତାଙ୍କର ବୃଦ୍ଧାବସ୍ଥାରେ ଗୃହ ଚଳନ ଭାର ବହନ କରୁଥିଲେ । ଅତିଥିସତ୍କାର ଗୃହସ୍ଥର ପ୍ରଧାନ ଧର୍ମ ଥିଲା । ପରସ୍ପର ମଧ୍ୟରେ ଉପଢୌକନାଦିର ଆଦାନ ପ୍ରଦାନ ହେଉଥିଲା । ଲୋକମାନେ ନାନାପ୍ରକାର ସୂକ୍ଷ୍ମ ବସ୍ତ୍ର ବ୍ୟବହାର କରୁଥିଲେ । ଉତ୍କଳରାଜ କୋଶଳ ରାଜାଙ୍କୁ ଯେଉଁ ବସ୍ତ୍ର ଉପହାର ଦେଇଥିଲେ, ତାହା ଏତେ ସୂକ୍ଷ୍ମ ଥିଲା ଯେ, ବୌଦ୍ଧ ସନ୍ନ୍ୟାସିନୀ ତାକୁ ପରିଧାନ କରି ଉଲଗ୍ନା ବୋଲି ଉପହସିତା ହୋଇଥିଲେ । ଉଦୟଗିରିର ରାଣୀ ଗୁମ୍ଫା ଦେହରେ ଗୋଟିଏ ପ୍ରସ୍ତର ନିର୍ମିତ ପୁରୁଷ ମୂର୍ତ୍ତି ଅଛି । ଏହି ମୂର୍ତ୍ତି ଅନେକ ଆଧୁନିକ ଉତ୍କଳୀୟମାନଙ୍କ ପରି କଚ୍ଛ ନ ଦେଇ ଧୋତି ପିନ୍ଧି ଅଛି । ଧୋତିଟି ଜଙ୍ଘରେ କ୍ଷୁଦ୍ରଭୂମି ପର୍ଯ୍ୟନ୍ତ ଲମ୍ବି ଅଛି । ଚାଦର ଖଣ୍ଡି କଟିଦେଶର ଚତୁଃପାର୍ଶ୍ୱରେ ମେଖଳା ସ୍ୱରୂପ ବନ୍ଧା ହୋଇଅଛି । ବୋଧହୁଏ ବୌଦ୍ଧ ଯୁଗରେ ଏହା ଉତ୍କଳୀୟମାନଙ୍କର ସାଧାରଣ ପରିଧାନ ରୀତି ଥିଲା । ଖଣ୍ଡଗିରିର ଅନନ୍ତ ଗୁମ୍ଫାରେ ଏହିପରି ଧୋତି ଚାଦର ପରିହିତ ଦଉଟି ପୁରୁଷ ମୂର୍ତ୍ତି ଅଛି । ଏମାନେ ହାତରେ ଝଞ୍ଜ୍ର ଓ କାନରେ ବଡ଼ ବଡ଼ ବୋଲି ପିନ୍ଧିଅଛନ୍ତି । ବୌଦ୍ଧଯୁଗରେ ଉତ୍କଳୀୟ ପୁରୁଷମାନଙ୍କର ଅଳଙ୍କାର ଗହଣ ଏହି ମୂର୍ତ୍ତି ଦ୍ୱାରା ପ୍ରମାଣିତ ହୋଇଅଛି । ଉପରୋକ୍ତ ରାଣୀ ଗୁମ୍ଫାରେ ମଧ୍ୟ ଜୋତା ଓ ଚାପକାନ୍ ପିନ୍ଧିଥିବା ଅନ୍ୟ ଗୋଟିଏ ମୂର୍ତ୍ତି ଅଛି । ଏହାର ଅଣ୍ଟାର ବାମ ପାଖରେ ଥିବା କମରରେ ବାମ ପାର୍ଶ୍ୱରେ ଖଣ୍ଡା ଝୁଲୁଅଛି । ଏହାର ମସ୍ତକରେ ଉଷ୍ଣୀଷ ବା ପଗଡ଼ି ଅଛି । ଏହି ବେଶ ଯେ ଗ୍ରୀସୀୟ ଅନୁକରଣ ନୁହେଁ, ତାହା ଆମ୍ଭେମାନେ ଯଥା ସ୍ଥାନରେ ଆଲୋଚନା କରିବୁ । ଏଠାରେ ଏତିକି ମାତ୍ର

ଅନୁମେୟ ଯେ, ବୌଦ୍ଧ ଯୁଗରେ ଉତ୍କଳୀୟ ଯୋଦ୍ଧା ବା ରାଜପୁରୁଷମାନେ ଏହାଦୃଶ ପରିଚ୍ଛଦ ବ୍ୟବହାର କରୁଥିଲେ । ଲୋକମାନେ ନାନାପ୍ରକାର ଗୀତ, ନାଟ୍ୟ, ବାଦ୍ୟ ଓ ଚିତ୍ରବିଦ୍ୟା ଶିକ୍ଷା କରୁଥିଲେ । ଖାରବେଳଙ୍କ ରାଜତ୍ଵର ତୃତୀୟ ବର୍ଷରେ ରାଜଧାନୀର ଅଧିବାସୀମାନଙ୍କୁ ନାନା ଗୀତ, ନାଟ୍ୟ ଓ ବାଦ୍ୟ ଦ୍ଵାରା ସନ୍ତୁଷ୍ଟ କରାଇଥିଲେ । ରାଣୀଗୁମ୍ଫାର ପ୍ରାଚୀର ଦେହରେ ଏକ ଉତ୍ସବ ଅବକାଳ ଆଧୁନିକ ନର୍ତ୍ତକୀ ପରି ନୃତ୍ୟ କରୁଛି ।

ଯୋଦ୍ଧାମାନେ ଢାଲ, ବର୍ଚ୍ଛା, ତରବାରି ଓ ଧନୁଶର ଯୋଗେ ଯୁଦ୍ଧ କରୁଥିଲେ । ସମୟ ସମୟରେ ସ୍ତ୍ରୀମାନେ ମଧ୍ୟ ଅସ୍ତ୍ର ଶସ୍ତ୍ର ଧରି ଯୁଦ୍ଧ କରୁଥିବା ଅନୁମିତ ହୁଏ । ରାଣୀଗୁମ୍ଫା ଓ ଗଣେଶ ଗୁମ୍ଫାରେ ଚିତ୍ରିତା ଯୋଦ୍ଧୃ ରମଣୀ ବାଙ୍କୀ ମହର୍ଷୀ ଶୁକଦେବୀଙ୍କୁ ଚିତ୍ରପଟରେ ଜାଗ୍ରତ କରାଏ । ଅଶ୍ଵାରୋହୀମାନେ ସୁଶିକ୍ଷିତ ଅଶ୍ଵ ବ୍ୟବହାର କରୁଥିଲେ । ସ୍ତ୍ରୀମାନେ ଅଶ୍ଵାରୋହଣ କରୁଥିବା ମଧ୍ୟ ରାଣୀ ଗୁମ୍ଫାର ଶିଳ୍ପ ଚିତ୍ରରୁ ଅନୁମିତ ହୁଏ ।

ଲୋକମାନେ ହାତୀ ଧରିବା ଓ ଶିକାର କରିବା କାର୍ଯ୍ୟରେ ବିଶେଷ ଆମୋଦ ଉପଭୋଗ କରୁଥିଲେ । ରାଣୀ ଗୁମ୍ଫାରେ ଏକ ଶିକାରୀ ହରିଣର ଚିତ୍ର ଅଛି । ଧନୀମାନେ ଶକଟ, ଶିବିକା ପାଲଙ୍କି ଆଦି ଯାନ ବ୍ୟବହାର କରୁଥିଲେ । ରାଜାମାନଙ୍କ ଚଳଣରେ ଛତ୍ର ଓ ଚାମର ଆଦି ବ୍ୟବହୃତ ହେଉଥିଲା । ସ୍ତ୍ରୀମାନେ ରାଜାମାନଙ୍କର ଶରୀରରକ୍ଷିଣୀ କାର୍ଯ୍ୟ କରୁଥିଲେ । ରାଜା ଓ ରାଜପୁରୁଷମାନେ ସାଧାରଣତଃ ଆଡ଼ମ୍ବରପ୍ରିୟ ଥିଲା ପରି ବୋଧହୁଏ ।

ସୁତରାଂ ଆଲୋଚିତ ଯୁଗରେ ଉତ୍କଳୀୟମାନେ ପିତୃତୁଲ୍ୟ ନରପତିମାନଙ୍କ ଅଧୀନରେ ସରଳ, ସ୍ଵାଧୀନ, ସଙ୍ଗଠନମୂଳକ ଭାବରେ ବାସ କରି ନାନା ବିଶେଷ ଆମୋଦ ପ୍ରମୋଦ ଦ୍ଵାରା ଜୀବନ କଟାଉଥିଲେ ।

**ସ୍ଥାପତ୍ୟ ;**

ରସ୍କିନ କହନ୍ତି, ସ୍ଥାପତ୍ୟ ଧର୍ମ ସ୍ମୃତିର ଆଲୋକ ହେବା ଉଚିତ । ଅର୍ଥାତ୍ ଜାତି ତଥା ଦେଶର ଇତିହାସ ସମସାମୟିକ ସ୍ଥାପତ୍ୟ ଦ୍ଵାରା ରକ୍ଷିତ ହେବା ଉଚିତ୍ । ବୌଦ୍ଧଯୁଗରେ ଉତ୍କଳୀୟ ସ୍ଥାପତ୍ୟ ବହୁ ପରିମାଣରେ ସମସାମୟିକ ଇତିହାସର ଚିତ୍ର ଥିଲାପରି ବୋଧହୁଏ । ପୂର୍ବ ଅଧ୍ୟାୟରେ ଆମ୍ଭେମାନେ ବୌଦ୍ଧ ଉତ୍କଳର କେତେକ ଆଚାର ଓ ବ୍ୟବହାର ସମସାମୟିକ ସ୍ଥାପତ୍ୟର ଅବଲମ୍ବନରେ ଉପସ୍ଥାପିତ କରିଅଛୁ । ବୌଦ୍ଧ ଉତ୍କଳର ସ୍ଥାପତ୍ୟ ବହୁ

Digitized by srujanika@gmail.com

ବିଦେଶୀୟ ଅନୁକରଣ କି ନା ଏବଂ ଏଦ୍ୱାରା ପ୍ରକୃତ ଉପସ୍ଥିତ ଅଧ୍ୟାୟରେ ଆଲୋଚିତ ହେବ ।

କୌଣସି କୌଣସି ପାଶ୍ଚାତ୍ୟ ଲେଖକମାନଙ୍କ ମତରେ ମହାରାଜ ଅଶୋକଙ୍କ ରାଜତ୍ୱ ପୂର୍ବରୁ ଭାରତରେ ପ୍ରସ୍ତର ଶିଳ୍ପ ଅବିଦିତ ଥିଲା । ଖ୍ରୀ: ପୂ: ୪ର୍ଥ ଶତାବ୍ଦୀର ଶେଷଭାଗରେ ଆଲେକ୍‌ଜାଣ୍ଡରଙ୍କ ଭାରତ ଆଗମନ ଯୋଗୁଁ ଭାରତୀୟମାନେ ପାଶ୍ଚାତ୍ୟ ଶିଳ୍ପ ଓ ସଭ୍ୟତା ସମ୍ବନ୍ଧରେ ଜ୍ଞାନ ଲାଭ କଲେ । ପରେ ମହାରାଜ ଅଶୋକଙ୍କ ସମୟରେ ବୌଦ୍ଧଧର୍ମ ଦେଶ ବିଦେଶରେ ପ୍ରବର୍ତ୍ତିତ ହେଲା । ଭାରତୀୟମାନେ ଗ୍ରୀସ୍ ରୋମ୍ ଓ ଆସିରୀୟା ଏବଂ ତଦ୍ଦେଶୀୟ ଲୋକମାନେ ଭାରତକୁ ଧର୍ମ ସମ୍ପର୍କରେ ଯାତାୟାତ କଲେ । ଭାରତୀୟମାନେ ତଥା ଭାରତ ସମ୍ରାଟ ଅଶୋକ ମୌର୍ଯ୍ୟ ଉକ୍ତ ଦେଶ ପ୍ରଚଳିତ ପ୍ରସ୍ତର ଶିଳ୍ପର ଅନୁକରଣ କରି ସ୍ୱଦେଶରେ ଏହି ବିଦ୍ୟାର ସୂତ୍ରପାତ କଲେ । ଅଶୋକଙ୍କ ପୋଷକତା ଦ୍ୱାରା ପ୍ରସ୍ତର ଦେହରେ ଅନୁଶାସନ ଖୋଦିତ ହେଲା । ଭାରତର ଚତୁର୍ଦ୍ଦିଗରେ ପ୍ରସ୍ତର ନିର୍ମିତ ସ୍ତମ୍ଭ, ସ୍ତୂପ ଓ ବିହାରମାନ ସ୍ଥାପିତ ହେଲା । କାଳକ୍ରମେ ଦେଶୀୟ ବା ବିଦେଶୀୟ ଶିଳ୍ପୀମାନେ ନାନାପ୍ରକାର ବିଦେଶ ପ୍ରଚଳିତ ଚିତ୍ରମାନ ଭାରତ ଶିଳ୍ପ ଦେହରେ ଅଙ୍କନ କରିବାକୁ ଲାଗିଲେ । ଏହା ହିଁ ପାଶ୍ଚାତ୍ୟ ମତରେ ଭାରତୀୟ ପ୍ରସ୍ତରଶିଳ୍ପର ପ୍ରାରମ୍ଭ ଇତିହାସ ।

ଭାରତ ଶିଳ୍ପ ସମ୍ବନ୍ଧୀୟ ଉପରୋକ୍ତ ମତାମତ ଉତ୍କଳୀୟ ଶିଳ୍ପପ୍ରତି ମଧ୍ୟ ପ୍ରଯୁକ୍ତ ହୋଇଅଛି । ରାଣୀଗୁମ୍ଫା ଓ ଗଣେଶ ଗୁମ୍ଫାର ଉପାନ୍ତସ୍ଥ ପରିହିତ ପୂର୍ବୋକ୍ତ ପ୍ରସ୍ତର ମୂର୍ତ୍ତି, ଖଣ୍ଡଗିରି ଓ ଉଦୟଗିରିର ଶିଳ୍ପକୃତ ଉପଯୁକ୍ତ ପ୍ରାଣୀ ଓ ଚିତ୍ର ପ୍ରଦର୍ଶିତ ଅସୀରୀୟ ଲତାପୁଷ୍ପ ଉତ୍କଳୀୟ ତଥା ଭାରତୀୟ ଶିଳ୍ପର ଅନୁକୃତ ସମ୍ବନ୍ଧରେ ଉଦାହରଣ-ସ୍ୱରୂପ ଗୃହୀତ ହୋଇଅଛି ।

ଉକ୍ତ ଅନୁମାନ କିନ୍ତୁ ଯୁକ୍ତିସଙ୍ଗତ ନୁହେଁ । ଆଲେକ୍‌ଜାଣ୍ଡର ଭାରତର ସୁଦୂର ଉତ୍ତର ପଶ୍ଚିମ ଅଞ୍ଚଳରେ କେବଳ ପ୍ରବେଶ କରିଥିଲେ ମାତ୍ର । ସେ ଅତି ଅଳ୍ପକାଳ ଉକ୍ତ ଅଞ୍ଚଳରେ ବାସ କରିଥିଲେ । ଭାରତରେ କିମ୍ବା ଭାରତ ସମାଜରେ ତାଙ୍କ ଆଗମନର କୌଣସି ଚିରସ୍ଥାୟୀ ଚିହ୍ନ ରହିବା ଦୂରେ ଥାଉ ତାଙ୍କର ପ୍ରତ୍ୟାଗମନ ସଙ୍ଗେ ସଙ୍ଗେ ଲୋକେ ତାଙ୍କ ନାମ ପର୍ଯ୍ୟନ୍ତ ଭୁଲି ଯାଇଥିଲେ । ପୁଣି ଭାରତୀୟମାନଙ୍କୁ ଶିଳ୍ପ ବିଦ୍ୟା ଶିକ୍ଷା ଦେବାପାଇଁ ଆଲେକ୍‌ଜାଣ୍ଡରଙ୍କ ଅନୁଚରମାନଙ୍କ ମଧ୍ୟରେ ଯଥାବଶ୍ୟକ ଶିଳ୍ପୀ ନ ଥିବେ । ଆଉ ମଧ୍ୟ ଆଲେକ୍‌ଜାଣ୍ଡରଙ୍କ ଗମନ ଦ୍ୱାରା ଭାରତ ସମାଜରେ କୌଣସି ପରିବର୍ତ୍ତନ ଘଟିଥିବା ସ୍ୱୀକାର କଲେ ମଧ୍ୟ ଉକ୍ତ ପରିବର୍ତ୍ତନ ସୁଦୂର ଉତ୍କଳ ପର୍ଯ୍ୟନ୍ତ ନ ଥିବ । ପକ୍ଷାନ୍ତରେ, ରାମାୟଣ,

Digitized by srujanika@gmail.com

ମହାଭାରତ ଓ ଚନ୍ଦ୍ରଗୁପ୍ତଙ୍କ ସମୟରେ କାଷ୍ଠ ପ୍ରସ୍ତର ଓ ଇଷ୍ଟକ ନିର୍ମିତ ଗୃହ, ପ୍ରାସାଦ ଓ ଦେବାଳୟମାନ ଅବସ୍ଥିତ ଥିବା ଦେଶୀୟ ସାକ୍ଷ୍ୟ ଦ୍ୱାରା ପ୍ରମାଣିତ ହୋଇଅଛି। ଅଳ୍ପଦିନ ପୂର୍ବେ ଚନ୍ଦ୍ରଗୁପ୍ତଙ୍କ ରାଜଧାନୀ ପାଟଳୀପୁତ୍ରର କାଷ୍ଠ ଓ ଇଷ୍ଟକ ନିର୍ମିତ ଭଗ୍ନାବଶେଷମାନ ଭୂପୃଷ୍ଠରୁ ଖୋଦିତ ହୋଇଅଛି । ସୁତରାଂ ଆଲେକ୍‌ଜାଣ୍ଡରଙ୍କ ସମୟରେ ବିଦେଶୀୟ ଅନୁକରଣରେ ଭାରତୀୟ ତଥା ଉତ୍କଳୀୟମାନଙ୍କର ଶିଳ୍ପଶିକ୍ଷା ଓ ସର୍ବପ୍ରଥମେ ଅଶୋକଙ୍କ ସମୟରେ ଭାରତର ପ୍ରସ୍ତର ଶିଳ୍ପର ପ୍ରାରମ୍ଭବାଦ ସମ୍ପୂର୍ଣ୍ଣ ଅମୂଳକ ବୋଧହୁଏ। ପକ୍ଷାନ୍ତର ପ୍ରସ୍ତରର ସୁଲଭତା ଦୃଷ୍ଟିରେ ଭାରତୀୟ ଶିଳ୍ପୀ ସଭ୍ୟତାର ପ୍ରଥମ ଦିନରୁ ଏହି ଦ୍ରବ୍ୟର ଆରମ୍ଭ କରିଥିବା ସ୍ୱାଭାବିକ। ଅଶୋକଙ୍କ ପ୍ରାକ୍‌କାଳୀନ ପ୍ରସ୍ତରଶିଳ୍ପର ଭଗ୍ନାବଶେଷ କୌଣସିଠାରେ ପରିଦୃଷ୍ଟ ନହେବାର କାରଣ ବୋଧହୁଏ କାଳର କରାଳ ସଂହରଣ ଧର୍ମ ।

ଭାରତର ନାନା ଅଞ୍ଚଳରେ ଯେଉଁ ସବୁ ଅଶୋକ-ସ୍ତମ୍ଭ ଦେଖାଯାଏ, ସେଗୁଡ଼ିକୁ ସର୍ବାଙ୍ଗସୁନ୍ଦର କହିଲେ ଅତ୍ୟୁକ୍ତି ହେବ ନାହିଁ। ବରଂ ତାହା ତୁଳନାରେ ପରବର୍ତ୍ତୀ ଯୁଗର ସ୍ତମ୍ଭମାନ କଦାକାର ବୋଧହୁଏ । ପୁଣି ଅଶୋକଙ୍କ ଅନୁଶାସନ-ଲିପି ସୁନ୍ଦର ଏବଂ ସୁସ୍ପଷ୍ଟ। ଯଦି ଅଶୋକଙ୍କ ସମୟରେ ଭାରତରେ ସର୍ବପ୍ରଥମେ ପ୍ରସ୍ତର ଶିଳ୍ପର ସୂତ୍ରପାତ ହେଲା, ତାହା ହେଲେ ତାଙ୍କର ସମସାମୟିକ ସ୍ତମ୍ଭ ଏବଂ ଲିପିଗୁଡ଼ିକ ଏଭଳି ସର୍ବାଙ୍ଗସୁନ୍ଦର ହେଲା କିପରି ? ଏସବୁ ନିର୍ମାଣ ଓ ଖୋଦନ କରିବାପାଇଁ ଆଲେକ୍‌ଜାଣ୍ଡାର ଭାରତରେ ପାଶ୍ଚାତ୍ୟ ଶିଳ୍ପୀ ଛାଡ଼ିଯାଇଥିଲେ କି ? ସ୍ୱୀକାର୍ଯ୍ୟ, ସେ ବହୁ ସଂଖ୍ୟକ ଶିଳ୍ପୀ ଭାରତରେ ଛାଡ଼ିଯାଇଥିଲେ । ତାହାହେଲେ ଏହି ଶିଳ୍ପୀମାନେ ବୌଦ୍ଧଯୁଗର ଭାରତୀୟ ସ୍ଥାପତ୍ୟକୁ ପାଶ୍ଚାତ୍ୟ ଆଦର୍ଶରେ ଗଠନ କଲେ ନାହିଁ କାହିଁକି ? ଆସିରୀୟବାସୀମାନଙ୍କର ଗୃହ ଓ ମନ୍ଦିରର ଉପରିଭାଗ ସମତଳ । ପକ୍ଷାନ୍ତରେ, ଭାରତୀୟ ତଥା ଉତ୍କଳୀୟମାନେ ଉପରିଭାଗକୁ ବକ୍ରରେଖା ବିଶିଷ୍ଟ (Curvilinear) କରି ନିର୍ମାଣ କରନ୍ତି ।

ବସ୍ତୁତଃ ଭାରତୀୟ ତଥା ଉତ୍କଳୀୟ ସ୍ଥାପତ୍ୟ ପାଶ୍ଚାତ୍ୟ ଶିଳ୍ପର ଅନୁକରଣ ନୁହେଁ । ଏଥିରେ କୌଣସି ପାଶ୍ଚାତ୍ୟ ଶିଳ୍ପର ଚିହ୍ନ ପରିଲକ୍ଷିତ ହୁଏ ନାହିଁ । ଏହାର ଜନ୍ମ ବୃଦ୍ଧି ଓ ପୁଷ୍ଟି ଏହି ଦେଶ ମଧ୍ୟରେ ହିଁ ହୋଇଅଛି । ଉତ୍କଳୀୟ ସ୍ଥାପତ୍ୟର ଅନ୍ତର୍ଗତ ପକ୍ଷଯୁକ୍ତ ପ୍ରାଣୀ ଓ ଅସୀରୀୟ ଲତା ବୃକ୍ଷ ବୋଲି। ଅଦୃଷ୍ଟ ହୋଇନାହିଁ। ଏତଦ୍‌ବ୍ୟତିରିକ୍ତ ପ୍ରସ୍ତର ପ୍ରାଚୀରର ପରିଚ୍ଛଦକୁ (ତୋଡ଼ା ଓ ଟପକନ୍) ବୈଦେଶୀୟ କହିବାର ଅନ୍ୟ କୌଣସି କାରଣ ନାହିଁ । ବରଂ ଏହା ବୌଦ୍ଧ ଉତ୍କଳରେ

Digitized by srujanika@gmail.com

ପ୍ରଚଳିତ ନିର୍ମାଣ ପଦ୍ଧତିର ଉଦାହରଣ । ଆଜନ୍ତାଙ୍କ ସମୟରେ ସର୍ବପ୍ରଥମେ ନିର୍ମିତ ପଦ୍ଧତି ସ୍ଥାନରେ ବ୍ୟବହୃତ ହେବା ମତ ଏତଦ୍ଦ୍ୱାରା ଖଣ୍ଡିତ ହେଉଅଛି । ମାନସାର ପ୍ରଭୃତି ଶିଳ୍ପଶାସ୍ତ୍ରମାନଙ୍କରେ ଶିଳ୍ପ ସମ୍ବନ୍ଧୀୟ ଯେଉଁ ନିୟମମାନ ଲିପିବଦ୍ଧ ହୋଇଅଛି, ତାହା କିମ୍ବା ତଦନୁରୂପ କୌଣସି ନିୟମ ପାଶ୍ଚାତ୍ୟ ସାହିତ୍ୟରେ ପରିଦୃଷ୍ଟ ହୁଏ ନାହିଁ । ଅନୁକରଣକାରୀ ଏଭଳି ସ୍ୱତନ୍ତ୍ର ନିୟମମାନ ପ୍ରଣୟନ କରିପାରେ କି ?

ତଥାପି ଏତିକି ମାତ୍ର କୁହାଯାଇପାରେ ଯେ, ଭାରତର ଉତ୍ତର ପଶ୍ଚିମ ଅଞ୍ଚଳ ବିଦେଶର ନିକଟସ୍ଥ ଥିବାରୁ ଏଠି ପ୍ରଚଳିତ ସ୍ଥାପତ୍ୟ ମୌର୍ଯ୍ୟ ଯୁଗରେ ବିଦେଶୀୟ ଦ୍ୱାରା କିଞ୍ଚିତ ଚର୍ଚ୍ଚିତ ହୋଇଥିବ । ସେଥିପାଇଁ ମଥୁରା ପ୍ରଭୃତି ସ୍ଥାନରେ ସ୍ଥାପତ୍ୟ ମଧ୍ୟରେ ଆମ୍ଭେମାନେ ବିଦେଶୀୟ ବସ୍ତୁର ସାମାନ୍ୟ ଆଭାସ ଦେଖୁଁ ।

କିନ୍ତୁ କହୁଁ, ଉତ୍କଳ ଓ ବୌଦ୍ଧଯୁଗୀୟ ସ୍ଥାପତ୍ୟ ସମ୍ପୂର୍ଣ୍ଣ ଭାରତୀୟ । ଏଥିରେ ବିଦେଶୀୟ ବସ୍ତୁର କିଞ୍ଚିନ୍ମାତ୍ର ଆଭାସ ନାହିଁ । ପୁଣି ଉତ୍କଳର ସ୍ଥାପତ୍ୟ ସମ୍ପୂର୍ଣ୍ଣ ଉତ୍କଳୀୟ । ଏଥିରେ ବିଦେଶର ଅନୁକୃତି ଥିବା ଦୂରେଥାଉ ଏହା ସମସାମୟିକ ଉତ୍କଳର ରୀତି, ନୀତି, ଆଚାର ଓ ବ୍ୟବହାର ଦ୍ୱାରା ପରିପୂର୍ଣ୍ଣ । ଆମ୍ଭମାନଙ୍କର ଏହି ମନ୍ତବ୍ୟ ପୂର୍ବ ଅଧ୍ୟାୟରେ କେତେକ ପରିମାଣରେ ପ୍ରମାଣିତ ହୋଇଅଛି ।

ଅଶୋକଙ୍କ ଧଉଳି ଅନୁଶାସନ ଏବଂ ଖାରବେଳଙ୍କ ହାତୀଗୁମ୍ଫା ଅନୁଶାସନ ଲିପିରେ ଅନେକ ଲୌକିକ ବୈଚିତ୍ର୍ୟ ଦେଖାଯାଏ । ମଧ୍ୟ ଖଣ୍ଡଗିରି ଓ ଉଦୟଗିରିର ଗୁମ୍ଫାମାନଙ୍କରେ ଉତ୍କଳର ପ୍ରଚଳିତ ଆଚାର ଓ ବ୍ୟବହାରମାନ ଚିତ୍ରିତ ହୋଇଅଛି । ପରିଧାନ ଯଥା ଆଦି କେତେକ ଚିତ୍ର, ଅଦ୍ୟାବଧି କେତେକ ଚିତ୍ର ଉତ୍କଳ ସମାଜରେ ପରିଦୃଷ୍ଟ ହୁଏ । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ, ବୌଦ୍ଧ ଯୁଗରେ ଅନେକ ଉତ୍କଳର ଶିଳ୍ପୀ ଥିଲେ ଏବଂ ଅନୁଶାସନ ଖୋଦନ ଓ ଗୁମ୍ଫା ନିର୍ମାଣ ଏମାନଙ୍କର କାର୍ଯ୍ୟ ଥିଲା । ଏହିପରି କାର୍ଯ୍ୟର ସୌଷ୍ଠବଦୃଷ୍ଟିରେ ଆମ୍ଭେମାନେ ଉତ୍କଳୀୟ ଶିଳ୍ପୀମାନଙ୍କୁ ଅଶୋକଙ୍କର ବହୁପୂର୍ବରେ ସ୍ଥାନ ଦେଇପାରୁ ।

ଉତ୍କଳୀୟ ସ୍ଥାପତ୍ୟ ରାଜ୍ୟରେ ବୌଦ୍ଧଯୁଗର କୀର୍ତ୍ତି ପ୍ରାଚୀନତମ ଅଟେ । ପୁରୀ ଜିଲ୍ଲାସ୍ଥ ଖଣ୍ଡଗିରି ଓ ଉଦୟଗିରି, କଟକ ଜିଲ୍ଲାସ୍ଥ ନଗ୍ରଜ, ଲଳିତଗିରି, ଉଦୟଗିରି ଓ ଆଶିଆ ପାହାଡ଼, ବାଲେଶ୍ୱର ଜିଲ୍ଲାସ୍ଥ କୁପାରି ଓ ଗଞ୍ଜାମ ଜିଲ୍ଲାସ୍ଥ ଜଉଗଡ଼ ବୌଦ୍ଧକୀର୍ତ୍ତି ଦ୍ୱାରା ପରିପୂର୍ଣ୍ଣ । କିନ୍ତୁ ଏଥିମଧ୍ୟରୁ କେଉଁଟି କେଉଁ ବର୍ଷ-କିମ୍ବା କେଉଁଟି ତାହାର ପ୍ରାକ୍କାଳୀନ ତାହା ସ୍ଥିର କରିବା ଅସମ୍ଭବ । କେବଳ

Digitized by srujanika@gmail.com

କେହି କହନ୍ତି, ବୌଦ୍ଧ ଯୁଗରେ ସର୍ବପ୍ରଥମେ କ୍ଷୁଦ୍ର କ୍ଷୁଦ୍ର ଗୁମ୍ଫାମାନ ନିର୍ମିତ ହୋଇଅଛି । କାଳକ୍ରମେ ଉତ୍କଳୀୟ ଶିଳ୍ପୀ ସିଦ୍ଧହସ୍ତ ହେବା ସଙ୍ଗେ ସଙ୍ଗେ ସୁପ୍ରଶସ୍ତ ଗୁମ୍ଫାମାନ ନିର୍ମାଣ କରିବା ପାଇଁ ସମର୍ଥ ହୋଇଅଛି । ଅତଏବ ଗୁମ୍ଫାର ଆକାର ଦୃଷ୍ଟିରେ ସେ ସବୁର କାଳ ନିରୂପଣ କରିବାକୁ ହେବ । ଏତାଦୃଶ ମାନଦଣ୍ଡ କିନ୍ତୁ ଯୁକ୍ତିଯୁକ୍ତ ନୁହେଁ । ଉଲ୍ଲିଖିତ ସ୍ଥାନମାନ ଧନୀ ତଥା ଧାର୍ମିକ ବୌଦ୍ଧ ଓ ଜୈନମାନଙ୍କର ଆଗମନ ସ୍ଥଳୀ ଥିଲା । ସୁତରାଂ କୌଣସି ଧର୍ମପରାୟଣ ଧନୀବ୍ୟକ୍ତି ସୁପ୍ରଶସ୍ତ ଗୁମ୍ଫା ନିର୍ମାଣ କରାଉଥିବା ସମୟରେ ଅନ୍ୟ କୌଣସି ଅଳ୍ପଧନ ବ୍ୟକ୍ତି ଶକ୍ତ୍ୟାନୁଯାୟୀ ଗୋଟିଏ କ୍ଷୁଦ୍ର ଗୁମ୍ଫା ନିର୍ମାଣ କରାଇ ଥାଇପାରନ୍ତି । ଏହି ହେତୁରୁ କୌଣସି କୌଣସି କ୍ଷୁଦ୍ର ଓ ବୃହତ୍ ଗୁମ୍ଫା ସମସାମୟିକ ହେବା ଅସମ୍ଭବ ନୁହେଁ । ପୁଣି ବୌଦ୍ଧଯୁଗର ପ୍ରାରମ୍ଭରେ ଧର୍ମଭାବ ବଳବାନ ଥିଲାବେଳେ ସୁପ୍ରଶସ୍ତ ଗୁମ୍ଫାମାନ ନିର୍ମିତ ହୋଇଥିବ । ପରେ ଏହି ଭାବ କ୍ରମଶଃ ଦୁର୍ବଳ ହେବାରୁ କେହି କେହି ବିଧି ରକ୍ଷା ସ୍ୱରୂପ କ୍ଷୁଦ୍ର ଗୁମ୍ଫା ନିର୍ମାଣ କରାଇଥିବେ । ଏହା ମଧ୍ୟ ଅସମ୍ଭବ ନୁହେଁ ।

ପୂର୍ବେ ମଠର ନିର୍ମାଣ କରାଇବା ଲୋକମାନଙ୍କର ପ୍ରଧାନ କର୍ତ୍ତବ୍ୟ ଥିଲା । ଏହି କର୍ତ୍ତବ୍ୟ-ଜ୍ଞାନ ସମାଜ ମଧ୍ୟରେ ଏତାଦୃଶ ଭାବରେ ମଜ୍ଜାଗତ ହୋଇଅଛି ଯେ, ଲୋକେ ଆଜକାଲି ଉଦୟଗିରି ବା ଖଣ୍ଡଗିରି ପ୍ରଭୃତି ଧର୍ମସ୍ଥାନକୁ ଗଲେ କ୍ଷୁଦ୍ର ପ୍ରସ୍ତର ଖଣ୍ଡ ଦ୍ୱାରା ସ୍ତୂପ ପ୍ରସ୍ତୁତ କରି ମଠର ନିର୍ମାଣ ବିଧି ରକ୍ଷା କରନ୍ତି । ସୁତରାଂ ଗୁମ୍ଫାମାନଙ୍କର କାଳ ନିରୂପଣ ପାଇଁ ଉପରୋକ୍ତ ନିୟମ ଯଥୋଚିତ ନୁହେଁ । କେବଳ ପ୍ରତ୍ୟେକ ଗୁମ୍ଫା ମଧ୍ୟରେ ପ୍ରଦର୍ଶିତ ଚିତ୍ର ଓ କାଳାନୁରୂପ ଏବଂ କଦାଚିତ୍ ଗୁମ୍ଫା ମଧ୍ୟସ୍ଥ ଅନୁଶାସନ ଦୃଷ୍ଟିରେ ଏ ସବୁକୁ ଅଗ୍ରପଶ୍ଚାତ୍ କରାଯାଇପାରେ । ଶ୍ରୀ ମନମୋହନ ଗାଙ୍ଗୁଲୀ ଶିଳ୍ପ ଓ କଳାନୁରୂପ ଦୃଷ୍ଟିରେ ଖଣ୍ଡଗିରି ଓ ଉଦୟଗିରିସ୍ଥ କେତେ ଗୁମ୍ଫାର କାଳ ନିରୂପଣ କରିଛନ୍ତି । ଏହି ନିରୂପଣ ଠିକ୍ ହୋଇଅଛି କି ନାହିଁ, ଶିଳ୍ପଶାସ୍ତ୍ରବିତ୍‌ମାନେ ଆଲୋଚନା କରିବେ । ତେବେ ଆମ୍ଭମାନଙ୍କର ଏତିକି ବକ୍ତବ୍ୟ ଯେ, ଅନ୍ତତଃ ଖଣ୍ଡଗିରିର ଅନନ୍ତ ଗୁମ୍ଫା ସମ୍ବନ୍ଧରେ ତାଙ୍କର ଅନୁମାନ ଠିକ୍ ଥିଲାପରି ବୋଧହୁଏ ନାହିଁ । ସେ ଏହାକୁ ଖ୍ରୀଷ୍ଟପୂର୍ବ ୨ୟ ଶତାବ୍ଦୀର ପରେ ସ୍ଥାନ ଦେବାପାଇଁ ଅସ୍ୱୀକୃତ । ପକ୍ଷାନ୍ତରେ ଏଥି ନିର୍ମିତ ବୁଦ୍ଧ ମୂର୍ତ୍ତିର ଦୃଷ୍ଟିରେ ଆମ୍ଭେମାନେ ଏହାକୁ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ପୂର୍ବରେ ସ୍ଥାନ ଦେଇ ନ ପାରୁଁ ।

ନାଗାର୍ଜ୍ଜୁନ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ପ୍ରଥମ ଭାଗରେ ବୌଦ୍ଧ ଧର୍ମର ମହାଯାନ ପନ୍ଥା ପ୍ରଚାର କରିଥିଲେ । ସର୍ବ ପ୍ରଥମେ ଏହି ପନ୍ଥାର ଅବଲମ୍ବୀମାନେ ପୂଜା କରିବା ପାଇଁ ବୁଦ୍ଧଦେବଙ୍କର ମୂର୍ତ୍ତି କଳ୍ପନା କଲେ । ତତ୍‌ପୂର୍ବେ କେବଳ

Digitized by srujanika@gmail.com

ସ୍ତୂପ ଓ ବୋଧିବୃକ୍ଷ ପ୍ରଭୃତି ବୌଦ୍ଧଧର୍ମର ଚହ୍ନମାନ ପୂଜିତ ହେଉଥିଲା । ସୁତରାଂ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ବା ମହାଯାନ ପନ୍ଥାର ପ୍ରସ୍ରବକାଳ ପୂର୍ବରୁ ବୌଦ୍ଧ ସ୍ଥାପତ୍ୟ ମଧ୍ୟରେ ବୁଦ୍ଧ ମୂର୍ତ୍ତି ଦେଖାଯାଏ ନାହିଁ । ରାଣୀଗୁମ୍ଫାର ଯେଉଁ ଅଂଶ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ପ୍ରାକ୍‌କାଳୀନ, ସେଥିରେ ବୁଦ୍ଧ ମୂର୍ତ୍ତି ଆଦୌ ପରିଦୃଷ୍ଟ ହୁଏ ନାହିଁ । ଅତଏବ ମନେହୁଏ, ଖଣ୍ଡଗିରିର ଅନନ୍ତ ଗୁମ୍ଫା ଖ୍ରୀ: ପୂ: କାଳରେ ନହୋଇ କୌଣସି ଖ୍ରୀଷ୍ଟୀୟ ବର୍ଷରେ ନିର୍ମିତ ହୋଇଥିବ । ପୁରୀଜିଲ୍ଲାସ୍ଥ ଉଦୟଗିରିର ଅନ୍ୟ କୌଣସି ଗୁମ୍ଫାରେ ବୁଦ୍ଧମୂର୍ତ୍ତି ପରିଦୃଷ୍ଟ ହୁଏ ନାହିଁ । ଏଥିରୁ ସ୍ପଷ୍ଟ ଅନୁମେୟ ଯେ, ସେ ସବୁ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ପୂର୍ବରୁ ନିର୍ମିତ ହୋଇଥିଲା । ଖଣ୍ଡଗିରିର ଯେଉଁ ଗୁମ୍ଫାରେ ନଗ୍ନ ଜୈନ୍ୟ ମୂର୍ତ୍ତି ସଙ୍ଗେ ସଙ୍ଗେ ଧ୍ୟାନୀ ବୌଦ୍ଧ ମୂର୍ତ୍ତି ଦେଖାଯାଏ, ସେ ସବୁ ବୌଦ୍ଧ ଯୁଗର ଖ୍ରୀଷ୍ଟୀୟ କାଳରେ ନିର୍ମିତ । ବୌଦ୍ଧ ଉତ୍କଳର ଜୈନ ଧର୍ମାବଲମ୍ବୀ ଦ୍ୱିତୀୟ ବଂଶୀୟ ରାଜାମାନେ ଖ୍ରୀ. ପୂ. କାଳରେ ପ୍ରସ୍ତରଖଣ୍ଡ ବା ଖଣ୍ଡଗିରିଠାରେ ରାଜଧାନୀ ସ୍ଥାପନ କରିଥିବା ସ୍ଥଳେ ଏ ସ୍ଥାନର କୌଣସି କୌଣସି ଗୁମ୍ଫା ଏହି ରାଜାମାନଙ୍କ ସମୟରେ ବା ଏମାନଙ୍କ କିଞ୍ଚିଦ୍‌ ପୂର୍ବରୁ ନିର୍ମିତ ହୋଇଥିବ । ବୋଧହୁଏ ଖଣ୍ଡଗିରିର ବୁଦ୍ଧମୂର୍ତ୍ତିବିହୀନ ଗୁମ୍ଫାସବୁ ଏହି ରାଜାମାନଙ୍କର ସମସାମୟିକ ।

ଉଲ୍ଲିଖିତ ଦଉଟି ପାହାଡ଼ ଛଡ଼ା ଉତ୍କଳର ଅନ୍ୟାନ୍ୟ ଅନେକ ସ୍ଥାନରେ ବୌଦ୍ଧ ପ୍ରାଧାନ୍ୟର ଚିହ୍ନ ଦେଖାଯାଏ । କଟକ ଜିଲ୍ଲାର ନଳିତ ପାହାଡ଼ରେ ହାତୀଖାଲ ନାମକ ଏକ ଗୁମ୍ଫା ଏବଂ ଏକାଧିକ ବୌଦ୍ଧମୂର୍ତ୍ତି ଅଛି । ଏଥି ମଧ୍ୟରୁ ଗୋଟିଏ ସୁବିଶାଳ ପଦ୍ମାସନ ମୂର୍ତ୍ତିକୁ ଅଜକାଲି ଲୋକେ 'ଭୈରବ' କହନ୍ତି । ଉକ୍ତ ଜିଲ୍ଲାସ୍ଥ ଉଦୟଗିରି ପାହାଡ଼ରେ ଏକ ପଦ୍ମପାଣି ବୌଦ୍ଧ ମୂର୍ତ୍ତି ଅଛି । ଅର୍ଥାତ୍ ଏହି ମୂର୍ତ୍ତିର ହସ୍ତରେ ପଦ୍ମ ପୁଷ୍ପ ଅଛି । ବାଲେଶ୍ୱର ଜିଲ୍ଲାସ୍ଥ କୁପାରି ପାହାଡ଼ରେ ବୁଦ୍ଧ ଏବଂ ମାୟାଦେବୀଙ୍କର ଦୁଇଟି ମୂର୍ତ୍ତି ରହିଅଛି । ଗ୍ରାମବାସୀମାନେ ଏହି ବୁଦ୍ଧ ମୂର୍ତ୍ତିର ବିକଳ ଅଙ୍ଗକୁ ବର୍ତ୍ତମାନ ବଳଦେବ ନାମରେ ପୂଜା କରୁଅଛନ୍ତି । ଆମ୍ଭେମାନେ ମନେକରୁ ଏହି ବୁଦ୍ଧ ମୂର୍ତ୍ତି ତଥା ବୁଦ୍ଧମୂର୍ତ୍ତିଯୁକ୍ତ ବୌଦ୍ଧ ପୀଠମାନ ଖ୍ରୀଷ୍ଟୀୟ କାଳ ମଧ୍ୟରେ ନିର୍ମିତ ହୋଇଅଛି । ଏଥି ମଧ୍ୟରୁ କେହି କେହି ବୌଦ୍ଧ ଯୁଗର ବହୁକାଳ ପରେ ନିର୍ମିତ ହୋଇଥିବା ଅସମ୍ଭବ ନୁହେଁ । ବୌଦ୍ଧ ଯୁଗର ପରିଣତ ସଙ୍ଗେ ସଙ୍ଗେ ବୌଦ୍ଧଧର୍ମ ଉତ୍କଳ ବକ୍ଷରୁ ଏକାବେଳେକେ ବିଲୁପ୍ତ ହୋଇ ନଥିଲା ।

ବୌଦ୍ଧଯୁଗରେ ଉତ୍କଳୀୟ ଶିଳ୍ପର କୌଶଳ ଏବଂ ସୌନ୍ଦର୍ଯ୍ୟଜ୍ଞାନ ହୃଦୟଙ୍ଗମ କରିବାକୁ ହେଲେ ସ୍ଥାନ ଏବଂ ଉପାଦାନ ପ୍ରତି ଲକ୍ଷ୍ୟ କରିବାକୁ ହେବ ।

Digitized by srujanika@gmail.com

ଉତ୍କଳର ସ୍ଥାପତ୍ୟ ସବୁ ପ୍ରକୃତିର ନିର୍ଜନ ଓ ମନୋରମ କ୍ଷେତ୍ରରେ ପର୍ଯ୍ୟବସିତ ହୋଇଥିଲା । କୌଣସି ସାଧାରଣ ଗୃହ ବା ଗ୍ରାମ ବେଷ୍ଟିତ ଜନପଦ ଥିବା ହେତୁରୁ ଏହାର ଗମ୍ଭୀରତା ଶତଗୁଣ ବର୍ଦ୍ଧିତ ହୋଇଥିଲା । ପୁଣି ସ୍ଥାନର ପ୍ରାକୃତିକ ସୌନ୍ଦର୍ଯ୍ୟ ଦ୍ୱାରା ମିଳିତ ହେବା ହେତୁରୁ ଏହାର ସୌନ୍ଦର୍ଯ୍ୟ ଅଧିକ ପରିମାଣରେ ମନୋମୁଗ୍ଧକର ହୋଇଥିଲା । ପୁରୀଜିଲ୍ଲାସ୍ଥ ଖଣ୍ଡଗିରି ଓ ଉଦୟଗିରି ଉପରେ ଦଣ୍ଡାୟମାନ ହୋଇ ସୁଦୂର ପ୍ରସାରିତ ପ୍ରକୃତି ରାଜ୍ୟ ପ୍ରତି ଦୃକ୍‌ପାତ କଲେ ଜଣେ ଜାଣିବ ଯେ ଏହି ସ୍ଥାନ ଅବଶ୍ୟ ସ୍ୱଭାବରେ ବୌଦ୍ଧ ଓ ଜୈନ ସନ୍ନ୍ୟାସୀମାନଙ୍କ ଦ୍ୱାରା ମନୋନୀତ ହୋଇଥିଲା । କଟକ ଜିଲ୍ଲାସ୍ଥ ନରାଜ ପାହାଡ଼ର ପାଦଦେଶରେ କଳନାଦିନୀ ମହାନଦୀ ଶାନ୍ତମନ୍ଦ ଉଚ୍ଚାରଣ କରି ଅନନ୍ତ ସମୁଦ୍ର ପ୍ରତି ଧାବମାନା । ବୃକ୍ଷମନ୍ଦ ପ୍ରସ୍ତରର ନିର୍ବାଣପ୍ରିୟ ସନ୍ନ୍ୟାସୀ ଏହି ସ୍ଥାନରେ ସ୍ୱୀୟ ଜୀବନର ପ୍ରତିବିମ୍ବ ଦେଖି ନଥିବେ କି ? ଉକ୍ତ ଜିଲ୍ଲାର ଅନ୍ତର୍ଗତ ଉଦୟଗିରିରେ ନିଖିଳ ସୃଷ୍ଟିର ସଂକ୍ରାନ୍ତ ବିଧାତା ସୂର୍ଯ୍ୟଦେବ ସର୍ବପ୍ରଥମେ ଦୃଶ୍ୟମାନ ହୁଅନ୍ତି । ବୌଦ୍ଧ ସନ୍ନ୍ୟାସୀ ଏହିଠାରେ ସ୍ୱୀୟ ଧର୍ମର ସାଙ୍କେତିକତା ହୃଦୟଙ୍ଗମ କରି ନଥିବେ କି ?

ମୁରୁମ ପଥର ଉତ୍କଳରେ ବିରଳ । ଏହା କେବଳ ନୀଳଗିରି ପାହାଡ଼ରେ ମିଳେ । ସୁତରାଂ ସାଧାରଣତଃ କୁଣ୍ଡା ପଥର ଉତ୍କଳୀୟ ଶିଳ୍ପୀର ଉପାଦାନ ଥିଲା । ଏହି ଜାତୀୟ ପଥରର ଭଙ୍ଗୁରତା ଦୃଷ୍ଟିରେ ସେ ଗୁମ୍ଫା ନିର୍ମାଣରେ ମହାକୌଶଳ ପ୍ରୟୋଗ କରିଥିଲେ । ଦ୍ୱିତଳ ଗୁମ୍ଫାମାନଙ୍କର ଉପରିସ୍ଥ ତଳ ନିମ୍ନସ୍ଥ ତଳର ଠିକ୍ ଉପରେ ପର୍ଯ୍ୟବସିତ ନୁହେଁ । ଏହା ନିମ୍ନସ୍ଥ ତଳର ସମ୍ମୁଖ ସୀମାରୁ କିଛିଟା ଦୂରରେ ଅବସ୍ଥିତ । ପୁଣି ଅନେକ ସ୍ଥଳରେ ଗୁମ୍ଫାର ସମ୍ମୁଖସ୍ଥର ସରଳ ନୁହେଁ । ଏହା ଉପରୁ ତଳକୁ କ୍ରମ ନିମ୍ନ ହୋଇ ଭୂତଳକୁ ଆସିଅଛି । ଏତାଦୃଶ କୌଶଳ ବିନା ଏହି ଗୁମ୍ଫାମାନ ଦ୍ୱିସହସ୍ରାଧିକ ବର୍ଷକାଳ ଅକ୍ଷୁଣ୍ଣ ଭାବରେ ରହି ନଥାନ୍ତା ।

କୁଣ୍ଡା ପଥର ସହଜରେ କ୍ଷୟି ଯାଏ । ବିଶେଷତଃ ପାଣି ଜମା ହୋଇ ଏହା ଉପରେ ରହିଲେ ପାଣି କ୍ରମେ କ୍ରମେ ଏହା ଦେହରେ ଭେଦକରି ବହୁ କ୍ଷତିସାଧନ କରେ । ଉତ୍କଳୀୟ ଶିଳ୍ପୀ ଜଳ ଭେଦନ ନିବାରଣ ପାଇଁ ଗୁମ୍ଫାର ଛାତ ବା ଉପରି ଭାଗକୁ ଅତି ଅଳ୍ପ ପରିମାଣରେ ଗୋଲାକାର କରିଥିଲେ । ଆଉ ମଧ୍ୟ ଜଳ ଗଡ଼ିଆସିବାର ସୁବିଧା ପାଇଁ ଛାତର ଉପରେ ଗୋଟିଏ ଗୋଟିଏ ନାଳିଆ ଫିଟାଇ ଦେଇଥିଲେ । ଏ ସବୁ ଉତ୍କଳୀୟ ଶିଳ୍ପୀର ଦୂରଦର୍ଶିତାର ପରିଚୟ । ବାସ୍ତବରେ ଉତ୍କଳୀୟମାନେ ନିଜ ପାଇଁ ଏହି ଗୁମ୍ଫା ନିର୍ମାଣ କରାଇ ନଥିଲେ । ଯୁଗେ ଯୁଗେ ଏ ସବୁ ଅକ୍ଷୁଣ୍ଣ ରହିବା ସେମାନଙ୍କର ଉଦ୍ଦେଶ୍ୟ ଥିଲା ।

Digitized by srujanika@gmail.com

କଳାଶସ୍ତ୍ର ପ୍ରାଚୀନ ଉତ୍କଳୀୟ ସ୍ଥାପତ୍ୟର ଅଙ୍ଗ ଥିଲା । ବୌଦ୍ଧ ଯୁଗରେ ମଧ୍ୟ ଏହି ନିୟମ ଅନୁସୃତ ହୋଇଥିବା ପରି ବୋଧହୁଏ । ଉଦୟଗିରିର ଖିଣ୍ଡଗିରିର ଗୁମ୍ଫା ପ୍ରକୃତି ଏହି ନିୟମ ଅବଲମ୍ବନର ଫଳ । ନାନା ସ୍ଥାନରୁ ବୌଦ୍ଧ ଓ ଜୈନ ସନ୍ନ୍ୟାସୀମାନେ ଏହି ସ୍ଥାନକୁ ଯାତାୟାତ କରୁଥିବାରୁ ଏଠାରେ କଳାଶସ୍ତ୍ର ଅତି ପ୍ରୟୋଜନୀୟ ଥିଲା ।

ବୌଦ୍ଧଯୁଗର ଉତ୍କଳୀୟ ସ୍ଥାପତ୍ୟ ମଧ୍ୟରେ ଉଦ୍ଭିଦ-ଜଗତର ଚିତ୍ର ପରିସ୍ଫୁଟ ଭାବରେ ଦେଖାଯାଏ । ନାନାଜାତିର ବୃକ୍ଷ, ଲତା ଓ ପୁଷ୍ପ ସୁନ୍ଦର ଭାବରେ ଚିତ୍ରିତ ହୋଇଅଛି । ଆମ୍ର, କଦଳୀ ଓ ପଣସ ପ୍ରଭୃତି ଫଳ ମଧ୍ୟ ବୃକ୍ଷ ଦେହରେ ସ୍ୱାଭାବିକ ଭାବରେ ପ୍ରଦର୍ଶିତ ହୋଇଅଛି । ଗୁମ୍ଫା ଦ୍ୱାରର ଚତୁଃପାର୍ଶ୍ୱ ନାନା ଲତା, ପତ୍ର-ଲତା ଓ ପ୍ରସ୍ଫୁଟିତ ପୁଷ୍ପଦ୍ୱାରା ମଣ୍ଡିତ ହୋଇଅଛି । ବୃକ୍ଷ ଶାଖାରେ ମନୁଷ୍ୟ ଓ ବାନର ଏବଂ ଲତା ମଧ୍ୟରେ ହଂସ ହଂସୀ ଓ ହରିଣୀ ପ୍ରଭୃତି ପ୍ରାଣୀ ବାସ୍ତବଜଗତକୁ ପ୍ରତିଫଳିତ କରୁଅଛି । ଅଳଙ୍କରଣ ମଧ୍ୟରେ ପଦ୍ମକଳିକା ଓ ପଦ୍ମପୁଷ୍ପ ସମଧିକ ପରିମାଣରେ ବ୍ୟବହୃତ ହୋଇଅଛି । ଧର୍ମଚକ୍ର ସଙ୍ଗେ ପଦ୍ମ ପୁଷ୍ପର ସାଦୃଶ୍ୟ ବୋଧହୁଏ ଏହାର ସମଧିକ ବ୍ୟବହାରର କାରଣ । କିନ୍ତୁ ଉଦ୍ଭିଦ ଜଗତର ଚିତ୍ରଣରେ ବୌଦ୍ଧଯୁଗର ଉତ୍କଳୀୟ ଶିଳ୍ପୀ ପ୍ରକୃତିର ଠିକ୍ ଅନୁକରଣ କରିପାରି ନାହିଁ । ଏହାର କାରଣ ସୂକ୍ଷ୍ମ କଳାକୌଶଳର ଅବକାଶ । ପରବର୍ତ୍ତୀ ଯୁଗର କୁଣ୍ଡାପଥର ସୂକ୍ଷ୍ମ ଶିଳ୍ପ ପକ୍ଷରେ ତେତେ ଉପଯୋଗୀ ନୁହେଁ । ବୋଧହୁଏ ବୌଦ୍ଧଯୁଗରେ ଉତ୍କଳୀୟ ଶିଳ୍ପୀ କୁଣ୍ଡା ପଥର ଦେହରେ ସୂକ୍ଷ୍ମ କଳାକୌଶଳ ଦେଖାଇବାପାଇଁ ଯଥୋଚିତ ଦକ୍ଷତା ଲାଭ କରିଥିଲେ । ଏହି ଯୁଗରେ ନିରବଚ୍ଛିନ୍ନ ଅଭ୍ୟାସ ଦ୍ୱାରା ଉତ୍କଳୀୟ ଶିଳ୍ପୀ କାଳକ୍ରମେ ଏହି ଦକ୍ଷତା ହସ୍ତଗତ କଲେ ।

ଉଦ୍ଭିଦ ଜଗତ ଅପେକ୍ଷା ପ୍ରାଣୀଜଗତରେ ଚିତ୍ରଣରେ ବହୁତର କୌଶଳ ପ୍ରୟୋଜନୀୟ । କିନ୍ତୁ ଏଥିରେ ସୂକ୍ଷ୍ମ ଶିଳ୍ପର ପ୍ରୟୋଜନୀୟତା ଅତି ଅଳ୍ପ । ସେଥିପାଇଁ ବୌଦ୍ଧଯୁଗର ସ୍ଥାପତ୍ୟ ଅନ୍ତର୍ଗତ ଜୀବଜନ୍ତୁ ପ୍ରାକୃତିକ ହୋଇଅଛି । ମୃଗ, ମାଙ୍କଡ଼, ହଂସ, ହାତୀ, ଘୋଡ଼ା ଓ ବୃଷଭ ପ୍ରଭୃତି ପ୍ରକୃତିର ଅବିକଳ ଅନୁକୃତି, ଅନନ୍ତ ଗୁମ୍ଫା ଏବଂ ବ୍ୟାଘ୍ର ଗୁମ୍ଫାର ସର୍ପ ଏବଂ ବ୍ୟାଘ୍ର ମୁଖ ଅପ୍ରାକୃତିକ ନୁହେଁ । ସିଂହ ଉତ୍କଳୀୟ ସ୍ଥାପତ୍ୟରେ ଯଥାର୍ଥ ପ୍ରାକୃତିକ ନୁହେଁ, କିନ୍ତୁ ଉଦୟଗିରିରେ ଯେଉଁ ସିଂହର ଚିତ୍ର ଅଛି, ତାହା ପ୍ରାକୃତିକ ହୋଇଅଛି, ସେଥିପାଇଁ କେହି କେହି ମତପ୍ରକାଶନ୍ତି, ଉଦୟଗିରିର ଗୁମ୍ଫାମାନ ନିର୍ମିତ ହେବାବେଳେ ଉତ୍କଳର ଅରଣ୍ୟରେ ସିଂହ ବାସକରୁଥିଲେ ଏବଂ ଶିଳ୍ପୀ ଅରଣ୍ୟରେ ସିଂହ

Digitized by srujanika@gmail.com

ଦେଖିଥିବାରୁ ପ୍ରାକୃତିକ ଭାବରେ ତାହାର ମୂର୍ତ୍ତି ନିର୍ମାଣ କରି ପାରିଥିଲେ । ଆମ୍ଭେମାନେ ମନେକରୁ, କେବଳ ଉଦୟଗିରି ନିର୍ମାଣ କାଳରେ ନାହିଁକି, ଶୈବଯୁଗ ଅର୍ଥାତ୍ କେଶରୀୟ ରାଜାମାନଙ୍କ ସମୟରେ ଉତ୍କଳର ଅରଣ୍ୟରେ ସିଂହ ବାସ କରୁଥିଲେ । ଯେହେତୁ ଭୁବନେଶ୍ୱରସ୍ଥ ମୁକ୍ତେଶ୍ୱର ମନ୍ଦିର ଉପରେ ଏକ ଅବିକଳ ସିଂହର ମୂର୍ତ୍ତି ଅଛି ।

ବୌଦ୍ଧ ତଥା ଶୈବଯୁଗର ସ୍ଥାପତ୍ୟ ମଧ୍ୟରେ ସ୍ଥାନେ ସ୍ଥାନେ ଅଦ୍ଭୁତ ପକ୍ଷଯୁକ୍ତ ପ୍ରାଣୀ ଦେଖାଯାଏ । ଏସବୁ ଶିଳ୍ପୀର ଅର୍ଥହୀନ କଳ୍ପନାର ଫଳ । କେବଳ ଏହି କଳ୍ପନା ପ୍ରଭାବରେ ଶିଳ୍ପୀ ସମୟ ସମୟରେ ସିଂହ ଆଦି ପ୍ରାଣୀମାନଙ୍କୁ ଅପ୍ରାକୃତିକ କରିପକାଇଛି । ରାଣୀ ଓ ଗଣେଶଗୁମ୍ଫାର ପ୍ରାଚୀରରେ ଯେଉଁ ମନୁଷ୍ୟ ହରଣ ଦୃଶ୍ୟ ଦେଖାଯାଏ, ତାକୁ କେହି କେହି ଶିଳ୍ପୀର ଅସାର କଳ୍ପନା ପ୍ରସୂତ ବୋଲି ମନେକରନ୍ତି । କିନ୍ତୁ ଉଭୟ ଗୁମ୍ଫା ଉପରେ ଏକ ଦୃଶ୍ୟ ସ୍ପଷ୍ଟଭାବରେ ଚିତ୍ରିତ ହୋଇଥିବା ସ୍ଥଳେ ଆମ୍ଭେମାନେ ଏହାକୁ କେବଳ କଳ୍ପନା-ପ୍ରସୂତ ବୋଲି କହି ନପାରୁ ।

ବୌଦ୍ଧ ସ୍ଥାପତ୍ୟର କାନ୍ଥ ବା ପ୍ରାଚୀରରେ ବୁଦ୍ଧ ଜୀବନର କୌଣସି ଘଟଣା କିମ୍ବା ବୌଦ୍ଧଧର୍ମର ଗୌରବ ବର୍ଦ୍ଧକ କୌଣସି ଘଟଣା କିମ୍ବା ସାମୟିକ କୌଣସି ବିଶେଷ ଘଟଣାର ବିଭିନ୍ନ ଅଧ୍ୟାୟମାନ ପୃଥକ୍ ପୃଥକ୍ ହୋଇ ଏକ ଶ୍ରେଣୀରେ ଚିତ୍ରିତ ହୋଇଅଛି । କୌଣସି ଘଟଣାକୁ ଆମୂଳଚୂଳ ବୁଝିବାକୁ ହେଲେ ଶ୍ରେଣୀର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତଯାଏ ଦୃକ୍‌ପାତ କରିବା ଆବଶ୍ୟକ । ସାଞ୍ଚି ଓ ବୁଦ୍ଧଗୟା ପ୍ରଭୃତି ସ୍ଥାନରେ ଏହି ନିୟମ ଅନୁସୃତ ହୋଇଅଛି । ବୋଧହୁଏ, ଉତ୍କଳର ଉଲ୍ଲିଖିତ ମନୁଷ୍ୟ ହରଣ ଦୃଶ୍ୟଦ୍ୱାରା କୌଣସି ଘଟଣା ଉକ୍ତବିଧ ନିୟମ ଅନୁଯାୟୀ ଚିତ୍ରିତ ହୋଇଅଛି ।

ଆମ୍ଭେମାନେ କହିଅଛୁ, ଉପାଦାନର ଭଙ୍ଗୁରତା ହେତୁ ସୂକ୍ଷ୍ମ ଶିଳ୍ପ ଉତ୍ତମ ରୂପେ ପ୍ରଦର୍ଶିତ ହୋଇ ପାରି ନ ଥିଲେ ହେଁ ବୌଦ୍ଧ ଯୁଗରେ ଉତ୍କଳୀୟ ଶିଳ୍ପୀ ପ୍ରାଣୀଜଗତକୁ ପ୍ରାକୃତିକ ଭାବରେ ଅଙ୍କିତ କରିଥିଲା । ମୂର୍ତ୍ତିକୃତ ନର-ନାରୀଙ୍କ ମୁଖଭଙ୍ଗୀ ଶୁକନାସୀ ଓ ବିଶାଳ ଚକ୍ଷୁ ଜୀବନ୍ତ ପରି ପ୍ରତୀୟମାନ ହୁଏ । ନର-ନାରୀଙ୍କ ମୂର୍ତ୍ତିଗଠନ ବେଳେ ଉତ୍କଳୀୟ ଶିଳ୍ପୀ ଶାସ୍ତ୍ର ବନ୍ଧନ ନିୟମ ପ୍ରତି ଲକ୍ଷ୍ୟ ନକରି କେବଳ ପ୍ରକୃତି ରାଜ୍ୟକୁ ଆଦର୍ଶ ରୂପେ ଗ୍ରହଣ କରିଥିଲା । ଫଳରେ ତାହାର ମୂର୍ତ୍ତିଗଠନ ଉତ୍କର୍ଷତାର ଉନ୍ନତି ଲାଭ କରି ଶୈବ ଯୁଗରେ ପରାକାଷ୍ଠା ଲାଭ କରିଥିଲା ।

Digitized by srujanika@gmail.com

ବୌଦ୍ଧ ସ୍ଥାପତ୍ୟର ଅନ୍ତର୍ଗତ ନାରୀ ମୂର୍ତ୍ତି ପ୍ରାୟ ନଗ୍ନ । କେବଳ କଟୀଦେଶର କତିପାର୍ଶ୍ୱରେ ଖଣ୍ଡିଏ ବସ୍ତ୍ର ପ୍ରଦର୍ଶିତ ହୋଇଥାଏ । ଏହା ଦେଖି କେହି ମନେକରିବେ ନାହିଁ ଯେ, ତତ୍କାଳୀନ ଯୁଗରେ ସ୍ତ୍ରୀମାନେ ଏହି ପ୍ରକାରରେ ଲୁଗା ପିନ୍ଧୁଥିଲେ । ଶରୀରର ପ୍ରାକୃତିକ ସୌନ୍ଦର୍ଯ୍ୟ ତଥା ଶିଳ୍ପକୌଶଳ ଦେଖାଇବା ପାଇଁ ଶିଳ୍ପୀ ଏହି ଉପାୟ ଅବଲମ୍ବନ କରିଥିଲେ । କେହି କେହି ମଧ୍ୟ ଅନୁମାନ କରନ୍ତି ଯେ, ପୂର୍ବେ ଅତି ସୂକ୍ଷ୍ମବସ୍ତ୍ର ବ୍ୟବହୃତ ହେଉଥିଲା । ଦର୍ଶକମାନଙ୍କୁ ଏହି ପ୍ରଥା ଜଣାଇବା ନିମନ୍ତେ ସୂକ୍ଷ୍ମ ବସ୍ତ୍ରର ଚିହ୍ନ ସ୍ୱରୂପ ନାରୀ ଶରୀରକୁ ଅନାବୃତ ରଖୁଥିଲେ ।

ବୌଦ୍ଧ ଯୁଗର ସ୍ଥାପତ୍ୟ ମଧ୍ୟ ବୌଦ୍ଧଧର୍ମର ସାମ୍ୟବାଦ ସୂଚିତ କରୁଅଛି । ନିଖିଳ ବିଶ୍ୱଦୃଷ୍ଟିରେ ଜୀବନମାନଙ୍କରେ କେହି କାହାଠାରୁ ବଡ଼ ବା ସାନ ନୁହେଁ । ସେଥିପାଇଁ ଶିଳ୍ପୀ କୌଣସି ଘଟଣାର ଚିତ୍ରଣରେ ନାୟକଙ୍କ ମୂର୍ତ୍ତିକୁ ଅନ୍ୟମାନଙ୍କ ମଧ୍ୟରେ ଅପେକ୍ଷାକୃତ ବୃହତ୍ କରି ନାହାନ୍ତି । ପଶ୍ଚାତ୍ତରେ ଗାନ୍ଧାର ଶିଳ୍ପ ମଧ୍ୟରେ ନାୟକର ମୂର୍ତ୍ତି ଦୃଶ୍ୟସ୍ଥ ଅନ୍ୟାନ୍ୟ ବ୍ୟକ୍ତିମାନଙ୍କଠାରୁ ବଡ଼ ।

ପର୍ବତର ଅନ୍ତଃଦେଶରେ ବୁଦ୍ଧି ଓ କୌଶଳ ବଳରେ ଭଙ୍ଗୁର ଉପାଦାନ ଦ୍ୱାରା ଚିରସ୍ଥାୟୀ କୀର୍ତ୍ତି ସ୍ଥାପନ କରି ତହିଁରେ ନାନା ପ୍ରକାର ପ୍ରାକୃତିକ ମୂର୍ତ୍ତି ଓ ଦୃଶ୍ୟମାନ ପରିବେଷିତ କରିବା ବୌଦ୍ଧଯୁଗରେ ଉତ୍କଳୀୟ ଶିଳ୍ପୀର ଏକମାତ୍ର ଗୌରବ ନୁହେଁ । ସେ ଏହି ମୂର୍ତ୍ତି ଓ ଦୃଶ୍ୟମାନଙ୍କୁ ଗୁମ୍ଫାମଧ୍ୟରେ ଯଥାସ୍ଥାନରେ ସ୍ଥାପନ କରି ଅସୀମ ସୌନ୍ଦର୍ଯ୍ୟଜ୍ଞାନର ପରିଚୟ ଦେଇଅଛନ୍ତି । ପ୍ରତ୍ୟେକ ମାଳା ଉଭୟ ପ୍ରାନ୍ତରେ ସିଂହ ବା ମକରର ମୁଖରୁ ନିର୍ଗତ ହେଉଅଛି । ଯେଉଁ ସ୍ଥାନରେ ଯେଉଁ ମୂର୍ତ୍ତିକୁ ସ୍ଥାପନ କଲେ ସୌନ୍ଦର୍ଯ୍ୟ ବୃଦ୍ଧି ହେବାର କଥା ସେହି ସ୍ଥାନରେ ସେହି ମୂର୍ତ୍ତି ସ୍ଥାପିତ ହୋଇଅଛି । ପ୍ରକୃତି ଦେବୀଙ୍କର ଅଗମ୍ୟ ବିସ୍ତାରିତ ସୌନ୍ଦର୍ଯ୍ୟ ଉପଲବ୍ଧି କରିବା ପାଇଁ କୌଣସି କୌଣସି ଗୁମ୍ଫାର ସମ୍ମୁଖରେ ପିଣ୍ଡା ନିର୍ମିତ ହୋଇଅଛି ।

ଆମ୍ଭେମାନେ କେବଳ ଧର୍ମପୀଠର ଅବଲମ୍ବନରେ ବୌଦ୍ଧଯୁଗରେ ଉତ୍କଳୀୟ ସ୍ଥାପତ୍ୟ ବିଷୟ ଆଲୋଚନା କରିଅଛୁ । କିନ୍ତୁ ଶିଳ୍ପବିଦ୍ୟା କେବଳ ଧର୍ମକ୍ଷେତ୍ର ମଧ୍ୟରେ ସୀମାବଦ୍ଧ ଥିଲା କି ? ବୌଦ୍ଧଯୁଗରେ ଉତ୍କଳରେ ଦନ୍ତପୁର, ପ୍ରସ୍ତରଖଣ୍ଡ ଓ ତୋଷଲି ନାମକ ତିନିଗୋଟି ରାଜଧାନୀ ଥିଲା । କଳିଙ୍ଗ ବା ଉତ୍କଳରାଜାଙ୍କର କୁମ୍ଭାବତୀ ନାମରେ ଅନ୍ୟ ଏକ ରାଜଧାନୀ ଥିବା କୌଣସି କୌଣସିଠାରେ ପ୍ରକାଶ । ଏହାଛଡ଼ା କଟକ (କଟକଦର୍ମ), ବାଲେଶ୍ୱର (କୋଣମୁ) ଓ ଅଜାତ ପ୍ରଭୃତି ବାଣିଜ୍ୟ କେନ୍ଦ୍ର ଥିଲା । ଖ୍ରୀ: ସମ୍ଭବ ଏହି ବଡ଼ ନଗରମାନଙ୍କରେ

Digitized by srujanika@gmail.com

ଅନ୍ତତଃ ରାଜା ଓ ଧନୀ ବ୍ୟକ୍ତିମାନେ ପ୍ରସ୍ତର ବା ଇଷ୍ଟକ ଦ୍ୱାରା ଏକତଳ ଦ୍ୱିତଳ ବା ଏକାଧିକ ତଳ ଗୃହମାନ ନିର୍ମାଣ କରାଇଥିଲେ । ନିର୍ଜନ ଅରଣ୍ୟ ପର୍ବତରେ ପ୍ରସ୍ତର ଗୃହ ନିର୍ମିତ ହୋଇଥିବା ସ୍ଥଳେ, ନଗର ଓ ରାଜଧାନୀମାନଙ୍କରେ ଏହାର ବ୍ୟବହାର ସମ୍ପୂର୍ଣ୍ଣ ସ୍ୱାଭାବିକ ଅଟେ ।

ବୌଦ୍ଧଗ୍ରନ୍ଥରୁ ଜଣାଯାଏ ଯେ ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀରେ କ୍ଷେମଙ୍କ ପ୍ରଦତ୍ତ ବୁଦ୍ଧଦନ୍ତ ଦନ୍ତପୁରର ଏକ ଏକାଧିକତଳ ବିଶିଷ୍ଟ ମନ୍ଦିରରେ ରକ୍ଷିତ ହୋଇଥିଲା । ବ୍ରହ୍ମୀଟଙ୍ଗଠାରେ କଳିଙ୍ଗ ବା ଉତ୍କଳରାଜଙ୍କର ଏକ ଦ୍ୱିତଳ ପ୍ରାସାଦ ଥିଲା । ରାଣୀଗୁମ୍ଫାର ପ୍ରାଚୀରରେ ଏକ ଦ୍ୱିତଳ ଗୃହର ଚିତ୍ର ଅଛି । ନିମ୍ନତଳରେ ଚଉଟି ଏବଂ ଉପରତଳରେ ଗୋଟିଏ ଦ୍ୱାର ଅଛି । ଉପରତଳରେ ଦ୍ୱାରର ସମ୍ମୁଖରେ ବ୍ୟବହାରାର୍ଥ କିଛି ମୁକ୍ତ ସ୍ଥାନ ଅଛି । ଏହି ସ୍ଥାନର ସ୍ତମ୍ଭଧାରରେ ବେଷ୍ଟନୀ ମଧ୍ୟ ଅଛି । ଗୋଟିଏ ସ୍ତ୍ରୀ ଏହି ବେଷ୍ଟନୀକୁ ଧରି ଉପରୁ ତଳକୁ ନିମ୍ନ ଅଡ଼କୁ ଚାହିଁ ଅଛି । ଗୃହର ଦ୍ୱାର ଉପରୁ ତୋରଣାକୃତି ଅଟେ । ଏହା ବୋଧହୁଏ ବୌଦ୍ଧଯୁଗରେ ଉତ୍କଳ ପ୍ରଚଳିତ କାଷ୍ଠ ଓ ଇଷ୍ଟକରେ ନିର୍ମିତ ଗୃହ ବା ପ୍ରାସାଦର ନିଦର୍ଶନ । ଖ୍ରୀ: ପୂ: ୨ୟ ଶତାବ୍ଦୀରେ ଖାରବେଳ ବୋଧହୁଏ ପ୍ରାଚୀ ତଟରେ ଏକାଦଶ ଏକାଧିକ ତଳ ବିଶିଷ୍ଟ ପ୍ରାସାଦ ନିର୍ମାଣ କରାଇଥିଲେ ।

ବୌଦ୍ଧଯୁଗରେ ଉତ୍କଳର ସ୍ଥାପତ୍ୟ ବିଷୟ ଆଲୋଚନା ହୋଇଅଛି । ଏହି ବିଦ୍ୟା ବୌଦ୍ଧଧର୍ମର ଅଭ୍ୟୁଦୟ ପୂର୍ବରୁ ଅଜ୍ଞାତ ନଥିଲେ ହେଁ, ଏହି ଧର୍ମର ପ୍ରଭାବରେ ଉନ୍ନତ ଏବଂ ସର୍ବାଙ୍ଗୀଣ ହୋଇଅଛି । ବର୍ତ୍ତମାନ ଅମ୍ଭେମାନେ ଆଲୋଚିତ ଯୁଗର ଏହି ଧର୍ମର ଇତିହାସ ଆଲୋଚନା କରିବୁ । ପ୍ରାଚୀନ ଯୁଗରେ ଧର୍ମାନୁଗାମୀ ସାହିତ୍ୟ ମଧ୍ୟ ଅମ୍ଭମାନଙ୍କ ଆଲୋଚନାର ଅନ୍ତର୍ଭୁକ୍ତ ହେବ ।

(୩)

## ଧର୍ମ ଓ ସାହିତ୍ୟ :

ମାନବ ଜାତି ପୃଥିବୀରେ ଅବତୀର୍ଣ୍ଣ ହୋଇ ଚତୁର୍ଦ୍ଦିଗରେ ପ୍ରକୃତିର ବିଚିତ୍ର କଳେବର ଦର୍ଶନ କରି ପ୍ରଥମେ ଚମତ୍କୃତ ହୋଇଥିଲା । ସେତେବେଳେ ତାହାର ହୃଦୟରେ ଭୟ, ଭକ୍ତି, ଶ୍ରଦ୍ଧା ବା ଅନ୍ୟ କୌଣସି ଭାବ ଜାଗ୍ରତ ହୋଇପାରି ନଥିଲା । କିଛିକାଳ ପରେ ଏହି ବିହ୍ୱଳତା ଦୂର ହୁଅନ୍ତେ ସେ ପ୍ରକୃତିର ବିଶାଳତା ମଧ୍ୟରେ ନିଜର କ୍ଷୁଦ୍ରତା ଅନୁଭବ କରି ଭୟାକୁଳ ହେଲା । ପ୍ରକୃତି ରାଜ୍ୟରେ ପଦାର୍ଥମାନଙ୍କର ଆକୃତି ଏବଂ କାର୍ଯ୍ୟପ୍ରଣାଳୀ ଦେଖି ତାହାର ହୃଦୟରେ ଭକ୍ତିର ସଞ୍ଚାର ହେଲା । ଏହି ଭୟର ଫଳରେ ସେ ପ୍ରକୃତି ରାଜ୍ୟର ଉପରୋକ୍ତ

Digitized by srujanika@gmail.com

ପଦାର୍ଥମାନଙ୍କୁ ଗୋଟିଏ ଗୋଟିଏ ଦେବତା କଳ୍ପନା କରି ବଳି ଇତ୍ୟାଦି ଦ୍ୱାରା ପୂଜା କରିବାକୁ ଲାଗିଲା । ଏହିରୂପେ ପୃଥିବୀରେ ବୃକ୍ଷ, ସର୍ପ ଓ ପ୍ରସ୍ତରର ପୂଜା ଆରମ୍ଭ ହେଲା । ତମିସ୍ରଚ୍ଛନ୍ନ ଅନାର୍ଯ୍ୟମାନେ ପ୍ରାଚୀନ କାଳରେ ଏବମ୍ବିଧ ପୂଜା କରିଥିଲେ । ଖ୍ରୀ: ପୂ: ପଞ୍ଚମ ଶତାବ୍ଦୀରେ ଉତ୍କଳ ତଥା ଭାରତରେ ଏହି ପୂଜା ଅନାର୍ଯ୍ୟମାନଙ୍କ ମଧ୍ୟରେ ବିଦ୍ୟମାନ ଥିଲା । ଅଦ୍ୟାବଧି ମଧ୍ୟ ଏହି ପୂଜା ଉତ୍କଳ ତଥା ଭାରତରେ ଅସଭ୍ୟ ବନ୍ୟ ଜାତିଙ୍କ ମଧ୍ୟରେ ପରିଦୃଷ୍ଟ ହୁଏ ।

ଆମ୍ଭେମାନେ ପୂର୍ବେ କହିଅଛୁଁ, ଆର୍ଯ୍ୟମାନେ ଖ୍ରୀ: ପୂ: ପଞ୍ଚମ ଶତାବ୍ଦୀର ବହୁ ପୂର୍ବରୁ ଉତ୍କଳକୁ ଆସିଥିଲେ । ଭାରତରେ ପଦାର୍ପଣ କରିବା ପୂର୍ବରୁ ସେମାନେ ମାନବ ଜାତିର ପ୍ରାଥମିକ ଅବସ୍ଥା ଅତିକ୍ରମ କରିଥିଲେ । ପଞ୍ଜାବ ପ୍ରଦେଶରେ ବାସ କରୁଥିବାବେଳେ ସେମାନେ ପ୍ରକୃତି ରାଜ୍ୟର ବୃକ୍ଷ, ସର୍ପ ଓ ପ୍ରସ୍ତର ପ୍ରଭୃତି ପଦାର୍ଥମାନଙ୍କର ପୂଜା ନ କରି ସୃଷ୍ଟିର ମହୋପକାରୀ ସୂର୍ଯ୍ୟ, ଚନ୍ଦ୍ର ଓ ବାୟୁ ଆଦିର ଆରାଧନା କରୁଥିଲେ । ଏମାନେ ଯେ ପରମେଶ୍ୱରଙ୍କର ଦୃଶ୍ୟମାନ ଚିହ୍ନ, ଏହା ସେମାନେ ଅନୁଭବ କରୁଥିଲେ ଏବଂ ସେମାନଙ୍କର ଆରାଧନାରେ ଉପଚାର ଆଡ଼ମ୍ବର ମାତ୍ର ନଥିଲା । ଏହି ବିଶୁଦ୍ଧ ବୈଦିକ ଯୁଗରେ ଆର୍ଯ୍ୟ ଧର୍ମ ନାନା ଜଟିଳ ପୁରୋହିତ ସଂସ୍କାର ଦ୍ୱାରା ଜଡ଼ିତ ହୋଇ ନଥିଲା ।

କ୍ରମେ ଆର୍ଯ୍ୟମାନଙ୍କର ବସତିର ସୀମା ବିସ୍ତୃତି ଲାଭ କଲା । ସେଥି ସଙ୍ଗେ-ସଙ୍ଗେ ସମାଜରେ ଜାତି ବନ୍ଧନ ଦୃଢ଼ୀଭୂତ ହେଲା । ବୈଦିକ ଯୁଗର ସରଳ ଓ କୃତଜ୍ଞତା ସୂଚକ ସ୍ତୋତ୍ର ପରିବର୍ତ୍ତେ ଜଟିଳ ଅନୁଷ୍ଠାନ ଯଜ୍ଞ କ୍ରିୟା ପ୍ରାଧାନ୍ୟ ଲାଭ କଲା । ଧର୍ମବ୍ୟବସାୟୀ ବ୍ରାହ୍ମଣମାନେ ସ୍ୱଭାବତଃ ଏହି ଅନୁଷ୍ଠାନମାନଙ୍କରେ ପାରଦର୍ଶୀ ହେଲେ । ଫଳତଃ ସେମାନଙ୍କର ପ୍ରୟୋଜନୀୟତା ହେତୁରୁ ସେମାନେ ସମାଜରେ ଅସୀମ କ୍ଷମତାର ଅଧିକାରୀ ହେଲେ । କାଳକ୍ରମେ ସେମାନେ ପଥଭ୍ରଷ୍ଟ ହୋଇ ଏହି ଅସୀମ ଶକ୍ତିର ଅପବ୍ୟୟ କଲେ । ସ୍ୱାର୍ଥସିଦ୍ଧି ଉଦ୍ଦେଶ୍ୟରେ ସେମାନେ ଯଜ୍ଞ ଦକ୍ଷିଣା ଆଦିର ବ୍ୟବସ୍ଥା କଲେ । ପୁଣି ସ୍ୱାଧିକାର ଅକ୍ଷୁଣ୍ଣ ରଖିବା ପାଇଁ ସେମାନେ ନାନା କୌଶଳ ଅବଲମ୍ବନ କରି ବ୍ରାହ୍ମଣେତର ଜାତିମାନଙ୍କୁ ଚିର ଅଜ୍ଞାନତାରେ ରଖିବାର ଚେଷ୍ଟା କଲେ । ଖ୍ରୀଷ୍ଟପୂର୍ବ ସପ୍ତମ ଓ ଅଷ୍ଟମ ଶତାବ୍ଦୀ ମଧ୍ୟରେ ଲେଖନ ବିଦ୍ୟା ଭାରତରେ ପ୍ରବେଶ କରିଥିଲେ ହେଁ ଏହା ବହୁବେଳଯାଏ ଯଥେଷ୍ଟ ପରିମାଣରେ ବ୍ୟବହୃତ ହୋଇ ନ ଥିଲା । ବୋଧହୁଏ ବ୍ରାହ୍ମଣମାନେ ସ୍ୱାଧିକାର ହରାଇବା ଆଶଙ୍କାରେ ଗ୍ରନ୍ଥମାନ ଲିପିବଦ୍ଧ କରିବାପାଇଁ ଇଚ୍ଛା କରି ନଥିଲେ । ଅଧ୍ୟୟନ ଓ ଦକ୍ଷିଣାଦାୟକ ଯଜନ ଯାଜନ କେବଳ ବ୍ରାହ୍ମଣମାନଙ୍କର କାର୍ଯ୍ୟ ହେଲା । ବ୍ରାହ୍ମଣର କଠୋର ଶାସନାଧୀନରେ ଅନ୍ତର୍ଜାତିର ବ୍ୟବସାୟ

Digitized by srujanika@gmail.com

ସଠସ୍ୱଦନ ବହିର୍ଭୂତର ହେଲା । ଏକାଧିକ ରାଜା ଓ ଶାସନକର୍ତ୍ତାମାନେ ଅନ୍ତର୍ବିବାଦରେ ମତ୍ତ ହୋଇ ଭାରତ ବର୍ଷ ପ୍ଲାବିତ କରୁଥିଲେ । ଆମ୍ଭମାନଙ୍କର ଉତ୍କଳଭୂମି ମଧ୍ୟ ଉକ୍ତବିଧ ପୌରୋହିତ୍ୟ ଅତ୍ୟାଚାର ଦ୍ୱାରା ଜର୍ଜରିତ ହେଉଥିଲା । ଏହି ସମୟରେ ଦେଶ ତଥା ସମାଜରେ ଉପରୋକ୍ତ କଳୁଷ ଦୂର କରିବା ପାଇଁ ଖ୍ରୀ: ପୂ: ୬ଷ୍ଠ ଶତାବ୍ଦୀରେ ଉତ୍ତରଭାରତରେ ସୂର୍ଯ୍ୟୋଦୟ ହେଲା ।

କ୍ଷତ୍ରିୟ ସନ୍ତାନ ଗୌତମ ବୁଦ୍ଧ ଖ୍ରୀ: ପୂ: ୬ଷ୍ଠ ଶତାବ୍ଦୀରେ ବ୍ରାହ୍ମଣର ଅନ୍ୟାନ୍ୟ ପ୍ରାଧାନ୍ୟ ବିରୁଦ୍ଧରେ ମସ୍ତକ ଉତ୍ତୋଳନ କରିଥିଲେ । ତାଙ୍କର ପ୍ରଚାରିତ ଧର୍ମ ଯଜ୍ଞ, ତପସ୍ୟା ଓ ଜାତିଭେଦ ଆଦିର ପକ୍ଷପାତୀ ନଥିଲା । ତାଙ୍କର ଧର୍ମ କେତେଗୁଡ଼ିଏ ନୈତିକ ନିୟମ ମାତ୍ର । ଦୟା, କ୍ଷମା, ଦାକ୍ଷିଣ୍ୟ, ଅହିଂସା, ଗୁରୁଭକ୍ତି, ଆତ୍ମସଂଯମ ଓ ପରୋପକାରିତା ପ୍ରଭୃତି କେତେଗୁଡ଼ିଏ ନୀତ୍ୟବଥିତ ହିଁ ତାଙ୍କର ଧର୍ମ ଥିଲା । ଏହି ନିୟମମାନ ପାଳନ କଲେ ମାନବ ବୁଦ୍ଧତ୍ୱ ପ୍ରାପ୍ତ ହୋଇ ନିର୍ବାଣ ଲାଭ କରେ । ଅର୍ଥାତ୍ ପୁନର୍ବାର ଜନ୍ମ ଲାଭ ନକରି ସଂସାରର ରୋଗଶୋକମାନଙ୍କରୁ ଏକାବେଳକେ ମୁକ୍ତିଲାଭ କରେ । କି ବ୍ରାହ୍ମଣ, କି ବ୍ରାହ୍ମଣେତର ସମସ୍ତେ ନିଜେ ନିଜେ ଏହି ନିୟମ ଆଚରଣ କରି-ପାରନ୍ତି । ସୁତରାଂ ତାଙ୍କ ମତରେ ଯଜ୍ଞ ଓ ତପସ୍ୟା ଆଦି ଅନାବଶ୍ୟକ । ଏହି ନିୟମ ଯଦି ମୁକ୍ତିର ଉପାୟ ହୁଏ, ତାହାହେଲେ ଈଶ୍ୱରଙ୍କର ଅସ୍ତିତ୍ୱ ବା ନାସ୍ତିତ୍ୱ ସମ୍ବନ୍ଧରେ କଳ୍ପନା ଶକ୍ତି ପ୍ରୟୋଗ କରି କାଳକ୍ଷେପଣ କରିବା ନିଷ୍ପ୍ରୟୋଜନ । ସେଥିପାଇଁ କୌଣସି ଶିଷ୍ୟ ଈଶ୍ୱରଙ୍କର ଅସ୍ତିତ୍ୱ ସମ୍ବନ୍ଧରେ ପ୍ରଶ୍ନ କରିବାରୁ ବୁଦ୍ଧଦେବ ଉତ୍ତର କରିଥିଲେ, "ମୁଁ ସେ ବିଷୟ ଚିନ୍ତା କରିନାହିଁ ।"

ବ୍ରାହ୍ମଣର ଅନ୍ୟାଯ୍ୟ ଅଧିକାର ବିରୁଦ୍ଧରେ କ୍ଷତ୍ରିୟ ଜାତିର ପ୍ରତିବାଦ ସ୍ୱରୂପ ବୁଦ୍ଧଦେବ ଉପରୋକ୍ତ ଧର୍ମ ପ୍ରଚାର କରିଥିଲେ । ସମସ୍ତ ଅତ୍ୟାଚାରିତ ବ୍ରାହ୍ମଣେତର ଜାତିମାନେ ମହୋଲ୍ଲାସରେ ଏହି ଧର୍ମ ଗ୍ରହଣ କଲେ । ବ୍ରାହ୍ମଣ-ପ୍ରାଧାନ୍ୟରେ ମୂଳୀଭୂତ ଯଜ୍ଞ ଓ ତଦାନୁଷଙ୍ଗିକ ବିଧାନମାନଙ୍କୁ ଲଙ୍ଘନ କରିବା ପାଇଁ ସେମାନେ ବୌଦ୍ଧଧର୍ମକୁ ଏକମାତ୍ର ଉପାୟ ମନେକଲେ । ଏକ ସ୍ଥାନରେ ଏକତ୍ର ବାସ କରି ଅନ୍ୟର ଦୃଷ୍ଟିରେ ନୀଚ ଜାତି ବୋଲି ବିବେଚିତ ହେବା ପାଇଁ କେହି ଇଚ୍ଛା କରେ ନାହିଁ । ଏହି ହେତୁରୁ ଶତଶତ ନରନାରୀ ଅକୁଣ୍ଠିତ ଚିତ୍ତରେ ବୌଦ୍ଧ ଧର୍ମର ଆଶ୍ରୟ ଗ୍ରହଣ କଲେ । ବୌଦ୍ଧମାନଙ୍କ ମଧ୍ୟରେ ଦୁଇଟି ବିଭାଗ ଥିଲା । ଏକ ବିଭାଗର ଲୋକେ ସଂସାରତ୍ୟାଗୀ ଶ୍ରମଣ ବା ସନ୍ନ୍ୟାସୀ ଥିଲେ । ଅନ୍ୟ ବିଭାଗର ଲୋକେ ସଂସାରରେ ରହି ଧର୍ମାଚରଣ କରୁଥିଲେ । ସୁତରାଂ କି ସଂସାରବିରକ୍ତ, ସଂସାରବନ୍ଧନବଦ୍ଧ ସମସ୍ତଙ୍କ ପାଇଁ ଏହି ଧର୍ମ ମାର୍ଗ ଉନ୍ମୁକ୍ତ ଥିଲା ।

Digitized by srujanika@gmail.com

ଖ୍ରୀ: ପୂ: ୬ଷ୍ଠ ଶତାବ୍ଦୀରେ ବୌଦ୍ଧଧର୍ମ ପ୍ରବର୍ତ୍ତିତ ହେଲା । ବୋଧହୁଏ, ଏହା ଏହି ଶତାବ୍ଦୀରେ ଉତ୍କଳରେ ପ୍ରବେଶ କରିଥିଲା । ଖ୍ରୀ: ପୂ: ପଞ୍ଚମ ଶତାବ୍ଦୀରେ କ୍ଷେମ ବୁଦ୍ଧଦେବଙ୍କର ପବିତ୍ର ଦନ୍ତ ଆଣି ଉତ୍କଳରାଜ ବ୍ରହ୍ମଦତ୍ତଙ୍କୁ ଉପହାର ଦେଇଥିଲେ । ବ୍ରହ୍ମଦତ୍ତ ମହୋତ୍ସାହରେ ଏହି ଦନ୍ତକୁ ଏକାଧିକତଳବିଶିଷ୍ଟ ମନ୍ଦିରରେ ସ୍ଥାପନ କଲେ । ବୋଧହୁଏ ଏତତ୍ପୂର୍ବରୁ ବ୍ରହ୍ମଦତ୍ତ ବୌଦ୍ଧଧର୍ମ ଅବଲମ୍ବନ କରିଥିଲେ । ଦୁର୍ଭାଗ୍ୟବଶତଃ ଆମ୍ଭେମାନେ ଏହାଙ୍କ ପୂର୍ବବର୍ତ୍ତୀ ଉତ୍କଳୀୟ ରାଜାମାନଙ୍କ ସମ୍ବନ୍ଧରେ କିଛି ଜାଣି ନାହୁଁ ।

ଦୟା, କ୍ଷମା, ମୈତ୍ରୀ, ଭକ୍ତି ଓ ଦାକ୍ଷିଣ୍ୟ ବୌଦ୍ଧଧର୍ମର ମୂଳମନ୍ତ୍ର । ସୁତରାଂ ବ୍ରହ୍ମା, କୁବେର, ବରୁଣ ପ୍ରଭୃତି ବ୍ରାହ୍ମଣ ଦେବତାମାନେ ଘୃଣିତ ନହୋଇ ଏହି ଧର୍ମରେ ସ୍ଥାନ ଲାଭ କରିଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀଯାଏ ସ୍ୱୟଂ ବୁଦ୍ଧଦେବ ବୌଦ୍ଧପୀଠରେ ଦେବତାସ୍ୱରୂପ ପୂଜିତ ହୋଇ ନଥିଲେ । ତତ୍ପୂର୍ବେ କେବଳ ଚକ୍ର, ସ୍ତୂପ ଓ ବୋଧିବୃକ୍ଷ ଆଦି ପୂଜିତ ହେଉଥିଲା । ବ୍ରାହ୍ମଣ, ଦେବତାମାନେ ମଧ୍ୟ ଏହିସବୁ ଦ୍ରବ୍ୟର ପୂଜା କରୁଥିବା ତତ୍ସମୟ ସମସାମୟିକ ଶିଳ୍ପ ଓ ସାହିତ୍ୟରୁ ଜଣାଯାଏ । ବୌଦ୍ଧଧର୍ମର ପକ୍ଷପାତ ଶିଳ୍ପୀ ଏବଂ ଗ୍ରନ୍ଥକାରମାନେ ବ୍ରାହ୍ମଣ, ଦେବତାମାନଙ୍କୁ ପୂଜା କରି ସ୍ଥାନଦେବା ସ୍ୱାଭାବିକ । ସେଥିପାଇଁ ଭାରତ ତଥା ଉତ୍କଳର ବୌଦ୍ଧଶିଳ୍ପ ମଧ୍ୟରେ ଆମ୍ଭେମାନେ ବୁଦ୍ଧଙ୍କ ବା ବୋଧିବୃକ୍ଷର ସମ୍ମୁଖରେ ଯୋଡ଼ହସ୍ତ ବ୍ରାହ୍ମଣ ଦେବତାମାନଙ୍କର ଚିତ୍ର ଦେଖୁଁ ।

ବୌଦ୍ଧଧର୍ମର ପ୍ରବର୍ତ୍ତନ ସମୟରେ ଭାରତ ତଥା ଉତ୍କଳରେ ଅସଭ୍ୟ ଅନାର୍ଯ୍ୟମାନଙ୍କ ମଧ୍ୟରେ ବୃକ୍ଷ, ସର୍ପ ଓ କାଷ୍ଠ ପ୍ରଭୃତି ଜଡ଼ ପଦାର୍ଥର ପୂଜା ପ୍ରଚଳିତ ଥିଲା । ଏହି ଅନାର୍ଯ୍ୟମାନଙ୍କର ମଧ୍ୟ ନାନାପ୍ରକାର ଅଦୃଶ୍ୟବାସୀ ଭୂତପ୍ରେତାଦିର ବିଶ୍ୱାସ ଥିଲା । ଆର୍ଯ୍ୟମାନେ ଏହି ଅନାର୍ଯ୍ୟପ୍ରଜାର ସଂସ୍ପର୍ଶରେ ଆସିବା ହେତୁରୁ ସେମାନଙ୍କର ଧର୍ମ କେତେକ ପରିମାଣରେ ଏତଦ୍ଦ୍ୱାରା ରଞ୍ଜିତ ହୋଇଥିଲା । ଆର୍ଯ୍ୟପ୍ରଣୀତ ଅଥର୍ବବେଦ ଏବଂ ଶାସ୍ତ୍ରବହିର୍ଭୂତ ଅଶ୍ୱତ୍ଥ ପ୍ରଦକ୍ଷିଣ ଆଦି ଏହି ଅନାର୍ଯ୍ୟ ସଂସ୍ପର୍ଶର ଫଳ । ବୌଦ୍ଧଧର୍ମ ମଧ୍ୟ ଏହି ଅନାର୍ଯ୍ୟ ସଂସ୍ପର୍ଶରେ ଆସିଥିବା ହେତୁରୁ ତଦନୁରୂପ କଳୁଷିତ ହେବା ସ୍ୱାଭାବିକ । ଭାରତୀୟ ତଥା ଉତ୍କଳୀୟ ବୌଦ୍ଧ ସ୍ଥାପତ୍ୟର ଅନ୍ତର୍ଗତ ନାଗ ଓ ପିଶାଚର ଚିତ୍ରମାନ ଅନାର୍ଯ୍ୟ ସଙ୍ଗମର ଫଳ । ନାଗ ଓ ନାଗକନ୍ୟାମାନଙ୍କର ପ୍ରଥମେ ପ୍ରଥମେ ମାନବଶରୀର ସଙ୍ଗେ ସଙ୍ଗେ ଫଣା ସଂଯୁକ୍ତ ଥିଲା । ପରେ କଟୀଠାରୁ ମସ୍ତକଯାଏ କେବଳ ସର୍ପାକୃତି ହୋଇ କଳ୍ପିତ ହେଲା । ଭୁବନେଶ୍ୱର ସମୀପସ୍ଥ ଖଣ୍ଡଗିରି ଓ ଉଦୟଗିରିରେ ବହୁ ବୃକ୍ଷ ଉପାସକ ପିଶାଚ ଓ ନାଗକନ୍ୟାମାନଙ୍କର ଚିତ୍ର ଦେଖାଯାଏ ।

Digitized by srujanika@gmail.com

ବୁଦ୍ଧଦେବଙ୍କର ଜୀବନକାଳ ମଧ୍ୟରେ ବୌଦ୍ଧଧର୍ମ ସର୍ବତ୍ର ପ୍ରଚଳିତ ହୋଇ ନଥିଲା । ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ମହାରାଜ ଅଶୋକ ଏହାକୁ ଭାରତର ରାଜଧର୍ମରେ ପରିଣତ କଲେ । ତଦବଧି ଏହା କେବଳ କେତେକ ବୌଦ୍ଧ ସନ୍ନ୍ୟାସୀମାନଙ୍କ ଦ୍ୱାରା ଉତ୍କଳ ପ୍ରଭୃତି କେତେକ ଅଞ୍ଚଳକୁ ନୀତ ହୋଇଥିଲା । କୌଣସି କୌଣସି ରାଜା ଏହାର ପକ୍ଷପାତୀ ଥିଲେ । କିନ୍ତୁ ସାଧାରଣ ଲୋକମାନଙ୍କ ମଧ୍ୟରେ ଏହି ଧର୍ମର ମହତ୍ତ୍ୱ ସମ୍ୟକ୍ ପ୍ରଚଳିତ ହୋଇ ନଥିଲା । ବୌଦ୍ଧ ସନ୍ନ୍ୟାସୀ ବା ପରିବ୍ରାଜକମାନେ ବିଭିନ୍ନ ସ୍ଥଳରେ ବକ୍ତୃତା ପ୍ରଦାନ କରୁଥିଲେହେଁ ସେମାନଙ୍କର ସଂଖ୍ୟା ଯଥେଷ୍ଟ ନଥିଲା ।

କିନ୍ତୁ ଅଶୋକଙ୍କ ଦିନରୁ ବ୍ରାହ୍ମଣ ପ୍ରାଧାନ୍ୟ ମୂଳରେ କୁଠାରଘାତ ଆରବ୍ଧ ହୋଇଥିଲା । ବୌଦ୍ଧମାନଙ୍କ ସଂଖ୍ୟା ଅଳ୍ପ ଥିଲେହେଁ ବ୍ରାହ୍ମଣମାନେ ଅଗ୍ରବର୍ତ୍ତୀ ବିପ୍ଳବ ଦୃଷ୍ଟିରେ ଦର୍ଶକ ହୋଇଥିଲେ । ସମଦର୍ଶୀ ବୌଦ୍ଧଧର୍ମ ଆଗ୍ରହଶୀଳ ସମସ୍ତଙ୍କ ଉପକାର ପାଇଁ ଧର୍ମଗ୍ରନ୍ଥମାନ ଲିପିବଦ୍ଧ କରୁଥିଲା । ଏହି ସମୟରୁ ଭାରତ ତଥା ଉତ୍କଳରେ ଲିଖନ ବିଦ୍ୟା ବ୍ୟବହୃତ ହୋଇଥିବାରୁ ଅନୁଶାସନଲିପି ସିଦ୍ଧହସ୍ତ ଶିଳ୍ପୀଙ୍କଦ୍ୱାରା ଲିଖିତ ହୋଇଥିବା ପରି ବୋଧହୁଏ ।

ଭାରତର ଅନ୍ୟାନ୍ୟ ଅଞ୍ଚଳପରି ଉତ୍କଳରେ ମଧ୍ୟ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ବୌଦ୍ଧଧର୍ମର ସ୍ରୋତ ପ୍ରବଳ ହୋଇଥିଲା । ମହାରାଜ ଅଶୋକ ଏହି ଶତାବ୍ଦୀରେ ଉତ୍କଳ ଜୟ କଲେ । ଧର୍ମ ପ୍ରଚାରକମାନେ ଗ୍ରାମେ ଗ୍ରାମେ ବିଚରଣ କଲେ । ଧର୍ମପ୍ରଚାର ରାଜକର୍ମଚାରୀମାନଙ୍କ କର୍ତ୍ତବ୍ୟର ଅଙ୍ଗ ହେଲା । ବନ ପର୍ବତମାନଙ୍କରେ ଧର୍ମପୀଠ ସ୍ଥାପିତ ହେଲା । ଲୋକସମାଗମ ସ୍ଥାନମାନଙ୍କରେ ଅନୁଶାସନ ଖୋଦିତ ହେଲା । ରୋଗୀପାଇଁ ଔଷଧାଳୟ, ଅତିଥି ପାଇଁ ଆଶ୍ରୟଭବନ ଓ ପାନ୍ଥ ପାଇଁ ଜଳାଶୟ ଓ ଛାୟା ବୃକ୍ଷମାନ ସ୍ଥାପିତ ହେଲା । ଧଉଳିଗିରିର ପ୍ରସ୍ତର ଦେହରେ ସ୍ଥାନେସ୍ଥାନେ ଯେଉଁ ଖୋଲ ଦେଖାଯାଏ, ସେ ସବୁ ବୋଧହୁଏ କ୍ଷୁଧାର୍ତ୍ତଙ୍କୁ ଅନ୍ନଦାନ ବା ରୋଗୀପାଇଁ ଔଷଧ ପ୍ରସ୍ତୁତ କରାଇବା ନିମିତ୍ତ ହୋଇଥିଲା । ସ୍ଥାନେ ସ୍ଥାନେ ସ୍ତମ୍ଭ, ସ୍ତୂପ, ଚୈତ୍ୟ ଓ ବିହାରମାନ ସ୍ଥାପିତ ହେଲା । ଚୈତ୍ୟ ବା ବିହାରମାନଙ୍କରେ ସନ୍ନ୍ୟାସୀ ବା ଶ୍ରମଣମାନେ ଏକତ୍ରିତ ହୋଇ ଧର୍ମଚର୍ଚ୍ଚା କରୁଥିଲେ । ତୋଷଳୀଠାରେ ମହାରାଜ ଅଶୋକ ଏହିପରି ଏକ ଚୈତ୍ୟ ବା ବିହାର ସ୍ଥାପନ କରିଥିଲେ ଏବଂ ଏହିଠାକୁ ଆସି ଧର୍ମବକ୍ତୃତା ଶ୍ରବଣ କରିବା ପାଇଁ ସେ ସମସ୍ତ ପ୍ରଜାମାନଙ୍କୁ ଆଦେଶ ଦେଇଥିଲେ । ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର ପ୍ରଥମ ଭାଗରେ ହୁଏନ୍‌ସାଂ ତାମ୍ରଲିପ୍ତର ସୀମା ଓ ଋଷିକୁଲ୍ୟା ନଦୀର ମଧ୍ୟବର୍ତ୍ତୀ ଅଞ୍ଚଳରେ ଅଶୋକ ନିର୍ମିତ ଦଶଟି ସ୍ତୂପ ଦେଖିଥିଲେ । ଦୁଃଖର କଥା, ଏହି ସ୍ତୂପ ମଧ୍ୟରୁ ଅଦ୍ୟାବଧି ଗୋଟିଏ ସୁଦ୍ଧା

Digitized by srujanika@gmail.com

ବିଦ୍ୟମାନ ନାହିଁ । ଉଦୟଗିରିର ସ୍ୱର୍ଗପୁରୀ ଗୁମ୍ଫାରେ ଯେଉଁ ସୁପ୍ରଶସ୍ତ ବୃହତ ଅଛି, ତାହା ବୋଧହୁଏ ଏକ ବିହାରର ଚିହ୍ନ । ପୁରୀ ନଗରଠାରେ ବୌଦ୍ଧଯୁଗରେ ଏକ ବିହାର ସ୍ଥାପିତ ହୋଇଥିବାର କେହି କେହି ଅନୁମାନ କରନ୍ତି ।

ଅଶୋକ ବୌଦ୍ଧଧର୍ମର ଯେଉଁ ସ୍ରୋତ ଉତ୍କଳ, ତଥା ଅନ୍ୟାନ୍ୟ ଅଞ୍ଚଳରେ ପ୍ରବାହିତ କରିଥିଲେ, ତାହା ତାହାଙ୍କର ତିରୋଧାନପରେ ମଧ୍ୟ ବହୁ ଶତାବ୍ଦୀଯାଏ ଧାବମାନ ହେବାକୁ ଲାଗିଲା । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ ଖାରବେଳ ବହୁ ଚୈତ୍ୟ ଓ ବିହାର ନିର୍ମାଣ କରାଇଥିଲେ । କୌଣସି କୌଣସିଠାରେ ପ୍ରଜାମାନଙ୍କ ମଧ୍ୟରୁ କେହି କେହି ବୌଦ୍ଧପୀଠ ସ୍ଥାପନ କରାଇଥିଲେ ।

ବୌଦ୍ଧଧର୍ମର ପ୍ରାଧାନ୍ୟ ସଙ୍ଗେ ସଙ୍ଗେ ବୌଦ୍ଧ ଭାଷା ପାଲି ଉନ୍ନତ ଲାଭକଲା । ବୌଦ୍ଧଗ୍ରନ୍ଥ ଓ ଅନୁଶାସନମାନ ଏହି ଭାଷାରେ ଲିଖିତ ହୋଇଥିଲା । ଅଶୋକଙ୍କ ଅନୁଶାସନରେ ଜନାସ୍ୱ ପଣ୍ଡିତ ବୌଦ୍ଧଧର୍ମ ଗ୍ରନ୍ଥର ନାମୋଲ୍ଲେଖ ଦେଖାଯାଏ । ଦେଶର ଜ୍ଞାନୀ ଓ ଅନୁସନ୍ଧିତ୍ସୁ ବ୍ୟକ୍ତିମାନେ ସଂସ୍କୃତ ପରିବର୍ତ୍ତେ ପାଲିଭାଷାର ଚର୍ଚ୍ଚା କରିବାକୁ ଲାଗିଲେ । ପ୍ରାଚୀନ ସଂସ୍କୃତ ଭାଷା କେବଳ କେତେକ ବ୍ରାହ୍ମଣ୍ୟଧର୍ମାବଲମ୍ବୀମାନଙ୍କଦ୍ୱାରା ରକ୍ଷିତ ହୋଇଥିଲା ।

ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ବୌଦ୍ଧଧର୍ମର ମହାଯାନ ପନ୍ଥା ପ୍ରବର୍ତ୍ତିତ ହେଲା । ଏହି ପନ୍ଥାର ଅବଲମ୍ବୀମାନେ ସ୍ୱୟଂ ବୁଦ୍ଧଦେବଙ୍କୁ ଦେବତା ସ୍ୱରୂପ ପୂଜା କଲେ । ଏହି ସମୟଠାରୁ ବୁଦ୍ଧମୂର୍ତ୍ତି ବୌଦ୍ଧ ସ୍ଥାପତ୍ୟ ମଧ୍ୟରେ ସ୍ଥାପିତ ହେଲା । ବ୍ରାହ୍ମଣ୍ୟ ଧର୍ମାବଲମ୍ବୀମାନେ ରାମାୟଣ ଓ ମହାଭାରତ ଯୁଗରେ ବୈଦିକ ଦେବତା-ମାନଙ୍କର ମୂର୍ତ୍ତି କଳ୍ପନା କରିଥିଲେ । ଏହି ଯୁଗରେ ମଧ୍ୟ ଅନେକ ନୂତନ ଦେବଦେବୀ କଳ୍ପିତ ହୋଇଥିଲେ । ଏହି ଦେବଦେବୀମାନଙ୍କର ମୂର୍ତ୍ତି ନାନାପ୍ରକାର ମନ୍ଦିର ମଧ୍ୟରେ ପୂଜିତ ହେଉଥିଲା । ବୌଦ୍ଧଧର୍ମର ପ୍ରାବଲ୍ୟ ମୁହୂର୍ତ୍ତରେ ମଧ୍ୟ ବ୍ରାହ୍ମଣ୍ୟ ଧର୍ମାବଲମ୍ବୀ ତଥା ବ୍ରାହ୍ମଣ ମନ୍ଦିର ଓ ଦେବଦେବୀ ଦେଶ ମଧ୍ୟରେ ବହୁତ ବିଦ୍ୟମାନ ଥିଲେ । ଏହି ପୁରାଣ କାଳରେ ମଧ୍ୟ ଦେଶ ମଧ୍ୟରେ ଶୈବ, ସୌର ଓ ବୈଷ୍ଣବମାନେ ବାସକରୁଥିଲେ । କୌଣସି କୌଣସିଠାରେ ସ୍ୱୟଂପ୍ରକୃତ ଶିବଲିଙ୍ଗ ମଧ୍ୟ ସ୍ଥାପିତ ହୋଇଥିଲା । ବୌଦ୍ଧସ୍ତୂପର ଗଠନ ପ୍ରଣାଳୀ ଶିବଲିଙ୍ଗ ବା ବ୍ରାହ୍ମଣ ମନ୍ଦିର ଆଦର୍ଶରେ ସମାକୃତ ହୋଇଥିଲା । ସୁତରାଂ ମହାଯାନପନ୍ଥୀମାନଙ୍କ ଦ୍ୱାରା ମୂର୍ତ୍ତିପୂଜାର ସମ୍ପାତ ହେବାଦିନୁ ବୌଦ୍ଧଧର୍ମ ଓ ବ୍ରାହ୍ମଣଧର୍ମ ମଧ୍ୟରେ ବ୍ୟବଧାନ କ୍ରମଶଃ ସଙ୍କୀର୍ଣ୍ଣତର ହୋଇ ଆସିଲା । ବ୍ରାହ୍ମଣମାନେ ଏହି ସୁଯୋଗ ଦେଖି ବୌଦ୍ଧଧର୍ମର ସ୍ୱାତନ୍ତ୍ର୍ୟ ଲୋପ କରିବା ତାହାକୁ ସ୍ୱଧର୍ମ ଦ୍ୱାରା ଗ୍ରାସ କରିବାକୁ ଉଦ୍ୟମ କଲେ ।

Digitized by srujanika@gmail.com

ପଶ୍ଚାନ୍ତରେ, କାଳକ୍ରମେ ବୌଦ୍ଧମାନଙ୍କ ମଧ୍ୟରେ ବିଭିନ୍ନପନ୍ଥା ଆବିର୍ଭୂତ ହୋଇଥିଲା । ଏହି ଭିନ୍ନ ପନ୍ଥାବଲମ୍ବୀମାନେ କୌଣସି ଶକ୍ତିଶାଳୀ ବୌଦ୍ଧସମ୍ରାଟଙ୍କ ଦ୍ୱାରା ଶାସିତ ନହେବାରୁ ପରସ୍ପର ସହିତ ଦ୍ୱନ୍ଦ୍ୱମଗ୍ନ ହେଉଥିଲେ । ଫଳତଃ ବ୍ରାହ୍ମଣ୍ୟ ଧର୍ମାବଲମ୍ବୀମାନଙ୍କ କୌଶଳ ସଙ୍ଗେ ସଙ୍ଗେ ବୌଦ୍ଧଧର୍ମ ଭାରତରେ କ୍ରମଶଃ ଦୁର୍ବଳ ହୋଇ ଆସୁଥିଲା । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ ପାଣିନି ବ୍ରାହ୍ମଣ୍ୟଭାଷା ସଂସ୍କୃତକୁ ନବଜୀବନ ଦାନ କରିଥିଲେ । ବୌଦ୍ଧର ଅନ୍ତର୍ବିବାଦ ଏବଂ ବ୍ରାହ୍ମଣ୍ୟର କ୍ରମୋତ୍ଥାନ ସଙ୍ଗେ ସଙ୍ଗେ ସଂସ୍କୃତ ଭାଷାର ଗତିରୋଧ ଅସମ୍ଭବ ହେଲା । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ରୁଦ୍ରଦାମନଙ୍କ ଅନୁଶାସନ ଏହି ଭାଷାରେ ଲିଖିତ ହୋଇଥିଲା । ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ କନିଷ୍କଙ୍କ ରାଜତ୍ୱ ସମୟରେ ବୌଦ୍ଧଗ୍ରନ୍ଥମାନ ଏ ଭାଷାରେ ରଚିତ ହୋଇଥିଲା ।

ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର ପ୍ରଥମ ଭାଗରେ ବୌଦ୍ଧଧର୍ମର ବିରୋଧୀ ବ୍ରାହ୍ମଣ-କୌଶଳ ରାଜଶକ୍ତିର ସାହାଯ୍ୟପ୍ରାପ୍ତ ହେଲା । ପ୍ରବଳ ପରାକ୍ରାନ୍ତ ଗୁପ୍ତ ରାଜାମାନେ ଭାରତରେ ବ୍ରାହ୍ମଣ୍ୟଧର୍ମ ତଥା ସଂସ୍କୃତ ଭାଷାର ପୁନଃ ସ୍ଥାପନ ଲାଗି ନାନା ଉପାୟ ଅବଲମ୍ବନ କଲେ । ଏହିପରି ଭାବରେ ବୌଦ୍ଧଧର୍ମ କ୍ରମଶଃ ହୀନପ୍ରଭ ହୋଇ ପରିଶେଷରେ ସପ୍ତମ ଶତାବ୍ଦୀରେ ଟିକିଏ ମାତ୍ର ଜାଗା ଛାଡ଼ି ଭାରତରୁ ଏକାବେଳକେ ଲିଭିଗଲା ।

କିନ୍ତୁ ଉତ୍କଳର ବ୍ରାହ୍ମଣ-କୌଶଳ ରାଜଶକ୍ତିର ଅନାସାହାଯ୍ୟରେ ଆଉ କିଛି କାଳ ବୌଦ୍ଧଧର୍ମ ବିରୁଦ୍ଧରେ ଯୁଦ୍ଧ କରିଥିଲା; ବରଂ ଖ୍ରୀଷ୍ଟୀୟ ୪ର୍ଥ ଶତାବ୍ଦୀରେ ଏକାଧିକ କ୍ଷୁଦ୍ର ବୌଦ୍ଧ ଶାସନକର୍ତ୍ତା ଉତ୍କଳରେ ବୌଦ୍ଧଧର୍ମର ଉନ୍ନତି ସାଧନ କରିଥିବାର ଅନୁମିତ ହୁଏ । ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ଜନ୍ମେଜୟ ଓ ଯଯାତି ଉତ୍କଳ ଜୟ କଲେ । ଜନ୍ମେଜୟ ଓ ତଦୀୟ ବଂଶଧରମାନେ ପ୍ରଧାନତଃ ଶୈବ ଥିଲେ । ଏମାନେ ବୌଦ୍ଧଧର୍ମର ବିପକ୍ଷରେ ବ୍ରାହ୍ମଣମାନଙ୍କ ସହିତ ମିଳିତ ହୋଇ ମହାକୌଶଳପୂର୍ବକ ଉତ୍କଳରେ ବୌଦ୍ଧଧର୍ମକୁ ବ୍ରାହ୍ମଣ୍ୟଧର୍ମ ମଧ୍ୟରେ ବିଲୀନ କରାଇଦେଲେ । ରଥଯାତ୍ରା ଆଦି ବୌଦ୍ଧ ଅନୁଷ୍ଠାନମାନ ବ୍ରାହ୍ମଣ ଅନୁଷ୍ଠାନରେ ପରିଣତ ହେଲା । ବ୍ରାହ୍ମଣ ମନ୍ଦିରର ମହୋତ୍ସବ ମଧ୍ୟରେ ଲୋକେ ଆଡ଼ମ୍ବରଶୂନ୍ୟ ବୌଦ୍ଧ ମଠକୁ ଭୁଲିଗଲେ । ପାର୍ଶ୍ୱଦେଶରେ ଆଡ଼ମ୍ବରପୂର୍ଣ୍ଣ ବ୍ରାହ୍ମଣ ପୀଠମାନ ସ୍ଥାପିତ ହୁଅନ୍ତେ ଜନସମାଜରେ ତାହାର ମହତ୍ତ୍ୱ ବିସ୍ମୃତ ହେଲା । କୌଣସି କୌଣସିଠାରେ ବୌଦ୍ଧମୂର୍ତ୍ତି ବା ସ୍ତୂପ ମଧ୍ୟ ବ୍ରାହ୍ମଣ ଦେବତା ବା ଶିବଲିଙ୍ଗରେ ପରିଣତ ହୋଇଥିବା ଅସମ୍ଭବ ନୁହେଁ । ଯେ ଯାହା ହେଉ, ଉତ୍କଳୀୟ ରାଜାମାନଙ୍କର ଧର୍ମୋତ୍ସାହର ଉପାୟମାନ ବର୍ତ୍ତମାନ ଅଜ୍ଞେୟ ନୁହେଁ । ସେସବୁ

Digitized by srujanika@gmail.com

ଯଥାକ୍ରମେ ଶୈବ ଓ ବୈଷ୍ଣବ ଯୁଗରେ କେଶରୀ ଓ ଗଙ୍ଗବଂଶୀୟ ରାଜାମାନଙ୍କ କାର୍ଯ୍ୟର ଅନ୍ତର୍ଗତ ।

ବୌଦ୍ଧଯୁଗରେ ଜୈନଧର୍ମ ମଧ୍ୟ ଉତ୍କଳରେ ପ୍ରତିଷ୍ଠା ଲାଭ କରିଥିଲା । ଏହି ଧର୍ମ ବୌଦ୍ଧଧର୍ମର ସମସାମୟିକ । କିନ୍ତୁ ଏହା କେବେ ତାହା ଦ୍ୱାରା ଉତ୍କଳକୁ ଆସିଥିଲା, ଜଣା ନାହିଁ । ଆମ୍ଭେମାନେ କହିଅଛୁଁ, ଉତ୍କଳର ଚେଦିରାଜ ବଂଶୀୟ ରାଜାମାନେ ଜୈନ ଥିଲେ । ଖଣ୍ଡଗିରି ଜୈନମାନଙ୍କର ପୀଠ ଥିଲା । ଏହି ପାହାଡ଼ସ୍ଥ ସାତଘର ନାମକ ଗୁମ୍ଫାରେ ଜୈନ ତୀର୍ଥଙ୍କର-ମାନଙ୍କର ମୂର୍ତ୍ତି ଅଛି । ମୂର୍ତ୍ତି-ପ୍ରଦର୍ଶିତ ସେମାନଙ୍କର ଲକ୍ଷଣମାନ ନିମ୍ନୋକ୍ତ ପଂକ୍ତି ସଙ୍ଗେ ମିଳି ଯାଉଛି—

"ବୃଷୋ ଗଜୋଽଶ୍ୱଃ ପ୍ଳବଗଃ
କ୍ରୌଞ୍ଚୋଽବ୍ଜଂ ସ୍ୱସ୍ତିକଃ ଶଶୀ ।
ମକରଃ ଶ୍ରୀବତ୍ସଃ ଖଡ୍‌ଗୀ
ମହିଷ ଶୂକର ସ୍ତଥା ।
ଶ୍ୟେନୋ ବଜ୍ରଂ ମୃଗଶ୍ଛାଗୋ
ନନ୍ଦ୍ୟାବର୍ତ୍ତୋ ଘଟୋଽପି ଚ ।
କୂର୍ମୋ ନୀଲୋତ୍ପଲଂ ଶଙ୍ଖଃ
ଫଣୀ ସିଂହୋଽର୍ହତାଂ ଧ୍ୱଜାଃ ।"

ଏଥିରୁ ଅନୁମିତ ହୁଏ, ମୂର୍ତ୍ତି ନିର୍ମାତାମାନେ ଜୈନ ଥିଲେ । ଏହି ଧର୍ମ ମଧ୍ୟ ବୌଦ୍ଧଧର୍ମ ପରି ବ୍ରାହ୍ମଣ୍ୟ ଧର୍ମଦ୍ୱାରା ବିତାଡ଼ିତ ହୋଇଅଛି ।

ଆମ୍ଭେମାନେ ପୂର୍ବେ କହିଅଛୁ, ବୌଦ୍ଧଧର୍ମ ଭାରତରେ ପ୍ରବର୍ତ୍ତିତ ହେଲା ପରେ ଲିଖନ ବିଦ୍ୟା ମୁକ୍ତ ଭାବରେ ବ୍ୟବହୃତ ହୋଇଥିଲା । ଉତ୍କଳରେ ବୌଦ୍ଧଧର୍ମର ପ୍ରଚାର ପରେ ଏହି ବିଦ୍ୟାର ଆଦର ହେଲା । ସାଧାରଣ ଲୋକେ ଏହି ବିଦ୍ୟା ଶିକ୍ଷା କରିଥିଲେ । ଭାରତର ଅନ୍ୟାନ୍ୟ ଅଞ୍ଚଳପରି ଉତ୍କଳରେ ମଧ୍ୟ ବୌଦ୍ଧଧର୍ମର ପ୍ରାଧାନ୍ୟ ମୁହୂର୍ତ୍ତରେ ପାଲି ଗାହିତ୍ୟର ଭାଷା ହୋଇଥିଲା ଏବଂ ଭାରତର ଅନ୍ୟାନ୍ୟ ଅଞ୍ଚଳରେ ସଂସ୍କୃତ ଭାଷାର ପୁନରୁଦ୍ଧାର ସଙ୍ଗେ ସଙ୍ଗେ ଉତ୍କଳରେ ମଧ୍ୟ ଏହି ଭାଷାର ପୁନରୁଦ୍ଧାର ହୋଇଥିବା ଅନୁମିତ ହୁଏ । ଯେହେତୁ ଉତ୍କଳରେ ବୌଦ୍ଧଯୁଗର ଅଦ୍ୟାବଧିକ ପରେ ଜନମେଜୟ ଯେଉଁ ତାମ୍ର ଶାସନ ଦାନ କରିଅଛନ୍ତି, ତାହା ସଂସ୍କୃତ ଭାଷାରେ ଜଣେ ଉତ୍କଳୀୟ ଦ୍ୱାରା ରଚିତ ହୋଇଅଛି ।

କିନ୍ତୁ ଉତ୍କଳରେ ଆମ୍ଭେମାନେ ସ୍ୱତନ୍ତ୍ର ଲୌକିକ ଭାଷା ଓ ଲିପିର ଚିହ୍ନ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଦେଖିବାକୁ ପାଉଁ । ଅଶୋକଙ୍କ ଅନୁଶାସନ ସବୁ

Digitized by srujanika@gmail.com

ସର୍ବସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ସେହି ହେତୁରୁ ହେଉ କିମ୍ବା ଉତ୍କଳୀୟ ଶିଳ୍ପୀଦ୍ୱାରା ଲିଖିତ ହୋଇଥିବା ହେତୁରୁ ହେଉ ଧଉଳି ଅନୁଶାସନର ଭାଷା ଓ ଲିପିରେ ସାମାନ୍ୟ ବୈଚିତ୍ର୍ୟ ପରିଦୃଷ୍ଟ ହୁଏ । ଏହି ବୈଚିତ୍ର୍ୟ ହିଁ ସ୍ୱତନ୍ତ୍ର ଲୌକିକ ଭାଷା ଓ ଲିପିର ଚିହ୍ନ ।

ବୌଦ୍ଧ ଯୁଗରେ ସମାଜର ଉନ୍ନତି ସଙ୍ଗେ ସଙ୍ଗେ ଭାଷା ଓ ଲିପି ସମ୍ବନ୍ଧରେ ଉତ୍କଳର ସ୍ୱାତନ୍ତ୍ର୍ୟ କ୍ରମଶଃ ବୃଦ୍ଧି ପ୍ରାପ୍ତ ହେଲା । ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର ପ୍ରଥମ ଭାଗରେ ହୁଏନ୍‌ସାଂ ଏହି ସ୍ୱାତନ୍ତ୍ର୍ୟର ଉଲ୍ଲେଖ କରିଅଛନ୍ତି ।

କେହି ମନେ କରନ୍ତି ନାହିଁ ଯେ, ଆଲୋଚିତ ଯୁଗରେ ଉତ୍କଳର ଲୌକିକ ଭାଷା ପାର୍ଶ୍ୱବର୍ତ୍ତୀ ଅନ୍ୟାନ୍ୟ ଅଞ୍ଚଳଠାରୁ ଏକାବେଳକେ ପୃଥକ୍ ହୋଇଯାଇଥିଲା । ଏହା କେବଳ ସ୍ୱାତନ୍ତ୍ର୍ୟର ମାର୍ଗରେ ଉପନୀତ ହୋଇଥିଲା ମାତ୍ର । ମଗଧ, ବଙ୍ଗ ଓ ଉତ୍କଳ ପ୍ରଭୃତି ଅଞ୍ଚଳର ଲୋକେ ପରସ୍ପରର ଭାଷା ବୁଝି-ପାରୁଥିଲେ । ସେଥିପାଇଁ ଏକ ପ୍ରଦେଶର ବୌଦ୍ଧ ବା ଜୈନ ପରିବ୍ରାଜକମାନେ ଅନ୍ୟ ପ୍ରଦେଶକୁ ଯାଇ ଲୋକମାନଙ୍କୁ ବକ୍ତୃତା ଦେଇପାରୁଥିଲେ ।

ଆଲୋଚିତ ଯୁଗରେ ଉତ୍କଳରେ ଅନେକ ଜ୍ଞାନୀ, ଶାସ୍ତ୍ରଜ୍ଞ, ଓ ଗ୍ରନ୍ଥକାର ଥିବାର ଅନୁମିତ ହୁଏ । ବୋଧହୁଏ, ଉତ୍କଳ ଏହି ଯୁଗରେ ଶାସ୍ତ୍ରାଲୋଚନାର ଅନ୍ୟ ଏକ କେନ୍ଦ୍ର ଥିଲା । ସେଥିପାଇଁ ବିଭିନ୍ନ ଅଞ୍ଚଳରୁ ମଧ୍ୟ ପଣ୍ଡିତମାନେ ଆକୃଷ୍ଟ ହୋଇ ଏଠାକୁ ଆସୁଥିଲେ । କନିଷ୍କଙ୍କ ସମସାମୟିକ କାଳରେ ଅର୍ଥାତ୍ ଖ୍ରୀଷ୍ଟୀୟ ପ୍ରଥମ ଓ ଦ୍ୱିତୀୟ ଶତାବ୍ଦୀରେ ଉତ୍କଳରେ ମଞ୍ଜୁଶ୍ରୀ ନାମକ ଜଣେ ବୋଧିସତ୍ତ୍ୱ ଥିଲେ । ଏହି ମହାତ୍ମା ଉତ୍କଳରେ ମହାଯାନ ପନ୍ଥା ପ୍ରଚାର କରୁଥିଲେ ଏବଂ ଏହି ପନ୍ଥା ସମ୍ପର୍କରେ ଅନେକଗୁଡ଼ିଏ ଗ୍ରନ୍ଥ ରଚନା କରିଥିଲେ । ବୋଧହୁଏ ମଞ୍ଜୁଶ୍ରୀ ଉତ୍କଳରେ ମହାଯାନ ପନ୍ଥାର ସର୍ବପ୍ରଥମ ପ୍ରଚାରକ ଥିଲେ । ଚାନ୍ଦ୍ର ବ୍ୟାକରଣର ରଚୟିତା ଚନ୍ଦ୍ରଗୋମି ଉତ୍କଳକୁ ଆସିଥିଲେ । ଋଷି ବାସୁମିତ୍ର କିୟତ୍କାଳ ପାଇଁ ଉତ୍କଳରେ ବାସ କରିଥିଲେ । ଏହି ସମୟରେ ମଣିକ ନାମକ ଜଣେ ବ୍ରାହ୍ମଣ ତାଙ୍କଠାରୁ ବୌଦ୍ଧଧର୍ମ ସମ୍ବନ୍ଧରେ ଶିକ୍ଷା ଲାଭ କରିଥିଲେ । କଥିତ ଅଛି, ବାସୁମିତ୍ର ଧର୍ମ ପ୍ରଚାର କଲାବେଳେ ଉତ୍କଳରେ ଏକ ବହୁମୂଲ୍ୟ ପ୍ରସ୍ତରର ଖଣି ଆବିଷ୍କୃତ ହୋଇଥିଲା । ଏହି କିମ୍ବଦନ୍ତୀର ଅର୍ଥ, ବୋଧହୁଏ ବାସୁମିତ୍ରଙ୍କର ପ୍ରଚାର ଫଳରେ ଉତ୍କଳରେ ଶତ ଶତ ଜ୍ଞାନୀ ବୌଦ୍ଧ ଆବିର୍ଭୂତ ହୋଇଥିଲେ । ଦିଙ୍ନାଗ ବାସୁମିତ୍ରଙ୍କ ଅଧୀନରେ ନ୍ୟାୟ ଏବଂ ମନୋବିଜ୍ଞାନ ଶିକ୍ଷା କରିଥିଲେ । ସେ ବହୁକାଳ ଉତ୍କଳର ଭ୍ରମରଶିଳ ନାମକ ପର୍ବତରେ ସମାଧି କରିଥିଲେ । ସେ ଉତ୍କଳରୁ ନାଳନ୍ଦାକୁ ଯାଇ ନାସ୍ତିକ ବ୍ରାହ୍ମଣ ସୁଦୁର୍ଜୟଙ୍କୁ ତର୍କ ବଳରେ ପରାସ୍ତ କରି

Digitized by srujanika@gmail.com

ତର୍କ ପୁଙ୍ଗବ ଉପାଧି ପ୍ରାପ୍ତ ହୋଇଥିଲେ । ସେ ମନୋରଞ୍ଜନ ସମ୍ବନ୍ଧରେ ପ୍ରାୟ ଏକଶତ ସୂତ୍ର ରଚନା କରିଥିଲେ । ନାଳନ୍ଦାରୁ ଉତ୍କଳକୁ ଫେରିଆସି ସେ 'ପ୍ରମାଣ ସମୁଚ୍ଚୟ' ନାମକ ସୂତ୍ର ରଚନା କରିଥିଲେ । ତିବ୍ବତ ଦେଶରେ ଏହାର ଛନ୍ଦର ଅନୁବାଦ ଅଛି । କିଛିଦିନ ପରେ ବୌଦ୍ଧଧର୍ମର ପ୍ରଚାର ଉଦ୍ଦେଶ୍ୟରେ ସେ ଦାକ୍ଷିଣାତ୍ୟକୁ ଯାତ୍ରା କରିଥିଲେ । ଏହାପରେ ଫେରିଆସି ସେ ଉତ୍କଳର ରାଜମନ୍ତ୍ରୀ ଭଦ୍ରପାଳିତଙ୍କ ଉଦ୍ୟାନ ମଧ୍ୟରେ ବାସ କରିଥିଲେ ଏବଂ ଏହି ଉଦ୍ୟାନ ମଧ୍ୟରେ ପ୍ରାଣତ୍ୟାଗ କରିଥିଲେ । ଉତ୍କଳ ସଙ୍ଗେ ଘନିଷ୍ଠ ଜୀବନ ତ୍ୟାଗୀ ସମ୍ପର୍କ ଥିବାସ୍ଥଳେ ଆମ୍ଭେମାନେ ଦିଙ୍ନାଗଙ୍କୁ ଉତ୍କଳୀୟ ବୋଲି ମନେକରିପାରୁ । ବୋଧହୁଏ ଏହି ମହାତ୍ମା ବାସୁମିତ୍ରଙ୍କ ପ୍ରଭାବ ଫଳରେ ଆବିଷ୍କୃତ ଶିଷ୍ୟ ଜଣେ ବହୁମୂଲ୍ୟ ପ୍ରସ୍ତର । ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର ଶେଷ ବା ପଞ୍ଚମ ଶତାବ୍ଦୀର ପ୍ରାରମ୍ଭରେ କାଳିଦାସ ଦିଙ୍ନାଗଙ୍କୁ ବିଦ୍ରୂପ କରିଥିବା ସ୍ଥଳେ ଏ ମହାତ୍ମାଙ୍କର ଜୀବନକାଳଭୁକ୍ତ ସମୟ ସୀମା ନିର୍ଣ୍ଣୟ କରିହୁଏ । ଖୁବ୍ ସମ୍ଭବ, ଦିଙ୍ନାଗ ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ ବାସ କରୁଥିଲେ, ଯେହେତୁ ତାହାଙ୍କର ପୃଷ୍ଠପୋଷକ ରାଜମନ୍ତ୍ରୀ ଭଦ୍ରପାଳିତ କନିଷ୍କଙ୍କର ସମସାମୟିକ ଅଟନ୍ତି । ଏଣୁ ଦାସ ବାସୁମିତ୍ରଙ୍କର ପ୍ରଭାବ ଫଳର ଅନ୍ୟ ଏକ ମୂଲ୍ୟବାନ ମଣି । ଏ ମହାତ୍ମା ଉତ୍କଳର ସମୁଦ୍ର କୂଳରେ ବାସ କରୁଥିଲେ । ଏହାଙ୍କ ଦ୍ୱାରା ପଚିଶଟି ଧର୍ମପୀଠ ସ୍ଥାପିତ ହୋଇଥିଲା । ଦିଙ୍ନାଗ ଏହାଙ୍କର ଶିଷ୍ୟ ଥିଲେ । ଏହି ବୌଦ୍ଧ ସନ୍ନ୍ୟାସୀ ଅନନ୍ତଗୁଣ ସମ୍ବନ୍ଧରେ ଏକ ସ୍ତୋତ୍ର ରଚନା କରିଥିଲେ । ଏହାଙ୍କର ଅଲୌକିକ ପାଣ୍ଡିତ୍ୟ 'ସାସ୍ୱର୍ଣ୍ଣ' ଉପାଧି ଦ୍ୱାରା ପୁରସ୍କୃତ ହୋଇଥିଲା ।

ଉପରୋକ୍ତ ମହାତ୍ମାମାନଙ୍କର ଅଗାଧ ପାଣ୍ଡିତ୍ୟ କିନ୍ତୁ ଉତ୍କଳରେ ବୌଦ୍ଧ ଧର୍ମକୁ ଚିରସ୍ଥାୟୀ କରିପାରିଲା ନାହିଁ । ତଦାନୀନ୍ତନ ଯୁଗରେ ରାଜଶକ୍ତି ଦୁର୍ନିବାର ଥିଲା । ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀର ମଧ୍ୟଭାଗରେ ଏହି ରାଜଶକ୍ତି ବ୍ରାହ୍ମଣ୍ୟ ଧର୍ମାବଲମ୍ବୀମାନଙ୍କ ସହିତ ମିଳିତ ହେବାରୁ ବୌଦ୍ଧଧର୍ମ କାଳକ୍ରମେ ଉତ୍କଳରୁ ବିଲୁପ୍ତ ହୋଇଗଲା । ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର ପ୍ରଥମ ଭାଗରେ ହୁଏନ୍‌ସାଂ ଏହି ଧର୍ମକୁ ଉତ୍କଳରେ ଅତ୍ୟନ୍ତ ସବଳ ଅବସ୍ଥାରେ ଦେଖିଥିଲେ ।

ଉତ୍କଳର ବୌଦ୍ଧ ଯୁଗରେ ଧର୍ମୀୟ ଇତିହାସ ଏବଂ ସାହିତ୍ୟିକ ଧର୍ମ ଆଲୋଚିତ ହୋଇଅଛି । ବର୍ତ୍ତମାନ ପରବର୍ତ୍ତୀ ଉତ୍କଳ ଉପରେ ଏହି ଧର୍ମର ପ୍ରଭାବ ଏବଂ ପରବର୍ତ୍ତୀ ରାଜାମାନଙ୍କର ଧର୍ମୋତ୍ସାହର ଉପାୟ ସମ୍ବନ୍ଧରେ ଗୋଟିଏ ଦୁଇଟି ଉଦାହରଣ ସଂକ୍ଷିପ୍ତ ଭାବରେ ଉଲ୍ଲେଖ କରି ପ୍ରବନ୍ଧର ଉପସଂହାର କରିବୁ ।

Digitized by srujanika@gmail.com

## ଉପସଂହାର :

ଆମ୍ଭେମାନେ ପୂର୍ବେ କହିଅଛୁଁ, ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀର ମଧ୍ୟରେ ଅର୍ଥାତ୍ କେଶରୀ ବଂଶର ଅଭ୍ୟୁଦୟ ଉତ୍କଳରେ ବୌଦ୍ଧଯୁଗର ଶେଷକାଳ ଅଟେ । ଏହି ସମୟଠାରୁ ଉତ୍କଳରେ କୌଣସି ବୌଦ୍ଧରାଜା ରାଜତ୍ୱ କରି ନାହାନ୍ତି; କିନ୍ତୁ ତାହାବୋଲି ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀର ମଧ୍ୟ ଭାଗରେ ବୌଦ୍ଧଧର୍ମ ଏକାବେଳକେ ଉତ୍କଳରେ ବିଲୁପ୍ତ ହୋଇ ନଥିଲା । ବରଂ ଏହା ଏକାଧିକ ଶତବର୍ଷଯାଏ ଉତ୍କଳରେ ଜାଗ୍ରତ ରହି ପରିଶେଷରେ ବ୍ରାହ୍ମଣ୍ୟ ଧର୍ମ ମଧ୍ୟରେ ବିଲୀନ ହୋଇଗଲା । ତଥାପି ଏହି ଧର୍ମର ପ୍ରଭାବ ଉତ୍କଳ ପ୍ରଚଳିତ ଧର୍ମ ଓ ସାହିତ୍ୟ ମଧ୍ୟରେ ସ୍ପଷ୍ଟ ଭାବରେ ଦେଖାଯାଏ ।

ପୁରୀଠାରେ ଏକ ବୌଦ୍ଧ ଚୈତ୍ୟ ବା ବିହାର ଥିଲା । ବୌଦ୍ଧମାନେ ଏହିଠାରେ ତ୍ରିରତ୍ନ ଅର୍ଥାତ୍ ବୁଦ୍ଧ, ଧର୍ମ ଓ ସଂଘ ଏବଂ ଧର୍ମଚକ୍ରର ପୂଜା କରୁଥିଲେ । ସାଞ୍ଚି ତୋରଣର ଦେହରେ ତ୍ରିରତ୍ନର ଏକ ଏକାକ୍ଷର ଚିତ୍ର ଅଛି । ପୁରୀ ପ୍ରତିଷ୍ଠିତ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ମୂର୍ତ୍ତି ସହିତ ଉକ୍ତ ଏକାକ୍ଷର ଚିତ୍ରର ବହୁ ସାଦୃଶ୍ୟ ଅଛି । ଯଯାତିକେଶରୀ ପୁରୀ ମନ୍ଦିରର ପ୍ରଥମ ପ୍ରତିଷ୍ଠାତା ବୋଲି ଦେଶୀୟ ଇତିହାସ କହନ୍ତି । ବୋଧହୁଏ, ଯଯାତି ବୌଦ୍ଧପୀଠକୁ ବ୍ରାହ୍ମପୀଠରେ ପରିଣତ କରିବାକୁ ଯାଇ ବୁଦ୍ଧ, ଧର୍ମ ଓ ସଂଘ ପରିବର୍ତ୍ତେ ଉକ୍ତ ଏକାକ୍ଷର ଚିତ୍ରର ଅନୁକରଣରେ ତିନୋଟି ବ୍ରାହ୍ମଣ ମୂର୍ତ୍ତି ସ୍ଥାପନ କଲେ ଏବଂ ମୂର୍ତ୍ତିମାନଙ୍କୁ ବୈଷ୍ଣବ ଦେବତାର ନାମ ଦେଲେ । ବୁଦ୍ଧଙ୍କର ଧର୍ମଚକ୍ର ବିଷ୍ଣୁଙ୍କର ସୁଦର୍ଶନ ଚକ୍ରରେ ପରିଣତ ହେଲା । କଥିତ ଅଛି, କ୍ଷେମଙ୍କ ଦ୍ୱାରା ଆନୀତ ବୁଦ୍ଧ ଦନ୍ତର ଅଲୌକିକ ପ୍ରଭାବ ଦର୍ଶନ କରି ବ୍ରାହ୍ମଣମାନେ ବୁଦ୍ଧଙ୍କୁ ବିଷ୍ଣୁଙ୍କର ଅବତାର ବୋଲି ସ୍ୱୀକାର କରିଥିଲେ । ବ୍ରାହ୍ମଣ୍ୟ ଧର୍ମାବଲମ୍ବୀମାନଙ୍କର ଏହି ଅବତାରବାଦ ସମାଜ ମଧ୍ୟରେ ସୁପରିଚିତ ହୋଇଥିଲା । ସେଥିପାଇଁ ବୋଧହୁଏ, ପୁରୀର ବୌଦ୍ଧପୀଠକୁ ବ୍ରାହ୍ମଣ ପୀଠରେ ପରିଣତ କରିବା ଯଯାତିଙ୍କ ପକ୍ଷରେ ସହଜସାଧ୍ୟ ହୋଇଥିଲା ଏବଂ ସେହି ହେତୁରୁ ବୋଧହୁଏ ଯଯାତି ଶୈବ ଥିଲେ ହେଁ ପୁରୀରେ ନବପ୍ରତିଷ୍ଠିତ ମୂର୍ତ୍ତିମାନଙ୍କୁ ବୈଷ୍ଣବ ଦେବତାଙ୍କର ନାମ ଦେଇଥିଲେ ।

ପୁରୀର ଜଗନ୍ନାଥ ଯେ ଉତ୍କଳରେ ବୌଦ୍ଧଧର୍ମର ପ୍ରଭାବର ଫଳ ଏଥିରେ କାହାର ସନ୍ଦେହ ହୋଇ ନ ପାରେ । ପୁରାଣରେ ବୁଦ୍ଧଦେବ ବିଷ୍ଣୁଙ୍କର ଏକ ଅବତାର ବୋଲି ଗୃହୀତ ହୋଇଅଛନ୍ତି । ପୁରୀ ମନ୍ଦିରସ୍ଥ ଜଗନ୍ନାଥ ମଧ୍ୟ ଉତ୍କଳ ସାହିତ୍ୟରେ ବୁଦ୍ଧବୋଲି ବର୍ଣ୍ଣିତ ହୋଇ ଅଛନ୍ତି—

Digitized by srujanika@gmail.com

"ମୁହିଁ ବଉଧ ରୂପ ହୋଇ,
କଳି ଯୁଗରେ ଥିବି ରହି ।
ସୁବର୍ଣ୍ଣ ହାତ ଗୋଡ଼ କରି,
ଗଢ଼ାଇ ଦେବ ଦଣ୍ଡଧାରୀ ।

× × ×

ଦେଖିଲେ ସିଂହାସନୋପରେ,
ବିଜୟେ ବଉଦ୍ଧ ରୂପରେ ।
ପଦ ଅଙ୍ଗୁଳି ନାହିଁ ହାତ ।
ଶ୍ରୀ ଦାରୁବ୍ରହ୍ମ ଜଗନ୍ନାଥ ।"

ପୁଣି, ପୁରୀ ମନ୍ଦିରର ନିର୍ମାଣ ସମ୍ବନ୍ଧରେ କିମ୍ବଦନ୍ତୀ ଅଛି ଯେ, ଜଣେ କାରିଗର ଏକବିଂଶ ଦିବସ ମଧ୍ୟରେ ମୂର୍ତ୍ତି ନିର୍ମାଣ କରିଦେବା ପାଇଁ ଚୁକ୍ତି କରି ରାଜାଙ୍କ ଆଦେଶାନୁସାରେ ମନ୍ଦିର ଦ୍ୱାର ବନ୍ଦକରି ଭିତରେ ରହିଥିଲେ । ଏକବିଂଶ ଦିବସ ଅତିବାହିତ ନହେଉଣୁ ରାଜା ମନ୍ଦିରର ଦ୍ୱାର ଉନ୍ମୁକ୍ତ କରିବାରୁ କାରିଗର ଅନ୍ତର୍ହିତ ହେଲେ ଏବଂ ଫଳତଃ ମୂର୍ତ୍ତିଗୁଡ଼ିକ ପୂର୍ଣ୍ଣାଙ୍ଗ ହୋଇପାରିଲା ନାହିଁ । ବୁଦ୍ଧଗୟାସ୍ଥ ଅପୂର୍ଣ୍ଣାଙ୍ଗ ବୁଦ୍ଧମୂର୍ତ୍ତି ସମ୍ବନ୍ଧରେ ଠିକ୍ ଏହିପରି ଏକ କିମ୍ବଦନ୍ତୀ ହୁଏନସାଂ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ଲିପିବଦ୍ଧ କରିଯାଇଅଛନ୍ତି । ପୁରୀ ସମ୍ବନ୍ଧୀୟ ଉକ୍ତ କିମ୍ବଦନ୍ତୀ ଖୁବ୍ ସମ୍ଭବ ହୁଏନ୍‌ସାଙ୍କ ବର୍ଣ୍ଣିତ ଗଳ୍ପର ଅନୁସରଣ ଏବଂ ଏତଦ୍ୱାରା ଜଗନ୍ନାଥଙ୍କର ବୌଦ୍ଧତ୍ୱ ସ୍ପଷ୍ଟ ପ୍ରତୀୟମାନ ହୁଏ । ଆଜି ମଧ୍ୟ ନୈଷ୍ଠିକ ବ୍ରାହ୍ମଣ ଓ ନୀଚତମ ଚଣ୍ଡାଳ ପୁରୀର ମହାପ୍ରସାଦକୁ ଏକ ପାତ୍ରରେ ଭୋଜନ କରିପାରନ୍ତି । ବୈଦିକ ଯୁଗ ପରେ ଜାତିଭେଦ ଭାରତ ତଥା ଉତ୍କଳରେ ଦୃଢ଼ୀଭୂତ ହୋଇଥିବା ସ୍ଥଳେ ପୁରୀନଗରୀର ଉପରୋକ୍ତ ବିଧାନ ସାମ୍ୟବାଦୀ ବୌଦ୍ଧଧର୍ମର ପ୍ରଭାବର ଫଳ ନୁହେଁ କି ? ବୌଦ୍ଧମାନଙ୍କର ରଥଯାତ୍ରା ବୌଦ୍ଧ ସ୍ଥାପତ୍ୟ ଦେହରେ ଚିତ୍ରିତ ଏବଂ ଫାହିୟାନ୍‌ଙ୍କ ଦ୍ୱାରା ବର୍ଣ୍ଣିତ ହୋଇଥିବା ସ୍ଥଳେ ପୁରୀ ଓ ଭୁବନେଶ୍ୱରର ରଥଯାତ୍ରା ବୌଦ୍ଧମାନଙ୍କର ମନୋରଞ୍ଜକ ଅନୁକରଣ ନୁହେଁ କି ?

ଭୁବନେଶ୍ୱରରେ ଅଶୋକାଷ୍ଟମୀ ଦିନ ଯେଉଁ ରଥଯାତ୍ରା ହୁଏ, ତାହା ବୋଧହୁଏ ବୌଦ୍ଧ ଅନୁକରଣ ଏବଂ ପ୍ରଚ୍ଛନ୍ନ ଭାବରେ ଏହା ଧର୍ମଗତ ବିଦ୍ୱେଷ ଘୋଷଣା କରୁଅଛି । ରଥର ଉତ୍ତର ଓ ଦକ୍ଷିଣ ପାର୍ଶ୍ୱସ୍ଥ ଚକରେ ଯଥାକ୍ରମେ ଚନ୍ଦ୍ର ଓ ସୂର୍ଯ୍ୟ କଳ୍ପିତ ହୁଅନ୍ତି । ପୁଣି ସାରଥି ବ୍ରହ୍ମା ଓ ଚାରି ଅଶ୍ୱ ଚାରି ବେଦ ସ୍ୱରୂପ କଳ୍ପିତ ହୁଅନ୍ତି । ବୋଧହୁଏ ବ୍ରାହ୍ମଣ୍ୟ ଦେବତା ଏବମ୍ବିଧ ରଥ ଆରୋହଣ କରି ଗମନ କରିବାର ଅର୍ଥ ବ୍ରାହ୍ମଣ ଧର୍ମ ଦ୍ୱାରା ବୌଦ୍ଧ ଧର୍ମର ପରାଜୟ ।

Digitized by srujanika@gmail.com

ଆମ୍ଭେମାନେ କହୁଅଛୁ ଯଯାତି ବ୍ରାହ୍ମଣ ପୀଠ ସ୍ଥାପନ କରିବା ପାଇଁ ଭୁବନେଶ୍ୱରକୁ ମନୋନୀତ କରିବାର କାରଣ, ଏ ସ୍ଥାନ ଖଣ୍ଡଗିରି, ଉଦୟଗିରି ଓ ଧଉଳିଗିରିର ମଧ୍ୟବର୍ତ୍ତୀ ଅଟେ । ଶିବଲିଙ୍ଗର ଆକୃତି ବୌଦ୍ଧ ଯୁଗର ପୂର୍ବରୁ ପରିଚିତ ନଥିଲେ ହେଁ ଏହା ଉତ୍କଳରେ ଶୈବଯୁଗରେ ବହୁଳଭାବରେ ବ୍ୟବହୃତ ହେବାର କାରଣ ବୋଧହୁଏ ବୌଦ୍ଧ ସ୍ତୂପ ସଙ୍ଗେ ଏହାର ସୌସାଦୃଶ୍ୟ । ବୌଦ୍ଧମାନେ ସ୍ତୂପ ଦେହରେ ଶିଖର ଦେଶରେ ଛତ୍ରାତପ ନିର୍ମାଣ କରନ୍ତି । କୌଣସି କୌଣସି ଶିବଲିଙ୍ଗର ଅଗ୍ରସ୍ଥାନରେ ଏତାଦୃଶ ଛତ୍ରାତପ ଦେଖାଯାଏ । ବୌଦ୍ଧ ସ୍ତୂପର କେନ୍ଦ୍ର ସ୍ଥାନରେ ଗୋଟିଏ ଗର୍ତ୍ତ ଥାଏ । ଏହି ଗର୍ତ୍ତକୁ ଗର୍ଭ କୁହାଯାଏ । ବୌଦ୍ଧମାନେ ଏହି ଗର୍ଭ ମଧ୍ୟରେ ନାନା ରତ୍ନ ସ୍ଥାପନ କରି ମୁଖ ବନ୍ଦ କରନ୍ତି । ଶିବଲିଙ୍ଗ ମଧ୍ୟ ସ୍ଥାପିତ ହେଲାବେଳେ ଏହାର ନିମ୍ନରେ ନାନା ମୂଲ୍ୟବାନ୍ ବସ୍ତୁ ସ୍ଥାପିତ ହୋଇଥାଏ ।

ଆଜିକାଲି ଉତ୍କଳରେ 'ନାଥ' ନାମରେ ଏକ ପନ୍ଥୀ ଅଛନ୍ତି । ସାଧାରଣତଃ ସେମାନଙ୍କୁ ଯୋଗୀ କୁହାଯାଏ । ଗୋରକ୍ଷନାଥ ସେମାନଙ୍କର ଆଦ୍ୟ ଗୁରୁ । ପ୍ରାଚୀନକାଳରେ ଗୋରକ୍ଷନାଥ ନାମକ ଜଣେ ଜୈନ ତୀର୍ଥଙ୍କର ଥିଲେ । ବୋଧହୁଏ, ନାଥମାନେ ଗୋରକ୍ଷନାଥଙ୍କର ପନ୍ଥାବଲମ୍ବୀ ଜୈନ ଅଟନ୍ତି । କିନ୍ତୁ ଏମାନେ କାଳକ୍ରମେ ସ୍ୱ-ଧର୍ମର ଧାମ ଓ ସ୍ୱାତନ୍ତ୍ର୍ୟ ଭୁଲିଯାଇ ଗୋରକ୍ଷନାଥଙ୍କୁ ମହାଦେବ ବୋଲି ଅର୍ଥ କରନ୍ତି । ଜୈନ ତୀର୍ଥଙ୍କରମାନେ ଉଲଗ୍ନ ଏବଂ ଜୈନମାନେ ତପସ୍ୟାରେ ବିଶ୍ୱାସ କରନ୍ତି । ସ୍ପଷ୍ଟତଃ ଶିବଙ୍କର ବ୍ରାହ୍ମଣ୍ୟଧର୍ମ ବର୍ଣ୍ଣିତ ବେଶଭୂଷା ଓ ବ୍ୟବହାର ଅନେକାଂଶରେ ଜୈନ ତୀର୍ଥଙ୍କରମାନଙ୍କ ସଙ୍ଗେ ମିଳିଯାଏ । ସୁତରାଂ ବ୍ରାହ୍ମଣ ରାଜାମାନଙ୍କ ସମୟରେ ଜୈନମାନେ ଗୋରକ୍ଷନାଥଙ୍କୁ ଶିବ ବା ମହାଦେବ ନାମରେ ପୂଜା କରି ରାଜଶକ୍ତିର ସନ୍ତୋଷବିଧାନ କରିଥିବା ସ୍ୱାଭାବିକ । କିନ୍ତୁ କାଳକ୍ରମେ ସେମାନେ ଗୋରକ୍ଷନାଥଙ୍କର ସ୍ୱାତନ୍ତ୍ର୍ୟ ଭୁଲିଯାଇ ତାହାଙ୍କୁ ମହାଦେବ ବୋଲି ବୁଝି ଅଛନ୍ତି ।

ବୌଦ୍ଧଧର୍ମର ଅଭ୍ୟୁଦୟ ପୂର୍ବରୁ ଭାରତ, ତଥା ଉତ୍କଳରେ ମୂର୍ତ୍ତିପୂଜା ଏକାବେଳକେ ଅପରିଚିତ ନଥିଲା, କିନ୍ତୁ ବୌଦ୍ଧ ଯୁଗରେ ସାଧାରଣ ଲୋକେ ବୌଦ୍ଧଧର୍ମ ପ୍ରତି ଅନୁରକ୍ତ ହୋଇଥିଲେ । ସେମାନଙ୍କୁ ବ୍ରାହ୍ମଣ୍ୟଧର୍ମରେ ପୁନରାୟ ଦୀକ୍ଷିତ କରାଇବା ନିମନ୍ତେ ସେମାନଙ୍କ ମଧ୍ୟରେ ଏହି ଧର୍ମକୁ ସରଳ ସହଜସାଧ୍ୟ ଉପାୟରେ ପ୍ରଚାର କରାଇବା ପ୍ରୟୋଜନୀୟ ହେଲା । ଏହାହିଁ ବୌଦ୍ଧଯୁଗର ପରେ ନାନା ପୁରାଣମାନ ରଚିତ ହେବାର ପ୍ରଧାନ କାରଣ । ଏହି ହେତୁରୁ ସାଧାରଣ ଲୋକମାନଙ୍କ ମନରେ ବ୍ରାହ୍ମଣ୍ୟଧର୍ମ ପ୍ରତି ଆସ୍ଥା ଜନ୍ମାଇବା କାରଣ ବହୁ ସଂଖ୍ୟକ

Digitized by srujanika@gmail.com

ପୌରାଣିକ ଦେବଦେବୀଙ୍କର ମୂର୍ତ୍ତି ଖୋଦିତ ହୋଇଥିଲା । ଉତ୍କଳରେ ଶୈବ ଓ ବୈଷ୍ଣବଯୁଗର ସମୁନ୍ନତ ମନ୍ଦିରମାନ ବୌଦ୍ଧ ସ୍ଥାପତ୍ୟର ଉନ୍ନତି ମାତ୍ର । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଆଜିକାଲି ଉତ୍କଳର ନାନା ସ୍ଥାନରେ ବହୁ ବୌଦ୍ଧ ମୂର୍ତ୍ତି ବ୍ରାହ୍ମଣ୍ୟ ଦେବଦେବୀମାନଙ୍କର ନାମ ଦ୍ୱାରା ଆଖ୍ୟାତ ହୋଇ ପୂଜିତ ହେଉଅଛନ୍ତି ।

ପ୍ରବନ୍ଧର ପାରମ୍ଭରେ କଥିତ ହୋଇଅଛି ଯେ, ଆଧୁନିକ ଉତ୍କଳ ବିଶେଷତଃ ପୁରୀ ଓ ଭୁବନେଶ୍ୱର ପ୍ରଭୃତି ସ୍ଥାନକୁ ସମ୍ୟକ୍ ବୁଝିବା ପାଇଁ ବୌଦ୍ଧ ଉତ୍କଳ ସମ୍ବନ୍ଧରେ ଜ୍ଞାନ ଆବଶ୍ୟକ । ଆମ୍ଭମାନଙ୍କର ଏହି ବିଷୟ ଉପରୋକ୍ତ ଆଲୋଚନା ଦ୍ୱାରା କେତେକ ପରିମାଣରେ ପ୍ରମାଣିତ ହୋଇଅଛି । ଜାତି ତଥା ଦେଶର ଇତିହାସରେ କୌଣସି ଯୁଗ ନିରର୍ଥକ ନୁହେଁ । ଏହା ପରବର୍ତ୍ତୀ ଯୁଗର ଭିତ୍ତି । ଉତ୍କଳୀୟ ଇତିହାସରେ ବୌଦ୍ଧଯୁଗ ଏହି ନିୟମର ବହିର୍ଭୂତ ନୁହେଁ । ପ୍ରବନ୍ଧର କଳେବରରେ ଏହା ସ୍ପଷ୍ଟ ପ୍ରମାଣିତ ହୋଇଅଛି ।

ଆମ୍ଭେମାନେ ଉତ୍କଳରେ ବୌଦ୍ଧଯୁଗର ଇତିହାସ ଯଥାଶକ୍ତି ଆଲୋଚନା କରିଅଛୁଁ । ଏହି ଯୁଗର ଉତ୍କଳରେ ଶାସନତନ୍ତ୍ର, ଶାସନନୀତି ସାମାଜିକ ଅବସ୍ଥା, ସ୍ଥାପତ୍ୟ, ଧର୍ମ ଓ ସାହିତ୍ୟ ସମ୍ବନ୍ଧରେ କେତେକ ବିଷୟ ପ୍ରଦର୍ଶିତ ହୋଇଅଛି । ବୌଦ୍ଧଯୁଗର ସରଳ ଶାନ୍ତିମୟ ଜୀବନ ଆଜିକାଲି ଅନ୍ୱେଷଣୀୟ ହୋଇଅଛି । ଆଶା ହୁଏ, ତାହାକୁ ଶାନ୍ତ ଅନ୍ତରେ ସ୍ମରଣ, ତଥା ଉତ୍କଳରେ ପୁନରାୟ ବିହାରମାନ ଭର ଓତ ଶତ ବୁଦ୍ଧ ଦନ୍ତ୍‌ନାଗ ଓ ବାସୁମିତ୍ରଙ୍କ ପାଇଁ କ୍ଷେତ୍ର ନିର୍ମାଣ କରିବ ।



# ଆମ ସଂସ୍କୃତି

"ସଂସ୍କୃତି"—ଏହାର ଅର୍ଥ, କ୍ରମବର୍ଦ୍ଧମାନ ବୁଦ୍ଧି ଓ ବିଚାର ଦ୍ୱାରା ସୃଷ୍ଟ ପରିବେଶରେ ପରିମାର୍ଜିତ ଓ କାଳକ୍ରମରେ ପରିପୁଷ୍ଟ ହୋଇ ଦେଶ ଓ ସମାଜରେ ଚଳିଆସୁଥିବା ରୀତି, ନୀତି, ଆଚାର ଓ ବ୍ୟବହାର ଆଦି । ପ୍ରତ୍ୟେକ ଦେଶ ଓ ଜାତିର ସଂସ୍କୃତି ଅଛି; କିନ୍ତୁ ଅବସ୍ଥା ଭେଦରେ ସେ ସବୁ କେତେକାଂଶରେ ପୃଥକ୍ । ଦେଶ ବା ଜାତିର ଜଳବାୟୁ, ସ୍ୱଭାବ; ସ୍ୱତନ୍ତ୍ର ନୀତି ଓ ଧର୍ମ ବିଶ୍ୱାସ ଆଦି ଏଭଳି ପାର୍ଥକ୍ୟର କାରଣ ।

ସଂସ୍କୃତି ପ୍ରତ୍ୟେକ ଜାତି ଓ ସମାଜର ପ୍ରଧାନ ଆଧାର ଓ ଗୋଷ୍ଠୀ ନିର୍ଦ୍ଦେଶକ ବନ୍ଧନୀ । ଏହାର ସାମଞ୍ଜସ୍ୟ ଦେଶ ଓ ବ୍ୟକ୍ତିକୁ ଏକ ଗୋଷ୍ଠୀଭୁକ୍ତ ଓ ସୌହାର୍ଦ୍ଦ୍ୟ ସମ୍ପନ୍ନ କରିଥାଏ । ଏହାରି ପ୍ରଭାବରେ ପାଶ୍ଚାତ୍ୟ ଦେଶର ଲୋକମାନେ ଯେପରି ପରସ୍ପର ପ୍ରତି ସହାନୁଭୂତିଶୀଳ, ପ୍ରାଚ୍ୟମାନେ ମଧ୍ୟ ସେହିପରି ଅନ୍ୟୋନ୍ୟ-ମମତାବଦ୍ଧ । ହିମାଳୟବାସୀ ହିନ୍ଦୁ, କୁମାରିକା ତଟସ୍ଥ ହିନ୍ଦୁର ଭାଇ, ଭାରତର ବିଭିନ୍ନ ପ୍ରାନ୍ତବର୍ତ୍ତୀ ଓଡ଼ିଆ, ବଙ୍ଗାଳୀ ବା ହିନ୍ଦୁସ୍ଥାନୀ ବା ତେଲୁଗୁ ପରସ୍ପର ପ୍ରତି ମମତାପରାୟଣ ।

ଏହି ସଂସ୍କୃତି ମଧ୍ୟ ଜାତିର ବୟସ ଓ ଗୌରବର ପରିମାପକ ଯନ୍ତ୍ର । ଜାତିର ସଂସ୍କୃତିଗତ କୌଣସି ନିର୍ଦ୍ଦିଷ୍ଟ ଆଚାର ବିଷୟ ଆଲୋଚନା କଲେ ତାହା କେଉଁ କାଳରୁ କେତେ ବର୍ଷରେ, କି କି ଆକାରରେ ଗତିକରି ଆସିଛି ତାହା ଜଣାଯିବା ସଙ୍ଗେ ସଙ୍ଗେ ଜାତିର ବୟସ ନିରୂପିତ ହୋଇଯାଏ । ସଂପୃକ୍ତ ଆଚାର ଯଦି ଉଚ୍ଚକୋଟୀର ହୋଇଥାଏ ତାହେଲେ ତଦ୍ୱାରା ଜାତିର ପ୍ରାଚୀନ ଚରିତ୍ରାଧାରର ଉତ୍କର୍ଷ ପ୍ରତିପାଳିତ ହୁଏ ।

ସଂସ୍କୃତି ଦେଶ ବା ଜାତିର ସର୍ବାଙ୍ଗୀନ ବିକାଶର ପୂର୍ଣ୍ଣ ଇତିହାସ । ସମାଜର ଗଠନ ଓ ସୁରକ୍ଷତା ପାଇଁ ଯେତେବେଳେ ଯେଉଁ ନିୟମ, ଅର୍ଥନୀତି ଓ ଧର୍ମସଂସ୍ଥାମାନ ଉଦ୍ଭାବିତ ଓ ପ୍ରଚଳିତ ହୋଇଥାଏ, ଏହା ତାହାର ପ୍ରତୀକ । ଯେଉଁ ଦେଶ ବା ଜାତି ବା ସମାଜର ସଂସ୍କୃତି ନାହିଁ, ତାହାର ଇତିହାସ ନାହିଁ ।

ମନେହୁଏ ପୃଥିବୀ ବକ୍ଷରେ ଏପରି କୌଣସି ଜାତି ବା ସମାଜ ନାହିଁ ଯାହାର ସଂସ୍କୃତି ନାହିଁ। ଅଦ୍ୟାବଧି ଲୋକଲୋଚନକୁ ଆସି ନଥିବା ବନ୍ୟ ଅଧିବାସୀର ମଧ୍ୟ କିଛି ନା କିଛି ସଂସ୍କୃତି ଅଛି। ତାହା କାହାର ବିଚାରରେ ନିମ୍ନ ବା ନୀଚ ଉନ୍ନତ ହୋଇ ନପାରେ ମାତ୍ର ସେ ଭିନ୍ନ କଥା।

ଆଜି କାଲି ଆମ ଦେଶରେ ସଂସ୍କୃତି ପ୍ରତି ଆଦର କ୍ରମଶଃ ହ୍ରାସପ୍ରାପ୍ତ ହେଉଛି। କେହି ଏହା'ର ଉପାଦେୟତା ସମ୍ବନ୍ଧେ ଅନୁଧ୍ୟାନ କରୁନାହାନ୍ତି। ଏ ଦେଶର ମୌଳିକ ଶିକ୍ଷା ପ୍ରଣାଳୀ ପାଶ୍ଚାତ୍ୟ ଶିକ୍ଷାଳୀଠାରୁ ପୃଥକ୍। ଶେଷୋକ୍ତ ଶିକ୍ଷା ପ୍ରଣାଳୀ ଦ୍ୱାରା ଆତ୍ମସମ୍ମୋହକ ଭୋଗଲାଳସା ହୃଦୟରେ ମୁଖ୍ୟ ସ୍ଥାନ ଅଧିକାର କରେ। ଫଳତଃ ଏ ଦେଶର ବୁଦ୍ଧିଜୀବୀ ଶ୍ରେଣୀ ପାଶ୍ଚାତ୍ୟ ଶିକ୍ଷାଦ୍ୱାରା ଅସ୍ବ-ସଂସ୍ପୃଷ୍ଟ ହେବା ସଙ୍ଗେ ସଙ୍ଗେ ଆତ୍ମ ପ୍ରସାଦ ଲାଭ କରି ବାହ୍ୟ ସଂସ୍କୃତି ପ୍ରତି ଆକୃଷ୍ଟ ହେବା ସ୍ୱାଭାବିକ୍। ଆଜି ଏ ଦେଶରେ ପ୍ରଭାବଶାଳୀ କେତେକ ମନୀଷୀ ଏବଂବିଧ ଆକର୍ଷଣରେ ସ୍ଖଳିତପଦ ହୋଇ ଯେଉଁ ସଂସ୍କୃତିବନ୍ଧୁଙ୍କ ସାମାଜିକପନ୍ଥା-ସବୁର ଅବତାରଣା କରୁଅଛନ୍ତି ତାହାକୁ ସ୍ୱାଗତ କରାଯାଇ ନପାରେ।

ଭାରତୀୟମାନଙ୍କ ବ୍ୟକ୍ତିଗତ ବା ଗୋଷ୍ଠୀଗତ ଜୀବନଧାରଣର ଭିତ୍ତି ଭଗବତ୍ ପ୍ରେରଣା। ଭାରତୀୟ ପ୍ରତ୍ୟେକ କର୍ମର ମୂଳକୁ ଭଗବାନଙ୍କଠାରେ ଆରୋପ କରିଥାଏ। ଭଗବାନଙ୍କୁ ସମସ୍ତ କର୍ମର ଫଳ ରୂପେ ସମର୍ପଣ କରି ଭଗବତ୍‌ପ୍ରାଣ ହୋଇ ନିର୍ମଳ ହୃଦୟରେ ଯାହା କର୍ତ୍ତବ୍ୟ ବୋଲି ପ୍ରତୀତ ହେବ ତାହାକୁ ପାଳନ କରି କର୍ମମୟ ଜୀବନ ଯାପନ କରିବା ତାହାର ସଂସ୍କୃତି। ଏବଂବିଧ ସଂସ୍କୃତି ଓ ସ୍ୱଭାବ ଭାରତର ବ୍ୟକ୍ତି ଓ ସମାଜକୁ ଅନୈତିକ ପନ୍ଥାରୁ ଜଗିରଖିଥାଏ। ଫଳରେ ବ୍ୟକ୍ତି ଗଠନ ବ୍ୟାପାରରେ ଦୋଷଯୁକ୍ତ ବ୍ୟବହାରର ପରିସର ପ୍ରାପ୍ତ ନଥାଏ। ସେଥିପାଇଁ ଭାରତୀୟ ସମାଜ ପ୍ରାଚୀନ କାଳରୁ ପୃଥିବୀ ଚକ୍ଷୁରେ ଅସାଧାରଣ ନୈତିକତା ଦେଖାଇ ଆସିଛି।

ସୃଷ୍ଟିର ମୂଳସୂତ୍ରକୁ ଭାରତବାସୀ ମନୁଷ୍ୟ ସମାଜରେ ବିବାହ ନାମ ଦେଇ ତାହାକୁ ନାନା ନୀତି ନିୟମାନୁମୋଦିତ କର୍ମ ପରମ୍ପରା ଦ୍ୱାରା ନିୟନ୍ତ୍ରିତ କରିଅଛି। ବିବାହ ପାଇଁ ଯୁବକ ଯୁବତୀଙ୍କର ମନୋନୟନ ଠାରୁ ଆରମ୍ଭ କରି ସନ୍ତାନ ପ୍ରଜନନ ତଥା ସାମାଜିକ ଜୀବନ ଯାପନ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ଶ୍ରେଣୀ ଅନୁଷ୍ଠାନ ଦ୍ୱାରା ସଂସ୍କୃତ ଓ ସମ୍ପାଳିତ ହୋଇଥାଏ। ଶିକ୍ଷା, ଚରିତ୍ର, ବୟସ ଓ ବଂଶ ମର୍ଯ୍ୟାଦା ଆଦି ଦୃଷ୍ଟିରୁ ସବୁ ଦମ୍ପତି ମନୋନୀତ ହୋଇଥାନ୍ତି। ଈଶ୍ୱରଙ୍କ ନାମରେ ସତ୍ୟବଚନ ଦ୍ୱାରା ଉଭୟେ ପରସ୍ପର ପ୍ରତି ସୌହାର୍ଦ୍ଦ୍ୟ ଓ ଆନୁଗତ୍ୟ ସର୍ବସମକ୍ଷରେ ପ୍ରକାଶ କରି ଜୀବନ ପାଇଁ ଅଚ୍ଛେଦ୍ୟ ବନ୍ଧନରେ ଆବଦ୍ଧ ହୋଇଥାନ୍ତି।

Digitized by srujanika@gmail.com

ବିବାହୋତ୍ତର ସମସ୍ତ କାର୍ଯ୍ୟ ଭଗବାନଙ୍କ କଲ୍ୟାଣ କାମନା ନିମିତ୍ତ ସମ୍ପନ୍ନ ହୁଏ ଓ ସେଥିରୁ ଯଥେଷ୍ଟ ସମୟରେ ନହୋଇ ଶୁଭ ମୁହୂର୍ତ୍ତମାନଙ୍କରେ ହୋଇଥାଏ । ଏହି ବନ୍ଧନକୁ ଧର୍ମମୂଳକ ବୋଲି ନବଦମ୍ପତିଙ୍କ ହୃଦୟରେ ବଦ୍ଧମୂଳ କରାଇବା ଓ ସମାଜରେ ପରିଚିତ ଓ ସ୍ୱୀକୃତ କରାଇବା ପାଇଁ ନାନାବିଧ ବୈଦିକ କ୍ରିୟା ଓ ଆଚାରର ବିଧାନ ଦିଆଯାଇଅଛି । ପୁଣି ଏହାର ଅବିଚ୍ଛେଦ୍ୟତା ରକ୍ଷା କରିବା ଉଦ୍ଦେଶ୍ୟରେ ପତି ଓ ପତ୍ନୀ ଉଭୟଙ୍କର ସାହଚର୍ଯ୍ୟ ବିନା କେତେକ ସାଂସ୍କୃତିକ ଓ ସାମାଜିକ କାର୍ଯ୍ୟ ବାରିତ ହୋଇଅଛି । ଅବିବାହିତ ପୁରୁଷ କେତେକ କାର୍ଯ୍ୟ ପାଇଁ ଅନୁପଯୁକ୍ତ । ବିବାହ ପରେ ପତ୍ନୀ ପତିର ଅର୍ଦ୍ଧାଙ୍ଗିନୀ ଓ ଧର୍ମକାର୍ଯ୍ୟ ପାଇଁ ତାହାର ଅପରିହାର୍ଯ୍ୟା ସହାୟିକା । ପତି ପତ୍ନୀଙ୍କର ଅନ୍ୟୋନ୍ୟ ପ୍ରତି ଦ୍ୱେଷ ବା ସେମାନଙ୍କର ଅହେତୁକ ଦ୍ୱନ୍ଦ୍ୱ ବା ବିଚ୍ଛେଦ ସମାଜରେ ଘୃଣ୍ୟ । ସେମାନଙ୍କର ଅସ୍ୱର ବ୍ୟବହାର ସ୍ପଷ୍ଟ ଓ ସଙ୍କେତ ଆଦି ନାନା କାରଣରୁ ଶୃଙ୍ଖଳିତ । ସେମାନଙ୍କର ଅସ୍ୱରବିରୁଦ୍ଧ କାର୍ଯ୍ୟକଳାପ ଦୋଷାବହ ଓ ଧର୍ମ ବିଶେଷରେ ପ୍ରାୟଶ୍ଚିତ୍ତ ସାଧ୍ୟ । ଆର୍ଯ୍ୟ ସଂସ୍କୃତିରେ ସ୍ତ୍ରୀ କ୍ରୀଡ଼ନକ ନୁହେଁ । ପତିପତ୍ନୀଙ୍କ ମଧ୍ୟରେ ପାରସ୍ପରିକ ସମାନ କର୍ତ୍ତୃତ୍ୱ ଓ କର୍ତ୍ତବ୍ୟ ଥାଏ । ସଦୃଶୀ ପତ୍ନୀ ଯୁଗେ ଯୁଗେ ଧନ୍ୟା ଓ ପତିର ପୂଜ୍ୟା । ପତିପତ୍ନୀ ଦୁହେଁ ଦୁହିଁଙ୍କର ଶାସକ ଓ ଶାସିକା । ସୀତା, ସାବିତ୍ରୀ ଓ ଅରୁନ୍ଧତୀ ଏବଂବିଧ ଆର୍ଯ୍ୟ ସଂସ୍କୃତିର କଳ୍ପିତ ପୌରାଣିକ ଦୃଷ୍ଟାନ୍ତ । ସେମାନେ ସତୀତ୍ୱ ଓ ପାତିବ୍ରତ୍ୟ ବଳରେ ଅସାଧ୍ୟ ସାଧନ କରି ଓ କରାଇ ସ୍ୱାମୀସହ ଅମର ଭୁବନରେ ସ୍ଥାନ ପାଇ ଅଛନ୍ତି । ସୁଗୁଣବତୀ ପତ୍ନୀର ଉପଦେଶରେ ପଥଭ୍ରଷ୍ଟ ପତିର ଚରିତ୍ର ପରିବର୍ତ୍ତନର ଆଖ୍ୟାନ ପୁରାଣରେ ବିରଳ ନୁହେଁ । ହିନ୍ଦୁ ରମଣୀ ସାବିତ୍ରୀର ଆଦର୍ଶ ଗ୍ରହଣ କରି ତାହା ନାମରେ ବ୍ରତ ଅବଲମ୍ବନ କରେ । ସ୍ତ୍ରୀ ତାକୁ ଦେବୀ ଜ୍ଞାନରେ ପୂଜା କରେ ଓ ଅରୁନ୍ଧତୀକୁ ଋଷିପ୍ରାଣା ପତ୍ନୀ ବୋଲି ଭକ୍ତି କରେ । ହିନ୍ଦୁ ଗୃହିଣୀ ସାଂସାରିକ ସକଳ ସମ୍ପଦର କଳ୍ପିତ ଅଧିଷ୍ଠାତ୍ରୀ, ମହାଲକ୍ଷ୍ମୀ । ମହାଲକ୍ଷ୍ମୀଙ୍କ ପରି ଗୃହର ମହାଲକ୍ଷ୍ମୀ ବୋଲି ସମାଜ ଦ୍ୱାରା ପରିଗଣିତା; କାରଣ ଆଦର୍ଶ ଗୃହ ସକଳ ସମ୍ପଦରେ ପରିପୂର୍ଣ୍ଣ ଓ ଆଦର୍ଶ ଗୃହିଣୀ ଆଦର୍ଶ ଗୃହର ମୂଳ । ସେଥିପାଇଁ ମହାଲକ୍ଷ୍ମୀଙ୍କର ସେବା ପୂଜାରେ ପୁରୁଷ ଅପେକ୍ଷା ନାରୀର ଅଧିକାର ବେଶୀ । ନାରୀ ମହାଲକ୍ଷ୍ମୀଙ୍କ ଉଦ୍ଦେଶ୍ୟରେ ନାନା ବ୍ରତ ପାଳନ କରି ମହାଲକ୍ଷ୍ମୀଙ୍କ ପୁରାଣୋକ୍ତ ଅଁଳା ଓ ହରିଦ୍ରା ଆଦି ପ୍ରିୟ ପ୍ରସାଧନମାନ ନିଜେ ଗ୍ରହଣ କରେ ।

କୃଷିପ୍ରଧାନ ଭାରତବର୍ଷରେ ସମ୍ପଦର ମୂଳଭୂମି ଲକ୍ଷ୍ମୀସ୍ୱରୂପା । ବର୍ଷାରମ୍ଭରେ ପୃଥିବୀ ରଜସ୍ୱଳା ନାରୀ ପରି ଗର୍ଭୋପଯୁକ୍ତା ହୁଏ । ତେଣୁ ବର୍ଷାଋତୁର ପ୍ରାରମ୍ଭ ଅର୍ଥାତ୍ ଆଷାଢ଼ ସଂକ୍ରାନ୍ତି ଦିନ ଠାରୁ ଗୃହର ଲକ୍ଷ୍ମୀସ୍ଥାନୀୟା ନାରୀ ରଜସ୍ୱଳା କିମ୍ବା ଅଚଟେ କହନ୍ତି । କେବଳ ଏତିକି ନୁହେଁ, ଏ ଦେଶ ଓ ଜାତିର ଜୀବନ-

Digitized by srujanika@gmail.com

ଧାରଣର ମାନଦଣ୍ଡ ସଙ୍ଗେ ସଂପୃକ୍ତ, ନାନା କାର୍ଯ୍ୟ ଉପଲକ୍ଷରେ ଭାରତୀୟ ନର-ନାରୀ ସାରାବର୍ଷ ମଧ୍ୟେ ମଧ୍ୟେ ପୂଜାନୁଷ୍ଠାନମାନ କରିଥାନ୍ତି; କିନ୍ତୁ ଦେବତାଙ୍କର ଆୟୁଧ ଲାଙ୍ଗଳ ଓ ଲାଙ୍ଗଳଧାରୀ ବଳଦ ସେହି ଦେବତାଙ୍କର ପ୍ରତୀକଧର୍ମୀ ସ୍ୱରୂପ ପୂଜିତ ହୁଅନ୍ତି । ଭାରତୀୟ ଅର୍ଥନୀତିର ପ୍ରଧାନ ସ୍ତମ୍ଭ ଗୋଜାତିକୁ ହିନ୍ଦୁର ଦେବତା ପାଳନ କରନ୍ତି ଓ ସେହି ଗୋଜାତି ହିନ୍ଦୁର ନମସ୍ୟ । ଭାରତ ଦେବମାତୃକ ଦେଶ । ଭାରତୀୟ ବୃଷ୍ଟି ପାଇଁ ଇନ୍ଦ୍ରଙ୍କର ଆଶୀର୍ବାଦ ଭିକ୍ଷା କରନ୍ତି ଓ ଇନ୍ଦ୍ର ଜୀମୂତବାହନଙ୍କ ଉଦ୍ଦେଶ୍ୟରେ ବୃଷ୍ଟି ଜଳଲବ୍ଧ ଦ୍ରବ୍ୟମାନ କୃତଜ୍ଞତାର ନିଦର୍ଶନ ସ୍ୱରୂପ ବର୍ଷା ଋତୁର ଶେଷରେ ଶରତ ଆଗମନରେ ଅର୍ପଣ କରେ । ଇନ୍ଦ୍ର ଦେବ-ଦେବୀମାନଙ୍କର ରାଜା ଅର୍ଥାତ୍ ଯେ ଇନ୍ଦ୍ର ସେ ସର୍ବପ୍ରଧାନ ପରମେଶ୍ୱର । ହିନ୍ଦୁର ଦେବତା ଭେଦ କେବଳ ନୀତି ଆଖ୍ୟାନ ପ୍ରକାଶେ ହଙ୍ଗସ୍ତାସ୍ତ ପୌରାଣିକ ଦୃଷ୍ଟାନ୍ତ ପାଇଁ ଉଦ୍ଦିଷ୍ଟ । ହିନ୍ଦୁର କଳ୍ପିତ ଦେବତା ଶିବ ସଂସାରର ମଙ୍ଗଳ ପାଇଁ ସର୍ବସ୍ୱ ତ୍ୟାଗୀ । ସେ ଅନ୍ୟମାନଙ୍କ ପାଇଁ ଗୃହ, ଆଭରଣ ଓ ପ୍ରସାଧନର ତ୍ୟାଗକରି ନିଜେ ଶ୍ମଶାନରେ ବାସକରନ୍ତି । ଅଶୁଭକର ପାପ ବିଷକୁ ଶୋଷଣ କରି ସଂସାରକୁ ମଙ୍ଗଳାପ୍ଲୁତ କରନ୍ତି । ଶିବ ଓ ଭଗବାନ ପରସ୍ପରର ହୃଦୟ; ଅର୍ଥାତ୍ ଦୁହେଁ କେବଳ ବର୍ଣ୍ଣନା ଭେଦରେ ପୃଥକ୍ । ଭଗବାନଙ୍କର ସୃଷ୍ଟି କାରିଣୀ ପାଳକାଶକ୍ତି ପାର୍ବତୀ ମାତୃରୂପରେ ସ୍ପଷ୍ଟ । ଜଗତର ଉପଭୋଗ ପାଇଁ ସମସ୍ତ ଭୋଗ୍ୟ ତ୍ୟାଜ୍ୟ ଏହି ଆଦର୍ଶରେ ଅନୁପ୍ରାଣିତ ହୋଇ ତ୍ୟାଗୀ ଶିବଙ୍କ ବ୍ୟତୀତ ଅନ୍ୟ କାହାରିକୁ ପତିରୂପେ ଗ୍ରହଣ କରିବାକୁ ଅନିଚ୍ଛୁକା । ହିନ୍ଦୁ ସେହି ମହତ୍ ଆଦର୍ଶକୁ ରୂପାୟିତ କରି ପୂଜା କରେ । ହିନ୍ଦୁ ରମଣୀ ସେହି ଜଗନ୍ମାତାଙ୍କର ଆଦର୍ଶ ଯେନ ତାଙ୍କ ନାମରେ ବ୍ରତାଚରଣ କରେ । ହିନ୍ଦୁ ସମାଜରେ ଏବଂବିଧ ସାଂସ୍କୃତିକ ପରମ୍ପରାର ଉଦାହରଣ ବହୁଳ । ପ୍ରକୃତ ପୁରାଣରେ ଭାରତୀୟ ଜନଜୀବନର ସଂଘତ ପରିକଳ୍ପନା ପାଇଁ ବହୁବର୍ଷ ବ୍ୟାପୀ ପରୀକ୍ଷା ଓ ଗବେଷଣା ଦ୍ୱାରା ଏହି ପରମ୍ପରା ଗଢ଼ିଆସିଛି । ପ୍ରକୃତ ଯୁଗର ପରବର୍ତ୍ତୀ ସମାଜ ଯୁଗର ପ୍ରଥମ ଦିନରୁ ଏହି ପରମ୍ପରାର ଗଠନାରମ୍ଭ । ଏହି ପରମ୍ପରା ତାଡ଼ନାରେ ଅତିଷ୍ଠ ହୋଇ ସ୍ୱେଚ୍ଛାଗ୍ରସ୍ତ ହୋଇ ସ୍ୱତନ୍ତ୍ର ପନ୍ଥା ଅବଲମ୍ବନ କରୁଅଛୁ କିମ୍ବା ପିତା, ମାତାଙ୍କ ମତାନୁସାରେ ବିବାହ କରି ଦୁଃଖମୟ ଦାମ୍ପତ୍ୟ ଜୀବନ ଯାପନ କରୁଅଛୁ । ଏ ସବୁ ଆମ ଚିର ସଂସ୍କୃତି ଭଙ୍ଗିରେ ବିଷମୟ ପରିଣାମ । ଯୌତୁକ ପ୍ରଥାର ବିଲୋପ ସାଧନ ପାଇଁ ଆଇନ ପ୍ରଣୀତ ହୋଇଛି ସତ୍ୟ; କିନ୍ତୁ ଉଚ୍ଚଶିକ୍ଷା ଦ୍ୱାରା ସଂସ୍କୃତିର ମର୍ଯ୍ୟାଦା ରକ୍ଷିତ ନ ହେବା ଯାଏଁ ଆଇନ କେବଳ ଆଇନରେ ହିଁ ରହିଯିବ । ସ୍ତ୍ରୀ ପୁରୁଷର ସହାବସ୍ଥାନ ବଂଶ ରକ୍ଷା ପାଇଁ, ବଂଶ ବୃଦ୍ଧି ପାଇଁ ନୁହେଁ । ସେହି ହେତୁରୁ ଆମ ଶାସ୍ତ୍ର ପୁତ୍ରମାନଙ୍କ ମଧ୍ୟରେ ଜ୍ୟେଷ୍ଠକୁ ଧର୍ମଜ ଓ ଅନ୍ୟମାନଙ୍କୁ କାମଜ ବୋଲି

Digitized by srujanika@gmail.com

କହେ । ଏହି ସୂତ୍ର ବହୁତ ମୌଳିକ ମତର ତାତ୍ପର୍ଯ୍ୟ—ଆମ ସଂସ୍କୃତି ଯୁଗେ ଯୁଗେ ବହୁ ପ୍ରଜନନରେ ବିଶ୍ୱାସୀ । ତେବେ ରାଜ୍ୟ ବା ଜାତିର ପରିସ୍ଥିତି ଦୃଷ୍ଟିରୁ ସମାଜ ବେଳେବେଳେ ବହୁ ପ୍ରଜନନର ବିରୋଧ କରିନାହିଁ । ସେହି ସେହି ଉଦ୍ଦେଶ୍ୟରେ ଏକପତ୍ନୀ ବ୍ରତ ଆମର ସଂସ୍କୃତିସମ୍ମତ । ପ୍ରତାପଶାଳୀ ଦଶରଥ ସମାଜର ସଂସ୍କୃତି ଲଙ୍ଘନ କରି ଏକାଧିକ ପତ୍ନୀ ଗ୍ରହଣ କରିଥିଲେ ହେଁ ଆଦର୍ଶରାଜା ରାମଚନ୍ଦ୍ରଙ୍କର ଏକପତ୍ନୀ ବ୍ରତ ଥିଲା । ଆଜି ବହୁ ପତ୍ନୀ ଗ୍ରହଣ ବିରୁଦ୍ଧରେ ଆଇନ ହୋଇଛି ଓ ବହୁ ପ୍ରଜନନ ବନ୍ଦ କରିବା ପାଇଁ ନାନା ଉପାୟ ଉଦ୍ଭାବିତ ହେଉଛି । ସମାଜକୁ ଖଣ୍ଡ ବିଖଣ୍ଡ କରାଇ ସଂସ୍କୃତିର ବିଲୋପ ସାଧନ ପରେ ବହୁ ପ୍ରଜନନ ବିରୁଦ୍ଧରେ କୃତ୍ରିମ ଉପାୟ ବା ଆଇନ ପ୍ରଣୟନ କରିବା ଅନୈତିକ ନୁହେଁ କି ?

ବୃକ୍ଷରୋପଣ ଓ ଜଳାଶୟଖନନ ଆମର ପ୍ରାଚୀନ ସଂସ୍କୃତି । ଲୋକେ, କେବଳ ନିଜ ପାଇଁ ନିଜ ଜମିରେ ନୁହେଁ, ସମସ୍ତଙ୍କ ପାଇଁ ସର୍ବସାଧାରଣ ଜମିରେ ପୁଣ୍ୟ କର୍ମ ଜ୍ଞାନରେ ଫଳ ବୃକ୍ଷ ରୋପଣ କରୁଥିଲେ ଓ ଜଳାଶୟ ଖନନ କରୁଥିଲେ । ପ୍ରଥମ ଫଳ ଧାରଣ କଲାପରେ ସଙ୍କଳ୍ପବିଧିରେ ବୃକ୍ଷର ପୂଜା କରାଯାଇ ପ୍ରଥମ ଫଳକୁ ବଣ୍ଟନ କରାଯାଉଥିଲା । ତଦ୍ରୂପ ମଧ୍ୟ ଶାସ୍ତ୍ରୀୟ ନିୟମରେ ଜଳାଶୟ ପ୍ରତିଷ୍ଠା କରାଯାଇ ତାହା ବ୍ୟବହୃତ ହେଉଥିଲା । ସଂସ୍କୃତି ପ୍ରତି ଆଦର ହ୍ରାସ ହେବ ସଙ୍ଗେ ସଙ୍ଗେ ଆଜି ଫଳବୃକ୍ଷର ଅବାଧ ଛେଦନ ହେଉଅଛି; ଅଥଚ କେହି ବୃକ୍ଷ ରୋପଣ ପାଇଁ ଅଗ୍ରସର ନୁହନ୍ତି । ସଂସ୍କୃତିର ବିଲୟ ହେଲେ ସାମୟିକ ବୃକ୍ଷ ରୋପଣ ସପ୍ତାହ ପାଳନ କରିବା ପାଇଁ ଲୋକଙ୍କୁ ଉପଦେଶ ଦେବାଦ୍ୱାରା ପୂର୍ବାବସ୍ଥା ଫେରି ଆସିବା ଅସମ୍ଭବ ମନେହୁଏ ।

ଜ୍ଞାନଜ୍ୟେଷ୍ଠ ଓ ବୟୋଜ୍ୟେଷ୍ଠମାନଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ ଆମ୍ଭମାନଙ୍କର ସଂସ୍କୃତି । ଜୀବନର ପ୍ରତି ମୁହୂର୍ତ୍ତରେ ଜ୍ଞାନ ଅର୍ଜନ ଆମର ଜୀବନଗତ ଲକ୍ଷ୍ୟ । ଜ୍ଞାନଜ୍ୟେଷ୍ଠ ଓ ବୟୋଜ୍ୟେଷ୍ଠଙ୍କଠାରୁ ଅନେକ ଶିକ୍ଷଣୀୟ ବିଷୟ ଶିଖିବୁ ବୋଲି ଆମ୍ଭେମାନେ ବିଶ୍ୱାସ କରୁ ଓ ସେମାନଙ୍କୁ ଗୁରୁ ସ୍ୱରୂପ ଜ୍ଞାନ କରୁ । ସେଥିପାଇଁ ଆମ ସମାଜରେ ସେମାନଙ୍କୁ (ତୁଭ୍ୟଂ ନମଃ) ନମସ୍କାର କରିବାର ବିଧାନ ଅଛି । କିନ୍ତୁ ପୃଥିବୀର ଅନ୍ୟାନ୍ୟ ସମାଜରେ ସମାନ ସ୍ତରରେ ସମ୍ବୋଧନ ସ୍ୱୀକୃତ । ଆଜି ସମାଜବାଦ ଯୁଗରେ ସୁପ୍ରଭାତ ଓ ସୁସନ୍ଧ୍ୟା (Good morning,Good evening,) ଆଦି ସମ୍ବୋଧନ ଉପରୋକ୍ତ ସଂସ୍କୃତିର ସ୍ଥାନ ପୂରଣ କଲାଣି ।

ହିନ୍ଦୁମାନଙ୍କର ଧର୍ମ ଓ ସମାଜ ପରିଚାଳନାରେ ନୀତି ପୃଥକ୍ ଓ ସଂସ୍କୃତି ସେହି ନୀତିର ଅନୁରୂପ । ଏହି ସଂସ୍କୃତି ମଧ୍ୟ କେତେକ ବିଶ୍ୱାସମୂଳ ହୋଇ ସ୍ମୃତି

Digitized by srujanika@gmail.com

ନିଃସ୍ୱ ହୋଇଅଛୁ । ଆମ୍ଭମାନଙ୍କର କେତେକ ଆଚାର ବ୍ୟବହାର ସଂସ୍କୃତି ଉପରେ ପର୍ଯ୍ୟବସିତ । ଅତୀ ସଂସ୍କୃତି ସବୁ ଚିରାଚରିତ ପନ୍ଥା ପ୍ରଥା ଆଚାରରେ ଆବୃତ ଓ ସନ୍ନିପାଳିତ । ଆଜି କିନ୍ତୁ ଆମର ଶିକ୍ଷିତ ବ୍ୟକ୍ତିମାନେ କେବଳ ଆଧୁନିକ ଯୁଗ ବ୍ୟକ୍ତିର ଅନ୍ୟାନୁକୃତିକୁ ଶ୍ରେୟ ମନେକରନ୍ତି । ସେମାନେ ସଂସ୍କୃତିର ଉପାଦେୟତା ସମ୍ପର୍କରେ ଆଦୌ ଚିନ୍ତା ନକରି ତାହାକୁ ଭାରସ୍ୱୋକ କୁସଂସ୍କାର ଆଖ୍ୟା ଦେଇ ଜାତିଭ୍ରଷ୍ଟ ହେବାକୁ ଦେଶ ମଧ୍ୟରେ ଚରିତ୍ରହୀନତା ଓ ଉଚ୍ଛୃଙ୍ଖଳତା ଓ ସ୍ୱେଚ୍ଛାଚାରିତା ବଢ଼ି ଚାଲିଛି । ପରିସ୍ଥିତି ଏପରି ଯେ କେହି ତାହାଙ୍କୁ ପଦେ ନଶୁଣିଲେ ବା ଭଲ କଥା କହିଲେ ଉଚିତ ବଞ୍ଚିତ ହେବାକୁ ହେଉଛି । ଆବାଳ-ବୃଦ୍ଧ-ବନିତା କେହି ତାହାର ଉପଦେଶ ନେବାକୁ ବା ମାନିବାକୁ ପ୍ରସ୍ତୁତ ନୁହେଁ । ପ୍ରତ୍ୟେକର ମତ ଯେ ସେ ସମସ୍ତଙ୍କଠାରୁ ସବୁ ବିଷୟ ଅଧିକ ଜାଣେ । କେହି ତାହାର ସହିତ ମିଳିବାକୁ ଚାହେଁ ନାହିଁ । ଏଭଳି ସର୍ବବ୍ୟାପୀ ଚିନ୍ତାଧାରାର ପ୍ରବାହରେ ଜାତି ବା ସମାଜର ଉନ୍ନତି ଅଛି ?

ଅବଶ୍ୟ ଆମ ଦେଶ ବା ସମାଜରେ ସଙ୍ଗଠିତ ସମାଜର ଭିତ୍ତି, ସମାଜ ନିୟାମକ ମଧ୍ୟ ପରମ୍ପରାର ରକ୍ଷକ; ସମାଜନେତା ଏହି ପରମ୍ପରା ଦ୍ୱାରା ନେତୃତ୍ୱ କରି ଆସିଛି । ଦେଶ ଶାସକ ସମାଜର ସହାୟକ ଓ ପରମ୍ପରା ଭଙ୍ଗର ଦଣ୍ଡବିଧାୟକ । ଏହି ନୀତିର ଫଳରେ ଆଜିଯାଏ ଭାରତ ତଥା ସାରା ପୃଥିବୀର ବିଭିନ୍ନ ଜାତି ଓ ଧର୍ମମାନେ ସମସ୍ତ ସଦସ୍ୟ ଧର୍ମର ଦୈବୀଘାତରେ ମଧ୍ୟ ନିଜ ନିଜର ସ୍ୱାତନ୍ତ୍ର୍ୟ ରକ୍ଷା କରିଆସିଛନ୍ତି । ଆଜି କିନ୍ତୁ ଦେଶଶାସକ ସମାଜ ପ୍ରତି ସମ୍ପୂର୍ଣ୍ଣ ବୀତସ୍ପୃହ । ଫଳତଃ ସମାଜ ଭଗ୍ନ ବା ଲୋପୋନ୍ମୁଖ ହୋଇ ଲୋକସମାଜରେ ଉଚ୍ଛୃଙ୍ଖଳତା ଓ ସ୍ୱେଚ୍ଛାଚାରିତା ବୃଦ୍ଧି କରୁଛି । ହିନ୍ଦୁ ସମାଜ ଚିରାଚରିତ ପରମ୍ପରା ଦ୍ୱାରା ବିବାହ ବନ୍ଧନକୁ ନିୟନ୍ତ୍ରିତ କରି ଆଦର୍ଶ ଦମ୍ପତି ମାଧ୍ୟମରେ ପରିବାର ଗଠନ କରୁଥିଲା । କିନ୍ତୁ ସମାଜର ସେହି ପରମ୍ପରା ପ୍ରତି ଉପେକ୍ଷା କରି ଆଜି ସୁଦ୍ଧା ବିବାହ ସମ୍ପର୍କରେ ଯେଉଁ ସ୍ୱାଧୀନତାମୂଳକ ଆଇନମାନ ପ୍ରଣୟନ କରିଅଛନ୍ତି ତାହାର ପରିଣାମ ଆଜିକାଲି ସ୍ତ୍ରୀ-ସ୍ୱାମୀର ବିରୁଦ୍ଧ ବହୁ ଦାମ୍ପତ୍ୟ ବିବାଦରୁ ଜଣାଯାଏ । କାଳକ୍ରମେ ଏହି ସବୁ ନବବିଧାନର ଅନୁପାଦେୟତା ସଂପୂର୍ଣ୍ଣ ପ୍ରତିପନ୍ନ ହେବ ବୋଲି ମନେହୁଏ ।

ଅବଶ୍ୟ ଆମର ସଂସ୍କୃତି ସ୍ୱେଚ୍ଛାଚାରିତା ନୁହେଁ । ଆମ ସଂସ୍କୃତିର କଳ୍ପିତ ସ୍ତ୍ରୀ ସ୍ୱାଧୀନତା ପୁରୁଷ ସହିତ ଅବାଧ ମିଳନ ବା କାଳ ସ୍ଥାନ ବା ଦଶା ନିର୍ବିଶେଷରେ ବାହ୍ୟ ଭ୍ରମଣାଦି ନୁହେଁ, ନୈତିକ ସାମାଜିକ, ରାଜନୈତିକ ଓ ପାରିବାରିକ ବିଷୟମାନଙ୍କରେ ଉପଯୁକ୍ତ ଜ୍ଞାନ ଅର୍ଜନ କରି ପିତା, ମାତା, ସ୍ୱାମୀ, ପରିବାର ଓ ସମାଜର ପ୍ରକୃତ ସହାୟିକା ହେବା ଓ ସ୍ୱ କର୍ତ୍ତବ୍ୟରେ ଧୁରନ୍ଧର ହୋଇ ଅର୍ଦ୍ଧ

Digitized by srujanika@gmail.com

ଗୃହିଣୀ ହେବା ଆମ ସଂସ୍କୃତ୍ୟାନୁମୋଦିତ । ସ୍ତ୍ରୀ ଶିକ୍ଷାର ଲକ୍ଷ୍ୟ ପୁରାଣ ବର୍ଣ୍ଣିତ ଋଷିପତ୍ନୀ ଓ ଋଷିକନ୍ୟାମାନେ ଉଚ୍ଚତର ଶିକ୍ଷା ଓ ସ୍ତ୍ରୀ ସ୍ୱାଧୀନତାର ଦୃଷ୍ଟାନ୍ତ । କୁରୁକ୍ଷେତ୍ର ଯୁଦ୍ଧ ପୂର୍ବରୁ ଯୁଧିଷ୍ଠିରଙ୍କ ପତ୍ନୀ ଦ୍ରୌପଦୀଙ୍କର ବର୍ତ୍ତମାନ ସ୍ତ୍ରୀ ଜାତିର ଚତୁଃଶାସ୍ତ୍ରର ସନାତନ ଶିକ୍ଷାର ପରିସ୍ଫୁଟ ଏବଂ ଜ୍ୱଳନ୍ତ ଉଦାହରଣ । କେହି କହିପାରନ୍ତି ପୂର୍ବେ ସ୍ତ୍ରୀ ଜାତିର ରାଜନୈତିକ ସ୍ୱାଧିକାରର ପ୍ରଶ୍ନ ନଥିଲା, ଯେହେତୁ ସେତେବେଳେ ଆଧୁନିକ ଗଣତାନ୍ତ୍ରିକ ଭିତ୍ତିରେ ଶାସନ ପ୍ରଚଳିତ ନଥିଲା । କିନ୍ତୁ ଆଜି ଉପଯୁକ୍ତ ସ୍ତରରେ ଶିକ୍ଷିତା ହୋଇ ଗଣତାନ୍ତ୍ରିକ ଶାସନପାଇଁ ସ୍ୱାଧିକାର ପ୍ରୟୋଗ ଅସଂସ୍କୃତ ବୋଲି କେହି କହିପାରନ୍ତି ।

ସ୍ତ୍ରୀ ଜାତି ସ୍ୱଭାବତଃ କୋମଳହୃଦୟା । ତାହାର କର୍ତ୍ତବ୍ୟର ପରିସର ପୃଥକ୍ । ତାହାର ଦୁଇଟି ଜନ୍ମ ପ୍ରଥମେ ପିତୃଗୃହରେ ଲାଳିତ ପାଳିତ ହୁଏ । ପରେ ବିବାହ ହୋଇ ଅନ୍ୟ ପରିବାରରେ ନୂତନ ଜନ୍ମ ଗ୍ରହଣ କରେ । ତାହାର ଅନ୍ୟ ନାମ ଅବଳା । ସେ ଯେତେ ଶିକ୍ଷିତା ମାର୍ଜିତା ହେଲେ ମଧ୍ୟ ସାଧାରଣରେ ପୁରୁଷ ପରି ଶାରୀରିକ ଓ ମାନସିକ ଶକ୍ତିସମ୍ପନ୍ନ ନୁହେଁ । ତେଣୁ ଆମର ପୂର୍ବାଚାର୍ଯ୍ୟମାନେ ତାହାକୁ ସମାଜର ମୂଳଭିତ୍ତି କରି ନାହାନ୍ତି । ଅର୍ଥାତ୍ ସ୍ତ୍ରୀ ଯାହା ନିଜର ଅର୍ଜନ କରିଥାଏ ବା ତାହାର ନିଜସ୍ୱ ହେବା ଉଦ୍ଦେଶ୍ୟରେ ଅନ୍ୟ କେହି ଯାହା ତାହାକୁ ଦାନ କରିଥାଏ, ତାହା ବ୍ୟତୀତ ଅନ୍ୟ କୌଣସି ସମ୍ପତ୍ତିରେ ସେ ସ୍ୱତ୍ୱାଧିକାରିଣୀ ହୁଏ ନାହିଁ । କେବଳ ସ୍ୱଚ୍ଛନ୍ଦ ଚଳାଚଳ ସକାଶେ ତାହାକୁ ସ୍ଥଳ ବିଶେଷରେ ଜୀବନସ୍ୱତ୍ୱ ମାତ୍ର ଦିଆଯାଇଥାଏ । ଏହା ହିନ୍ଦୁ ସମାଜରେ ପରିବାରର ମେରୁଦଣ୍ଡ ରକ୍ଷା କରିବା ପାଇଁ ଆମର ଶ୍ରେଷ୍ଠ ସାଂସ୍କୃତିକ ପରମ୍ପରା ଥିଲା । ମାତ୍ର ଆଜି ସ୍ତ୍ରୀ ସ୍ୱାଧୀନତାର ବିକୃତ । ୧୯୬୬ ମସିହାରେ ଯେଉଁ ଅର୍ଥ କରାଯାଇ ହିନ୍ଦୁ ଉତ୍ତରାଧିକାର ଆଇନ ପ୍ରଚଳିତ ହୋଇଅଛି ତଦ୍ଦ୍ୱାରା କୃଷିପ୍ରଧାନ ଭାରତର ଘୋର ଆର୍ଥିକ ବିପର୍ଯ୍ୟୟ ଘଟି ପ୍ରତ୍ୟେକ ହିନ୍ଦୁ ପରିବାର ଛିନ୍ନବିଚ୍ଛିନ୍ନ ହେବ । ଭୂ-ସମ୍ପତ୍ତିର ଇପ୍ସିତ ଠୂଳୀକରଣ ନହୋଇ ବିପରୀତ ଫଳ ମିଳିବା ସୁନିଶ୍ଚିତ ।

ଅବଶ୍ୟ ଗତ କେତେ ବର୍ଷ ହେଲା ପାଶ୍ଚାତ୍ୟ ଶିକ୍ଷାଗତ ଅସହିଷ୍ଣୁତା ପ୍ରସାର ଫଳରେ ଆମ ସମାଜରେ ଏକାନ୍ନବର୍ତ୍ତୀ ପରିବାର ମଧ୍ୟରେ ପତି ବିଧବା ସ୍ତ୍ରୀ ସ୍ଥାନେ ସ୍ଥାନେ ଉତ୍ପୀଡ଼ିତା ହେବାରୁ ପ୍ରତିକାର ଅତ୍ୟାବଶ୍ୟକ ହୋଇଥିଲା । ସେନେଇ ହିନ୍ଦୁ ସ୍ତ୍ରୀଲୋକମାନଙ୍କର ସମ୍ବନ୍ଧରେ ୧୯୩୭ ମସିହାରେ ଯେଉଁ ଆଇନ ପ୍ରଣୀତ ହୋଇଥିଲା ତାହା ଆମ ସଂସ୍କୃତିର ବ୍ୟତିକ୍ରମ ଉପଯୁକ୍ତ ଅଧ୍ୟାୟର ପାଇଁ ।

କିନ୍ତୁ ସନ୍ ୧୯୫୬ ମସିହାର ନୂତନ ବିଧାନ ଦ୍ୱାରା ହିନ୍ଦୁ ଧର୍ମ ଓ ସଂସ୍କୃତି ସମ୍ପୂର୍ଣ୍ଣ ବ୍ୟାହତ ହୋଇଅଛି । ପିତୃତ୍ୟକ୍ତ ସମ୍ପତ୍ତି ପାଇଁ ପୃଥକ୍ ପୃଥକ୍ ପରିବାରଭୁକ୍ତ

Digitized by srujanika@gmail.com

ବହୁ ସଂଖ୍ୟକ ସମକାଳୀନ ଉତ୍ତରାଧିକାରୀ ସୃଷ୍ଟି ହେବାଦ୍ୱାରା ପିତା-ମାତାଙ୍କର ଶୁଦ୍ଧି ଓ ଶ୍ରାଦ୍ଧ ଆଦି କାର୍ଯ୍ୟକ୍ରମ ଲୁପ୍ତହେବାର ସମ୍ଭାବନା ଦେଖାଯାଉଛି । ଭାଇ, ଭଉଣୀ, ମାତା, ପୁଅ, ନାତି, ନାତୁଣୀ, ଖୁଡ଼ୁ, ବଡ଼ମାଆ ଇତ୍ୟାଦି ଆତ୍ମୀୟ ସ୍ୱଜନଙ୍କ ମଧ୍ୟରେ ପରସ୍ପର ପ୍ରତି ଟଗତରସ ସୌହାର୍ଦ୍ଦ୍ୟ କ୍ଷୁଣ୍ଣ ହୋଇଅଛି । କ୍ରମେ ବିବାହ ଆଦି ଉତ୍ସବ କାର୍ଯ୍ୟ ହୋଟେଲରେ ବ୍ୟକ୍ତିଗତ ବାହ୍ୟ ବନ୍ଧୁମାନଙ୍କ ଭୋଜନରେ ସୀମାବଦ୍ଧ ହେବ ।

ଉପଯୁକ୍ତ ପାତ୍ର ହସ୍ତରେ କନ୍ୟା ଦାନ କରିବା ଆମର ସଂସ୍କୃତି । କନ୍ୟାଦାନ ଉତ୍କୃଷ୍ଟ ଧର୍ମ କାର୍ଯ୍ୟ ମଧ୍ୟରେ ଗଣ୍ୟ । ପୂର୍ବେ ଅନ୍ୟାନ୍ୟ ବିବାହମାନ ଥିଲେହେଁ ଦାନାତ୍ମକ ବିବାହ ପ୍ରକୃଷ୍ଟ ଥିଲା । ମନୋନୀତ ସ୍ୱାମୀଙ୍କ ପକ୍ଷରେ ଦାନ ଗ୍ରହଣ କରିବାକୁ ଅନିଚ୍ଛା ଥିଲେ, ସେ ସ୍ଥଳରେ ଦକ୍ଷିଣା ସ୍ୱରୂପ କିଛି ପ୍ରଦାନ କରାଯାଉଥିଲା । ଏହି ଦକ୍ଷିଣା ଧାରଣା ଆଧୁନିକ କାଳରେ ଘୃଣ୍ୟ ପିଶାଚ ଯୌତୁକ ଆକାର ଧାରଣ କରିଛି । କାଳକ୍ରମେ ବିବାହ ଦକ୍ଷିଣାମୂଳକ ହୋଇ ଦକ୍ଷିଣାର ପରିମାଣ ଉପରେ ନିର୍ଭର କରୁଛି । ଯେଉଁ ରଜ ବା ବୀର୍ଯ୍ୟ ବିକ୍ରୟ ଆମ ଶାସ୍ତ୍ରରେ ମହାପାତକ ରୂପେ ପରିଗଣିତ, ତାହା ଆଜି ଆମ ସମାଜରେ ଦୈନନ୍ଦିନ କାର୍ଯ୍ୟ ହୋଇଛି । ଅନେକ ପରିବାର କନ୍ୟାର ବିବାହ ପାଇଁ ବାଧ୍ୟ ହୋଇ ବରକୁ ଯୌତୁକ ଦେବା ଦ୍ୱାରା ସର୍ବସ୍ୱାନ୍ତ ହେଉଅଛନ୍ତି । ସ୍ଥାନେ ସ୍ଥାନେ ବିବାହଯୋଗ୍ୟା କନ୍ୟା ପିତା-ମାତାଙ୍କୁ ନିର୍ଯ୍ୟାତନାରୁ ରକ୍ଷା କରିବା ଉଦ୍ଦେଶ୍ୟରେ ଆତ୍ମହତ୍ୟା କରୁଛନ୍ତି । କାହିଁ ଅବା ଯୌତୁକ ଆଶାନୁରୂପ ନହେବାରୁ ସ୍ୱାମୀ ପକ୍ଷର ଅତ୍ୟାଚାରରେ ଯୁବତୀ ସ୍ତ୍ରୀ ଅନୈତିକ ଉପାୟରେ ସଂସାରରୁ ଚିର ବିଦାୟ ନେଉଛି । କେତେକ ସାମାଜିକ ସଂସ୍କୃତି ପରିବର୍ତ୍ତିତ ରୂପରେ ଆଧୁନିକ ସମାଜରେ ଆଦୌ ନାହିଁ କହିଲେ ଚଳେ । ଏଗୁଡ଼ିକର ଅନାବଶ୍ୟକତା କ୍ରମେ ସମାଜରେ ପ୍ରବେଶ କରୁଛି । ବୈଦିକ ସନାତନ ସାବିତ୍ରୀ ପ୍ରଦାନ, ଦେବାର୍ଚ୍ଚନ ଆଦି ଦଶକର୍ମ ଦ୍ୱାରା ବାଳକର ସଂସ୍କାର, ଶୁଦ୍ଧି ଓ ଶ୍ରାଦ୍ଧ ଆଦି କାର୍ଯ୍ୟରେ ବ୍ରାହ୍ମଣ ଭୋଜନ ଭଳି ସଂସ୍କୃତିର ଆବଶ୍ୟକତା ଆଉ ନାହିଁ ବା ଫେଧବ ବୋଲି ବିଶ୍ୱାସ ନାହିଁ । ବେଦାଧ୍ୟୟନ ଦ୍ୱାରା ଶିକ୍ଷାର ପ୍ରାରମ୍ଭ ଆଉ ହେବ ନାହିଁ, କିମ୍ବା ଛାତ୍ରମାନେ ମୁଣ୍ଡିତମସ୍ତକ ବ୍ରହ୍ମଚାରୀର ଜୀବନ ଯାପନ କରିବେ ନାହିଁ କିମ୍ବା ବ୍ରାହ୍ମଣ ବୋଲି ସମ୍ମାନିତ ହେବେ ନାହିଁ । କେହି "ବ୍ରାହ୍ମଣ" ଆଖ୍ୟାଧାରୀ ଯେକୌଣସି ବ୍ୟକ୍ତିକୁ ଭୋଜନ ଦେବାଦ୍ୱାରା ପୁଣ୍ୟ ଅର୍ଜନ କଲେ ବୋଲି ଭାବିବ ନାହିଁ । ବ୍ୟକ୍ତିଗତ ଭାବରେ ଯେ ବ୍ରାହ୍ମଣ ହୋଇ ପାରିବେ ସେ ପରାନ୍ନ ଭୋଜନର ପ୍ରତ୍ୟାଶୀ ହୋଇପାରିବ, ସେ ପରାନ୍ନ ଭୋଜନର ପ୍ରତ୍ୟାଶୀ ହେବେ ନାହିଁ କିମ୍ବା ଦାନ ଗ୍ରହଣ ଦ୍ୱାରା ଦାତାରକୁ ପାପମୁକ୍ତ କଲେ ବୋଲି ଅହଙ୍କାର କରିବେ

Digitized by srujanika@gmail.com

ନାହିଁ । ଏଭଳି ସଂସ୍କୃତି ପାଇଁ ଶ୍ରେଣୀଗତ ଯୋଗ୍ୟତା ଓ ଯୁଗଗତ ଆବଶ୍ୟକତା ଥିଲା ।

ସଂସ୍କୃତି, ଜାତି, ଧର୍ମ ଓ ଜାତୀୟ ଚରିତ୍ର ଓ ସ୍ୱାତନ୍ତ୍ର୍ୟର ରକ୍ଷକ ସଂସ୍କୃତି ସତ ଆଦର ଓ ଆନୁଗତ୍ୟ ପ୍ରତ୍ୟେକ ଜାତି ବା ଧର୍ମଗୋଷ୍ଠୀକୁ ଏକତାବଦ୍ଧ କରି ଯୁଗ ଯୁଗ ବାହ୍ୟ ଆକ୍ରମଣକୁ ପ୍ରତିହତ କରିବା ପାଇଁ ସାମର୍ଥ୍ୟ ଦେଇଛି । ଏହାର ଅନୁସରଣ ସମୟରେ କେତେକ କୁସଂସ୍କାର ସ୍ୱାଭାବିକ କ୍ରମରେ ସମାଜରେ ପ୍ରବେଶ କରିଥିଲେହେଁ ଶେଷୋକ୍ତ ଜଡାସ୍ତର ସବୁର ଅଳୀକତା ସହଜରେ ଜଣାପଡ଼େ । ନୈତିକୀୟ ବୈଷ୍ଣବ "ସୀତା ରାମ" ନାମର ଉଚ୍ଚାରଣକୁ ଘୃଣା କରିବା ଜଘନ୍ୟ କୁସଂସ୍କାର ବଡ଼ା କରୁ ନାହିଁ; କିନ୍ତୁ ଆମ୍ଭମାନଙ୍କର ଯେଉଁ ଆସ୍ଥାର ଓ ବ୍ୟବହାର ଅଛି ବହୁପୂର୍ବରୁ ସମୋନ୍ନତ ଚିନ୍ତାଧାରା ଦ୍ୱାରା ମାର୍ଜିତ ହୋଇ ସଂସ୍କୃତିର ପରମ୍ପରା ସୃଷ୍ଟି କରିଅଛି ଏବଂ ଆମ୍ଭମାନଙ୍କ ଧର୍ମନୀତି ଉପରେ ପ୍ରତିଷ୍ଠିତ ଓ ଲୋକଚରିତ୍ର ଗଠନ ପାଇଁ ସୁପ୍ରଶସ୍ତ । ପ୍ରାଚ୍ୟ ବା ପାଶ୍ଚାତ୍ୟ ଯେ କୌଣସି ପ୍ରଣାଳୀରେ ଶିକ୍ଷିତମାନେ ଏସବୁର ଅନୁଧ୍ୟାନ କରି ଆଜି ଲୋକଙ୍କ ପାଇଁ ଉଜ୍ଜ୍ୱଳ ଦୃଷ୍ଟାନ୍ତବଳେ ଆମ ପ୍ରାଚୀନ ସଭ୍ୟତାର ଗୌରବ ଓ ସ୍ୱାତନ୍ତ୍ର୍ୟ ରକ୍ଷିବା ଉଚିତ୍ ।

—୦—

Digitized by srujanika@gmail.com

# ପ୍ରାଚୀନ ଯାଜପୁର

ଯାଜପୁର ସବ୍‌ଡିଭିଜନର ହେଡ୍‌କ୍ୱାର୍ଟର ବା ରାଜଧାନୀ 'ଯାଜପୁର'। ଏଠାରେ ସରକାରୀ ଓ ବେସରକାରୀ ନାନାବିଧ କଚେରୀ, ଅଫିସ ଓ ଅନୁଷ୍ଠାନ ଅଛି । ଆଜି ଲୋକେ ଏହି ସବୁରେ ଏହାକୁ ଜାଣନ୍ତି । କିନ୍ତୁ ଓଡ଼ିଶା ଇତିହାସରେ ଏହାର ସ୍ଥାନ କେଉଁଠି, ଅଧିକାଂଶ ସମ୍ଭବତଃ ଜାଣନ୍ତି ନାହିଁ ।

ବିରଜା ଯାଜପୁରର ଅଧିଷ୍ଠାତ୍ରୀ ଦେବୀ । ସେଥିପାଇଁ ଏହାକୁ ବିରଜାକ୍ଷେତ୍ର କୁହାଯାଏ । ପ୍ରାଚୀନ ସ୍ଥାପତ୍ୟ-ବହୁଳ ନହେଲେ ହେଁ ଏ ସ୍ଥାନଟି ଓଡ଼ିଶା ତଥା ଭାରତରେ ଏକେ ଗୋଟିଏ ପ୍ରାଚୀନ କୀର୍ତ୍ତି । ପ୍ରାକ୍-ବୌଦ୍ଧଯୁଗର ସାହିତ୍ୟରେ ଏହାର ନାମୋଲ୍ଲେଖ ନାହିଁ । ବୌଦ୍ଧ ସାହିତ୍ୟରେ ମଧ୍ୟ ଏହାର ଉଦ୍ଦିଷ୍ଟ ଉଲ୍ଲେଖ ଦେଖାଯାଏ ନାହିଁ; ତଥାପି ଅଧୁନା ଗୋଚରୀଭୂତ ସ୍ଥାପତ୍ୟ ଓ ଐତିହାସିକ ଧାରାରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଏହା ଗୋଟିଏ ଅତି ପ୍ରାଚୀନ ପୀଠ।

ବୌଦ୍ଧ ଓ ଜୈନ ଧର୍ମମତ 'ଉତ୍ତରାଞ୍ଚଳରୁ କେନ୍ଦୁଝର ଓ ମୟୂରଭଞ୍ଜର ଅରଣ୍ୟ ପଥରେ ଦକ୍ଷିଣ ପୂର୍ବାଞ୍ଚଳରେ ପ୍ରବେଶ କରି ପୂର୍ବ ଉପକୂଳ ଦେଇ ଦକ୍ଷିଣକୁ ବ୍ୟାପିଥିଲା । ଉକ୍ତ ଅରଣ୍ୟାଞ୍ଚଳ ଓ ଯାଜପୁର, ରତ୍ନଗିରି, ଉଦୟଗିରି, ଲଳିତଗିରି, ଓଗିଣ୍ଡ୍ରର, ଧଉଳି ଓ ଜଗରଡ଼ ଆଦି ଏହି ମତସ୍ରୋତର ପଥରେ ଅଗ୍ରପଶ୍ଚାତ୍ ଅବସ୍ଥିତ । ତେଣୁ ଏହି ସବୁ ସ୍ଥାନରେ ପ୍ରାଚୀନ ବୌଦ୍ଧ ଓ ଜୈନମୂର୍ତ୍ତି ସ୍ତୂପ, ଗୁମ୍ଫା ଓ ଅନୁଶାସନ ଆଦି ବହୁ ପରିମାଣରେ ଦେଖାଯାଏ । ପ୍ରତ୍ନତତ୍ତ୍ୱ ବିଭାଗର ଯତ୍ନରେ ଆଜି ଯାଜପୁର ସବ୍‌ଡିଭିଜନ ଅନ୍ତର୍ଗତ ରତ୍ନଗିରି, ଉଦୟଗିରି ଓ ଲଳିତଗିରିରୁ ମାଟିତଳୁ ଯେଉଁ ପ୍ରାଚୀନ କୀର୍ତ୍ତି ସମ୍ପଦମାନ ମିଳୁଅଛି, ତାହା ଇତିହାସରେ ନୂତନ ଅଧ୍ୟାୟ ସୃଷ୍ଟି କରୁଅଛି । ସୁଦୂର ଚୀନ ଓ ଜାପାନ ପ୍ରଭୃତି ଦେଶର ପଣ୍ଡିତମାନେ ଆସି ଏହି ମୂକ ଇତିହାସ ପାଠ କରୁଅଛନ୍ତି ।

ଅବଶ୍ୟ ଯାଜପୁର ସହର ବା ବିରଜାକ୍ଷେତ୍ର ମଧ୍ୟରେ ସେ ଯୁଗର ବହୁଳ ପ୍ରାଚୀନ କୀର୍ତ୍ତି ଦେଖା ଯାଏ ନାହିଁ । ତାହାର ଯଥେଷ୍ଟ ଐତିହାସିକ କାରଣ ମଧ୍ୟ ଅଛି । କିନ୍ତୁ ଯେ କେତେକ ପ୍ରାଚୀନ ସ୍ଥପତି ବିଦ୍ୟମାନ ଅଛି, ତାହା ବିଭିନ୍ନ

Digitized by srujanika@gmail.com

ଯୁଗର ବିଭିନ୍ନ ଶିଳ୍ପଧାରାର ପ୍ରମାଣ । ବୌଦ୍ଧ ଓ ଜୈନ ମୂର୍ତ୍ତିମାନ ବର୍ତ୍ତମାନ ଜଙ୍ଗଲ ମଧ୍ୟରେ ବା ଶସ୍ୟ କ୍ଷେତ୍ରରେ ପଡ଼ି ରହିଅଛି; କେଉଁଠାରେ ବୃକ୍ଷ ମୂଳରେ ଅଥବା ଅପରିଷ୍କାର ପୀଠ ସ୍ଥାନରେ ରଖାଯାଇ ଘୃତ-ସିନ୍ଦୂର-ଚର୍ଚ୍ଚିତ ହୋଇ ଗ୍ରାମଦେବୀ ସ୍ୱରୂପ ପୂଜିତ ହେଉ ଅଛନ୍ତି । ସ୍ଥାନେ ସ୍ଥାନେ ଖୋଦିତ ପତ୍ର ପୁଷ୍ପ ଓ ନାନାବିଧ ଜୀବଜନ୍ତୁ ସମନ୍ୱିତ ଭଗ୍ନ ପ୍ରସ୍ତରଖଣ୍ଡମାନ ପରିଲକ୍ଷିତ ହେଉଅଛି । ସେ ସବୁର ପରିକଳ୍ପନା ଓ ଖୋଦନଶୈଳୀ ବୌଦ୍ଧ ଯୁଗର ଭାସ୍କର୍ଯ୍ୟ ସଦୃଶ । ସବ୍‌ଡିଭିଜନାଲ ଅଫିସରଙ୍କ ହତା ମଧ୍ୟରେ ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ସୁରକ୍ଷିତ ପ୍ରକାଣ୍ଡ ପ୍ରସ୍ତର ମୂର୍ତ୍ତି, ଯାହାକୁ ଜନସାଧାରଣରେ ପୁରାଣ ଯୁଗର ଗୟାସୁର ନାମ ଦିଆଯାଇଛି, ତାହା ଏହିପରି ଗୋଟିଏ ବୌଦ୍ଧମୂର୍ତ୍ତି । ସ୍ପଷ୍ଟ ଜଣାଯାଏ ଯେ, ସାରା ଭାରତବର୍ଷପରି ଉତ୍କଳରେ ମଧ୍ୟ ପ୍ରସ୍ତର ଭାସ୍କର୍ଯ୍ୟ ବୌଦ୍ଧ ଓ ଜୈନ ଧର୍ମର ଏକ ଅଙ୍ଗ ସ୍ୱରୂପ ହୋଇଥିଲା । ମହାତ୍ମା ବୁଦ୍ଧ ଓ ମହାବୀରଙ୍କ ନିର୍ବାଣ ପରେ ପ୍ରସ୍ତର ଦେହରେ ନାନା ଭିକ୍ଷୁ, ଦେବଦେବୀ, ଜୀବଜନ୍ତୁ ଓ ବୃକ୍ଷଲତାଦିର ଅଙ୍କନ ଓ ଖୋଦନ ଶିଳ୍ପୀମାନଙ୍କର ଧର୍ମକାର୍ଯ୍ୟ ମଧ୍ୟରେ ପରିଗଣିତ ହେଉଥିଲା । ଏହା ହିଁ ବୌଦ୍ଧ ଓ ଜୈନ ଯୁଗର ପ୍ରସ୍ତର ଭାସ୍କର୍ଯ୍ୟର ବହୁଳତାର କାରଣ । ଉତ୍କଳରେ ଏହି ଭାସ୍କର୍ଯ୍ୟ ପରବର୍ତ୍ତୀ-ଯୁଗର ପୋଷକତା ଦ୍ୱାରା ପରିପୁଷ୍ଟ ଓ ପରିବର୍ଦ୍ଧିତ ହୋଇ ପରିଶେଷରେ କୋଣାର୍କ ମନ୍ଦିର ଆକାରରେ ଫଳପୁଷ୍ପ ଧାରଣ କରିଥିଲା ।

ଖାରବେଳ ଓ ଅଶୋକ ଆଦି ବୌଦ୍ଧ ସମ୍ରାଟମାନଙ୍କ ତିରୋଧାନ ପରେ ଉତ୍କଳ ତଥା ଭାରତବର୍ଷରେ ବୌଦ୍ଧ ଓ ଜୈନଧର୍ମ କ୍ରମଶଃ ଦୁର୍ବଳ ହୋଇ ପଡ଼ିଲା । ସେତେବେଳେ ଜୈନ ଥିଲା ରାଜାନୁଗତ ଧର୍ମ । ସମୁଦ୍ର ଗୁପ୍ତ ଓ ହର୍ଷବର୍ଦ୍ଧନଙ୍କ ପରି ବୈଦିକ ଧର୍ମାବଲମ୍ବୀ ପରାକ୍ରମୀ ସମ୍ରାଟମାନଙ୍କ ଆନୁକୂଲ୍ୟରେ ବୈଦିକ ଧର୍ମ ପୁନଃ ପ୍ରତିଷ୍ଠିତ ହୋଇଥିଲା । ଉତ୍କଳ ମଧ୍ୟ ଏହି ପୁନଃପ୍ରବାହିତଧର୍ମ ସ୍ରୋତକୁ ଏଡ଼ିପାରିନଥିଲା । ବୈଦିକମାନେ ବୌଦ୍ଧ ଓ ଜୈନ ଧର୍ମର ଦେବଦେବୀ ଓ ରୀତିନୀତି ଆଦିକୁ ନାନା କୌଶଳରେ ସ୍ୱପନ୍ଥାରେ ଅଙ୍ଗୀଭୂତ କରି ବିରୁଦ୍ଧ ଧର୍ମ ମତର ଚିହ୍ନ ଲୋପ କରିବାକୁ ଉଦ୍ୟତ ହୋଇଥିଲେ । ଏଭଳି ପରିସ୍ଥିତି ମଧ୍ୟରେ ମହାକୋଶଳର ଗୁପ୍ତ ବଂଶୀୟ ଜଣେ ରାଜପୁତ୍ର ବୈଦିକ ଅବଲମ୍ବନରେ ଉତ୍କଳରେ ରାଜ୍ୟସ୍ଥାପନ କରିବାର ସୁବିଧା ଦେଖି ଉତ୍ତର ପଶ୍ଚିମାଞ୍ଚଳ ବାଟେ ଉତ୍କଳରେ ପ୍ରବେଶ କରିଥିଲେ । ତାଙ୍କର ନାମ ଶିବଗୁପ୍ତ । ଶିବଗୁପ୍ତ ସିଂହ ବିକ୍ରମରେ ବ୍ରାହ୍ମଣମାନଙ୍କ ସାହାଯ୍ୟରେ ଉତ୍କଳର ବୌଦ୍ଧ ଓ ଜୈନଧର୍ମକୁ ନିଶ୍ଚିହ୍ନ କରି ବୈଦିକ ଯୁଗର ପୁନଃ ପ୍ରତିଷ୍ଠା କରିବା ପାଇଁ ବ୍ରତୀ ହୋଇଥିଲା ।

ସେତେବେଳେ ଶୈବ ବା ଅନ୍ୟ ଧର୍ମମତ ଉତ୍କଳରେ ପ୍ରବେଶ କରିବାର ଏକମାତ୍ର ପଥ ଥିଲା ଉତ୍ତର-ପଶ୍ଚିମ ପାର୍ବତ୍ୟ ଅଞ୍ଚଳ ଏବଂ ଉତ୍କଳର ଉପକୂଳବର୍ତ୍ତୀ

Digitized by srujanika@gmail.com

ଅଞ୍ଚଳରେ ନୂତନ ଶକ୍ତି ବା ଧର୍ମମତର ଗତିପଥରେ ପ୍ରଥମେ ଅବସ୍ଥିତ ଥିଲା ଯାଜପୁର । ତେଣୁ ଶିବଗୁପ୍ତ ଏହି ଯାଜପୁରକୁ ନିଜର ରାଜଧାନୀ କରି ପୁନଃ ପ୍ରତିଷ୍ଠିତ ବୈଦିକ ଧର୍ମର କେନ୍ଦ୍ର ସ୍ଥଳରେ ପରିଣତ କରିଥିଲେ । ସେହିଦିନୁ ଯାଜପୁର ଭାରତରେ ଓ ଶାସ୍ତ୍ର ପୁରାଣ ଆଦିରେ ଖ୍ୟାତି ଲାଭ କରିଥିଲା ।

ଶିବଗୁପ୍ତ ଉତ୍ତର ଭାରତରୁ ଗୁଡ଼ିଏ ନୈଷ୍ଠିକ ଯାଜ୍ଞିକ ବ୍ରାହ୍ମଣ ଆଣାଇ ଏହିଠାରେ ଦଶ ଅଶ୍ୱମେଧ ଯଜ୍ଞ କରାଇଥିଲେ । କୀର୍ତ୍ତିର ସ୍ମୃତି ଚିହ୍ନ ସ୍ୱରୂପ ବୈତରଣୀ ନଦୀ ତୀରରେ ପ୍ରସ୍ତରର ଦଶାଶ୍ୱମେଧ ଘାଟ ଓ ଅଖଣ୍ଡଳେଶ୍ୱର ନାମରେ ଶିବଲିଙ୍ଗ ସ୍ଥାପନ କରିଥିଲେ । ଏହି ଶିବଲିଙ୍ଗଙ୍କୁ ଚନ୍ଦ୍ର ଆଖଣ୍ଡଳ କୁହାଯାଏ । ଇନ୍ଦ୍ରଙ୍କର ଅନ୍ୟନାମ ଆଖଣ୍ଡଳ । କଥିତ ଅଛି; ସ୍ୱୟଂ ଇନ୍ଦ୍ର ବ୍ରହ୍ମାଙ୍କୁ ଆଣାଇ ଯଜ୍ଞ ସମ୍ପନ୍ନ କରି ଏହି ଶିବଲିଙ୍ଗ ସ୍ଥାପନ କରିଥିଲେ । ବହୁ ବ୍ରାହ୍ମଣ ସମାବେଶରେ ଯଜ୍ଞାନୁଷ୍ଠାନ ଓ ସ୍ମୃତି ଚିହ୍ନ ସ୍ଥାପନ ଏହି କିମ୍ବଦନ୍ତୀର ଏକମାତ୍ର ତାତ୍ପର୍ଯ୍ୟ ବୋଲି ମନେହୁଏ ।

ଯାଜପୁର ଏକ ବ୍ରାହ୍ମଣବହୁଳ ସ୍ଥାନ । ଏମାନେ ପ୍ରାୟ ସମସ୍ତେ ବାଦ୍ୱେଲ ବୃତ୍ତିଭୋଗୀ । ଏମାନଙ୍କର ଯେ କେତୋଟି ପ୍ରାଚୀନ ବାସ୍ତୁଭୂମି ଅକ୍ଷତ ଅବସ୍ଥାରେ ଅଛି, ତାହାର ନିମ୍ନଦେଶ ସୁବିଶାଳ ବଉଳମାଳା ପ୍ରସ୍ତରର ଚଟାଣ ଓ ପ୍ରାଚୀର ଆଦିରେ ପରିପୂର୍ଣ୍ଣ ।

ଏଠାର ଅନେକ ସ୍ଥାନ ଅଛି, ଯାହା ଖୋଳିଲେ ବଉଳମାଳା ପ୍ରସ୍ତର ନିର୍ମିତ ସୁବିସ୍ତୃତ ଚଟାଣ ଓ ପ୍ରାଚୀର ଆଦି ଦେଖାଯାଏ । ବୈତରଣୀ ନଦୀ ତୀରରେ ବନ୍ଧ ପ୍ରସ୍ତୁତ ହେବା ପୂର୍ବେ ଏହା ଉପରେ ବନ୍ୟା ସ୍ରୋତ ପ୍ରବାହିତ ହେଉଥିଲା । ସୁତରାଂ ପ୍ରାକୃତିକ କାରଣରେ ଏହାର ପ୍ରାଚୀନତାର ବହୁ ଚିହ୍ନ ଲୋପ ହୋଇ ପଡ଼ିଥିବା ଅସମ୍ଭବ ନୁହେଁ । ଦଶାଶ୍ୱମେଧ ଘାଟର ଅଧିକାଂଶ ବାଲୁକା ଗର୍ଭସାତ୍ ହୋଇଅଛି । ଅସ୍ଥାନ ସ୍ଥାନରେ ବହୁ ଶିବଲିଙ୍ଗ ଏଠାରେ ଦେଖାଯାଏ । ଶିବଗୁପ୍ତ ଏହିସ୍ଥାନକୁ କେନ୍ଦ୍ର କରି ବହୁ ଯାଜ୍ଞିକ ବ୍ରାହ୍ମଣ ଆଣାଇ ଏକାଧିକ ବୈଦିକ ଯଜ୍ଞ କରି ଓ କରାଇ ଏହିଠାରୁ ଉତ୍କଳରେ ବୈଦିକ ଧର୍ମପନ୍ଥାର ପୁନଃ ପ୍ରଚଳନ କରାଇ ପୁରାଣ ପ୍ରସିଦ୍ଧ ଯାଜ୍ଞିକ ରାଜା ଯଯାତିଙ୍କର ନାମାନୁସାରେ ନିଜକୁ ଯଯାତି ଉପାଧିରେ ଭୂଷିତ କରିଥିଲେ । ବୌଦ୍ଧ ଧର୍ମମତରେ ହାତୀ ଓ ସିଂହ ଯଥାକ୍ରମେ ପୂର୍ବ ଓ ଉତ୍ତର ଦିଗର ରକ୍ଷକ । ତେଣୁ ଯଯାତି ଉତ୍ତରରୁ ଆସି ପୂର୍ବ ଦେଶ ଅର୍ଥାତ୍ ଉତ୍କଳ ଜୟ କରି ଧର୍ମପ୍ରଚାର କରିଥିବାରୁ ଉତ୍କଳୀୟ ସ୍ଥପତିରେ ଦିଗ୍ବିଜୟର ନିଦର୍ଶନ ସ୍ୱରୂପ ଗଜସିଂହ ବା ହାତୀ ଉପରେ ସିଂହମୂର୍ତ୍ତି ସର୍ବତ୍ର ଦେଖାଯାଏ । ସେହିଦିନୁ ଯଯାତି ବା ଶିବଗୁପ୍ତଙ୍କର ବଂଶ ଉତ୍କଳରେ କେଶରୀ ବଂଶ ନାମରେ ଅଭିହିତ ।

Digitized by srujanika@gmail.com

ଯଜପୁରର ଗୁପ୍ତ ଓ ଦକ୍ଷିଣ ଯାଜପୁରକୁ ସେ ସ୍ୱର୍ଗଦ୍ୱାର ଦ୍ୱିତୀୟ ବାରାଣସୀ କରି ଗଢ଼ି ଉଠିଥିଲେ । ତାଙ୍କର ବୈତରଣୀ ଗଙ୍ଗା, ତାଙ୍କର ଆଖଣ୍ଡଳେଶ୍ୱର ବିଶ୍ୱନାଥ ଓ ତାଙ୍କର ଦଶାଶ୍ୱମେଧ ଘାଟ ବାରାଣସୀର ଦଶାଶ୍ୱମେଧ ଘାଟ । ତାଙ୍କର କୀର୍ତ୍ତି ଫଳରେ ବୈତରଣୀ ସ୍ନାନ ଓ ଆଖଣ୍ଡଳେଶ୍ୱର ଦର୍ଶନ ଗଙ୍ଗାସ୍ନାନ ଓ ବିଶ୍ୱନାଥ ଦର୍ଶନ ସମାନ ଅନୁଷ୍ଠିତ ହେଉଥିଲା ଓ ହେଉଅଛି । ସପାଦ ନଗର ଏହି କୀର୍ତ୍ତି କେନ୍ଦ୍ର, ଯାଜପୁରର ବ୍ରାହ୍ମଣ ପଣ୍ଡିତମାନଙ୍କ ସାହାଯ୍ୟରେ ଧର୍ମ ଓ ସମାଜର ନିୟନ୍ତ୍ରଣ ଓ ରାଜ୍ୟ ଶାସନ କରୁଥିଲେ । କେଶରୀ ବଂଶୀୟ ରାଜାମାନଙ୍କ ତାମ୍ର ଶାସନରେ ମହାସନ୍ଧିବିଗ୍ରହିକ (Minister of place & war) ଉପାଧି ଦେଖାଯାଏ । ଉତ୍କଳରେ କେବଳ ଯାଜପୁରର କେତେକ ପ୍ରାଚୀନ ବ୍ରାହ୍ମଣ ବଂଶରେ "ସନ୍ଧିବିଗ୍ରହ" ଉପାଧି ପ୍ରଚଳିତ ଅଛି । ଏଥିରୁ ଯାଜପୁର ସହିତ କେଶରୀ ବଂଶର ସମ୍ବନ୍ଧ ସ୍ପଷ୍ଟ ଅନୁମେୟ । ଯାଜପୁର ପ୍ରକୃତରେ ଯାଜପୁର ବା ଯାଜ୍ଞମାନଙ୍କର ପୁର । ସ୍କନ୍ଦ ମହାଭାରତରେ ଉଲ୍ଲେଖ ଅଛି—"ଏତେ କଳିଙ୍ଗା କୌନ୍ତେୟ ଯତ୍ର ବୈତରଣୀ ନଦୀ । ଯତ୍ର ଯଜନ୍ତ ଧର୍ମୋପି" ଇତ୍ୟାଦି । ଏହି ପଂକ୍ତି କେବେ ଲେଖା ହୋଇଥିଲା ତାହା ଠିକ କହିହେବ ନାହିଁ । କିନ୍ତୁ ବୌଦ୍ଧଧର୍ମର ପରବର୍ତ୍ତୀ ପୁନଃ ପ୍ରତିଷ୍ଠିତ ବୈଦିକ ଯୁଗରେ ଯାଜପୁର ବୈଦିକ ଧର୍ମ ମତର ଏକ ପ୍ରଧାନ ପୀଠ ହୋଇଥିଲା, ଏହା ଏହି ପଂକ୍ତିରୁ ସହଜରେ ଅନୁମିତ ହୁଏ ।

ଆଜି ଯାଜପୁର ସହର ବା ତାହାର ଉପାନ୍ତରେ ପ୍ରାଚୀନ କୀର୍ତ୍ତି ବା ସ୍ଥାପତ୍ୟର ବହୁଳତା ନାହିଁ । ତାହାର କାରଣ, ଏହା ଉତ୍କଳରେ ପ୍ରବେଶ ପଥର ପ୍ରଧାନ ଦ୍ୱାର ହୋଇଥିବାରୁ ପରବର୍ତ୍ତୀ ବିଧର୍ମୀ ଓ ବିଧର୍ମୀମାନଙ୍କର ବହୁ ଘାତ-ପ୍ରତିଘାତ ଦ୍ୱାରା ସେସବୁ ଲୁପ୍ତ ପ୍ରାୟ ହୋଇଅଛି ।

କେଶରୀ ବଂଶୀୟ ରାଜାମାନେ ପ୍ରଧାନତଃ ଶିବଭକ୍ତ ଥିଲେ । ଯାଜପୁରରେ ବହୁ ସଂଖ୍ୟାରେ ଶିବଲିଙ୍ଗ ଦେଖାଯାଏ । ଏମାନଙ୍କ ମଧ୍ୟରେ କେତେକଙ୍କର ଆକାର ଓ ସ୍ଥାପନସ୍ୱରୂପ ଅତ୍ୟନ୍ତ କୌତୂହଳପୂର୍ଣ୍ଣ । ବିରଜା ମନ୍ଦିରର ଅନତି-ଦୂରରେ 'ଅଗ୍ନୀଶ୍ୱର' ନାମକ ଶିବଲିଙ୍ଗ ଦିନର ବିଭିନ୍ନ ସମୟରେ ବିଭିନ୍ନ ରଙ୍ଗରେ ପ୍ରତିଭାତ ହୁଏ । ମନ୍ଦିର ନିର୍ମାଣରେ ଆଲୋକପାତର ନିୟନ୍ତ୍ରଣ ସ୍ୱରୂପ ହେତୁ, ଏଭଳି ଦେଖାଯାଏ ବୋଲି କାହାରି ତାହାର ମତ । ତଳେ ଭାସ୍କରେଶ୍ୱର ନାମକ ସୁବିଶାଳ 'ଶିବଲିଙ୍ଗ' ପ୍ରତ୍ୟହ ତିଳ ପ୍ରମାଣରେ ବଢ଼ୁଥିବାର ଲୋକେ କହନ୍ତି । ନନ୍ଦକଂଟସ୍ଥ ତ୍ରିଲୋଚନେଶ୍ୱର ନାମକ ଶିବଲିଙ୍ଗର ପ୍ରାଚୀନ ମନ୍ଦିରର ଅଗ୍ରଭାଗ ଉତ୍କଳାନୁସୃତ ବିମାନ କୃତ ନ ହୋଇ ଗୋପୁର ବିଶିଷ୍ଟ ଅଟେ । ଏହି

Digitized by srujanika@gmail.com

ମନ୍ଦିର ମଧ୍ୟରେ ଠିଆ ହେଲେ ଗୋଟିଏ ଶାସ୍ତ୍ରାନୁମୋଦିତ ଯଜ୍ଞଶାଳା ମଧ୍ୟରେ ଠିଆ ହେବାପରି ଜଣାଯାଏ । ଉତ୍କଳପ୍ରଚଳିତ ସ୍ଥାପତ୍ୟ ପ୍ରଣାଳୀରେ ଏହା ଗୋଟିଏ ଅଭିନବ ସମାବେଶ ।

ଶୈବ ପୂଜାର ସ୍ରୋତ ମଧ୍ୟରେ କ୍ରମେ ସମାଜର ଶକ୍ତି ଉପାସନା ବିସ୍ତାର ଲାଭ କରିଥିଲା । ପୁଣି ଏହି ଶକ୍ତି ଉପାସନାର ଧାରାରୁ ପାରିପାର୍ଶ୍ୱିକ ଭାବରେ ଦେବୀପୂଜା ଓ ନାନାବିଧ ତନ୍ତ୍ରମାର୍ଗ ଉଦ୍ଭୂତ ହୋଇଥିଲା । ମନେହୁଏ, ଯଜ୍ଞ ଯୁଗର ସାବିତ୍ରୀ (ବ୍ରହ୍ମାପତ୍ନୀ) ଦେବୀ ପୂଜା ଯୁଗରେ ବିରଜା ବା ସିଂହବାହିନୀ ଦୁର୍ଗାରେ ପରିଣତ ହେଲେ । ବିରଜା ନାମରୁ, ଯାଜପୁରର ବିରଜା ଦେବୀ ବିମଳା ସାବିତ୍ରୀଙ୍କର ପରବର୍ତ୍ତୀ ରୂପାନ୍ତର ବୋଲି କେତେକ ପରିମାଣରେ ଅନୁମିତ ହୁଏ ।

ଯାଜପୁର ଉତ୍କଳରେ ଦେବୀ ପୂଜାର ପ୍ରଧାନ ପୀଠ ଥିଲା ଓ ଆଜିଯାଏ ଅଛି । ଦେବୀ ପୂଜାର ବିଧିବିଧାନ ମଧ୍ୟରେ ଦୁର୍ଗାଙ୍କର ପ୍ରମୁଖତା । ଇନ୍ଦ୍ରାଣି, ବାରାହୀ, ବୈଷ୍ଣବୀ, ଚାମୁଣ୍ଡା କୁମାରୀ ଆଦିଶକ୍ତିମାନଙ୍କର ଏକାଧିକ ପ୍ରସ୍ତର ମୂର୍ତ୍ତି କଳ୍ପିତ ଓ ନିର୍ମିତ ହୋଇଥିଲା । ସେସବୁର ଉତ୍କୃଷ୍ଟ କଳା ସ୍ୱରୂପ ଦେଖିଲେ ଅଭ୍ରାନ୍ତ ବିଶ୍ୱାସ ହୁଏ ଯେ, ଏଠାରେ ପ୍ରସ୍ତର ଶିଳ୍ପ ବୌଦ୍ଧ ଯୁଗରୁ କେବେ ବାଧାପ୍ରାପ୍ତ ନହୋଇ କ୍ରମୋନ୍ନତ ପଥରେ ଅଗ୍ରସର ହେଉଥିଲା ପ୍ରତ୍ୟେକ ମୂର୍ତ୍ତି ଶାସ୍ତ୍ରୀୟ ବର୍ଣ୍ଣନାର ସଠିକ୍ ଅନୁରୂପ । ଶରୀରର ଅଙ୍ଗ-ପ୍ରତ୍ୟଙ୍ଗ ଓ ଶିରା-ପ୍ରଶିରା ପ୍ରାକୃତିକ ଭାବରେ ସୁସ୍ପଷ୍ଟ ଓ ସୁଗଠିତ । ଖୋଦିତ ଆଭରଣମାନ ସୂକ୍ଷ୍ମ, ସୁନ୍ଦର, ଓ ସୁରୁଚି ସମ୍ପନ୍ନ । ଆଜିକାଲି ଏହି ମୂର୍ତ୍ତିମାନଙ୍କ ମଧ୍ୟରୁ ସାତଟି ବୈତରଣୀତୀରସ୍ଥ ଗୋଟିଏ କ୍ଷୁଦ୍ର ମନ୍ଦିରରେ ରଖାଯାଇ ସପ୍ତମାତୃକା ନାମରେ ପୂଜିତ ହେଉଅଛନ୍ତି । ଏହି ସାତୋଟି ମୂର୍ତ୍ତି ବୈତରଣୀ ଗର୍ଭରେ ନିକ୍ଷିପ୍ତ ହୋଇଥିଲା । ଜନୈକ ଧର୍ମପ୍ରାଣ ବ୍ୟକ୍ତି ଏହାଙ୍କୁ ଉଦ୍ଧାର କରି ଉକ୍ତ ମନ୍ଦିରରେ ରଖିଥିଲେ । ସମକଳାସମ୍ପନ୍ନ ଆଉ କେତୋଟି ମୂର୍ତ୍ତି ସବ୍‌ଡିଭିଜନାଲ ଅଫିସରଙ୍କ ହତା ମଧ୍ୟରେ ସରକାରଙ୍କ ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ରକ୍ଷିତ ହୋଇ ତତ୍ତ୍ୱାନ୍ୱେଷୀ ବ୍ୟକ୍ତିମାନଙ୍କର ମୂଲ୍ୟବାନ ସମ୍ପଦ ହୋଇଅଛି । ଶେଷକୁ ଏହି ମୂର୍ତ୍ତି ସବୁ ସବ୍‌ଡିଭିଜନାଲ ଅଫିସରଙ୍କ କଚେରୀ ଆଗରେ ଥିବା ବୋଖାରୀ ଅସ୍ଥାନର ପଶ୍ଚାଦ୍‌ଭାଗରେ ଏକ କ୍ଷୁଦ୍ର ପୁଷ୍କରିଣୀ ମଧ୍ୟରେ ନିକ୍ଷିପ୍ତ ହୋଇଥିଲା ।

ବିରଜା ଦେବୀ ପ୍ରାଚୀନ ହେଲେ ହେଁ ତାଙ୍କର ମନ୍ଦିର ପୁରାତନ ନୁହେଁ । କେବଳ ମନ୍ଦିର ଦେହରେ ସ୍ଥାନେ ସ୍ଥାନେ ସାମାନ୍ୟ କେତେ ଖଣ୍ଡି ପ୍ରାଚୀନ ଭାସ୍କର୍ଯ୍ୟପୂର୍ଣ୍ଣ ଅଙ୍କ ଭଗ୍ନ ପ୍ରସ୍ତର ପ୍ରୋଥିତ ଥିବାର ଦେଖାଯାଏ । ଏହି ମନ୍ଦିରର ଅନତି

Digitized by srujanika@gmail.com

ଦୂରରେ ଯାହଲବନ୍ଧ ନାମକ ସ୍ଥାନରେ ଗୋଟିଏ ଅଷ୍ଟାଦଶଭୁଜା ଦେବୀ ମୂର୍ତ୍ତି ଅଛି । ସେହି ମୂର୍ତ୍ତିଟି ସେଉଁ ମନ୍ଦିରର ମଧ୍ୟରେ ସ୍ଥାପିତ ହୋଇଥିଲା, ତାହାର କେତେକ ଭଗ୍ନାବଶେଷ ମୂର୍ତ୍ତି ସହ ଭୂପୃଷ୍ଠର କେତେ ହାତ ତଳେ ରହିଅଛି । ମୂର୍ତ୍ତିଟି ଅତ୍ୟନ୍ତ ଭାସ୍କର୍ଯ୍ୟପୂର୍ଣ୍ଣ ଓ ପ୍ରାଚୀନ ଶିଳ୍ପ କଳାର ପରିଚାୟକ ।

ପରିଶେଷରେ ବୈଷ୍ଣବ ଧର୍ମଗତ ମଧ୍ୟ ଉତ୍କଳର ଅନ୍ୟାନ୍ୟ ଅଞ୍ଚଳ ପରି ଯାଜପୁରକୁ ପ୍ଲାବିତ କରିଥିଲା । ଉତ୍କଳୀୟ ବୈଷ୍ଣବ ରାଜାମାନଙ୍କର ଏକାଧିକ ରାଜଧାନୀମାନଙ୍କ ମଧ୍ୟରେ ଯାଜପୁର ଏକତମ ଥିଲା । ମୁସଲମାନ ଇତିହାସରେ ଏହାର ସ୍ପଷ୍ଟ ପ୍ରମାଣ । ଦୁଇଟି, ଗୋଟିଏ ବୈଷ୍ଣବ ସ୍ଥାପତ୍ୟ ଆଜି ଏଠାରେ ଐତିହାସିକମାନଙ୍କର ଦୃଷ୍ଟି ଆକର୍ଷଣ କରୁଅଛି ।

ଏଠାରେ ଶୋଡ଼ଶ ପାର୍ଶ୍ୱ ବିଶିଷ୍ଟ ଏକ ସ୍ଥୂଳ ଓ ଦୀର୍ଘ ପ୍ରସ୍ତର ସ୍ତମ୍ଭ ଅଛି । ଏହାର ପୀଠ ମଧ୍ୟ ଓ ଉପରିସ୍ଥ ଆସ୍ଥାନ ଯଥାକ୍ରମେ ଖଣ୍ଡିଏ ଲେଖାଏଁ ମୁଗୁନି ପଥର । ଏହାକୁ ଲୋକେ ଶୁଭ ସ୍ତମ୍ଭ କହନ୍ତି । ଉପରିସ୍ଥ ଆସ୍ଥାନର ଚତୁଃପାର୍ଶ୍ୱରେ ଖୋଦିତ କୀର୍ତ୍ତି ମୁଖ ଓ ମାଳାଗୁଡ଼ିକ ଉତ୍ଖନିତ ଶିଳ୍ପ ଚାତୁରୀର ପରିଚାୟକ । ସ୍ତମ୍ଭଟି ସୁଚିକ୍କଣ । ଏହା ଯାଜପୁରରେ ସୁଦୀର୍ଘକାଳବ୍ୟାପୀ ଅବିଚ୍ଛିନ୍ନ ପ୍ରସ୍ତର ଭାସ୍କର୍ଯ୍ୟର ସ୍ମାରକ । ଏହାର ଅନତିଦୂରରେ ଗୋଟିଏ ସମଶିଳ୍ପକଳା ବିଶିଷ୍ଟ ପ୍ରକାଣ୍ଡ ଗରୁଡ଼ ମୂର୍ତ୍ତି ଅଛି । କେହି କେହି ମନେକରନ୍ତି, ସନ୍ନିକଟରେ କୌଣସି ବିଷ୍ଣୁ ମନ୍ଦିରର ସମ୍ମୁଖରେ ଉପରୋକ୍ତ ଶୁଭସ୍ତମ୍ଭ ଏହି ଗରୁଡ଼ ମୂର୍ତ୍ତି ଦ୍ୱାରା ଅଳଂକୃତ ହୋଇଥିଲା । ଉଭୟର ଆକାର ସାମ୍ୟ ଦୃଷ୍ଟିରୁ ଏଭଳି ଅନୁମାନ ଅମୂଳକ ନୁହେଁ । କିମ୍ବଦନ୍ତୀ କହେ, କଳାପାହାଡ଼ର ଭୟରେ ଗରୁଡ଼ ଉଡ଼ିଯାଇ ଗୋଟିଏ ପୋଖରୀରେ ଆଶ୍ରୟ ନେଇଥିଲା । ଗରୁଡ଼ ମୂର୍ତ୍ତିଟି ନିକଟସ୍ଥ ଗୋଟିଏ ପୋଖରୀରୁ ଓ ସ୍ତମ୍ଭଟି ଭଗ୍ନାବସ୍ଥାରୁ ଉଦ୍ଧାର କରାଯାଇଥିଲା । ଆଜି ମଧ୍ୟ ସେହି ପୋଖରୀର ନାମ ଗରୁଡ଼ କୁଣ୍ଡ । କିମ୍ବଦନ୍ତୀ ଭ୍ରାନ୍ତ ବିଧର୍ମୀର ଅତ୍ୟାଚାରର ସ୍ମାରକ ଏବଂ ଏଭଳି ଅତ୍ୟାଚାର ଯାଜପୁରରେ ପ୍ରାଚୀନ କୀର୍ତ୍ତି ଓ ଭାସ୍କର୍ଯ୍ୟର ସ୍ୱଳ୍ପତାର ଅନ୍ୟତମ କାରଣ ।

ଏଠାରେ ବରାହନାଥ ଠାକୁର ଅଛନ୍ତି । ବରାହନାଥ କୃଷ୍ଣ ମୁଗୁନି ପଥରରେ ଖୋଦିତ ଏକ କମନୀୟ ମୂର୍ତ୍ତି । କଥିତ ଅଛି, ଏହିଠାରୁ ଗୋଟିଏ ବରାହ ମୂର୍ତ୍ତି ଆଳାକୁ ନୀତ ହୋଇଥିଲେ । ଉଭୟ ମୂର୍ତ୍ତି ଶିଳ୍ପ ନୈପୁଣ୍ୟର ପରାକାଷ୍ଠା । କିନ୍ତୁ ଦୁଃଖର କଥା ବିରଜା ମନ୍ଦିର ପରି ବରାହଙ୍କର ପ୍ରାଚୀନ ମନ୍ଦିର ନାହିଁ; କେବଳ ମନ୍ଦିର ଗାତ୍ରରେ ଖଣ୍ଡେ ଦୁଇଖଣ୍ଡ ମାତ୍ର ବିକଳାଙ୍ଗ ମୂର୍ତ୍ତି ବିଶିଷ୍ଟ ପ୍ରସ୍ତର ଟଙ୍ଗାଯାଇଥିବାର ଦେଖାଯାଏ । ଲୋକେ କହନ୍ତି ଜନୈକ ମୁସଲମାନ ଶାସନକର୍ତ୍ତା ଅଶ୍ୱପୃଷ୍ଠରେ ଯିବାବେଳେ ତୁଙ୍ଗ ମନ୍ଦିରର ଛାୟା ଦେଖି ଅଶ୍ୱ ବିଚଳିତ

Digitized by srujanika@gmail.com

ହେବାରୁ ସେହି ମନ୍ଦିରକୁ ଭାଙ୍ଗି ଦିଆଯାଇଥିଲା । ଜନଶ୍ରୁତି ସତ୍ୟ ହୋଇ ନପାରେ । ମାତ୍ର କୌଣସି ବିଧର୍ମୀ ଶାସକଙ୍କ ଆଦେଶରେ ମନ୍ଦିର ଭଗ୍ନ ହୋଇଥିବାର ଅନ୍ତର୍ନିହିତ ନିର୍ଦ୍ଦେଶ ଅସମ୍ଭବ ନୁହେଁ । ବୋଧହୁଏ ପରେ ଦେବାମୂର୍ତ୍ତିଙ୍କର ଆଶ୍ରୟ ପାଇଁ ଉପସ୍ଥିତ ମନ୍ଦିରଟି ନିର୍ମିତ ହୋଇଅଛି । ବରାହ ମନ୍ଦିରର ଜଗମୋହନ ଗୋଟିଏ ଦର୍ଶନୀୟ ସ୍ଥପତି । ଏହାର ଭୁବନେଶ୍ୱରର ମୁକ୍ତେଶ୍ୱର ମନ୍ଦିରର ଜଗମୋହନ ସଦୃଶ । ଏଥିରେ ଅବଶ୍ୟ ସୂକ୍ଷ୍ମ କଳା ଶିଳ୍ପ ଆଦୌ ନାହିଁ; କିନ୍ତୁ ନିର୍ମାଣ କୌଶଳ ସିଦ୍ଧହସ୍ତ ଶିଳ୍ପୀର ନୈପୁଣ୍ୟବ୍ୟଞ୍ଜକ । ଏହା ଭିତରୁ ଗୋଟିଏ ପଦ୍ମପୁଷ୍ପ ଝୁଲୁଥିବା ପରି ଦେଖାଯାଏ । କଥିତ ଅଛି, ରାଜା ପ୍ରତାପରୁଦ୍ରଦେବ ଏହାକୁ ନିର୍ମାଣ କରାଇଥିଲେ । କିନ୍ତୁ ମନ୍ଦିର ଓ ଜଗମୋହନ ସମସାମୟିକ ନୁହେଁ; ଏହା ଉଭୟର ଗଠନରୀତିରୁ ସ୍ପଷ୍ଟ ଅନୁମେୟ ।

ବରାହ ଓ ବିରଜା କେତେ ପ୍ରାଚୀନ, ତାହା କହିବା ସହଜ ନୁହେଁ । ଯାଜପୁରରେ ଏ ଦୁହିଙ୍କର ପ୍ରତିଷ୍ଠା ସମ୍ବନ୍ଧେ ପୁରାଣ ଯାହା କହେ ତାହା ଐତିହାସିକର ହେୟ । ଯଜ୍ଞ କୁଣ୍ଡରୁ ଏହି ଦୁହିଙ୍କର ଅଭ୍ୟୁତ୍ଥାନ ଇତିହାସ ସମର୍ଥ ହୋଇନପାରେ । ମାତ୍ର ଯାଜପୁରର ପ୍ରାଚୀନ କୀର୍ତ୍ତି ମଧ୍ୟରେ ଏମାନଙ୍କର ସ୍ଥାନ ଅତି ଉଚ୍ଚରେ ।

ବୈତରଣୀ ନଦୀର ମୌଳିକ ଧାରାର ଉତ୍ତର ତଟରେ ବରାହପୀଠ ଅବସ୍ଥିତ । ଏହି ପୀଠକୁ ନଦୀ ସ୍ରୋତର କବଳରୁ ରକ୍ଷା କରିବା ପାଇଁ ଦକ୍ଷିଣ-ତୀରସ୍ଥ ଦଶାଶ୍ୱମେଧଘାଟର ଠିକ୍ ବିପରୀତ କୂଳରେ ପ୍ରସ୍ତରବନ୍ଧ ନିର୍ମିତ ହୋଇଥିଲା । ନଦୀ ଶଯ୍ୟାର ବକ୍ରତା ଦୃଷ୍ଟିରେ ଜଳସ୍ରୋତର ସ୍ୱାଭାବିକ ଗତି ଅବରୋଧ କରିବା ପାଇଁ ବନ୍ଧଟାର ପ୍ରାରମ୍ଭ ସ୍ଥାନରୁ ପ୍ରାୟ ଏକକୋଶ ପଶ୍ଚିମରୁ ବନ୍ଧ ପ୍ରସ୍ତୁତ ହୋଇଥିଲା । ଏହି ବନ୍ଧ ପ୍ରାୟ ୫।୬ ଫୁଟ ପ୍ରସ୍ଥ ଓ କଟା ପ୍ରସ୍ତରରେ ନିର୍ମିତ । ବନ୍ଧର ଆରମ୍ଭ ଓ ମଧ୍ୟ ସ୍ଥାନରେ ଯଥାକ୍ରମେ ବନ୍ଧାଶେଶ୍ୱର ଶିବଲିଙ୍ଗ ଓ ବନ୍ଧାଶେଶ୍ୱର ଠାକୁରାଣୀ ମୂର୍ତ୍ତି ସ୍ଥାପିତ ହୋଇ ଅଛନ୍ତି । ବନ୍ଧାଣ ବନ୍ଧାଣୀ ଶବ୍ଦର ଲୌକିକ ଅପଭ୍ରଂଶ । ଆଜି ମଧ୍ୟ ଏ ସ୍ଥାନର ନାମ ବନ୍ଧାଣ । ଏହି ବନ୍ଧର ଅଧିକାଂଶ ମାଟିତଳେ ପ୍ରୋଥିତ ହୋଇଅଛି । ଏହା ଯାଜପୁରର ଅନ୍ୟତମ ପ୍ରାଚୀନ କୀର୍ତ୍ତି ।

ଉତ୍କଳର ରାଜାମାନେ ଦେଶର ବିଭିନ୍ନ ସନ୍ଧିସ୍ଥଳମାନଙ୍କରେ (Strategic points) ପ୍ରାସାଦ ସ୍ଥାପନ କରୁଥିଲେ । ଯାଜପୁରରେ ବହୁକାଳଯାଏଁ ସେହିପରି ରାଜପ୍ରାସାଦର ଭିନ୍ନ ଭିନ୍ନ ପ୍ରାସାଦ ଥିଲା । କିନ୍ତୁ ତାହା କେଉଁ ସ୍ଥାନରେ ଅବସ୍ଥିତ

Digitized by srujanika@gmail.com

ଥିଲା, ସ୍ଥିର କରିବା ସହଜ ନୁହେଁ । କେବଳ ରାଜ ବଂଶର ସ୍ମାରକ ସ୍ୱରୂପ ଇତସ୍ତତଃ କେତୋଟି ସ୍ଥାନର ରାଜ ସମ୍ମତ ନାମ ପ୍ରଚଳିତ ଅଛି । ମୁସଲମାନ ବଙ୍ଗଦେଶ ଜୟ କଲାପରେ ଉତ୍ତର ଦିଗରୁ ଓଡ଼ିଶାରେ ପ୍ରବେଶ କରିବା ପାଇଁ ବାରମ୍ବାର ଚେଷ୍ଟା କରିଥିଲେ । ସେତେବେଳେ ଆଧୁନିକ ଧାମନଗର ବାଟେ ବଙ୍ଗ ଦେଶରୁ ଉତ୍କଳକୁ ପ୍ରବେଶ ପଥ ଥିଲା । ମୁସଲମାନ ଇତିହାସରୁ ଜଣାଯାଏ, ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ଥରେ ଥରେ ମୁସଲମାନ ସେନା ଉତ୍ତରରୁ ଅଗ୍ରସର ହେଉଥିବାର ସମ୍ବାଦ ପାଇ ଯାଜପୁରର ରାଜା (ଉତ୍କଳରାଜା) ସେମାନଙ୍କ ପ୍ରତିହତ କରିବା ପାଇଁ ପଥ ମଧ୍ୟରେ ରଣସଜ୍ଜା କରି ରହିଥିଲେ । କେଟ୍‌ମୁନ ନାମକ ସ୍ଥାନରେ ଉଭୟ ପକ୍ଷର ଘୋର ଯୁଦ୍ଧ ହେଲା । ମୁସଲମାନ ସେନା ପରାସ୍ତ ହୋଇ ପଳାୟନ କଲେ । ଉତ୍କଳର ରାଜା ସ୍ଥାୟୀ ପ୍ରତିରୋଧ ପାଇଁ ସେହିଠାରେ ତିନିଗୋଟି ସୈନ୍ୟବସତି ସ୍ଥାପନ କରିଥିଲେ । ସେହି ବସତି ୩ ଗୋଟି ଆଜି କଣ୍ଟି, ଶୂନ ଓ ଦକ୍ଷିଣବାଡ଼ ନାମରେ ପରିଚିତ ଓ ଖଣ୍ଡାୟତ ବହୁଳ । ମୁସଲମାନ ଐତିହାସିକମାନେ କଣ୍ଟି ଓ ଶୂନକୁ କେନ୍‌ସୁନ ବୋଲି କହି ଅଛନ୍ତି ।

ଓଡ଼ିଶାର ରାଜା ଗଙ୍ଗା କୂଳରେ ଯୁଦ୍ଧଲିପ୍ତ ଥିବାର ସମ୍ବାଦ ପାଇ କଳାପାହାଡ଼ ଓଡ଼ିଶାରେ ପ୍ରବେଶ କରିବା ପରେ ଉକ୍ତ ପ୍ରବେଶ ପଥର ଅନତି ଦୂରରେ ଗୋହିରାଟିକିରିଠାରେ ମୁକୁନ୍ଦ ଦେବ ଓ କଳାପାହାଡ଼ ମଧ୍ୟରେ ଶେଷ ସ୍ୱାଧୀନତା ଯୁଦ୍ଧ ହୋଇଥିଲା । ମୁକୁନ୍ଦ ଦେବ ପରାସ୍ତ ଓ ନିହତ ହେଲେ । ଫଳରେ ଓଡ଼ିଶାର ପ୍ରଥମ ପୀଠ ଯାଜପୁର ବିଜୟୀ ମୁସଲମାନ ସେନାଙ୍କର ପ୍ରଥମ କଷାଘାତର କବଳରେ ପଡ଼ି ହତଶ୍ରୀ ହୋଇ, ରାଜ ପ୍ରାସାଦ, ଶତଶତ ମନ୍ଦିର ଓ ମୂର୍ତ୍ତି ଧ୍ୱସ୍ତବିଧ୍ୱସ୍ତ ଓ ନିଶ୍ଚିହ୍ନ ହେଲା । କଥିତ ଅଛି, ଯାଜପୁର ଫୌଜଦାରୀ କଚେରୀ ଆଗରେ ଯେଉଁ ବୋଖାରୀ ବା ପୀର ଆସ୍ଥାନ ଅଛି, ସେଠାରେ ପୂର୍ବେ ବ୍ରାହ୍ମଣମାନଙ୍କର ସମାଜନିର୍ବନ୍ଧିକ ମୁକ୍ତିମଣ୍ଡପ ଥିଲା । ଯାଜପୁରର ସୁବୃହତ୍ ଆରୁ ମସ୍‌ଜିଦ୍ ନିଶ୍ଚିହ୍ନ ରାଜପ୍ରାସାଦ ଓ ମନ୍ଦିରର ଭଗ୍ନାବଶେଷ ପ୍ରସ୍ତର ଦ୍ୱାରା ନିର୍ମିତ ବୋଲି ଜନମତ ପ୍ରଚଳିତ ଅଛି । ଏହି ମସ୍‌ଜିଦ୍ ମୋଗଲ ସମ୍ରାଟ ଔରଙ୍ଗଜେବଙ୍କ ଆଦେଶରେ ନିର୍ମିତ ଏକ ପ୍ରାଚୀନକୀର୍ତ୍ତି । ବୈତରଣୀତୀରସ୍ଥ ଆଦମ ବ୍ରାହ୍ମଣ ବସତିର ଆଧୁନିକ ନାମ ବେଲମପୁର । ଦଶାଶ୍ୱମେଧ ଘାଟର ନିକଟବର୍ତ୍ତୀ କେତେକ ସ୍ଥାନ ଆଜି ବିବିସରାଇ ନାମରେ ପରିଚିତ । ମନେହୁଏ ମୁସଲମାନ ଶାସନକର୍ତ୍ତାମାନେ ହିନ୍ଦୁମାନଙ୍କର ପ୍ରଧାନ ଧର୍ମସ୍ଥାନମାନଙ୍କର ନାମ ସୁଦ୍ଧା ପରିବର୍ତ୍ତନ କରିବାକୁ ଚେଷ୍ଟାବାନ୍ ଥିଲେ ।

ମୁସଲମାନ ପ୍ରଭୁତ୍ୱ ପରେ ପରେ ଅନ୍ୟାନ୍ୟ ଅଞ୍ଚଳ ପରି ଯାଜପୁର ମରହଟ୍ଟା-ମାନଙ୍କର ହସ୍ତଗତ ହେଲା । ଏହି ପରବର୍ତ୍ତୀ ଶାସକମାନେ ତଦା ପ୍ରଚଳିତ ଧର୍ମନୀତିର

Digitized by srujanika@gmail.com

ଫଳରେ ମୁସଲମାନ କୀର୍ତ୍ତିର ଲୋପ ସାଧନ ପାଇଁ ତତ୍ପର ହୋଇଥିଲେ । ଶୁଣାଯାଏ, ସେମାନେ ପୂର୍ବୋକ୍ତ ଅଖୁ ମସ୍‌ଜିଦ୍‌ର କେତେକାଂଶ ଭଗ୍ନକରି ବୈତରଣୀ ତୀରରେ ସେହି ବଡସରାଇ ବକ୍ଷରେ ଉପସ୍ଥିତ ସୁବୃହତ୍ ଜଗନ୍ନାଥ ମନ୍ଦିର ନିର୍ମାଣ କରାଇଥିଲେ । ଆଜି ବିରଜା ମନ୍ଦିରକୁ ଯିବା ପଥରେ ସେଉଁ ଅଠର ନଳା ପୋଲ ସରକାରଙ୍କ ଦ୍ୱାରା ପ୍ରାଚୀନ କୀର୍ତ୍ତି ସ୍ୱରୂପ ସଂରକ୍ଷିତ ହୋଇଅଛି, ତାହା ସେହି ଭଗ୍ନାବଶେଷ ସାହାଯ୍ୟରେ ଗଠିତ । ଯାଜପୁରର ବାଲିଜ ମଠ, ଜଗନ୍ନାଥ ଓ ଗୌରୀଙ୍କ ମନ୍ଦିର ମରହଟ୍ଟା ଶାସକମାନଙ୍କର ପ୍ରଧାନ କୀର୍ତ୍ତି ।

ବ୍ରିଟିଶ ଶାସନରେ ଧର୍ମ ବିଦ୍ୱେଷ ଲୁପ୍ତ ହୋଇ ଶାନ୍ତି ପ୍ରତିଷ୍ଠିତ ହେଲା । ପ୍ରାଚୀନ କୀର୍ତ୍ତିମାନ ସୁରକ୍ଷିତ ହୋଇ ଯାଜପୁରର ଲୁପ୍ତ ଗୌରବ ଗାନ କରୁଅଛି । କିନ୍ତୁ ଉତ୍କଳର ପ୍ରାଚୀନତମ ପୀଠ ଇତିହାସ ପ୍ରସିଦ୍ଧ ଯାଜପୁରର ଆଜି ଅବହେଳିତ । ତଥାପି ବୈତରଣୀରେ ସ୍ନାନକରି ଦଶାଶ୍ୱମେଧ ଘାଟ ଓ ନାଭିଗୟାରେ ପିଣ୍ଡ ଦାନକରି ବରାହ ଓ ବିରଜା ଦର୍ଶନ କରି ସପ୍ତମାତୃକା ଶୁଭସ୍ତମ୍ଭ ଓ ଅନ୍ୟାନ୍ୟ ଭଗ୍ନ ସ୍ଥାପତ୍ୟ ମାନ ଦେଖିବା ପାଇଁ ପ୍ରତ୍ୟେକ ଶତଶତ ଲୋକ ଆସୁଛନ୍ତି ଓ ଆସୁଥିବେ ।



Digitized by srujanika@gmail.com

# ମାଘ ଅମାବାସ୍ୟା

ମାଘ ଅମାବାସ୍ୟାକୁ ଓଡ଼ିଶାରେ ତ୍ରିବେଣୀ ଅମାବାସ୍ୟା କହନ୍ତି । କାରଣ ଏହି ଦିନ ତ୍ରିବେଣୀ ତୀର୍ଥରେ ସ୍ନାନ କରିବା ବିଧେୟ । ଆଲ୍ଲାହାବାଦଠାରେ ଗଙ୍ଗା, ଯମୁନା ଓ ସରସ୍ୱତୀର ସଙ୍ଗମ ସ୍ଥାନ ଭାରତରେ ତ୍ରିବେଣୀ ତୀର୍ଥ ନାମରେ ଅଭିହିତ । ମାତ୍ର ଓଡ଼ିଶାର ତ୍ରିବେଣୀ ତୀର୍ଥ ସ୍ୱତନ୍ତ୍ର । ଏହା ହୁଗୁଳି ଜିଲ୍ଲାରେ ହୁଗୁଳି ସହର ନିକଟରେ ହୁଗୁଳି ନଦୀ ତୀରରେ ଅବସ୍ଥିତ । ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବ ବଙ୍ଗ ଜୟ କରି ଜୟ ଚିହ୍ନ ସ୍ୱରୂପ ଏହିଠାରେ ଗଙ୍ଗା ତୀରରେ ଘାଟ ଓ ଜଗନ୍ନାଥ ମନ୍ଦିର ନିର୍ମାଣ କରାଇଥିଲେ । ଗଙ୍ଗାନଦୀ ଏହିଠାରେ ଦ୍ୱିସ୍ରୋତା । ଏହି ଦୁଇ ସ୍ରୋତର ଲୌକିକ ନାମ ଗଙ୍ଗା ଓ ଯମୁନା । ରାଜମାତା ପ୍ରତ୍ୟହ ଗଙ୍ଗା ସ୍ନାନ କରିବାକୁ ଇଚ୍ଛା କରିବାରୁ ମୁକୁନ୍ଦଦେବ ଏହି ସ୍ଥାନରୁ ଗଙ୍ଗା ବକ୍ଷରୁ ସ୍ୱୀୟ ରାଜଧାନୀ ପର୍ଯ୍ୟନ୍ତ ନାଳଟିଏ ଖୋଳାଇବାକୁ ସ୍ଥିର କରି ଅତ୍ୟଳ୍ପ ପରିମାଣ କାର୍ଯ୍ୟ କରାଇଥିଲେ । ସେହି ଖଣ୍ଡନାଳ ଅଦ୍ୟାବଧି 'ସରସ୍ୱତୀ ଖାଲ' ନାମରେ ବିଦ୍ୟମାନ । ସୁତରାଂ ଏ ସ୍ଥାନର ତ୍ରିବେଣୀ ନାମ ଯଥାର୍ଥ ହୋଇଅଛି । ଓଡ଼ିଆମାନେ ପ୍ରତିବର୍ଷ ଏହି ତ୍ରିବେଣୀ ତୀର୍ଥରେ ସ୍ନାନ କରିବାକୁ ଯାଇ ଯୁଗପତ୍ ଧର୍ମ ଅର୍ଜନ ଓ ପିତୃଭକ୍ତି ପ୍ରଦର୍ଶନ କରନ୍ତି । ବାଲେଶ୍ୱର ଜିଲ୍ଲାର ଉତ୍ତର ସୀମାଠାରୁ ତ୍ରିବେଣୀ ଘାଟ ଯାଏ ଭୂଖଣ୍ଡ ମଧ୍ୟରେ ସ୍ଥାନେ ସ୍ଥାନେ ଓଡ଼ିଆ ଖଣ୍ଡାଏତ ବଂଶ ଅଛନ୍ତି । ମୁକୁନ୍ଦଦେବଙ୍କ ବଙ୍ଗରୁ ବାହୁଡ଼ାବେଳେ ଯେଉଁ ପାଇକ ବା ସର୍ଦ୍ଦାରମାନେ ବିଜିତ ଅଞ୍ଚଳରେ ଶାନ୍ତି ରକ୍ଷାପାଇଁ ସ୍ଥାପିତ ହୋଇଥିଲେ ଆଧୁନିକ ଖଣ୍ଡାଏତ ବଂଶ ସେହିସବୁମାନଙ୍କର ଶାଖା ।

ଯାଜପୁରରେ ମାଘ ଅମାବାସ୍ୟାକୁ ବିରଜା ଦେବୀଙ୍କର ସାବିତ୍ରୀ ଅମାବାସ୍ୟା କୁହାଯାଏ । ଓଡ଼ିଶାରେ ସାଧାରଣତଃ ଜ୍ୟେଷ୍ଠ ଅମାବାସ୍ୟା ନାମ ସାବିତ୍ରୀ ଅମାବାସ୍ୟା । ଯାଜପୁର ବ୍ୟତୀତ ଅନ୍ୟତ୍ର କେହି ମାଘ ଅମାବାସ୍ୟାକୁ ସାବିତ୍ରୀ ଅମାବାସ୍ୟା କହନ୍ତି ନାହିଁ । ଦେବୀପୀଠ ଯାଜପୁରର ଅଧିଷ୍ଠାତ୍ରୀ ବିରଜାଦେବୀ ମାଘ ଅମାବାସ୍ୟା ଦିନ ଯେଉଁ ବେଶରେ ଭୂଷିତା ହୁଅନ୍ତି, ତାହାକୁ ସାବିତ୍ରୀ ବେଶ କୁହାଯାଏ । ସେ ଦିନ ଦେବୀଙ୍କର ଜନ୍ମୋତ୍ସବ ।

Digitized by srujanika@gmail.com

ବିରଜାଙ୍କ ଜନ୍ମୋତ୍ସବ ଉତ୍ସବର ନାମ ସାବିତ୍ରୀ ଅମାବାସ୍ୟା କାହିଁକି ? ପୌରାଣିକମାନେ କହନ୍ତି, ବ୍ରହ୍ମା ଯାଜପୁରର ଦଶାଶ୍ୱମେଧ ଘାଟରେ ଦଶଗୋଟି ଅଶ୍ୱମେଧ ଯଜ୍ଞ ସମ୍ପନ୍ନ କରିଥିଲେ । ଐତିହାସିକମାନେ କହନ୍ତି, ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀର ଶେଷ ଭାଗରେ ଯଜାତି କେଶରୀ ଦଶ ସହସ୍ର ବ୍ରାହ୍ମଣ ଅଣାଇ ଦଶାଶ୍ୱମେଧ ଘାଟରେ ଦଶଗୋଟି ଅଶ୍ୱମେଧ ଯଜ୍ଞ କରାଇଥିବା ହେତୁ ଯଜ୍ଞ ସ୍ଥାନର ନାମ ଦଶାଶ୍ୱମେଧ ଘାଟ ଓ ଯାଜ୍ଞିକ ବ୍ରାହ୍ମଣମାନଙ୍କର ବସତିର ନାମ ଯାଜପୁର ହୋଇଥିଲା । ସହସ୍ରାଧିକ ବର୍ଷବ୍ୟାପି ଧର୍ମ ସଂଘର୍ଷଣରେ ମଧ୍ୟ ଅଦ୍ୟାବଧି ଯାଜପୁର ବ୍ରାହ୍ମଣ ପ୍ରଧାନ ସ୍ଥାନ ହୋଇ ରହିଅଛି । ଚତୁର୍ଦ୍ଦିଗରେ ବ୍ରାହ୍ମଣ ଶାସନ । ଯୁଗଧର୍ମ ଅନୁସାରେ ବ୍ରାହ୍ମଣ ପ୍ରତି ଆଦର କ୍ରମଶଃ ଊଣା ହେବା ସଙ୍ଗେ ସଙ୍ଗେ ଶାସ୍ତ୍ରୋକ୍ତ ବ୍ରାହ୍ମଣମାନେ ଅଧୋଗମନ କରି ଅବ୍ରାହ୍ମଣୋଚିତ ଆଚରଣ କରିଥିଲେହେଁ ସେମାନଙ୍କର ଆଭିଜାତ୍ୟ ମହାନ୍ । ଯାଜପୁରର ବ୍ରାହ୍ମଣମାନଙ୍କର ସ୍ୱତନ୍ତ୍ର ପ୍ରାଚୀନ ଆଶୀର୍ବାଦ ପଢିବା ଓ ତୀର୍ଥ, ମନ୍ଦିର ଓ ବ୍ରାହ୍ମଣଶାସନର ସଂଖ୍ୟାର ସ୍ପଷ୍ଟ ଅନୁମିତ ହୁଏ ଯେ, ଏହି ସ୍ଥାନ ଏକ ସମୟରେ ଯଜ୍ଞ-ଧୂମ ସମାଚ୍ଛନ୍ନ ବେଦଧ୍ୱନି ପରିପ୍ଲାବିତ ନୈମିଷାରଣ୍ୟର ପ୍ରତିଦ୍ୱନ୍ଦୀ ଥିଲା । ସୁତରାଂ ଯାଜପୁର ନାମ ସାର୍ଥକ ଅଟେ । ନିମ୍ନୋକ୍ତ ଆଶୀର୍ବାଦ ଶ୍ଳୋକରୁ ଏହି ଉକ୍ତିର ଯଥାର୍ଥ୍ୟ ପ୍ରତିପନ୍ନ ହେଉଅଛି ।

"ଓଁ ବ୍ରହ୍ମ ଭବନ ସୌଧ ସୋପାନ ସରଣୀ ସକଳ ସରଣୀ ସକଳ ଜନ ବାଞ୍ଛାସଣି ନିଖିଳ ପୁଣ୍ୟାରଣି—ଶ୍ରୀ ବୈତରଣୀ ଜଳ ପଟଳ ପାନ-ବଗାହ କ୍ଷପିତା ଶେଷ କଳୁଷଣାଂ—ପ୍ରତିଦିନ ହବିର୍ହୂତ ଧୂମାବଳୀଶ୍ୟାମଳିତ ନଭୋ ମଣ୍ଡଳାନାଂ ପ୍ରତ୍ୟହ ହୁତାଶାଶକାନ୍ତଃକରଣ ଧର୍ମିଳାନାମନୁଦିନ କବରତ ଯାଜନ ଋଧ୍ୟାୟନାଧ୍ୟାପନ ଦାନ ପ୍ରତିଗ୍ରହ—ଷଟ୍ କର୍ମ ନିରତ ନାମ ଯଜନ ବେଦ ବେଦାନ୍ତ ନ୍ୟାୟ ସାଂଖ୍ୟ ବ୍ୟାକରଣ ସାହିତ୍ୟେତିହାସ ପୁରାଣାଦି ଗ୍ରନ୍ଥପୀଠ ବିଷୟ ନିପୁଣାନାଂ ଦଶ ସହସ୍ର ବ୍ରାହ୍ମଣାନାମାଶିଷଃ ସତ୍ୟା ଭବନ୍ତୁ ।"

ଶାସ୍ତ୍ରକାରଙ୍କର ବ୍ରହ୍ମା ଯଜ୍ଞନେତା । ସ୍ମୃତିକାର କହନ୍ତି ଧର୍ମପତ୍ନୀ ବ୍ୟତୀତ ଯଜ୍ଞ କାର୍ଯ୍ୟ ସୁସମ୍ପନ୍ନ ହୁଏ ନାହିଁ । ସୁତରାଂ ବ୍ରହ୍ମାଙ୍କର ପତ୍ନୀ ଆବଶ୍ୟକ । ସେହି କଳ୍ପିତା ପତ୍ନୀର ନାମ 'ସାବିତ୍ରୀ' ।

ଯାଜପୁରରେ ବିରଜାଦେବୀଙ୍କ ମନ୍ଦିର ସନ୍ନିକଟରେ ବ୍ରହ୍ମକୁଣ୍ଡ ନାମରେ ଗୋଟିଏ ପୁଷ୍କରିଣୀ ଅଛି । ପୌରାଣିକଙ୍କ ମତରେ ଏହି ପୁଷ୍କରିଣୀ ବ୍ରହ୍ମାଙ୍କର ଆଦ୍ୟ ପାତ୍ର ଅର୍ଥାତ୍ ଘୃତ ପାତ୍ର ଥିଲା । ବ୍ରହ୍ମା ଏଇ ପାତ୍ରରୁ ଘୃତ ନେଇ

Digitized by srujanika@gmail.com

ଦଶାଶ୍ୱମେଧ ଘାଟରେ ଅଗ୍ନି ତୃପ୍ତି କରୁଥିଲେ । ଯେଉଁମାନେ ଯାଜପୁରକୁ ବ୍ରହ୍ମାଙ୍କର ଯଜ୍ଞସ୍ଥାନ ବୋଲି ପ୍ରଚାର କରାଉଥିଲେ, ସେମାନେ ଏହିଠାରେ ବ୍ରହ୍ମାଙ୍କର ଯଜ୍ଞ ସଙ୍ଗିନୀ ସାବିତ୍ରୀଙ୍କର ପ୍ରତିଷ୍ଠା କରିଥିବା ସ୍ୱାଭାବିକ ।

ବାସ୍ତବରେ କୌଣସି ସ୍ୱର୍ଗ ରାଜ୍ୟରୁ ବ୍ରହ୍ମା ଆସି ଯାଜପୁରରେ ଯଜ୍ଞ ସମ୍ପନ୍ନ କରିଥିଲେ ବୋଲି ଐତିହାସିକମାନେ ବିଶ୍ୱାସ କରିବେ ନାହିଁ । ମାତ୍ର ପୌରାଣିକ ବର୍ଣ୍ଣନାରୁ ଏହି ଐତିହାସିକ ସତ୍ୟ ପ୍ରତିପାଦିତ ହୁଏ ଯେ, ଯାଜପୁର ଏକ ସମୟରେ ବହୁ ଯାଜ୍ଞିକ ବ୍ରାହ୍ମଣମାନଙ୍କର ଆବାସଭୂମି ଥିଲା । ବୋଧହୁଏ ଯାଜ୍ଞିକ ବ୍ରାହ୍ମଣମାନେ ଯଜ୍ଞ କରିବା ପାଇଁ ବେଦ ବିହିତ ନିୟମାନୁସାରେ ବ୍ରହ୍ମାଙ୍କର ଆବାହନ କରିବା ସଙ୍ଗେ ସଙ୍ଗେ ସାବିତ୍ରୀଙ୍କର ମୂର୍ତ୍ତି ସ୍ଥାପନ କରିଥିଲେ । ବିରଜାଦେବୀ ବୋଧହୁଏ ସେହି ସାବିତ୍ରୀ । ପ୍ରଥମେ ସାବିତ୍ରୀ ସ୍ୱରୂପ ପ୍ରତିଷ୍ଠିତା ହୋଇଥିବା ହେତୁ ତାହାଙ୍କର ବାର୍ଷିକ ଜନ୍ମଦିବସର ନାମ ସାବିତ୍ରୀ ଅମାବାସ୍ୟା । ହୋଇପାରେ ବିରଜାଦେବୀ, ଏବଂ ପ୍ରଥମେ ମାଘ ଅମାବାସ୍ୟା ଦିନ ପ୍ରତିଷ୍ଠିତା ହୋଇଥିଲେ ।

ବିରଜାଙ୍କ ବିଗ୍ରହରେ କୌଣସି ବାହନର ଚିହ୍ନ ନାହିଁ । ଏହା ଉପରୋକ୍ତ ଅନୁମାନର ଅନ୍ୟତମ ପ୍ରମାଣ । ଉପାସକ ବିରଜା ଦେବୀଙ୍କୁ ସିଂହବାହନ ଆଦି ନାନାବିଧ ଆଖ୍ୟାରେ ଆରାଧନା କରୁଥିଲେ ହେଁ ସେ ସବୁ ପରବର୍ତ୍ତୀ ଯୁଗର କଳ୍ପନା । ଯଦି ବିରଜା ଏବଂ ପ୍ରଥମେ ସିଂହବାହିନୀ ବା ମହିଷାସୁର ମର୍ଦ୍ଦିନୀ ଦୁର୍ଗା ସ୍ୱରୂପ ପ୍ରତିଷ୍ଠିତା ହୋଇଥାନ୍ତେ; ତା'ହେଲେ ମୂର୍ତ୍ତିମାନ ଅବଶ୍ୟ ବିଗ୍ରହରେ କୌଣସି ବାହନର ଚିହ୍ନ ଦେଖାଇଥାନ୍ତେ ।

ଖ୍ରୀଷ୍ଟୀୟ ୪ର୍ଥ ଓ ୫ମ ଶତାବ୍ଦୀ ଲିଖିତ ଅଭିଧାନରେ ଦୁର୍ଗାଙ୍କର ନାମାବଳୀ ମଧ୍ୟରେ ବିରଜା ଶବ୍ଦ ଦେଖାଯାଏ ନାହିଁ । ତାହାହେଲେ ପ୍ରତିଷ୍ଠାତା ଦୁର୍ଗା ଅର୍ଥରେ 'ବିରଜା' ଶବ୍ଦ ପାଇଲେ କାହୁଁ ? ଅଦ୍ୟାବଧି ମଧ୍ୟ ଦୁର୍ଗା ଅର୍ଥରେ ବିରଜା ଅର୍ଥ ଅଭିଧାନରେ ଦେଖାଯାଏ ନାହିଁ । ପଦାନ୍ତରର ବିରଜା ଶବ୍ଦର ଅର୍ଥ ବିଗତ ରଜା, ନିର୍ମଳା ବା ପବିତ୍ରା ଓ ବ୍ରାହ୍ମଣର ସାବିତ୍ରୀ ବିଗତରଜା, ନିର୍ମଳା ବା ପବିତ୍ରା ।

କେହି ପଚାରିପାରନ୍ତି, ଯାଜପୁରର ବିରଜା ଯଦି ଯାଜ୍ଞିକ ବ୍ରାହ୍ମଣର ସାବିତ୍ରୀ, ତାହାହେଲେ ବ୍ରହ୍ମା କାହାନ୍ତି ? ଯଜ୍ଞ ସମୟରେ ବ୍ରାହ୍ମଣମାନଙ୍କ ମଧ୍ୟରୁ କେହି ବ୍ରହ୍ମା ସ୍ୱରୂପ ପୂଜିତ ହେଉଥିବେ । ଆଜିକାଲି ମଧ୍ୟ ହୋମ କାର୍ଯ୍ୟରେ ବ୍ରହ୍ମା ବରଣ ଓ ସାବିତ୍ରୀ ବରଣର ବିଧାନ ଅଛି । ବ୍ରାହ୍ମଣଙ୍କୁ ସାବିତ୍ରୀ ସ୍ୱରୂପ କଳ୍ପନା କରିବା ସୁସଙ୍ଗତ ମନେ ନକରି ହୁଏତ ବ୍ରାହ୍ମଣମାନେ ଯଜ୍ଞ ସାବିତ୍ରୀ

Digitized by srujanika@gmail.com

ମୂର୍ତ୍ତି ସ୍ଥାପନ କରି ତାହାଙ୍କୁ ହିଁ ମାଧବୀ ରୂପେ ବରଣ କରି ଯଜ୍ଞ କରୁଥିଲେ ଓ ବ୍ରହ୍ମାଙ୍କର ମୂର୍ତ୍ତି ସ୍ଥାପନ ଆବଶ୍ୟକ ହୋଇ ନଥିଲା । ଯାଜପୁରରେ କୌଣସି ସ୍ଥାନରେ ବ୍ରହ୍ମାଙ୍କର ମୂର୍ତ୍ତି ସ୍ଥାପିତ ହୋଇଥିବା ମଧ୍ୟ ସମ୍ଭବ । ବୈଦିକ ଧର୍ମର ପ୍ରଭାବରେ ତାହା ବିଲୁପ୍ତ ବା ବିଧ୍ୱସ୍ତ ହୋଇଥିବ । ବିରଜାଦେବୀ ବର୍ତ୍ତମାନ ଯେଉଁ ସ୍ଥାନରେ ପ୍ରତିଷ୍ଠିତା, ସେ ତାଙ୍କର ଆଦିମ ସ୍ଥାନ ନୁହେଁ । ସେ କାହ୍ନୁ ଦୂରରେ ଜଳସପୁର ଗ୍ରାମରେ ଏତଦ୍ପୂର୍ବେ ପ୍ରତିଷ୍ଠିତା ହୋଇଥିଲେ ବୋଲି ଲୋକେ କହନ୍ତି । ଜଳସପୁରେ ସ୍ଥିତ ଗୋଟିଏ ଦେବୀଙ୍କୁ ବିରଜାଙ୍କର ଆଦିମ ଆସନ କୁହାଯାଏ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଜଳସପୁରର ଭୂମିଖଣ୍ଡ ୨ୟ ବିରଜାଙ୍କର ଆଦିମ ଆସନ କୁହାଯାଏ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଜଳସପୁରର ଭୂମିଖଣ୍ଡ ପ୍ରାୟ ବିରଜାଙ୍କର ସେବକମାନଙ୍କର ବ୍ରହ୍ମୋତ୍ତର ବୃତ୍ତି ଅଟେ । କାଳ-କ୍ରମେ ହସ୍ତାନ୍ତର ହୋଇ କେତେକ ଅନ୍ୟ ବ୍ୟକ୍ତିଙ୍କର ହସ୍ତଗତ ହୋଇଅଛି । ଆଜି ଯେଉଁ ମନ୍ଦିରରେ ଦେବୀ ଅବସ୍ଥିତା, ତାହାର ବେଢ଼ା ପ୍ରାଚୀରରେ ପ୍ରାଚୀନ କାରୁକାର୍ଯ୍ୟ ବିଶିଷ୍ଟ ଗଣ୍ଡେ ଦୁଇଖଣ୍ଡ ପ୍ରସ୍ତର ଅସଂଯତ ଭାବରେ ନ୍ୟସ୍ତ ହୋଇଥାଏ ।

ଖ୍ରୀଷ୍ଟୀୟ ୪ର୍ଥ ଓ ୫ମ ଶତାବ୍ଦୀରେ ଭାରତରେ ବ୍ରାହ୍ମଣ୍ୟ ଧର୍ମର ପୁନରୁଦ୍ଧାର ହୋଇଥିଲା । ଅନ୍ୟାନ୍ୟ ଅଞ୍ଚଳ ପରି ଉତ୍କଳ ମଧ୍ୟ ସେହି ସମୟରେ ସେହି ସର୍ବଭାରତୀୟ ସ୍ରୋତରେ ପ୍ଲାବିତ ହୋଇଥିବ । ଉତ୍କଳର କେଶରୀବଂଶୀୟ ରାଜା-ମାନେ ଯଜ୍ଞପ୍ରିୟ ଥିଲେ ଓ ଯଯାତିକେଶରୀ ଖ୍ରୀ: ପଞ୍ଚମ ଶତାବ୍ଦୀରେ ଯାଜପୁରକୁ ବ୍ରାହ୍ମଣ ଅଣାଇ ଯଜ୍ଞ କରାଇଥିଲେ ବୋଲି ଦେଶୀୟ ଲେଖକ କହନ୍ତି । ତା'ହେଲେ ଉପରୋକ୍ତ ଯଯାତିଙ୍କ ରାଜତ୍ୱ ସମୟରେ ବିରଜା ଦେବୀ ପ୍ରତିଷ୍ଠିତା ହୋଇଥିବା ଅସମ୍ଭବ ନୁହେଁ ଓ ଭାରତରେ ବ୍ରାହ୍ମଣ୍ୟ ଧର୍ମର ପୁନରୁଦ୍ଧାର ସମୟ ପ୍ରତି ଦୃଷ୍ଟିପାତ କଲେ ଯଯାତି କେଶରୀ ଖ୍ରୀଷ୍ଟୀୟ ଶତାବ୍ଦୀର ରାଜା ବୋଲି ବିଶ୍ୱାସ କରିବା ସ୍ୱାଭାବିକ । କେଶରୀବଂଶ ପରି ଉତ୍କଳରେ ଅନ୍ୟ କୌଣସି ରାଜବଂଶ ଯଜ୍ଞପ୍ରିୟ ନୁହନ୍ତି ।

ଆଜି ବିରଜାଙ୍କୁ ଆଦ୍ୟାଶକ୍ତି ବା ଦୁର୍ଗା ସ୍ୱରୂପ ପୂଜା କରାଯାଏ । ପରବର୍ତ୍ତୀ ଯୁଗରେ ଶକ୍ତି ପୂଜାର ପ୍ରଭାବରେ ପ୍ରକୃତ ବୃତ୍ତାନ୍ତ ପରିତ୍ୟକ୍ତ ହୋଇ ବିରଜା ଆଦ୍ୟାଶକ୍ତି ବା ଦୁର୍ଗା ସ୍ୱରୂପ କଳ୍ପିତା ହୋଇଥିବା ଅନୁମିତ ହୁଏ ।

(ଉତ୍କଳ ସାହିତ୍ୟ-୩୨/୯-ପୃ ୩୩୫-୩୩୬-୩୩୭)

—o—

Digitized by srujanika@gmail.com

# କେଶରୀ ବଂଶ ଓ ଗଜସିଂହ

ଓଡ଼ିଶା-ମନ୍ଦିରରେ ପ୍ରାୟ ସବୁଠାରେ ହସ୍ତୀ ଉପରେ ସିଂହ ଦେଖାଯାଏ । ଏପରି କୌଣସି ପ୍ରାଚୀନ ମନ୍ଦିର ନାହିଁ ଯହିଁରେ ଏହାର ଅନ୍ତତଃ ଗୋଟିଏ ଉଓଟି ନିଦର୍ଶନ ଦେଖାଯାଏ ନାହିଁ । କେବଳ ପ୍ରାଚୀନ ମନ୍ଦିର କାହିଁକି ପର-ଯୁଗର ପ୍ରାୟ ସମସ୍ତ ମନ୍ଦିରରେ ଏହାର ଯଥେଷ୍ଟ ବ୍ୟବହାର ଦେଖାଯାଏ । ଏହି ସିଂହ ପ୍ରକୃତିର ଠିକ୍ ଅନୁକୃତି ନୁହେଁ । ଏଥିରେ ଶିଳ୍ପୀର କେତେକ ଅପ୍ରାକୃତ କଳ୍ପନା ଲକ୍ଷିତ ହୁଏ । ଆଜକାଲି ଲୋକେ ଏହାକୁ ଶାର୍ଦ୍ଦୂଳ କହନ୍ତି । କିନ୍ତୁ ଆକୃତି ଦେଖିଲେ ଏହା ସିଂହ ଛଡ଼ା ଆଉ କିଛି ବୋଲି ବୋଧହୁଏ ନାହିଁ । ଅବଶ୍ୟ ଏହା ସିଂହ ବା କେଶରୀ ସ୍ୱରୂପ ମନ୍ଦିରରେ ସ୍ଥାନ ପାଇଥିଲା । ସେ ଯାହାହେଉ ପ୍ରବନ୍ଧର ସୁବିଧା ପାଇଁ ଆଜି ଆମ୍ଭେମାନେ ଏହାକୁ ଗଜସିଂହ କହିବୁ । ଓଡ଼ିଶା ମନ୍ଦିର ସଙ୍ଗେ ଗଜସିଂହର ଅଦ୍ଭୁତ ସମ୍ବନ୍ଧ ଦେଖି କେହି କେହି ମନେ କରନ୍ତି ଯେ, ଏହା ଓଡ଼ିଆ କାରିଗରର ସ୍ୱତନ୍ତ୍ର କଳ୍ପନା ଏବଂ ଏହି ସ୍ୱତନ୍ତ୍ର କଳ୍ପନା ଦ୍ୱାରା ଓଡ଼ିଆ କାରିଗର ସ୍ୱଦେଶରେ କେଶରୀ ବଂଶ ଦ୍ୱାରା ଗଜପତି ବଂଶର ପରାଜୟ ବ୍ୟାପାରକୁ ଚିହ୍ନିତ କରିଅଛି; ଅର୍ଥାତ୍ ଉକ୍ତ ଘଟଣାର ଚିହ୍ନ ସ୍ୱରୂପ ଗଜସିଂହ ଦେବ ପ୍ରଥମେ ଭାରତୀୟ ଶିଳ୍ପରାଜ୍ୟରେ ପ୍ରବେଶ କରିଅଛି । ଏହି ଅନୁମାନର ସପକ୍ଷରେ ଅର୍ଦ୍ଧେନ୍ଦୁ କୁମାର ଗାଙ୍ଗୁଲି ଗତ ସେପ୍ଟେମ୍ବର ମାସର 'ମଡର୍ନରିଭ୍ୟୁ' ପତ୍ରିକାରେ ଗୋଟିଏ ପ୍ରବନ୍ଧ ପ୍ରକାଶ କରିଛନ୍ତି । ଗାଙ୍ଗୁଲିଙ୍କ ମତ ଆଲୋଚନା କରି ସେହି ସ୍ଥାନରେ ନୂତନ ଅନୁମାନ ସ୍ଥାପନ କରିବା ଏହି ପ୍ରବନ୍ଧର ଉଦ୍ଦେଶ୍ୟ । ସୁତରାଂ ଦେବ ପ୍ରଥମେ ତାଙ୍କ ମତର ସାର ମର୍ମ ଅଗତ ହେଉ ।

କେଶରୀ ବଂଶ ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀର ଶେଷ ବା ଏକାଦଶ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଶା ଜୟ କରିଥିଲେ । ତେବେ, ଗଜସିଂହ ଯଦି କେଶରୀବଂଶ ଦ୍ୱାରା କେମନ୍ତ ବଂଶର ପରାଜୟ ବ୍ୟାପାରରେ ଚିହ୍ନ ସ୍ୱରୂପ ଦେବ ପ୍ରଥମେ ବ୍ୟବହୃତ

Digitized by srujanika@gmail.com

ହୋଇଥାଏ, ତାହାହେଲେ ଏହାର କଳ୍ପନା ଅବଶ୍ୟ ଦଶମ ଶତାବ୍ଦୀ ପୂର୍ବରୁ କୌଣସିଠାରେ ଏହାର ନିଦର୍ଶନ ନଥିବ । କିନ୍ତୁ ଭାରତର ଅନ୍ୟାନ୍ୟ ଅଞ୍ଚଳରେ ଖ୍ରୀଷ୍ଟୀୟ ନବମ ଓ ଦଶମ ଶତାବ୍ଦୀର ବୌଦ୍ଧ ଶିଳ୍ପରେ ଗଜସିଂହ ଦେଖାଯାଏ । ଅଧିକ ପ୍ରାଚୀନ ସ୍ଥାପତ୍ୟ, ଅର୍ଥାତ୍ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ ଖୋଦିତ ଅଜନ୍ତାର ୯ ନମ୍ବର ଗୁମ୍ଫା ମଧ୍ୟରେ ଏହା ପରିଦୃଷ୍ଟ ହୁଏ । ପୁଣି ଦ୍ୱାରରେ ଏକ ଧାତୁ ନିର୍ମିତ ଗଜସିଂହ ଆବିଷ୍କୃତ ହୋଇଅଛି । ଏହା ବୋଧହୁଏ ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ଶିଳ୍ପରେ କେବଳ ସିଂହ ବା କେବଳ ହସ୍ତୀ ଦେଖାଏ; କିନ୍ତୁ ହସ୍ତୀ ଉପରେ ସିଂହ ବା ଗଜସିଂହ ଦେଖାଯାଏ ନାହିଁ । ତଥାପି ଦ୍ୱାର ଓ ଅଜନ୍ତା ପ୍ରଭୃତି ଭାରତର ଅନ୍ୟାନ୍ୟ ଅଞ୍ଚଳରେ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀର ଶିଳ୍ପ ମଧ୍ୟରେ ଗଜସିଂହର ନିଦର୍ଶନ ଥିବା ସ୍ଥଳରେ ଦଶମ ଓ ଏକାଦଶ ଶତାବ୍ଦୀରେ କେଶରୀବଂଶର ଆଗମନ ସଙ୍ଗେ ଭାରତୀୟ ଶିଳ୍ପ ରାଜ୍ୟରେ ଏହାର ପ୍ରଥମ ଅବତରଣବାଦ ଗ୍ରହଣ କରାଯାଇ ନପାରେ ।

ଅତଏବ ଗାଙ୍ଗୁଲି କହନ୍ତି; ଓଡ଼ିଶା ମନ୍ଦିରର ଗଜସିଂହ ଓଡ଼ିଶା କାରିଗରର ସ୍ୱତନ୍ତ୍ର କଳ୍ପନା ନୁହେଁ କିମ୍ବା ଓଡ଼ିଶାରେ ନୂତନ ରାଜବଂଶର ବିଜୟ ଚିହ୍ନ ନୁହେଁ । ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀ ଓ ତହିଁ ପୂର୍ବରୁ ହସ୍ତୀ ଓ ସିଂହର ସ୍ୱତନ୍ତ୍ର ରୂପ ଭାରତରେ ସର୍ବତ୍ର ନିର୍ମିତ ହେଉଥିଲା । ଷଷ୍ଠ ଶତାବ୍ଦୀବେଳକୁ ହସ୍ତୀ ଉପରେ ସିଂହ ବା ଗଜସିଂହ ଭାରତ-ଶିଳ୍ପ ମଧ୍ୟରେ ପ୍ରବେଶ କଲା । ପ୍ରଥମେ ପ୍ରଥମେ ଏହି ନବ କଳ୍ପିତ ରୂପ ଦ୍ୱାରର ଧାତୁ ନିର୍ମିତ ଗଜସିଂହ ପରି ଚଳିଲ ଥିଲା । କାଳକ୍ରମେ କଳ୍ପନା ସ୍ୱରୂପ ଏହାକୁ ମଧ୍ୟମ ଓ ଆଧୁନିକ ଯୁଗର ଭୂଷଣ ହେଲା ନିଦର୍ଶନରେ ପରିଣତ କଲା, ସେଥିପାଇଁ ଆମ୍ଭେମାନେ ଶତାବ୍ଦୀର ଗତି ସଙ୍ଗେ ସଙ୍ଗେ ଏହି ରୂପରେ ବେଶୀ ବେଶୀ କଳ୍ପନା ପରିପାଟୀ ଦେଖିବାକୁ ପାଉ । ଗଜସିଂହ ଦ୍ୱାରା କୌଣସି ଧର୍ମତତ୍ତ୍ୱ ବା ଐତିହାସିକ ବ୍ୟାପାର କୌଣସିଠାରେ ଚିହ୍ନିତ ହୋଇନାହିଁ । ମନ୍ଦିରର ଶ୍ରୀ ବୃଦ୍ଧି ପାଇଁ ଏହା ଭାରତୀୟ କାରିଗରର ଏକ ଅଦ୍ଭୁତ କଳ୍ପନା ମାତ୍ର ।

ଗାଙ୍ଗୁଲିଙ୍କ ଉପରୋକ୍ତ ଯୁକ୍ତି ସମୀଚୀନ ହେଲେ ହେଁ ଦୃଢ଼ ଭିତ୍ତି ଉପରେ ସ୍ଥାପିତ ନୁହେଁ । ଗଜସିଂହ ଓଡ଼ିଆର ସ୍ୱତନ୍ତ୍ର କଳ୍ପନା ନୁହେଁ ବା କୌଣସି ଐତିହାସିକ ଘଟଣାର ସ୍ମାରକ ନୁହେଁ, ଯେହେତୁ ଖ୍ରୀଷ୍ଟୀୟ ଦଶମ ବା ଏକାଦଶ ଶତାବ୍ଦୀରେ କେଶରୀବଂଶ ଓଡ଼ିଶା ଜୟ କରି ଅଛନ୍ତି ଏବଂ ଏହି ଘଟଣାର ବହୁ ପୂର୍ବରୁ, ଅର୍ଥାତ୍ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀର ଭାରତୀୟ ଶିଳ୍ପରେ ଗଜସିଂହର ନିଦର୍ଶନ ମିଳୁଅଛି । କିନ୍ତୁ କେଶରୀ ବଂଶର ଓଡ଼ିଶା ବିଜୟ ଯଦି ଦଶମ ବା ଏକାଦଶ ଶତାବ୍ଦୀରେ ନହୋଇ ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ହୋଇଥାଏ ?

Digitized by srujanika@gmail.com

କେଶରୀବଂଶର ଓଡ଼ିଶା ରାଜତ୍ୱକୁ ଗାଙ୍ଗୁଲି ଖ୍ରୀଷ୍ଟୀୟ ଦଶମ ଓ ଏକାଦଶ ଶତାବ୍ଦୀରେ ସ୍ଥାନ ଦେଲେ, ତାହାର କୌଣସି କାରଣ ଉଲ୍ଲେଖ କରି ନାହାନ୍ତି। କିନ୍ତୁ ଏତାଦୃଶ ଅନୁମାନ କ୍ଷେତ୍ରରେ ସେ ଏକା ନୁହନ୍ତି। ଫ୍ଲିଟ୍‌ସାହେବ କେଶରୀମାନଙ୍କୁ ଏକାଦଶ ଶତାବ୍ଦୀର ରାଜା ବୋଲି ସ୍ଥିର କରିଅଛନ୍ତି। କେଶରୀବଂଶର କେତେଖଣ୍ଡି ତାମ୍ର ଶାସନ ଦେଖି କେବଳ ଲିପିର ଆକୃତି ବିବେଚନାରେ ସେ ହଠାତ୍ ଏହି ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି ଏବଂ ଏହି ବିଷୟରେ ଦେଶୀୟ ଉପାଦାନ ବିରୁଦ୍ଧରେ କେତେକ କାଳ୍ପନିକ କାରଣ ମଧ୍ୟ ଦର୍ଶାଇଛନ୍ତି। ପକ୍ଷାନ୍ତରରେ ମାଦଳାପାଞ୍ଜି ପ୍ରମୁଖ ଦେଶୀୟ ଉପାଦାନ କେଶରୀବଂଶର ଆଗମନକୁ ପଞ୍ଚମ ଶତାବ୍ଦୀରେ ସ୍ଥାନ ଦେଇଅଛନ୍ତି। ଅନ୍ୟାନ୍ୟ କେହି ଫ୍ଲିଟ୍‌ଙ୍କ ମତର ଅନୁଧାବନ କରିବାକୁ କୁଣ୍ଠିତ ହୋଇନାହାନ୍ତି। ବୋଧହୁଏ ଅର୍ଦ୍ଧେନ୍ଦୁବାବୁ ଫ୍ଲିଟ୍‌ଙ୍କ ଏହି ମତର ପୋଷକ। ଅତଏବ ବର୍ତ୍ତମାନ ଫ୍ଲିଟ୍‌ଙ୍କ ମତର କାରଣଗୁଡ଼ିକ ସଂକ୍ଷେପରେ ଆଲୋଚନା କରି ଦେଶୀୟ ଉପାଦାନର ସତ୍ୟତା ପରୀକ୍ଷା କରିବାକୁ ହେବ। ଅର୍ଥାତ୍ ଅର୍ଦ୍ଧେନ୍ଦୁକୁମାର ଗାଙ୍ଗୁଲିଙ୍କ ସୂତ୍ରର ଭିତ୍ତି ଆଲୋଚନା କରିବାକୁ ହେବ।

ଜନମେଜୟ, ଯଯାତି ଓ ଭୀମାର୍ଥଙ୍କ ଶାସନରେ ଯଥାକ୍ରମେ ମହାଭବଗୁପ୍ତ ଓ ମହାଶିବଗୁପ୍ତ ଓ ମହାଭବ ଗୁପ୍ତ ଏହି ଉପୋକ୍ତି ନାମାନ୍ତର ଅଛି। ଫ୍ଲିଟ୍‌ଙ୍କ ମତରେ ପ୍ରଥମ ଉକ୍ତ ନାମ ଶେଷୋକ୍ତ ଉପୋକ୍ତିର ନାମାନ୍ତର। ମଧ୍ୟ ଶାସନରୁ ଜଣାଯାଏ ଯେ, ଯଯାତିଙ୍କ ପିତା ଜନମେଜୟ, ଆଉ ଯଯାତି ଭୀମାର୍ଥଙ୍କ ପିତା ଥିଲେ। କିନ୍ତୁ ପ୍ରଥମତଃ ଦେଶୀୟ ଉପାଦାନରେ ଶାସନୋକ୍ତ କ୍ରମରେ ଜନମେଜୟ, ଯଯାତି ଓ ଭୀମାର୍ଥଙ୍କ ନାମ ନାହିଁ। ଦ୍ୱିତୀୟତଃ ସେଥିରେ 'ଭବଗୁପ୍ତ' ଓ 'ଶିବଗୁପ୍ତ' ଉପାଧିର ଆଦୌ ଉଲ୍ଲେଖ ନାହିଁ। ସେଥିରେ ଜଣେ ଜନମେଜୟଙ୍କର ନାମୋଲ୍ଲେଖ ଅଛି ସତ୍ୟ; କିନ୍ତୁ ସେ ଯଯାତିଙ୍କର ପିତା ନ ହୋଇ ତାହାଙ୍କର ବହୁପରେ (ଦ୍ୱିଶତାଧିକ ବର୍ଷ ପରେ) ରାଜତ୍ୱ କରିଅଛନ୍ତି। ପୁଣି ଶାସନରେ ଯଯାତିଙ୍କ ପୁତ୍ର ଭୀମାର୍ଥ। କିନ୍ତୁ ଦେଶୀୟ ଉପାଦାନରେ ଯଯାତିଙ୍କର ଠିକ୍ ପରବର୍ତ୍ତୀ ରାଜା ସୂର୍ଯ୍ୟକେଶରୀ। ଆଉ ମଧ୍ୟ ସେଥିରେ କୌଣସି ଭୀମାର୍ଥଙ୍କର ନାମ ପର୍ଯ୍ୟନ୍ତ ନାହିଁ। ଜଣେ ଭରତକେଶରୀଙ୍କର ନାମ ଅଛି। ଭରତକେଶରୀଙ୍କୁ ଭୀମାର୍ଥଙ୍କର ଲୌକିକ ନାମ କୁହାଯାଇପାରେ; କିନ୍ତୁ ଦେଶୀୟ ଲେଖକ ଭରତକେଶରୀଙ୍କୁ ଯଯାତିଙ୍କର ଠିକ୍ ପରବର୍ତ୍ତୀ ରାଜା ନ କରି ତାହାଙ୍କୁ ଅଷ୍ଟମ ଶତାବ୍ଦୀରେ ସ୍ଥାନ ଦେଇଛନ୍ତି। ଅତଏବ ଫ୍ଲିଟ୍ କହନ୍ତି, ଦେଶୀୟ ଲେଖକ ଘଟଣାର ବହୁବର୍ଷ ପରେ ଇତିହାସ ଲେଖିବାକୁ ଯାଇ କେତେଗୁଡ଼ିଏ ଶୁଣାନାମ ଓ କାଳ୍ପନିକ ରାଜତ୍ୱ କାଳ ଦ୍ୱାରା ଶତାବ୍ଦୀ ପୂରଣ କରିଅଛନ୍ତି।

Digitized by srujanika@gmail.com

ଦେଶୀୟ ଉପାଦାନରେ ଶାସନୋକ୍ତ କ୍ରମରେ ଜନମେଜୟ, ଯଯାତି ଓ ଭୀମାର୍ଥଙ୍କର ନାମ ନଥିବା ଅବଶ୍ୟ ସନ୍ଦେହର କାରଣ । ତେବେ ଏଭଳି କାରଣର ବଳ ଅତି ଅଳ୍ପ । ଯଯାତିଙ୍କ ପରବର୍ତ୍ତୀ ରାଜା ସୂର୍ଯ୍ୟକେଶରୀ । ଏହି ସୂର୍ଯ୍ୟକେଶରୀ ନାମ ଭୀମାର୍ଥଙ୍କର ନାମାନ୍ତର ହୋଇପାରେ । କୌଣସି ବୀର ବା ଦେବତାଙ୍କ ସହଜ ସୁଶ୍ରାବ୍ୟ ନାମାନୁସାରେ ମନୁଷ୍ୟର ନାମକରଣ କରିବା ପ୍ରଥା କାଳକ୍ରମେ ଓଡ଼ିଶାରେ ପ୍ରଚଳିତ ହୋଇଅଛି । ପ୍ରାଚୀନ ଶୈବ ଓ କରବେଳ ଏବଂ ପରବର୍ତ୍ତୀ ସୂର୍ଯ୍ୟ ଓ ସୁବର୍ଣ୍ଣ ପ୍ରଭୃତି ନାମ ଏହାର ଉଦାହରଣ । କେଶରୀ ବଂଶର ସ୍ଥାପନ କାଳକୁ ଏହି ପ୍ରଥାର ପ୍ରବର୍ତ୍ତନ କାଳ ବୋଲି ନିର୍ଦ୍ଦେଶ କରାଯାଇପାରେ । ବାସ୍ତବରେ ଏହି ସମୟରୁ ଓଡ଼ିଶା ଇତିହାସରେ ଶ୍ରୁତି କଠୋର ନାମ ପ୍ରାୟ ଦେଖାଯାଏ ନାହିଁ । ସେଥିପାଇଁ ବୋଧହୁଏ ଦେଶୀୟ ଲେଖକ ସୂର୍ଯ୍ୟକେଶରୀ ନାମକୁ ପସନ୍ଦ କରି ଭୀମାର୍ଥ ପରବର୍ତ୍ତୀନରେ ଲିପିବଦ୍ଧ କରିଯାଇ ଅଛନ୍ତି । ଦେଶୀୟ ଉପାଦାନ ଶାସନର ସମସାମୟିକ ନୁହେଁ । ସୁତରାଂ ଶାସନର ଖୋଦନବେଳେ ଯେଉଁ ଭୀମାର୍ଥ ନାମ ଚଳନୀୟ ଥିଲା ସେ ଦେଶୀୟ ଉପାଦାନର ରଚନା ସମୟରେ ଶ୍ରୁତିକଟୁ ବୋଧ ହୋଇଥିବ । ପୁଣି ଦେଶୀୟ ଉପାଦାନରେ ଯଯାତିଙ୍କ ପିତା ଜନମେଜୟଙ୍କ ନାମ ନାହିଁ । ତାଙ୍କର ବହୁବର୍ଷ ପରେ ଜଣେ ଜନମେଜୟ କେଶରୀଙ୍କର ନାମୋଲ୍ଲେଖ ଅଛି । ଯଯାତି ଅସାଧାରଣ କ୍ଷମତାଶାଳୀ ଥିଲେ । ସେ ରାଜା ନହେବାଯାଏ ଓଡ଼ିଶାରେ କେଶରୀବଂଶର ଦୃଢ଼ ଭିତ୍ତି ସ୍ଥାପିତ ହୋଇ ନଥିଲା । ଅତଏବ ତାଙ୍କର ନାମ କେଶରୀବଂଶର ସ୍ଥାପୟିତା ବୋଲି ପ୍ରସିଦ୍ଧ ହେବା ସ୍ୱାଭାବିକ । ବୋଧହୁଏ ଦେଶୀୟ ଲେଖକ ଯଯାତିଙ୍କର ଏହି ମହାତ୍ମ୍ୟ ଅକ୍ଷୁଣ୍ଣ ରଖିବା ଲାଗି ଜନ-ଶ୍ରୁତିର ଅନୁଗମନ କରି ତାଙ୍କୁ କେଶରୀବଂଶର ପ୍ରଥମ ରାଜା ବୋଲି ଘୋଷଣା କରିଛନ୍ତି । ଫଳରେ ଜନମେଜୟଙ୍କ ନାମ ସ୍ୱେଚ୍ଛାରେ ପରିତ୍ୟକ୍ତ ହୋଇଅଛି । ତାହାହେଲେ ଦେଶୀୟ ଉପାଦାନରେ ଶାସନୋକ୍ତ କ୍ରମରେ ଜନମେଜୟ, ଯଯାତି ଓ ଭୀମାର୍ଥ ନାମ ନଥିବା ଆଶ୍ଚର୍ଯ୍ୟ କ'ଣ ? ଦେଶୀୟ ଉପାଦାନରେ ଭବଗୁପ୍ତ ଓ ଶିବଗୁପ୍ତ ନାମର ଅଭାବ ଫ୍ଲିଟ୍‌ଙ୍କ ଅବିଶ୍ୱାସର ଆଉ ଏକ କାରଣ । ଏହି ଶବ୍ଦ ଦୁଇଟିକୁ ଫ୍ଲିଟ୍ ଓ କନିଙ୍ଗହାମ ଦୁହେଁ ଜନମେଜୟ ଓ ଯଯାତିଙ୍କର ନାମାନ୍ତର ବୋଲି ମନେକରନ୍ତି । କେହି କିନ୍ତୁ ଏଭଳି ଅନୁମାନ ସପକ୍ଷରେ କୌଣସି କାରଣ ଦେଇ ନାହାନ୍ତି । ବରଂ ଆଜକାଲି କେହି କେହି ଭବଗୁପ୍ତକୁ 'ଈଶ୍ୱର ରକ୍ଷିତ' ଓ ଶିବ-ଗୁପ୍ତକୁ 'ଶିବରକ୍ଷିତ' ବୋଲି ଅର୍ଥ କରନ୍ତି । କେଶରୀବଂଶୀୟମାନେ ବଡ଼ ଯଜ୍ଞପ୍ରିୟ ଓ ଶିବଭକ୍ତ ଥିଲେ । ସୁତରାଂ ଉପରୋକ୍ତ ଅର୍ଥରେ ଭବଗୁପ୍ତ ଓ ଶିବଗୁପ୍ତ ନାମ ଦୁଇଟିକୁ ଉପାଧି ସ୍ୱରୂପ ଗ୍ରହଣ କରିବା ସେମାନଙ୍କ ପକ୍ଷରେ ଅସମ୍ଭବ ନୁହେଁ । ଶାସନର ଲେଖନ ପ୍ରଣାଳୀରୁ ମଧ୍ୟ ଭବଗୁପ୍ତ ଓ ଶିବଗୁପ୍ତ ନାମ ଦୁଇଟିକୁ ଉପାଧି

Digitized by srujanika@gmail.com

ସ୍ୱରୂପ ଗ୍ରହଣ କରିବା ସେମାନଙ୍କ ପକ୍ଷରେ ଅସମ୍ଭବ ନୁହେଁ । ଶାସନର ଲିଖନ ପ୍ରଣାଳୀରୁ ମଧ୍ୟ ଭବଗୁପ୍ତ ନାମ ଉପାଧି ଥିବା ସ୍ପଷ୍ଟ ଅନୁମିତ ହୁଏ । ଶାସନର ପ୍ରଥମ ଭାଗରେ ଅଛି ପରମ ଭଟ୍ଟାରକ, 'ମହାରାଜାଧିରାଜ' 'ପରମେଶ୍ୱର' ଶ୍ରୀ ଶିବଗୁପ୍ତ ଦେବ ପାଦାନୁଧ୍ୟାତ, ପରମ ମାହେଶ୍ୱର, ପରମଭଟ୍ଟାରକ, ମହାରାଜାଧିରାଜ, ସୋମକୁଳତିଳକ, ତ୍ରିକଳିଙ୍ଗାଧିପତି, ଶ୍ରୀ ମହାଭବଗୁପ୍ତଦେବ କୁଶଳୀ; କିନ୍ତୁ ସେହି ଶାସନର ଶେଷଭାଗରେ ଅଛି, "ପରମ ଭଟ୍ଟାରକ", ମହାରାଜାଧିରାଜ ପରମେଶ୍ୱର, ଶ୍ରୀ ଜନମେଜୟ ଦେବସ୍ୟ ବିଜୟ ରାଜ୍ୟେ ସମ୍ବତ୍ସରେ ତୃତୀୟେ ଇତ୍ୟାଦି । 'ଭବଗୁପ୍ତ' ଯେବେ ଜନମେଜୟଙ୍କର ଉପାଧି ନହୋଇ ନାମାନ୍ତର ହୋଇଥାନ୍ତା, ତାହାହେଲେ ଏକଶାସନର ପ୍ରଥମଭାଗରେ ତାହାଙ୍କର ଭବଗୁପ୍ତ ନାମ ଓ ଶେଷ ଭାଗରେ ଜନମେଜୟ ନାମ ଲିଖିତ ହୋଇ ନଥାନ୍ତା । ଏପରି ହେବା ଅସ୍ୱାଭାବିକ । ଭବଗୁପ୍ତ ଯେ ଜନମେଜୟଙ୍କର ଉପାଧି, ଏହା ନାଗପୁର ଯାଦୁଘର ଶାସନରୁ ଆହୁରି ସ୍ପଷ୍ଟ ଜଣାଯାଏ ।

ଶ୍ରୀମାନ ଜନ୍ମେଜୟାଖ୍ୟଂସ୍ତି ଦଶପତି ପ୍ରମଃ
କୃଷ୍ଣାଗାଂ ହେଳ୍ପୁଦାମଃ ।
ପ୍ରଖ୍ୟାତଦ୍ୱେଷିବଂଶ ପ୍ରବଦଲନ ପଟୁ
ର୍ଭୂପତି ସୋମବଂଶେ ।

ସୋଽୟଂ ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ଶ୍ରୀ ମହାଶିବଗୁପ୍ତ ରାଜଦେବ୍ ପାଦାନୁଧ୍ୟାତ ପରମ ଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ସୋମକୁଳ ତିଳକ ତ୍ରିକଳିଙ୍ଗାଧିପତି ଶ୍ରୀ ମହାଭବଗୁପ୍ତ ରାଜ ଦେବକୁଶଳୀ । ଏହି ଶାସନର ଶେଷରେ ଅଛି, "ପରମ ଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ସୋମକୁଳ ତିଳକ ତ୍ରିକଳିଙ୍ଗାଧିପତି ଶ୍ରୀଜନମେଜୟ ଦେବସ୍ୟ ବିଜୟରାଜ୍ୟେ ସମ୍ବତ୍ସରେ ଅଷ୍ଟମେ" ଇତ୍ୟାଦି । ସର୍ବପ୍ରଥମେ ବନ୍ଦନା ଜନମେଜୟଙ୍କ ନାମରେ । ଶେଷରେ ବର୍ଷ ଚିହ୍ନିତ ହୋଇଛି ଜନମେଜୟଙ୍କ ନାମରେ । ଏହି ଉଭୟ ମଧ୍ୟରେ ମହାଭବଗୁପ୍ତ ଶବ୍ଦ ଅନ୍ୟାନ୍ୟ ଉପାଧି ସହ ସ୍ଥାପିତ ହୋଇଅଛି, ତେବେ 'ମହାଭବ ଗୁପ୍ତ' ଉପାଧି ନହୋଇ ନାମାନ୍ତର ହୋଇପାରେ କି ? ଯଯାତି ଶିବଗୁପ୍ତ ଉପାଧି ସମ୍ବନ୍ଧରେ ମଧ୍ୟ ଏହି ଯୁକ୍ତି ପ୍ରଯୋଜ୍ୟ । ଦେଶୀୟ ଲେଖକ 'କେଶରୀ' ଛଡ଼ା ଅନ୍ୟ ଉପାଧି ପ୍ରତି ଆସ୍ଥା ଦେଇନାହାନ୍ତି କେବଳ 'କେଶରୀ' ଛଡ଼ା ପରମ ଭଟ୍ଟାରକ ପ୍ରଭୃତି ଅନ୍ୟ କୌଣସି ଉପାଧିର ଉଲ୍ଲେଖ କରିନାହାନ୍ତି । ସେଥିପାଇଁ ଅନ୍ୟାନ୍ୟମାନଙ୍କ ପରି ଭବଗୁପ୍ତ ଓ ଶିବଗୁପ୍ତ ଉପାଧି ଦୁହିଁଙ୍କୁ ଗୁରୁତ୍ୱ ଦେଇଛନ୍ତି । ବାସ୍ତବରେ କେଶରୀ ଉପାଧି ଥିବା ସ୍ଥଳରେ ଅନ୍ୟ କୌଣସି ଶବ୍ଦର ପ୍ରୟୋଗ ଅନାବଶ୍ୟକ ।

Digitized by srujanika@gmail.com

ଦେଶୀୟ ଇତିହାସରେ ଜନମେଜୟ ଯଯାତିଙ୍କ ପିତାଙ୍କ ଛଡା ଅନ୍ୟଜଣେ ରାଜା ହୋଇପାରନ୍ତି । ରାଜବଂଶରେ କୌଣସି ନାମ ଏକାଧିକ ଥର ବ୍ୟବହୃତ ହେବା କଠିନ ନୁହେଁ । ଗୁପ୍ତବଂଶରେ କେତେକ ନାମ ଏକାଧିକ ଥର ବ୍ୟବହୃତ ହୋଇଅଛି । ଆଜିକାଲି ମଧ୍ୟ ଓଡ଼ିଶା ରାଜବଂଶର ନାମ ସ୍ୱଳ୍ପରୂପରେ ଦେଖୁଅଛୁ । ଏହିସବୁ ଦୃଷ୍ଟିରେ ଆମ୍ଭେମାନେ ଫ୍ଲିଟ୍‌ଙ୍କ ଅନୁଗମନ କରି ଦେଶୀୟ ଉପାଦାନକୁ ଅବିଶ୍ୱାସ କରି ନପାରୁ ।

କେଶରୀବଂଶର ପୂର୍ବରୁ ଯବନମାନେ ଏକାଧିକ ଥର ଓଡ଼ିଶା ଆକ୍ରମଣ କରିଥିବା ବିଷୟ ଦେଶୀୟ ଉପାଦାନରେ ବର୍ଣ୍ଣିତ ହୋଇଅଛି । ଫ୍ଲିଟ୍ ଏହି ଯବନମାନଙ୍କୁ ଗୁପ୍ତ କିମ୍ବା ମୁସଲମାନ ବୋଲି ମନେକରନ୍ତି । ଦେଶୀୟ ଲେଖକ ଯଦି ଏହି ଯବନ ଶବ୍ଦକୁ ଗୁପ୍ତ ଅର୍ଥରେ ଗ୍ରହଣ କରିଥାନ୍ତି ତାହାହେଲେ ସେ ଭ୍ରାନ୍ତ ବୋଲି ସ୍ୱୀକାର କରିବାକୁ ହେବ । ପ୍ରଥମ ଚନ୍ଦ୍ରଗୁପ୍ତ ୩୨୦ ଖ୍ରୀଷ୍ଟାବ୍ଦରେ ଗୁପ୍ତ ସାମ୍ରାଜ୍ୟ ସ୍ଥାପନ କରିଥିଲେ । କିନ୍ତୁ ତାଙ୍କଦ୍ୱାରା ଓଡ଼ିଶା ଆକ୍ରମଣର କୌଣସି ପ୍ରମାଣ ନାହିଁ । ତତ୍ପରେ ମହାରାଜାଧିରାଜ ସମୁଦ୍ରଗୁପ୍ତ ୩୩୦ ଖ୍ରୀଷ୍ଟାବ୍ଦରୁ ୩୭୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏହି ରାଜା ବହୁ ଦେଶ ବିଦେଶ ଜୟ କରିଥିଲେ । ଓଡ଼ିଶାରେ କୌଣସି କୌଣସି ଅଞ୍ଚଳ ମଧ୍ୟ ଜୟ କରିଥିଲେ । କିନ୍ତୁ ବିଜିତ ରାଜ୍ୟ ସବୁକୁ ସ୍ୱସାମ୍ରାଜ୍ୟରେ ଅନ୍ତର୍ଭୁକ୍ତ କରି ନଥିଲେ । ପଠାଣ ସେନାପତି ମଲ୍ଲିକ୍ କାଫୁରଙ୍କ ପରି ବିଦେଶୀୟ ରାଜାମାନଙ୍କୁ ପରାସ୍ତ କରି କେବଳ ଧନ ସମ୍ପତ୍ତି ନେଇ ପ୍ରତ୍ୟାବର୍ତ୍ତନ କରିଥିଲେ । ସୁତରାଂ ଓଡ଼ିଶାର କୌଣସି ଅଂଶରେ ପ୍ରବେଶ କରିଥିଲେ ସୁଦ୍ଧା ସେ ସ୍ଥାନର କେବେ ଅଧିରାଜ ହୋଇନଥିବେ । ପଶ୍ଚାନ୍ତରେ, ଯବନମାନେ କେଶରୀବଂଶ ପୂର୍ବରୁ ଓଡ଼ିଶାରେ ୧୪୬ ବର୍ଷ କାଳ ରାଜତ୍ୱ କରିଥିଲେ । କେବଳ ତର୍କସ୍ଥଳରେ ମଧ୍ୟ ସମୁଦ୍ରଗୁପ୍ତଙ୍କୁ ଦେଶୀୟ ଲେଖକର ଯବନ ବୋଲି କୁହାଯାଇ ନପାରେ । ଓଡ଼ିଶାର ଯେଉଁ ଲେଖକ ବିକ୍ରମାଦିତ୍ୟଙ୍କୁ ପ୍ରାତଃ ସ୍ମରଣୀୟ ରୂପେ ଗ୍ରହଣ କରିଛନ୍ତି, ସେହିମାନେ ବ୍ରାହ୍ମଣ୍ୟଧର୍ମର ପୁନରୁଦ୍ଧାର କର୍ତ୍ତା ସମୁଦ୍ରଗୁପ୍ତଙ୍କୁ ଯବନ କହିବା ଅତି ଅସ୍ୱାଭାବିକ । ସମୁଦ୍ରଗୁପ୍ତଙ୍କ ପରେ ଦ୍ୱିତୀୟ ଚନ୍ଦ୍ରଗୁପ୍ତ । ଦ୍ୱିତୀୟ ଚନ୍ଦ୍ରଗୁପ୍ତ ୩୭୫ ଖ୍ରୀଷ୍ଟାବ୍ଦଠାରୁ ୪୧୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ତାଙ୍କ ସମୟରେ ଫାହିୟାନ ଭାରତକୁ ଆସିଥିଲେ । ସେ ଅବାଧ ଭାବରେ ଚନ୍ଦ୍ରଗୁପ୍ତଙ୍କ ରାଜ୍ୟରେ ଭ୍ରମଣ କରିଥିଲେ । ଦକ୍ଷିଣ ପ୍ରଦେଶ ମଧ୍ୟ ଦେଇ ସିଂହଳ ଯିବା ପାଇଁ ତାଙ୍କର ଇଚ୍ଛା ଥିଲା । କିନ୍ତୁ ବାରାଣସୀଠାରେ ଶୁଣିଲେ ଯେ ଦକ୍ଷିଣ ପ୍ରଦେଶ ବଡ଼ ବିପଦ ସଙ୍କୁଳ । ସୁତରାଂ ତାମ୍ରଲିପ୍ତଠାରୁ ସମୁଦ୍ର ପଥରେ ସେ ସିଂହଳ ଗଲେ । ଓଡ଼ିଶାରେ

Digitized by srujanika@gmail.com

ଦନ୍ତପୁର ପ୍ରଭୃତ ବୌଦ୍ଧ ତୀର୍ଥ ଥାଇ ଆଉ ଫାହିୟାନ୍ ସେଠାକୁ ନଯିବା ଅବଶ୍ୟ ସନ୍ଦେହୋଦ୍ଦୀପକ । ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କର ସେଠାରେ କର୍ତ୍ତୃତ୍ୱ ଥିଲେ, ଫାହିଆନ୍ ତାଙ୍କର ସାହାଯ୍ୟରେ ସ୍ୱେଚ୍ଛାରେ ସେ ପ୍ରଦେଶରେ ମଧ୍ୟ ବୁଲି ପାରିଥାନ୍ତେ । ତେବେ, ଏହି ସମୟରେ ଓଡ଼ିଶାରେ ଗୁପ୍ତମାନଙ୍କର କୌଣସି ଅଧିକାର ନଥିଲା । ଅତଏବ ଦେଶୀୟ ଲେଖକର ଯବନ ଶାସନ ଗୁପ୍ତ ରାଜତ୍ୱ ହୋଇ ନପାରେ । ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କ ପରେ କୁମାର ଗୁପ୍ତଙ୍କ ରାଜତ୍ୱ । ୪୧୩ ଖ୍ରୀଷ୍ଟାବ୍ଦରୁ ୪୫୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଶାସନ କରିଥିଲେ । ଏ ରାଜତ୍ୱର ପ୍ରଥମ ଅଧ୍ୟାୟରେ କୌଣସି କୌଣସି ବିଦେଶ ଜୟ କରିଥିଲେ ସତ୍ୟ; କିନ୍ତୁ କେଶରୀବଂଶ ପୂର୍ବରୁ 'ଯବନ' ଅର୍ଥରେ ଓଡ଼ିଶାରେ ୧୪୭ ବର୍ଷ ରାଜତ୍ୱ କରିବା ପାଇଁ ଆଉ କାଳ ବ୍ୟବଧାନ ନଥିଲା । ପୁଣି ସ୍ୱଦେଶରେ ରାଜତ୍ୱ କରିବା ଦୂରେ ଥାଉ ହୁନ ଆକ୍ରମଣ ହେତୁରୁ ଏହାଙ୍କ ସମୟରୁ ଗୁପ୍ତ ସାମ୍ରାଜ୍ୟ କ୍ରମଶଃ ସଙ୍କୀର୍ଣ୍ଣ ହୋଇ ଆସୁଥିଲା । ଅତଏବ ଦେଶୀୟ ଉପାଦାନର 'ଯବନ' ଶବ୍ଦ ଗୁପ୍ତ ଅର୍ଥରେ ବ୍ୟବହୃତ ହେବା ସମ୍ଭବ ନୁହେଁ । ଏ ବିଷୟରେ ସବିଶେଷ ଆଲୋଚନା ପ୍ରବନ୍ଧର କ୍ଷୁଦ୍ର କଳେବରରେ ଅସମ୍ଭବ ।

ପୁଣି ଏହି 'ଯବନ' ଶବ୍ଦ ମୁସଲମାନମାନଙ୍କୁ ବୁଝାଉଥିଲେ ଦେଶୀୟ ଉପାଦାନର ଅସତ୍ୟତା ଆହୁରି ଅଧିକ ବୋଧହୁଏ । ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ପ୍ରାୟ ମଧ୍ୟଭାଗ ଯାଏ କୌଣସି ମୁସଲମାନ ରାଜା ଓଡ଼ିଶାରେ ଶାସନ କରିନଥିଲେ । ଏପରି ସ୍ଥଳରେ ମୁସଲମାନ ଅଧିକାରକୁ ଯଦି କେଶରୀବଂଶର ପୂର୍ବରେ ସ୍ଥାନ ଦିଆଯାଇଥାଏ, ତାହା ହେଲେ ଦେଶୀୟ ଉପାଦାନରେ ସତ୍ୟର ଅପଚୟ ଛଡ଼ା ଆଉ କିଛି ହେଲାପରି ବୋଧହୁଏ ନାହିଁ, ଅତଏବ ଯବନମାନଙ୍କୁ ମୁସଲମାନ ଅର୍ଥରେ ଗ୍ରହଣ କରି ଦେଶୀୟ ଉପାଦାନକୁ ଅବିଶ୍ୱାସ କରିବା ଫ୍ଲିଟ୍ଙ୍କ ପକ୍ଷରେ ସ୍ୱାଭାବିକ । କିନ୍ତୁ ଦେଶୀୟ ଉପାଦାନର ଯବନମାନେ 'ମୁସଲମାନ' ନୁହନ୍ତି । ଏପରି ଅନୁମାନର ଗୋଟିଏ ହେଲେ କାରଣ ନାହିଁ ।

ଲଲାଟେନ୍ଦୁଙ୍କର ଅନ୍ୟ ଗୋଟିଏ ନାମ ଅଲାବୁ କେଶରୀ । ଫ୍ଲିଟ୍ କହନ୍ତି, 'ଅଲାବୁ' କୌଣସି ମୁସଲମାନ ନାମର ଅନୁକରଣ । ତେବେ ଦେଶୀୟ ଉପାଦାନ ପ୍ରଦତ୍ତ କେଶରୀ ବଂଶର ଶାସନକାଳ ଯଦି ସତ୍ୟ ହୁଏ ତାହାହେଲେ ଏହି ମୁସଲମାନ ନାମ ଆସିଲା କେଉଁଠାରୁ ? କିନ୍ତୁ 'ଅଲାବୁ' ମୁସଲମାନ ନାମର ଅନୁକରଣ କାହିଁକି ? ଏ ଗୋଟିଏ ସଂସ୍କୃତ ଶବ୍ଦ । ଓଡ଼ିଆରେ ଅର୍ଥ ଲାଉ । ଲାଉ ଓଡ଼ିଶାରେ ସୁପରିଚିତ, ଏପରିକି, ପିଲାଏ ଜଣକ ପିଠିରେ ଆଉ ଜଣକୁ ବସାଇ 'ଲାଉ ନବ'

Digitized by srujanika@gmail.com

'ଲଉ ନବ' କହନ୍ତି । ମଧ୍ୟ ଓଡ଼ିଆରେ ଲଉ ଶବ୍ଦର ଅର୍ଥ ପିଠିରେ ବସାଇବା । ଅଦ୍ୟାବଧି ଭୁବନେଶ୍ୱର ଅଞ୍ଚଳରେ କେହି କେହି କହନ୍ତି ଲଲାଟ ଇନ୍ଦୁ ପ୍ରତ୍ୟହ ଲିଙ୍ଗରାଜ ଦର୍ଶନ ପାଇଁ ମନୁଷ୍ୟ ପୃଷ୍ଠରେ ଖଣ୍ଡଗିରିରୁ ଆସୁଥିଲେ । ଏହି କିମ୍ବଦନ୍ତୀର କୌଣସି କାରଣ ଜଣାଯାଇ ନାହିଁ । ତଥାପି ବୋଧହୁଏ, ମନୁଷ୍ୟ ପୃଷ୍ଠରେ ଆସୁଥିବା ହେତୁରୁ ଲୋକେ ତାଙ୍କୁ 'ଲଉ' ବା ସଂସ୍କୃତ 'ଅଳବୁ' ନାମ ଦେଇଥିଲେ ।

ଫ୍ଲିଟ୍ କହନ୍ତି ପଦ୍ମ କେଶରୀ, କାଳକେଶରୀ ମଧୁସୂଦନ କେଶରୀ ଓ ତ୍ରିପୁର କେଶରୀ ପ୍ରଭୃତି ନାମ କାଳ୍ପନିକ । ଏ ସବୁ କାହିଁକି କାଳ୍ପନିକ ତାର କୌଣସି କାରଣ ନାହିଁ । ବୋଧହୁଏ ଉତ୍କଳରେ ପଦ୍ମଚରଣ, କାଳଚରଣ, ମଧୁସୂଦନ ଓ ତ୍ରିପୁରର ପ୍ରଭୃତି ନାମର ବହୁଳ ପ୍ରଚଳନ ଫ୍ଲିଟ୍ ଜାଣି ନଥିଲେ । ଶାକ୍ତନାମ 'କାଳ' କେଶରୀ ବଂଶର ରାଜତ୍ୱ ସମୟରେ ଓଡ଼ିଶାରେ ପ୍ରଚଳିତ ଥିବ, ଯେହେତୁ ଶାକ୍ତଧର୍ମ କେତେବେଳରୁ ଓଡ଼ିଶାରେ ସୁପରିଚିତ ହୋଇଥିଲା ।

ପୁଣି କେଶରୀ ବଂଶର ନରସିଂହ, କୂର୍ମ, ମତ୍ସ୍ୟ, ବରାହ, ବାମନ ଓ ପରଶୁ ନାମ ସତ୍ୟ ନୁହେଁ । ଖାଁଚାଦୀ-ପୂରଣ ଉଦ୍ଦେଶ୍ୟରେ ଲେଖକ ବିଷ୍ଣୁଙ୍କର ଅବତାର ନାମଗୁଡ଼ିକୁ ଅବଲମ୍ବନ କରି ଏ ସବୁ ସ୍ୱେଚ୍ଛାରେ ଲେଖି ଦେଇ-ଅଛନ୍ତି । ବିଷ୍ଣୁଙ୍କର ଏକାଧିକ ଅବତାର ନାମ ଏକ ସ୍ଥାନରେ ସନ୍ନିହିତ ହୋଇଥିବାରୁ ଫ୍ଲିଟ୍ଙ୍କର ସନ୍ଦେହ ଜାତ ହୋଇଅଛି; କିନ୍ତୁ ଏହା ସନ୍ଦେହର କାରଣ ହୋଇପାରେ କି ? ପୂର୍ବେ କୁହାଯାଇ ଅଛି; ଦେବତାଙ୍କର ସୁଶ୍ରାବ୍ୟ ନାମାନୁସାରେ ନାମ ଦେବା ପ୍ରଥା ଓଡ଼ିଶାରେ କ୍ରମେ ପ୍ରଚଳିତ ହୋଇଅଛି । ଆଜିକାଲି ଏହି ପ୍ରଥା ସଚରାଚର ଦେଖାଯାଏ । ଅନେକ ମଧ୍ୟ ଏକ ନିର୍ଦ୍ଦିଷ୍ଟ କ୍ରମରେ ନାମକରଣ କରିଥାନ୍ତି । ପିତା ଗୋଟିଏ ପୁତ୍ରର ନାମ ବଳଭଦ୍ର ବା ଜଗନ୍ନାଥ କଲେ ଅନ୍ୟକୁ ଜଗନ୍ନାଥ ବା ବଳଭଦ୍ର ନାମ ଦେବାକୁ ପ୍ରବୃତ୍ତ ହୁଏ ଏବଂ ପୁତ୍ର ଦୁହିଙ୍କର ନାମ ବଳଭଦ୍ର ଓ ଜଗନ୍ନାଥ ହେଲେ କନ୍ୟାର ନାମ ସୁଭଦ୍ରା ରଖିଥାଏ । ଏହିପରି ନିର୍ଦ୍ଦିଷ୍ଟ କ୍ରମାନୁସାରେ ନାମ ଦେବାକୁ ହେଲେ କୂର୍ମ ଓ ମତ୍ସ୍ୟପରି ଗୋଟିଏ ଦୁଇଟି ଶ୍ରୁତିକଠୋର ନାମ ମଧ୍ୟ ବ୍ୟବହୃତ ହେବା ଅସ୍ୱାଭାବିକ ନୁହେଁ । ରାଜବଂଶରେ ଏପରି ହେବା ବେଶୀ ପରିମାଣରେ ସମ୍ଭବପର । ଏହି ସୂତ୍ରରେ 'ବରୁଧେନ୍ଦ୍ର' ନାମର ବ୍ୟବହାର ମଧ୍ୟ ଆଜିକାଲି କୌଣସି କୌଣସିଠାରେ ଦେଖାଯାଏ ।

Digitized by srujanika@gmail.com

କେହି କହି ପାରନ୍ତି ଗୋଟି ଗୋଟି କରି ଏକେତୃତ୍ତ୍ୱ ଅବତାର ନାମକୁ କ୍ରମାନୁସାରେ ବ୍ୟବହାର କରିବା ଜଣକ ପକ୍ଷରେ ସମ୍ଭବ ହୋଇପାରେ । କାରଣ ଜଣେ ଏକ ନିର୍ଦ୍ଦିଷ୍ଟ କ୍ରମ ଚକ୍ଷୁ ଅଗ୍ରରେ ରଖି ତାହାଙ୍କ ସାରା ଜୀବନ ନାମକରଣ କରି ପାରନ୍ତି । କିନ୍ତୁ କୌଣସି ବଂଶର ଏକାଧିକ ପୁରୁଷଯାଏ ଏତାଦୃଶ କ୍ରମିକ ବ୍ୟବହାର ସମ୍ଭବ ନୁହେଁ । ଜଣେ କେବଳ ଏକାଧିକ ପୁରୁଷଯାଏ ନାମକରଣ କରି ନଥାଏ । ଅତଏବ କେଶରୀବଂଶରେ ଏକେତୃତ୍ତ୍ୱ ଅବତାର ନାମ ଯେ ଅନେକ ପୁରୁଷଯାଏ ନିର୍ଦ୍ଦିଷ୍ଟ କ୍ରମରେ ବ୍ୟବହୃତ ହୋଇଅଛି, ସେଥିରୁ ଦେଶୀୟ ଲେଖକର କପୋଳ କଳ୍ପନା ଛଡ଼ା ଆଉ କିଛି ଅନୁମିତ ହୁଏ ନାହିଁ । ଏହା ଅବଶ୍ୟ ସନ୍ଦେହର କାରଣ । କିନ୍ତୁ ଯେଉଁମାନେ ଦେଶୀୟ ପ୍ରଥା ଜାଣନ୍ତି ସେମାନେ ଏପରି ସନ୍ଦେହ କରିବେ ନାହିଁ । ଓଡ଼ିଶାରେ ରାଜସଭାର ପଣ୍ଡିତମାନେ ରାଜବଂଶ ପାଇଁ ନାମ ସ୍ଥିର କରି ଥାନ୍ତି । ଏହି ପ୍ରଥା ଅଦ୍ୟାବଧି ଅନେକ ରାଜବଂଶରେ ଦେଖାଯାଏ । ପଣ୍ଡିତ ନବାଗତ କୁମାରଙ୍କର ନାମକରଣ କଲାବେଳେ ପୂର୍ବପୁରୁଷର ନାମପ୍ରତି ଲକ୍ଷ୍ୟ ରଖନ୍ତି । ପୂର୍ବ ନାମ ସବୁରୁ ଯଦି କୌଣସି ନିର୍ଦ୍ଦିଷ୍ଟ କ୍ରମ ଜଣାପଡ଼େ, ତାହାହେଲେ ସେହି କ୍ରମକୁ ସହଜରେ ଛାଡ଼ିପାରନ୍ତି ନାହିଁ । ଓଡ଼ିଶାରେ ଏହି ପ୍ରଥା ବୋଧହୁଏ କେଶରୀ ବଂଶରେ ଏକାଧିକ ଅବତାର ନାମର ହେତୁ ।

କେଶରୀବଂଶର ଅବତାର ନାମ ଦେଶୀୟ ଲେଖକର କଳ୍ପନା ପ୍ରସୂତ ନୁହେଁ । ସେପରି ହୋଇଥିଲେ, ଲେଖକ ଆଖିବୁଜି ଅବତାରର ଠିକ୍ କ୍ରମ ଅନୁସାରେ ସବୁ ନାମଗୁଡ଼ିକୁ ଲେଖି ଯାଇଥାନ୍ତେ—ଗୋଟିଏ ସୁଦ୍ଧା ଛାଡ଼ି ନଥାନ୍ତେ, କିମ୍ବା ଅବତାରର କ୍ରମରୁ ଆଦୌ ବ୍ୟତିକ୍ରମ ଘଟି ନଥାନ୍ତା । କିନ୍ତୁ ଉପାଦାନରେ ସେପରି ଦେଖାଯାଏ ନାହିଁ । ଶାସ୍ତ୍ରରୁ ଜଣାଯାଏ ଯେ, ନିମ୍ନୋକ୍ତ କ୍ରମରେ ବିଷ୍ଣୁଙ୍କର ଅବତାର ହୋଇଥିଲା—ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ, ବାମନ, ପରଶୁରାମ, ରାମ, ହଳଧର, ବୌଦ୍ଧ କଲ୍କି । ମାତ୍ର ଦେଶୀୟ ଉପାଦାନରେ ସବୁଗୁଡ଼ିକ ଅବତାରର ନାମ ନାହିଁ । ଆଉ ମଧ୍ୟ ସେଥିରେ ଅବତାର କ୍ରମରୁ ନିମ୍ନୋକ୍ତ ବ୍ୟତିକ୍ରମ ଦେଖାଯାଏ । ନରସିଂହ, କୂର୍ମ, ମତ୍ସ୍ୟ, ବରାହ, ବାମନ ଓ ପରଶୁ ।

ସ୍ୱତନ୍ତ୍ର ଇତିହାସରେ ଅଧିକାଂଶ ଉପାଦାନରେ ସମସ୍ତ ସମ୍ବନ୍ଧରେ କୌଣସି ନିଃସନ୍ଦେହ ପ୍ରମାଣ ନାହିଁ । କେଶରୀବଂଶର ତାମ୍ର ଶାସନରେ ମଧ୍ୟ କୌଣସି ସମସ୍ୟୋଲ୍ଲେଖ ନାହିଁ । ସେଥିପାଇଁ ଐତିହାସିକର କଳ୍ପନା ଶାସନୋକ୍ତ ରାଜାମାନଙ୍କୁ ଆଗପଛ କରୁଅଛି । ଶାସନର ଅକ୍ଷର ପ୍ରକାର ଦେଖି ଫ୍ଲିଟ୍ ମନେକରନ୍ତି ଯେ, ସେ ସବୁ ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀରେ ଲିଖିତ । ମାଦଳା

Digitized by srujanika@gmail.com

ଫ୍ଲିଟ୍ ପ୍ରଭୃତି ଦେଶୀୟ ଉପାଦାନ ପଣ୍ଡିତଙ୍କୁ ଯେଉଁ ସମସ୍ୟା ଦେଇ ଅଛନ୍ତି; ଶାସନ ସବୁ ସେହି ସମୟର ଲେଖା ହୋଇଥିଲେ ଲିପି ଅନ୍ତର ପ୍ରାଚୀନ ଧରଣର ହୋଇଥାନ୍ତା ।

ଅକ୍ଷରର ଆକୃତି ଦୃଷ୍ଟିରୁ କାଳ ନିରୂପଣ କରିବା ଏକାବେଳକେ ଅପ୍ରାସଙ୍ଗିକ ନହେଲେ ହେଁ ଏ ପ୍ରମାଣ କୌଣସି ସ୍ଥିର ସିଦ୍ଧାନ୍ତ ଦେଇନପାରେ । ଖ୍ରୀଷ୍ଟୀୟ ପଞ୍ଚମ ତଥା ଦଶମ ଶତାବ୍ଦୀର ଲିପି ଉଭୟେ କୁଟିଳ ନାମରେ ପରିଚିତ । ଏହି ଦୁଇ ଶତାବ୍ଦୀର ଦୀର୍ଘ ବ୍ୟବଧାନ ମଧ୍ୟରେ ଲିପି ଥରକୁ ଥର ମାର୍ଜିତ ବା ପରିବର୍ତ୍ତିତ ହୋଇଅଛି । କିନ୍ତୁ ଏହି ମାର୍ଜନା ବା ପରିବର୍ତ୍ତନ ସବୁ ଅଞ୍ଚଳରେ ଏକ ସମୟରେ ଘଟିବା ସ୍ୱାଭାବିକ ନୁହେଁ । ଅଥ ମଧ୍ୟ ଆଦିମ ଶାସନ ସବୁ ନଷ୍ଟ ଅସ୍ପଷ୍ଟ ହେବାରୁ ରାଜାଙ୍କର କୌଣସି ବଂଶଧର ପରବର୍ତ୍ତୀ ଯୁଗରେ ସେ ସବୁର ନକଲ କରାଇ ପାରିଥାନ୍ତି । ଜୋନ୍ସ ସାହେବ ଅସିରିଆ ଇତିହାସରେ ଏଦୃଶ କାର୍ଯ୍ୟର ନିଦର୍ଶନ ଦେଖାଇଛନ୍ତି । ତାହାହେଲେ ପରଯୁଗର ଲିପି ଦେଶଗଙ୍ଗବଂଶର ଶାସନରେ ପରିଦୃଷ୍ଟ ହେବା ବିଶେଷ ସନ୍ଦେହାବହ ନୁହେଁ ।

ଫ୍ଲିଟ୍ଙ୍କ କାରଣଗୁଡ଼ିକ ସଂକ୍ଷେପରେ ଆଲୋଚନା କରି ଆମ୍ଭେମାନେ ଦେଖିଲୁଁ ଯେ, ଦେଶୀୟ ଉପାଦାନକୁ କାଳ୍ପନିକ କହିବାର କୌଣସି ବିଶେଷ ହେତୁ ନାହିଁ । ତଥାପି ଏହାର ସତ୍ୟତା ସମ୍ବନ୍ଧରେ ବର୍ତ୍ତମାନ ଗୋଟିଏ ଉତ୍କଟ ସ୍ୱତନ୍ତ୍ର ପ୍ରମାଣ ଆନୀତ କରିବାକୁ ହେବ । ଭୁବନେଶ୍ୱର ଓ ସନ୍ନିକଟବର୍ତ୍ତୀ ସ୍ଥାନର ଲୋକେ କହନ୍ତି ଲିଙ୍ଗରାଜ ମନ୍ଦିରର ଘାଟ ଚଉକାଠରେ ଏକ ପ୍ରସ୍ତର ଅନୁଶାସନ ଖୋଦିତ ଅଛି । ଅନୁଶାସନଟି ଏହି;

"ଗଜାଷ୍ଟେଶୁମିତେ ଜାତେ ଶକାବ୍ଦେ କୀର୍ତ୍ତିବାସଃ
ପ୍ରାସାଦମକରୋଦ୍ରାଜା ଲଲାଟେନ୍ଦୁସ୍ତୁ କେଶରୀ ।"

ଗଜାଷ୍ଟେଶୁର ଅର୍ଥ ୮୮୫ । କିନ୍ତୁ 'ଅଙ୍କାନାଂ ବାମତୋ ଗତିଃ' ନିୟମରେ ୮୮୫କୁ ୫୮୮ ଶକାବ୍ଦ ବୋଲି ଗ୍ରହଣ କରିବାକୁ ହେବ । ତାହାହେଲେ, ଅନୁଶାସନର ଅର୍ଥ ୫୮୮ ଶକାବ୍ଦ ବା ୬୬୬ ଖ୍ରୀଷ୍ଟାବ୍ଦରେ ଲଲାଟେନ୍ଦୁ ଲିଙ୍ଗରାଜ ମନ୍ଦିର ନିର୍ମାଣ କରାଇଥିଲେ । ଏ ଅବଶ୍ୟ ମନ୍ଦିର ନିର୍ମାଣର ସମାପ୍ତି ବର୍ଷ ହୋଇଥିବ । କେହି ଗୋଟିଏ କୀର୍ତ୍ତି କରାଇଲେ, ଯେଉଁ ବର୍ଷରେ ଏହାର କାର୍ଯ୍ୟ ସମାପ୍ତ ହୁଏ, ସେହି ବର୍ଷକୁ ନିର୍ମାଣ ବର୍ଷ ବୋଲି ଚିହ୍ନିତ କରାଯାଏ । ଦେଶୀୟ ଲେଖକ କହନ୍ତି, ଲଲାଟେନ୍ଦୁ, ୬୧୩ ଖ୍ରୀଷ୍ଟାବ୍ଦଠାରୁ ୬୬୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ

Digitized by srujanika@gmail.com

ରାଜତ୍ୱ କରିଥିଲେ । ତେବେ ଲିଙ୍ଗରାଜ ମନ୍ଦିରର ସମାପ୍ତି ବର୍ଷ ୬୬୬ ଖ୍ରୀଷ୍ଟାବ୍ଦ ଉପାଦାନ ପ୍ରଦତ୍ତ ଲଲାଟେନ୍ଦୁ ରାଜତ୍ୱକାଳ ମଧ୍ୟରେ ପଡ଼ୁଅଛି । ଅନୁଶାସନଟି ମନ୍ଦିର ଦେହରେ ଅଛି କି ନାହିଁ, ଏପର୍ଯ୍ୟନ୍ତ ସ୍ଥିର ହୋଇ ନାହିଁ । ତଥାପି ମନ୍ଦିର ଦେହରେ ଏହାର ଉତ୍କୀର୍ଣ୍ଣ ଖୋଦନ ବିଷୟ ଅଦ୍ୟାବଧି ଲୋକ ମୁଖରେ ଭଣିତ ହେଉଥିବା ସ୍ଥଳେ ପଂକ୍ତିଟିକୁ ମନ୍ଦିର ନିର୍ମାଣର ସମସାମୟିକ ବୋଲି ବିଶ୍ୱାସ କରିବା ସ୍ୱାଭାବିକ । ଲଲାଟେନ୍ଦୁ ଲିଙ୍ଗରାଜ ମନ୍ଦିର ସହିତ ଯେତେଦୂର ସଂପୃକ୍ତ, ତାହା ଏତଦ୍‌ଭିନ୍ନ ଅନ୍ୟାନ୍ୟ ଅନେକ ଜନଶ୍ରୁତିରୁ ଅନୁମିତ ହୁଏ ।

୬୬୬ ଖ୍ରୀଷ୍ଟାବ୍ଦରେ ମନ୍ଦିର ନିର୍ମାଣ ସମାପ୍ତ ହେଲା ସତ; କିନ୍ତୁ ଏହି ବର୍ଷର ବହୁ ପୂର୍ବରୁ ଏକାର୍ଯ୍ୟ ଆରବ୍‌ଧ ହୋଇଥିବ । ଲିଙ୍ଗରାଜ ମନ୍ଦିର ପରି ଗୋଟିଏ ସୁମହାନ୍ ମନ୍ଦିର ତିଆରି କରାଇବା ପାଇଁ ଶତାଧିକ ବର୍ଷ ଅତିବାହିତ ହେବା ବିଚିତ୍ର ନୁହେଁ । କୌଣସି ବିଶେଷ କାରଣରୁ ଏହାର କାର୍ଯ୍ୟ ମଝେ ମଝେ ସ୍ଥଗିତ ଥାଇପାରେ । ଅତଏବ ଯଯାତିକେଶରୀ ଏହାକୁ ଆରମ୍ଭ କରାଇଥିବା ଅସମ୍ଭବ ନୁହେଁ । ଦେଶୀୟ ଉପାଦାନ ମତରେ ଯଯାତି ୪୭୪ ଖ୍ରୀଷ୍ଟାବ୍ଦରୁ ୫୨୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଦେଶୀୟ ଲେଖକ ମଧ୍ୟ ଯଯାତିଙ୍କୁ ଲିଙ୍ଗରାଜ ମନ୍ଦିରର ନିର୍ମାତା ବୋଲି କହନ୍ତି । ବୋଧହୁଏ ଯଯାତି କେଶରୀ ରାଜତ୍ୱର ଶେଷ ଆଡ଼କୁ ମନ୍ଦିରର ନିର୍ମାଣ-କାର୍ଯ୍ୟ କେବଳ କରାଇଥିଲେ । ଖୁବ୍ ସମ୍ଭବ ରାଜତ୍ୱର ପ୍ରଥମ ଅବସ୍ଥାରେ ତାହାଙ୍କୁ ଏଥିପାଇଁ ସମୟ ଓ ସୁବିଧା ମିଳି ନଥିବ । ଯେହେତୁ ସେତେବେଳେ ସେ ସମଗ୍ର ଓଡ଼ିଶାକୁ ଆୟତ୍ତ କରି ରାଜତ୍ୱ ସ୍ଥାପନ କରିବାରେ କାୟମନ ସମର୍ପଣ କରିଥିବେ । ଏହି ସବୁ ଦୃଷ୍ଟିରେ ମଧ୍ୟ ଦେଶୀୟ ଉପାଦାନ ପ୍ରଦତ୍ତ କେଶରୀବଂଶର ସ୍ଥାପନ ଓ ଶାସନ କାଳ ବିଶ୍ୱାସୀ ବୋଲି ବୋଧହୁଏ ।

ଦେଶୀୟ ଉପାଦାନ କହିଲେ କେବଳ ମାଦଳା ପାଞ୍ଜି ନୁହେଁ; ଷ୍ଟର୍ଲିଂ ଓଡ଼ିଶାର ବିଭିନ୍ନ ସ୍ଥାନରୁ ବଂଶାବଳୀ ପୋଥି ସଂଗ୍ରହ କରି ସେ ସବୁ ମିଳାଇ କହିଛନ୍ତି, କେଶରୀ ବଂଶର ସ୍ଥାପନ ପୂର୍ବରୁ ଓଡ଼ିଶାର ଇତିହାସ ବହୁ ପରିମାଣରେ ବିଶ୍ୱାସୀ । ବାବୁ ଭବାନୀ ଚରଣ ବନ୍ଦୋପାଧ୍ୟାୟ ମଧ୍ୟ ମାଦଳା ପାଞ୍ଜିକୁ ଉତ୍ତମ ରୂପେ ପାଠ କରି ସେଥିର ସମସ୍ତ ବିଷୟ ପୁରୁଷୋତ୍ତମ ଚନ୍ଦ୍ରିକା ନାମକ ପୁସ୍ତକରେ ଲିପିବଦ୍ଧ କରିଛନ୍ତି । ଉପରୋକ୍ତ ସମସ୍ତ ଉପାଦାନ ପରିଶେଷରେ ହଣ୍ଟରଙ୍କ ଦ୍ୱାରା ଆଲୋଚିତ ହୋଇଅଛି । କେଶରୀବଂଶର ସ୍ଥାପନ କାଳ ସମ୍ବନ୍ଧରେ ହଣ୍ଟର ଷ୍ଟର୍ଲିଂଙ୍କ ସଙ୍ଗେ ଏକମତ ହୋଇଅଛନ୍ତି । କୌଣସି କୌଣସି ରାଜାଙ୍କ ଶାସନ କାଳର ପରିମାଣ ସମ୍ବନ୍ଧରେ ଦୁହିଁଙ୍କର ମତଭେଦ ଥିଲେହେଁ ସେ ସବୁର ସଂଖ୍ୟା ବେଶୀ ନୁହେ—କିମ୍ବା ପାର୍ଥକ୍ୟର ପରିମାଣ ବେଶୀ ନୁହେଁ,

Digitized by srujanika@gmail.com

ଅତଏବ ଦେଶୀୟ ଉପାଦାନ ଦେଶୀ ଲେଖକର ଅଜ୍ଞାର କଳ୍ପନା ହେବା ଅସମ୍ଭବ ।

ଅତି ପ୍ରାଚୀନ କାଳରୁ ଓଡ଼ିଶା ଚୀନ ପ୍ରଭୃତି ବିଦେଶ ସଙ୍ଗେ ବାଣିଜ୍ୟ କରୁଥିଲା । ଚୀନ ଓ ଓଡ଼ିଶାର ରାଜାମାନଙ୍କ ମଧ୍ୟରେ ସମସ୍ତ ସମୟରେ ଉପଢୌକନର ଆଦାନ ପ୍ରଦାନ ହେଉଥିଲା । ଦାଠାବଂଶ, ଲଳିତବିସ୍ତର ଓ ସିଂହଳ ପ୍ରଭୃତି ବୌଦ୍ଧ ଗ୍ରନ୍ଥମାନଙ୍କରେ ଏହାର ପ୍ରମାଣ ମିଳେ । ୭୯୫ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ରାଜା ଜଣେ ଶୁଭକର କେଶରୀ ଚୀନ୍ ରାଜାଙ୍କ ନିକଟକୁ କେତେକ ଉପଢୌକନ ପଠାଇଥିଲେ । ଫ୍ଲିଟ୍ ତଥା ଗାଙ୍ଗୁଲିଙ୍କ ମତାନୁସାରେ ଯଦି କେଶରୀ ବଂଶକୁ ଏକାଦଶ ଶତାବ୍ଦୀରେ ସ୍ଥାନ ଦିଆଯାଏ, ତାହାହେଲେ ଅଷ୍ଟମ ଶତାବ୍ଦୀରେ ଜଣେ କେଶରୀଙ୍କ ନାମ ଆସିଲା କେଉଁଆଡ଼ୁ ? ସୁତରାଂ କେଶରୀବଂଶର ସ୍ଥାପନ କାଳ ସମ୍ବନ୍ଧରେ ଦେଶୀୟ ଉପାଦାନକୁ ବିଶ୍ୱାସ କରିବା ଯୁକ୍ତିସଙ୍ଗତ ।

ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀ କେଶରୀବଂଶର ସ୍ଥାପନ କାଳ । ଓଡ଼ିଶାର କେତେକ ମନ୍ଦିର ଏହି ସମୟରେ ନିର୍ମିତ ହୋଇଥିବ । ଅନ୍ତତଃ ଯାଜପୁରର ଧମୀଣ ଭୁବନେଶ୍ୱରର ଅନେକ ଯଯାତିଙ୍କର କାର୍ଯ୍ୟ । ଏହି ସ୍ଥାନ ଓ ସମୟର ମନ୍ଦିର ସବୁରେ ଗଜସିଂହ ଦେଖାଯାଏ । ତାହାହେଲେ ସ୍ଥାପତ୍ୟ ଶିଳ୍ପ ମଧ୍ୟରେ ଓଡ଼ିଶା ମନ୍ଦିରର ଗଜସିଂହ ପ୍ରାଚୀନତମ ନିଦର୍ଶନ । ଅତଏବ ଗଜସିଂହ ଓଡ଼ିଆର ଆଦିମ କଳ୍ପନା ହେବା ଅସଙ୍ଗତ ନୁହେଁ । ଅନ୍ୟାନ୍ୟ ଅଞ୍ଚଳର ଲୋକେ ଏହିଠାରୁ ଅନୁକରଣ କରି ପାରିଥାନ୍ତି ।

ବାସ୍ତବରେ ଗଜସିଂହର ଚର୍ଚ୍ଚା ଓ ବ୍ୟବହାର ଓଡ଼ିଶାରେ ଯେପରି ଦେଖାଯାଏ, ଅନ୍ୟତ୍ର ସେପରି ଦେଖାଯାଏ ନାହିଁ । ଓଡ଼ିଶା ସଙ୍ଗେ ଏହାର କୌଣସି ବିଶେଷ ସମ୍ବନ୍ଧ ନଥିଲେ, ଏହାର ଏତାଦୃଶ ଅନନ୍ୟସାଧାରଣ ଚର୍ଚ୍ଚା ଓ ବ୍ୟବହାର ଓଡ଼ିଶାରେ କାହିଁକି ହୁଅନ୍ତା ? ଓଡ଼ିଆ କାରିଗର ଏହାକୁ ତିନି ପ୍ରକାରରେ ବିଭକ୍ତ କରିଅଛି—ଓଲଟା ଗଜ-ବିରାଜ ସିଂହ, ଓଲଟ ଗଜସିଂହ ଓ ଛିଡ଼ା, ହିଡ଼ା, ଗଜସିଂହ । ଓଡ଼ିଆ ଶିଳ୍ପଶାସ୍ତ୍ରରେ ପ୍ରତ୍ୟେକ ପ୍ରକାର ଗଜସିଂହର ଆକୃତି ବର୍ଣ୍ଣିତ ହୋଇଅଛି । କେଉଁ ପ୍ରକାର ଗଜସିଂହ ମନ୍ଦିରର କେଉଁ ସ୍ଥାନରେ ସ୍ଥାପିତ ହେବ, ତାହାର ମଧ୍ୟ ବିଧାନ ଅଛି । ପୁଣି ଏହି ଗଜସିଂହର ଆକୃତି ଠିକ୍ ପ୍ରକୃତିର ଅନୁକରଣରେ ଗଠିତ ନୁହେଁ । ପ୍ରକୃତ ସିଂହକୁ ପଥରରେ ଠିକ୍ ଅନୁକରଣ କରିବାପାଇଁ ଓଡ଼ିଆ କାରିଗରର ଯଥେଷ୍ଟ ଶକ୍ତି ଥିଲା । ଭୁବନେଶ୍ୱରରେ ମୁକ୍ତେଶ୍ୱର ମନ୍ଦିରର ଜଗମୋହନ ଉପରେ ଯେଉଁ ସିଂହ ଅଛି, ସେ ଏହି ଶକ୍ତିର ଦୃଷ୍ଟାନ୍ତ । ଆଉ ମଧ୍ୟ ଓଡ଼ିଆ କାରିଗରର ସିଂହ ତିନିପ୍ରକାର—ଜଡ଼ାସିଂହ, ଝାପାସିଂହ

Digitized by srujanika@gmail.com

ଓ କ୍ଷେପା ସିଂହ । କିନ୍ତୁ ଏହି ସ୍ୱତନ୍ତ୍ର ସିଂହସବୁ ଗଜସିଂହର ସିଂହଠାରୁ କିଞ୍ଚିତ୍ ପୃଥକ୍ ହୋଇନଥିଲା ପରି ବୋଧହୁଏ । ତେବେ ଜାଣି ଶୁଣି କାରିଗର କାହିଁକି ଗଜସିଂହର ସିଂହକୁ ଅପ୍ରାକୃତ କରିଅଛି ? ବୋଧହୁଏ ଓଡ଼ିଆ କାରିଗର ଗଜସିଂହର ସିଂହକୁ ସ୍ୱତନ୍ତ୍ର ଦୃଷ୍ଟିରେ ଦେଖିଅଛି ଏବଂ ସ୍ୱଦେଶରେ କୌଣସି ବିଶେଷ ଘଟଣାର ଚିହ୍ନ ସ୍ୱରୂପ ଏହା ସର୍ବପ୍ରଥମେ ବ୍ୟବହୃତ ହୋଇଅଛି । ଓଡ଼ିଆ କାରିଗର ଉତ୍ସାହର ଆବେଗରେ ଏହାର ଉପରେ କଳ୍ପନାପ୍ରସୂତ ଛାପ ଦେଇ ଏହାକୁ ପ୍ରକୃତିରୁ କିଞ୍ଚିତ ପୃଥକ କରିଅଛି । ଏହି ଉତ୍ସାହର ଫଳରେ ଓଡ଼ିଆ ଶିଳ୍ପଶାସ୍ତ୍ରରେ ଗଜସିଂହ ସମ୍ବନ୍ଧରେ ନାନା ସ୍ୱତନ୍ତ୍ର ବିଧାନ ରହିଅଛି । ଗଜସିଂହ ଓଡ଼ିଶା ଇତିହାସରେ କୌଣସି ଘଟଣାର ଚିହ୍ନସ୍ୱରୂପ ହୋଇ ପ୍ରଥମେ ଶିଳ୍ପରାଜ୍ୟରେ ଅବତରଣ କରିଥିଲେ ହେଁ ମନ୍ଦିରର ଶ୍ରୀବୃଦ୍ଧି ଉପରେ ଅଳ୍ପ ସହାୟତା କରି ନାହିଁ । ସେଥିପାଇଁ ବୋଧହୁଏ ଓଡ଼ିଶାର ପରଯୁଗର ଶିଳ୍ପୀମାନେ, ତଥା ଭାରତର ଅନ୍ୟାନ୍ୟ ଅଞ୍ଚଳର ଲୋକେ ସ୍ୱ ସ୍ୱ ପ୍ରଦେଶରେ ଏହାର ଅନୁକରଣ କରିଅଛନ୍ତି ।

ତେବେ ଗଜସିଂହ ଓଡ଼ିଶା ଇତିହାସରେ କେଉଁ ଘଟଣାର ଚିହ୍ନ ହୋଇପାରେ ? ଅବଶ୍ୟ ଏହା କେଶରୀବଂଶ ଦ୍ୱାରା ଗଜପତିବଂଶର ପରାଜୟର ଚିହ୍ନ ନୁହେଁ । ଗଜପତିମାନେ କେଶରୀବଂଶର ପରବର୍ତ୍ତୀ ରାଜା ; ବରଂ କେଶରୀବଂଶୀୟ-ମାନେ ଓଡ଼ିଶାରେ ବୌଦ୍ଧଧର୍ମର ଉଚ୍ଛେଦ ସାଧନ କରି ଅଛନ୍ତି । ଅସି ମୁନରେ ସେମାନେ ଏହା କରି ନାହାନ୍ତି, କେବଳ କୌଶଳ ଅବଲମ୍ବନ କରି କାଳକ୍ରମେ ବୌଦ୍ଧଧର୍ମକୁ ବ୍ରାହ୍ମଣ୍ୟଧର୍ମ ଦ୍ୱାରା ଘୋଡ଼ାଇ ପକାଇଅଛନ୍ତି । ବୌଦ୍ଧ ତଥା ଦେଶର ସାଧାରଣ ଲୋକେ ଏହି କୌଶଳ ବୁଝିପାରି ନାହାନ୍ତି । ମହାଯାନ ପନ୍ଥାର ଆଦର ବଢ଼ିବା ସଙ୍ଗେ ସଙ୍ଗେ ଏହି କୌଶଳର ପ୍ରୟୋଗ ପାଇଁ ବେଶୀ ବେଶୀ ସୁବିଧା ହୋଇଅଛି । ଏହିପରିଭାବରେ ବୌଦ୍ଧମାନେ ଅଜ୍ଞାତସାରରେ ବ୍ରାହ୍ମଣ୍ୟ ଧର୍ମର ଅନ୍ତର୍ଭୁକ୍ତ ହୋଇଅଛନ୍ତି । ଏହି ଧର୍ମ ବିନାଶ ବ୍ୟାପାର ଗଜସିଂହ ଦ୍ୱାରା ଦେଶରେ ବ୍ୟରିଅତେ ଚିହ୍ନିତ ହୋଇଅଛି କି ? ତାହାହେଲେ ରାଜାଦେଶମତେ କାରିଗର ଏହି ଅଭିନବ ଚିହ୍ନର କଳ୍ପନା କରିଥିବ । ବାସ୍ତବରେ ତଦାନୀନ୍ତନ ବ୍ରାହ୍ମଣ ମନ୍ଦିରସବୁ ବୌଦ୍ଧପ୍ରଧାନ ଓଡ଼ିଶାର ବକ୍ଷରେ ଗୋଟିଏ ଗୋଟିଏ ସିଂହ ପରି ପ୍ରତିଭାତ ହେଉଥିବ ।

କେଶରୀବଂଶୀୟମାନେ ପ୍ରଧାନତଃ ଶୈବ ଥିଲେ । ପ୍ରଧାନତଃ କହିବାର ଉଦ୍ଦେଶ୍ୟ; ସେମାନଙ୍କ ମଧ୍ୟରୁ କେହି କେହି ବୈଷ୍ଣବ ଥିଲେ ପରି ବୋଧହୁଏ । ଶୈବମାନେ ଶିବଙ୍କ ପତ୍ନୀ ଦୁର୍ଗାଙ୍କୁ ପୂଜା କରିଥାନ୍ତି । ଶୈବ ଓ ଶାକ୍ତ ଦୁଇଟି ଭିନ୍ନ ମତ ହେଲେହେଁ, ଦୁହିଁଙ୍କୁ ପରସ୍ପରଠାରୁ ପୃଥକ୍ କରିବା ଅସମ୍ଭବ । ଶୈବମାନଙ୍କୁ ଶାକ୍ତ ମଧ୍ୟ କୁହାଯାଇପାରେ । କେଶରୀବଂଶୀୟମାନେ ଶୈବ

Digitized by srujanika@gmail.com

ଥିଲେ ହେଁ ଶାକ୍ତ ମତରେ ଦୁର୍ଗା ବା ପାର୍ବତୀଙ୍କୁ ପୂଜା କରିବା ଅସମ୍ଭବ ନୁହେଁ । ସେମାନଙ୍କ ଶୈବ ମନ୍ଦିର ସବୁରେ ପାର୍ଶ୍ୱଦେବତା ଦୁର୍ଗା ବା ପାର୍ବତୀ ଓ ତାହାଙ୍କ ଦୁଇପୁତ୍ର । ସ୍ଥାନେ ସ୍ଥାନେ ପାର୍ବତୀଙ୍କ ପାଇଁ ମଧ୍ୟ ସ୍ୱତନ୍ତ୍ର ମନ୍ଦିର ଅଛି । ଅତଏବ ଅନୁମିତ ହୁଏ, ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀବେଳକୁ ଓଡ଼ିଶାରେ ଶାକ୍ତଧର୍ମର ପ୍ରଚଳନ ହୋଇଥିଲା ଏବଂ ଶୈବମାନେ ଶିବଙ୍କ ସଙ୍ଗେ ସଙ୍ଗେ ଦୁର୍ଗା ବା ପାର୍ବତୀଙ୍କୁ ପୂଜା କରୁଥିଲେ । ତେବେ ଲିଙ୍ଗ ଓ ଶକ୍ତିର ଏକତ୍ର ନିର୍ମାଣ ପ୍ରଥା ଆହୁ କିଛି କାଳ ପରେ ଆଗତ ହୋଇଥିଲା ପରି ବୋଧହୁଏ । କେଶରୀବଂଶର ପ୍ରାଥମିକ ମନ୍ଦିର ସବୁରେ କେବଳ ଲିଙ୍ଗ ଦେଖାଯାଏ । ଯାଜପୁରର ଝଲସ୍ୱେଶ୍ୱର ମନ୍ଦିର ଅତି ପ୍ରାଚୀନ । ଲୋକେ ଏହାକୁ ଯଯାତିଙ୍କର କୀର୍ତ୍ତି ବୋଲି ଅଦ୍ୟାପି କହନ୍ତି । ଏହି ମନ୍ଦିରରେ କେବଳ ଲିଙ୍ଗ ପରିଦୃଷ୍ଟ ହୁଏ । ଭୁବନେଶ୍ୱରରେ ମଧ୍ୟ ଅନେକ ମନ୍ଦିରରେ ଶକ୍ତିର କୌଣସି ଚିହ୍ନ ନାହିଁ । ଯେ କେତୋଟି ପ୍ରାଥମିକ ମନ୍ଦିରରେ ଲିଙ୍ଗ ଶରୀରରେ ଶକ୍ତି ଦେଖାଯାଏ, ସେଠାରେ ହୁଲସ୍ୱର ଆକୃତି ପ୍ରତି ଦୃଷ୍ଟିପାତ କଲେ ବୋଧହୁଏ ଯେପରିକି ଶକ୍ତିର ସମାବେଶ ଲିଙ୍ଗ ସ୍ଥାପନ ସଙ୍ଗେ ସଙ୍ଗେ ହୋଇନାହିଁ । ଲିଙ୍ଗରାଜ ମନ୍ଦିରର ଲିଙ୍ଗ ସଙ୍ଗେ ଶକ୍ତି ଅଛି କିନ୍ତୁ ଲିଙ୍ଗ ତୁଳନାରେ ଶକ୍ତିର ଆକୃତି ଅତି ବୃହତ୍ । ପୁଣି ଶକ୍ତି ଉପରେ ଲିଙ୍ଗ ପ୍ରାୟ ଛ ସାତ ଅଙ୍ଗୁଳି ମାତ୍ର ପରିଦୃଷ୍ଟ ହେଉଅଛି । ଏଠାରେ ଲିଙ୍ଗ ସ୍ଥାପନର ବହୁତ୍‌କାଳ ପରେ ଶକ୍ତିର ସମାବେଶ ହୋଇଥିଲା ପରି ସ୍ପଷ୍ଟ ପ୍ରତୀୟମାନ ହୁଏ । ଲୋକେ ମଧ୍ୟ ଅଦ୍ୟାପି କହନ୍ତି ଲିଙ୍ଗ ଦେହରେ ବହୁ ମଣି, ମୁକ୍ତା ଥିଲା, ସେଥିପାଇଁ କଳାପାହାଡ଼ ଭୟରେ ରାଜା ଏହାକୁ ଘୋଡ଼ାଇ ପକାଇ ଅଛନ୍ତି । ବୋଧହୁଏ; ଶକ୍ତିର ପଶ୍ଚାତ୍ ସ୍ଥାପନ ଏହି ଜନଶ୍ରୁତିର ମୂଳ । ଖୁବ୍ ସମ୍ଭବ, ପଞ୍ଚମ ଶତାବ୍ଦୀ ଓ ତତ୍‌ପରେ କିଛି କାଳଯାଏ ଶିବଙ୍କ ପତ୍ନୀ କେବଳ ପାର୍ଶ୍ୱଦେବତା କିମ୍ବା ସ୍ୱତନ୍ତ୍ର ମନ୍ଦିରରେ ପୂଜିତା ହେଉଥିଲେ । ପରେ ଶକ୍ତିରୂପେ ଲିଙ୍ଗ ଶରୀରରେ ସ୍ଥାନ ପାଇଲେ ।

ଭାରତର ଅନ୍ୟାନ୍ୟ ଅଞ୍ଚଳରେ ମଧ୍ୟ ଏହି ସମୟରେ ଶିବଙ୍କ ପତ୍ନୀ ପୂଜିତା ହେଉଥିବାର ପ୍ରମାଣ ମିଳେ । ପ୍ରାୟ ୭୦୦ ଖ୍ରୀଷ୍ଟାବ୍ଦରେ ନିର୍ମିତ ଏଲୋରା ମନ୍ଦିରରେ ମୁଣ୍ଡମାଳ ଭୈରବ ଓ କରାଳୀ କାଳୀଙ୍କର ମୂର୍ତ୍ତି ଦେଖାଯାଏ । ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର ପଲ୍ଲବକୀର୍ତ୍ତି ମଧ୍ୟରେ ମହିଷାସୁର ମର୍ଦ୍ଦିନୀ ଦୁର୍ଗାଙ୍କ ମୂର୍ତ୍ତି ଆବିଷ୍କୃତ ହୋଇଅଛି । ଅଲ୍ଲାହାବାଦଠାରେ ଶିବ ଓ ପାର୍ବତୀଙ୍କର ସୁନ୍ଦର ମୂର୍ତ୍ତି ଆବିଷ୍କୃତ ହୋଇଅଛି । ଏ ମୂର୍ତ୍ତି ପ୍ରାୟ ୪୫୮ ବା ୪୫୯ ଖ୍ରୀଷ୍ଟାବ୍ଦ ଅର୍ଥାତ୍ ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ନିର୍ମିତ ବୋଲି ଅନୁମିତ ହୋଇଅଛି ।

Digitized by srujanika@gmail.com

ଦୁର୍ଗା ବା ପାର୍ବତୀ ସିଂହବାହିନୀ । ଲିଙ୍ଗରାଜ ମନ୍ଦିରରେ ପାର୍ଶ୍ୱଦେବୀ ପାର୍ବତୀଙ୍କ ବାହନ ସିଂହ । ପକ୍ଷାନ୍ତରରେ ବୌଦ୍ଧ ମତରେ ହସ୍ତୀ ଏକ ପବିତ୍ର ପଶୁ । ବୌଦ୍ଧ ମନ୍ଦିରର ଦ୍ୱାର ଦେଶରେ ଗୋଟିଏ ଗଜଲକ୍ଷ୍ମୀ ମୂର୍ତ୍ତି ଥାଏ । ଏହି ଅନୁକରଣରେ ପ୍ରାଚୀନ ବ୍ରାହ୍ମଣ ମନ୍ଦିରର ଦ୍ୱାର ଦେଶରେ ମଧ୍ୟ ଏହି ମୂର୍ତ୍ତି ଥିବାର ଦେଖାଯାଏ । ହାତୀ ଏହି ମୂର୍ତ୍ତିର ପ୍ରଧାନ ଅଙ୍ଗ । ଲକ୍ଷ୍ମୀଙ୍କ ଦୁଇ ପାର୍ଶ୍ୱରେ ହାତୀ ଦୁଇଟି ଶୁଣ୍ଢ ଟେକିଥାନ୍ତି । ବୌଦ୍ଧମାନେ ଏହି ମୂର୍ତ୍ତିକୁ 'ଶ୍ରୀ' ବା 'ଶିରମା' ଦେବତା କହନ୍ତି । ବୌଦ୍ଧ ମତରେ ଦ୍ୱାର ଦେଶରେ 'ଶ୍ରୀ'ର ସ୍ଥାପନ ସୌଭାଗ୍ୟ ଚିହ୍ନ । ଏହାଛଡ଼ା ବୌଦ୍ଧ ମନ୍ଦିରଗୁଡ଼ିକର ଦେହରେ ହାତୀ ବହୁଳ ଭାବରେ ଖୋଦିତ ହୋଇଥିବାର ଦେଖାଯାଏ । ବୋଧହୁଏ, ଶିବଭକ୍ତ କେଶରୀବଂଶୀୟମାନେ ଓଡ଼ିଶାରେ ବ୍ରାହ୍ମଣ୍ୟ ଧର୍ମର ପୁନଃ ସ୍ଥାପନ କରି ବୌଦ୍ଧଧର୍ମ ବିନାଶର ଚିହ୍ନ ସ୍ୱରୂପ ଗଜ ଉପରେ ଦୁର୍ଗାଙ୍କ ବାହନ ସିଂହ ବସାଇଛନ୍ତି । ଅବଶ୍ୟ ବୃଷଭ ଶିବଙ୍କ ବାହନ, ତଥାପି ଶିବ ପତ୍ନୀଙ୍କ ବାହନ ସିଂହ ସେମାନଙ୍କ ନୂତନ କଳ୍ପନା ପକ୍ଷରେ ଉପଯୋଗୀ ।

ଏହିପ୍ରକାର ଗଜସିଂହର ନାମ 'ଓଲଟା ଗଜ-ବିରଜ-ସିଂହ' । ବିରଜ ବୋଧହୁଏ ବିରଜା ଶବ୍ଦର ଲୌକିକ ଭ୍ରମ । ଯାଜପୁରରେ ବିରଜା ଦେବୀଙ୍କର ମନ୍ଦିର ଅଛି । ଏହି ସ୍ଥାନକୁ ବିରଜା କ୍ଷେତ୍ର କୁହାଯାଏ । ବିରଜାକ୍ଷେତ୍ର ଓଡ଼ିଶାର ପ୍ରାଚୀନତମ ହିନ୍ଦୁ କ୍ଷେତ୍ର । ମହାଭାରତରେ ପାଣ୍ଡବମାନଙ୍କ ତୀର୍ଥ ଭ୍ରମଣ ବର୍ଣ୍ଣନା କଲାବେଳେ କ'ଣ ଏହାର ନାମ ଉଲ୍ଲେଖ କରିଅଛନ୍ତି ? ଯଯାତି ଓଡ଼ିଶା ଜୟ କରି ଏହିଠାରେ ରାଜଧାନୀ ସ୍ଥାପନ କରିଥିଲେ । କଥିତ ଅଛି—ସେ ବ୍ରାହ୍ମଣ ଆଣି ଏହିଠାରେ ଯଜ୍ଞକ୍ରିୟା କରାଇଥିଲେ ଏବଂ ଯଜ୍ଞକୁଣ୍ଡରୁ ଦୁର୍ଗାଦେବୀ ବିରଜା ରୂପରେ ଆବିର୍ଭୂତା ହୋଇଥିଲେ । ସେହିଦିନଠାରୁ ଏ ସ୍ଥାନର ନାମ ଯଥାକ୍ରମେ ଯଜ୍ଞପୁର ବା ଯାଜପୁର ଓ ବିରଜାକ୍ଷେତ୍ର ହୋଇଅଛି । ଆଧୁନିକ ଯାଜପୁର ଅବଶ୍ୟ ଯାଜପୁରର ନାମାନ୍ତର । ଯଯାତି ଏହିଠାରେ ବହୁ ରାଜ୍ୟ ଶାସନ ଓ ବୌଦ୍ଧଧର୍ମର ଦମନ ସମ୍ବନ୍ଧରେ ନାନା ଚେଷ୍ଟା କରିଥିଲେ । ବୋଧହୁଏ, ବିରଜା ମନ୍ଦିର ତାଙ୍କର କୀର୍ତ୍ତି । ଯଜ୍ଞକୁଣ୍ଡରୁ ଦେବୀଙ୍କ ଆବିର୍ଭାବ କିମ୍ବଦନ୍ତୀ ଓ ମନ୍ଦିର ଦେହରେ ବହୁ ପ୍ରାଚୀନ ଶିଳାଲେଖ ଏହାର ପ୍ରମାଣ । ତେବେ ଏହି ବିରଜାଦେବୀଙ୍କ ବାହନ ସିଂହକୁ ବ୍ରାହ୍ମଣ ଧର୍ମର ଚିହ୍ନ ସ୍ୱରୂପ ଗଜ ଉପରେ ବସାଇ ଥିଲେ ତାହେଲେ ଧର୍ମୋଦ୍ଧାର ପ୍ରସଙ୍ଗ ସ୍ମରଣ କରିବା ଯଯାତି ଓ ତାଙ୍କ ବଂଶଧରମାନଙ୍କ ପକ୍ଷରେ ସ୍ୱାଭାବିକ । ସେହିଦିନଠାରୁ ବୋଧହୁଏ ବିରଜା ଦେବୀଙ୍କ ନାମ ଲୌକିକ 'ବିରଜ ସିଂହ' ନାମରେ ରକ୍ଷିତ ହୋଇଅଛି । ପରବର୍ତ୍ତୀ ରାଜାମାନେ ଏହି ପ୍ରଥା ସର୍ବଦା ଅନୁକରଣ କରିଅଛନ୍ତି । ଏପରିକି କାଳକ୍ରମେ

Digitized by srujanika@gmail.com

ଗଜସିଂହ ମନ୍ଦିର ଦେହରେ କେବଳ ଏକ ଅଳଙ୍କାର ସ୍ୱରୂପ ପରିଗଣିତ ହୋଇଅଛି ।

ପୂର୍ବେ କୁହାଯାଇଅଛି, ବୌଦ୍ଧ ଧର୍ମର ଉଚ୍ଛେଦ ସାଧନ ସଜରେ କେଶରୀବଂଶୀୟମାନେ ମହା କୌଶଳ ପ୍ରୟୋଗ କରିଥିଲେ । କିନ୍ତୁ ଗଜସିଂହ ଦ୍ୱାରା ସ୍ୱଧର୍ମ ବିନାଶ ବ୍ୟାପାର ଚିତ୍ରିତ କରାଯିବା ହେତୁରୁ ତଦାନୀନ୍ତନ ବୌଦ୍ଧମାନେ ରାଜ୍ୟ ମଧ୍ୟରେ ମହା ବିପ୍ଳବ ଘଟାଇଥିବେ । ଅନ୍ତତଃ ବିପ୍ଳବ ଘଟାଇଥିବେ । ଅନ୍ତତଃ ବିପ୍ଳବ ଘଟାଇବା ସମ୍ଭବ । ତେବେ କେଶରୀବଂଶର କୌଶଳ କେଉଁଠାରେ ? କିନ୍ତୁ ଏହି କାର୍ଯ୍ୟ ହିଁ ସେମାନଙ୍କ କୌଶଳର ବିଶିଷ୍ଟ ପରିଚୟ । ଧର୍ମୋଚ୍ଛେଦର ପ୍ରସଙ୍ଗକୁ ଚିତ୍ରିତ କରିବା ପାଇଁ ଯଥାର୍ଥ ଗଜସିଂହକୁ ପସନ୍ଦ କରିଥିଲେ; କାରଣ ବୌଦ୍ଧମାନଙ୍କୁ ବୁଝାଇ ଦେବା ପାଇଁ ଏହାର ଅନ୍ୟ ଅର୍ଥ ଥିଲା । ପୁଣି ଏହାର ପ୍ରକୃତ ଅର୍ଥ ସାଧାରଣ ଲୋକଙ୍କୁ ଜଣା ନଥିବ ।

ବୌଦ୍ଧ ମତରେ ଗଜ, ସିଂହ, ବୃଷ ଓ ଅଶ୍ୱ ଯଥାକ୍ରମେ ପୂର୍ବ, ଉତ୍ତର, ପଶ୍ଚିମ ଓ ଦକ୍ଷିଣ ଦିଗର ରକ୍ଷକ । ଯେଉଁ ଦିଗର ଜୟ ପାଇଁ ସ୍ତମ୍ଭ ନିର୍ମିତ ହେଉଥିଲା, ଅଶୋକ ସେହି ଦିଗର ପାଳକଙ୍କୁ ସେହି ସ୍ତମ୍ଭ ଉପରେ ବସାଇ ଥିଲେ । ଓଡ଼ିଶା ପ୍ରାଚୀନ ଗ୍ରନ୍ଥ ସମୂହରେ ହଂଡା ପୂର୍ବଖଣ୍ଡ ଭାବରେ ପରିଚିତ । ସେଥିପାଇଁ ବୋଧହୁଏ ଧଉଳି ଅନୁଶାସନ ଉପରେ ହସ୍ତୀଶୁଣ୍ଡ ନିର୍ମିତ ହୋଇଅଛି । କେଶରୀବଂଶୀୟମାନେ ଉତ୍ତର ଦିଗରୁ ଆସି ପୂର୍ବଖଣ୍ଡ ଅର୍ଥାତ୍ ଓଡ଼ିଶା ଜୟ କରିଥିଲେ । ତେବେ ଉତ୍ତର ଦିଗର ରକ୍ଷକ ସିଂହ ପୂର୍ବଦିଗର ରକ୍ଷକ ଗଜ ଉପରେ ସ୍ଥାନ ନେଇ ଦେଶ ବିଜୟ ବା ରାଜ୍ୟ ସ୍ଥାପନ ବ୍ୟାପାରକୁ ଚିତ୍ରିତ କରୁଅଛି । ଓଡ଼ିଶାର ତଦାନୀନ୍ତନ ବୌଦ୍ଧମାନେ ନିଜ ମତାନୁସାରେ ଗଜସିଂହର ଏହି ଅର୍ଥଦ୍ୱାରା ସନ୍ତୁଷ୍ଟ ହୋଇଥିବେ । ଫଳରେ ନିଜ ଧର୍ମ ବିପକ୍ଷରେ ଏଥିରେ କିଛି ଅଛି କି ନାହିଁ, ତତ୍ପ୍ରତି ବିଶେଷ ଭାବରେ ଲକ୍ଷ୍ୟ କରି ନଥିବେ ।

କେଶରୀବଂଶୀୟମାନେ ଉତ୍ତର ଦିଗରୁ ଆସି ପୂର୍ବଖଣ୍ଡ ଅର୍ଥାତ୍ ଓଡ଼ିଶା ଜୟକରି ବୌଦ୍ଧଧର୍ମର ଉଚ୍ଛେଦ ସାଧନ କରିଥିବା ବିଷୟ ଅନ୍ୟ ଗୋଟିଏ ଅନୁଷ୍ଠାନରେ ଚିତ୍ରିତ ହୋଇଅଛି ବୋଲି ବୋଧହୁଏ । ଭୁବନେଶ୍ୱରରେ ପ୍ରତିବର୍ଷ ଅଶୋକାଷ୍ଟମୀ ଦିନ ରଥଯାତ୍ରା ହୁଏ । ସ୍ୱର୍ଣ୍ଣାଦ୍ରି ମହୋଦୟର ଏକବିଂଶ ଅଧ୍ୟାୟରେ ଏହି ଯାତ୍ରାର ବିଧି ବର୍ଣ୍ଣିତ ହୋଇଅଛି । ଯାତ୍ରାର ପୂର୍ବଦିନ ରଥର ଉତ୍ତର ପାର୍ଶ୍ୱରେ ଯଜ୍ଞ ଅନୁଷ୍ଠିତ ହୁଏ । ଯଜ୍ଞକୁଣ୍ଡର ଈଶାନ୍ୟ କୋଣରେ ପୂର୍ଣ୍ଣାହୁତି ଦିଆଯାଏ । ରଥ ଉପରେ ଗୋଟିଏ କାଷ୍ଠ ଅଶ୍ୱ ଓ ଗୋଟିଏ କାଷ୍ଠ ସାରଥି ସ୍ଥାପିତ ହୁଏ । ଯାତ୍ରାଦିନ ବ୍ରାହ୍ମଣମାନେ ମନ୍ତ୍ରୋଚ୍ଚାରଣ କରି ସ୍ତବ ଅଶ୍ୱଙ୍କୁ ସ୍ତବବେଦ ଏବ

Digitized by srujanika@gmail.com

ସାରଥିଙ୍କୁ ବ୍ରହ୍ମା କଳ୍ପନା କରନ୍ତି । ବାମ ଓ ଦକ୍ଷିଣ ପାର୍ଶ୍ୱର ରଥ ଚକରେ ଯଥାକ୍ରମେ ଚନ୍ଦ୍ର ଓ ସୂର୍ଯ୍ୟ କଳ୍ପିତ ହୁଅନ୍ତି । ରଥ ଧାରଣ ପାଇଁ ପୃଥିବୀକୁ ମଧ୍ୟ ପୂଜା କରାଯାଏ । ରଥର ନାମ 'ଦେବଦଳନ' । ବ୍ରାହ୍ମଣର ଦେବତା ଶିବ ଏହି 'ଦେବ-ଦଳନ' ରଥରେ ଶତ୍ରୁ ଜୟ କରିବା ପାଇଁ ଯା'ନ୍ତି । ତାହାଙ୍କର ସାରଥି ବ୍ରହ୍ମା, ଅଶ୍ୱ ସ୍ୱରଦେବ, ରଥଚକ୍ର ଚନ୍ଦ୍ର ଓ ସୂର୍ଯ୍ୟ ଏବଂ ରଥ ଧାରଣୀ ପୃଥିବୀ । ତେବେ ଏଠାରେ ଶତ୍ରୁ କିଏ ? ଦେଉଳ ଉତ୍ତର ପାର୍ଶ୍ୱରେ ବ୍ରାହ୍ମଣର ଯଜ୍ଞ ଅନୁଷ୍ଠିତ ହୁଏ । ବାମ ଅଥବା ଉତ୍ତର ପାର୍ଶ୍ୱର ଚକରେ ଚନ୍ଦ୍ର କଳ୍ପିତ ହୁଅନ୍ତି । କେଶରୀ ବଂଶୀୟମାନେ ଉତ୍ତର ଦିଗରୁ ଆସିଥିଲେ ଏବଂ ସେମାନେ ଚନ୍ଦ୍ରବଂଶୀ ବୋଲି କତିପୟ ଅନୁଶାସନରୁ ଜଣାଯାଏ । ପୁଣି ପୂର୍ବ ଓ ଉତ୍ତର ଦିଗର ମଧ୍ୟସ୍ଥ ଈଶାନ୍ୟ କୋଣରେ ପୃଷ୍ଠୀହସ୍ତ ଦିଆଯାଏ । ପୃଷ୍ଠୀହସ୍ତ ଦ୍ୱାରା ସମସ୍ତ ଶତ୍ରୁ ବିନଷ୍ଟ ହୁଅନ୍ତି ବୋଲି ଶାସ୍ତ୍ରକାରମାନେ କହନ୍ତି । କେଶରୀବଂଶୀୟମାନେ ପୂର୍ବ ରାଷ୍ଟ୍ର ଅର୍ଥାତ୍ ଓଡ଼ିଶାରେ ବୌଦ୍ଧଧର୍ମର ବିଚ୍ଛେଦ ସାଧନ କରିଥିଲେ । ବୋଧହୁଏ କେଶରୀବଂଶ ଦ୍ୱାରା ଓଡ଼ିଶା ବିଜୟ ଓ ବୌଦ୍ଧଧର୍ମର ବିଚ୍ଛେଦ ସାଧନ ବ୍ୟାପାର ରଥଯାତ୍ରାର ଏହି ବିଧିଦ୍ୱାରା ଘୋଷିତ ହୋଇଅଛି । କିନ୍ତୁ ରଥଯାତ୍ରା ବୌଦ୍ଧର ପ୍ରଧାନ ଅନୁଷ୍ଠାନ ଥିବାହେତୁରୁ ବୌଦ୍ଧମାନେ ଉପରୋକ୍ତ ବ୍ରାହ୍ମଣ ବିଧାନ ପ୍ରତି ଦୃଷ୍ଟିପାତ କରି ନଥିଲେ । ବାସ୍ତବରେ ବୌଦ୍ଧ ସାମଗ୍ରୀମାନେ ବ୍ରାହ୍ମଣ୍ୟ ଆବରଣ ଦ୍ୱାରା ଆଚ୍ଛାଦନ ହେବାରୁ ବୌଦ୍ଧମାନେ କାଳକ୍ରମେ ନିଜ ଧର୍ମର ପାର୍ଥକ୍ୟ ଭୁଲି ଯାଇଛନ୍ତି ।

ଏହି ସବୁ ଆଲୋଚନା ଦୃଷ୍ଟିରୁ ଅନୁମିତ ହୁଏ, ରାଜା ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ଧର୍ମୋଦ୍ଧାର ଓ ଦେଶ ବିଜୟର ଚିହ୍ନ ସ୍ୱରୂପ ସର୍ବପ୍ରଥମେ ଗଜସିଂହର କଳ୍ପନା କରିଥିଲେ ଏବଂ ତାଙ୍କ ଆଦେଶମତେ ଓଡ଼ିଆ କାରିଗର ଏହାକୁ ସର୍ବପ୍ରଥମେ ମନ୍ଦିର ଦେହରେ ସ୍ଥାନ ଦେଲେ । କାଳକ୍ରମେ ଏହା ମନ୍ଦିର ଦେହରେ ଏକ ଭୂଷଣ ସ୍ୱରୂପ ବ୍ୟବହୃତ ହେଲା । ଅନ୍ୟ ପ୍ରଦେଶର କାରିଗରମାନେ ମଧ୍ୟ ମନ୍ଦିରର ଭୂଷଣ ରୂପେ ଏହାର ଅନୁକରଣ କଲେ । ଖୁବ୍ ସମ୍ଭବ, କେଶରୀବଂଶର 'କେଶରୀ' ଉପାଧି ଦେଶ-ବିଜୟ ଓ ଧର୍ମୋଦ୍ଧାର ପ୍ରସଙ୍ଗର ଦ୍ୟୋତକ ସ୍ୱରୂପ ବ୍ୟବହୃତ ହୋଇଥିଲା । ବାସ୍ତବରେ 'କେଶରୀ' ଡାକ୍ତର ରାଜେନ୍ଦ୍ର ଲାଲଙ୍କ 'କାଇଜର' ଶବ୍ଦର ଅନୁକରଣ ହେବା ଅସମ୍ଭବ ।

(ଉ: ସା: ୧୩।୯୦ ପୃ-୪୦୯)

—o—

Digitized by srujanika@gmail.com

# ପ୍ରାଚୀନ ଉତ୍କଳରେ ଜଳଯାତ୍ରା

## (୧)

### ଓଡ୍ର, ଉତ୍କଳ, କୋଶଳ, କଳିଙ୍ଗ

ଆର୍ଯ୍ୟମାନେ ସୀମାନ୍ତ ପ୍ରଦେଶ ଅତିକ୍ରମ କରିବା ସଙ୍ଗେ ସଙ୍ଗେ ଭାରତବର୍ଷର ଚତୁର୍ଦ୍ଦିଗରେ ବିକୀର୍ଣ୍ଣ ହୋଇଯାଇ ନଥିଲେ । ସେମାନେ ସର୍ବପ୍ରଥମେ ପଞ୍ଜାବ ପ୍ରଦେଶରେ ବାସ କଲେ । କ୍ରମେ ସଂଖ୍ୟା ବୃଦ୍ଧି ହେବାରୁ ଯଥାକ୍ରମେ ପୂର୍ବ ଓ ଦକ୍ଷିଣ ଦିଗକୁ ଅଗ୍ରସର ହେଲେ । ପଞ୍ଜାବରେ ବାସକରୁଥିବା ବେଳେ ମୂଳଗ୍ରନ୍ଥ ଋକ୍‌ବେଦ ରଚିତ ହୋଇଥିଲା । ସେଥିପାଇଁ ଋକ୍‌ବେଦର ପ୍ରାଥମିକ ଶ୍ଳୋକମାନଙ୍କରେ ଭାରତର ବହୁ ଅଞ୍ଚଳ ନାମୋଲ୍ଲେଖ ନଥିବା ସ୍ୱାଭାବିକ । ମାତ୍ର ଏଥିରେ ପଞ୍ଜାବ ଛଡ଼ା ଭାରତର ଅନ୍ୟ ଯେଉଁ କେତେକ ଅଞ୍ଚଳର ନାମୋଲ୍ଲେଖ ଅଛି, ସେଗୁଡ଼ିକ ତଦାନୀନ୍ତନ ଯୁଗରେ ଅବଶ୍ୟ ସୁବିଦିତ ଥିବ । ନଚେତ୍ ବିଦେଶାଗତ ଆର୍ଯ୍ୟମାନେ ପଞ୍ଜାବରେ ଥାଇ ସେ ସବୁର ନାମୋଲ୍ଲେଖ କରି ନଥାନ୍ତେ ।

ମହାଭାରତରେ ଅଛି ଦୀର୍ଘତମା ମୁନିଙ୍କ ପ୍ରସାଦରୁ ବଳିଙ୍କର ପତ୍ନୀ ସୁଦେଷ୍ଣା ପଞ୍ଚପୁତ୍ର ଲାଭ କରିଥିଲେ । ଏହି ପଞ୍ଚପୁତ୍ରଙ୍କ ନାମାନୁସାରେ ଯଥାକ୍ରମେ ଅଙ୍ଗ, ବଙ୍ଗ, କଳିଙ୍ଗ, ସୁହ୍ମ ଓ ପୁଣ୍ଡ୍ର ଦେଶର ନାମକରଣ ହୋଇଥିଲା । ସେହି ହେତୁରୁ ପ୍ରାଚୀନ ସାହିତ୍ୟରେ ଏହି ପାଞ୍ଚଗୋଟି ଦେଶର ନାମ ବିଶେଷତଃ ଅଙ୍ଗ, ବଙ୍ଗ, କଳିଙ୍ଗର ନାମ ଏକସଙ୍ଗରେ କଥିତ ହୋଇଅଛି । ମହାଭାରତର ଏହି ଅଂଶ କେତେଦୂର ପ୍ରାଚୀନ ତାହା କହିବା ସହଜ ନୁହେଁ । ରାମାୟଣ ଓ ମହାଭାରତରେ ଭିତ୍ତି ବହୁ ପ୍ରାଚୀନ ହେଲେହେଁ ତହିଁରେ ପରଯୁଗର ଅନେକ ଅବାନ୍ତର କଳ୍ପନା ପ୍ରକ୍ଷିପ୍ତ ହୋଇଥିବାର ଦେଖାଯାଏ । ବାସ୍ତବରେ ଦେଖିବାକୁ ଗଲେ ଏହି ଦୁଇଟି କାବ୍ୟ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ପ୍ରଚଳିତ ଆକାରରେ ପରିଣତ ହୋଇଅଛି । କିନ୍ତୁ ଋଗ୍‌ବେଦରେ ଉତଥ୍ୟଙ୍କ ପୁତ୍ର ଦୀର୍ଘତମାଙ୍କର ନାମୋଲ୍ଲେଖ ଅଛି । ସୁତରାଂ ମହାଭାରତରେ ଦୀର୍ଘତମାଙ୍କ

Digitized by srujanika@gmail.com

ସମ୍ବନ୍ଧୀୟ ଅଂଶଟି ଯେତେ ପ୍ରାଚୀନ ନ ହେଲେ ମଧ୍ୟ, ଉପରୋକ୍ତ ତୀର୍ଥମାନଙ୍କ ସମ୍ବନ୍ଧୀୟ କିମ୍ବଦନ୍ତୀ ପ୍ରାଚୀନ ହେବାର ସମ୍ଭାବନା ଏବଂ ଏଥିରୁ ଋଗ୍‌ବେଦ ସଦୃଶ ପ୍ରାଚୀନତମ ଗ୍ରନ୍ଥର ରଚନା ସମୟରେ ଅଙ୍ଗ, ବଙ୍ଗ, କଳିଙ୍ଗ, ସୁହ୍ମ ଓ ପୁଣ୍ଡ୍ର ପ୍ରଦେଶର ନାମ ସୂଚିତ ଥିବା ଅନୁମେୟ । ରାମାୟଣ, ମହାଭାରତ ଓ ପୁରାଣ ବ୍ୟତୀତ ଅନ୍ୟାନ୍ୟ ପ୍ରାଚୀନ ସଂସ୍କୃତ ଗ୍ରନ୍ଥମାନଙ୍କରେ ଓଡ୍ର ଓ ଉତ୍କଳର ନାମୋଲ୍ଲେଖ ଦେଖାଯାଏ ନାହିଁ । କିନ୍ତୁ ରାମାୟଣ, ମହାଭାରତ ଓ ପୁରାଣର କେଉଁ ଅଂଶ କେତେ ପ୍ରାଚୀନ ତାହା ସ୍ଥିର ନହେବା ଯାଏ ଆମ୍ଭେମାନେ ଓଡ୍ର ଓ ଉତ୍କଳ ଏହି ଦୁଇ ନାମକୁ ଖ୍ରୀଷ୍ଟୀୟ ତୃତୀୟ ଓ ଚତୁର୍ଥ ଶତାବ୍ଦୀର ପୂର୍ବରେ ସ୍ଥାନ ଦେଇ ନପାରୁ । ପକ୍ଷାନ୍ତରେ 'କଳିଙ୍ଗ' ନାମ ଗୌତମ ବୁଦ୍ଧଙ୍କର ସମସାମୟିକ ଅଥବା ପର ବୋଧହୁଏ ।

ଲଳିତ ବିସ୍ତର ନାମକ ବୌଦ୍ଧ ଗ୍ରନ୍ଥ ଖ୍ରୀଷ୍ଟପୂର୍ବ ୩୦୦ ରୁ ୪୫୦ ଖ୍ରୀ: ଅ: ମଧ୍ୟରେ ରଚିତ ହୋଇଥିଲା । ଏଥିରେ କଳିଙ୍ଗ ଏକ ସ୍ୱତନ୍ତ୍ର ସ୍ୱାଧୀନ ରାଜ୍ୟ ସ୍ୱରୂପ ବର୍ଣ୍ଣିତ ହୋଇଅଛି । କିନ୍ତୁ ଏଥିରେ ଓଡ୍ର ଓ ଉତ୍କଳର ନାମୋଲ୍ଲେଖ ନାହିଁ । ଯେଉଁ ସବୁ ବୌଦ୍ଧ ଗ୍ରନ୍ଥରେ ଶେଷୋକ୍ତ ଦୁଇଟି ନାମର ଉଲ୍ଲେଖ ଅଛି, ସେ ସବୁ ପରବର୍ତ୍ତୀ ଯୁଗର ରଚନା । ମହାରାଜା ଅଶୋକ ଖ୍ରୀ: ପୂର୍ବ ୨୬୧ ଅବ୍ଦରେ କଳିଙ୍ଗ ଜୟ କରି ପୁରୀ ଜିଲ୍ଲା ଜଉଗଡ଼ଠାରେ ଅନୁଶାସନ ଖୋଦନ କରାଇଥିଲେ । କଳିଙ୍ଗ ସେତେବେଳେ ଏକ ସମୃଦ୍ଧିଶାଳୀ ରାଜ୍ୟ ଥିଲା । କିନ୍ତୁ ଓଡ୍ର ଓ ଉତ୍କଳ ନାମ ତଦ୍‌ବଧି ଅଜ୍ଞାତ ।

ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ ଖାରବେଳ ନାମରେ ଜଣେ ପରାକ୍ରାନ୍ତ ରାଜା ଥିଲେ । ସେ ଭୁବନେଶ୍ୱର ନିକଟସ୍ଥ ଖଣ୍ଡଗିରି ପାହାଡ଼ରେ ସ୍ୱକୀୟ ଚରିତ ଖୋଳାଇଥିଲେ । କିନ୍ତୁ ଏହି ଅନୁଶାସନରେ ଓଡ୍ର ବା ଉତ୍କଳ ବୋଲି କୌଣସି ଦେଶର ନାମ ନାହିଁ । ଖାରବେଳଙ୍କ ରାଜ୍ୟର ନାମ 'କଳିଙ୍ଗ' ।

'କଳିଙ୍ଗାଧିପତିନା ଶିରି ଖରବେଲେନ'

ଉପରୋକ୍ତ ଆଲୋଚନାରୁ ପ୍ରତୀୟମାନ ହୁଏ ଯେ, ଋଗ୍‌ବେଦର ରଚନା ସମୟରୁ ଆରମ୍ଭ କରି ଖ୍ରୀ: ପୂ: ଦ୍ୱିତୀୟ ଶତାବ୍ଦୀଯାଏ ଓଡ୍ର ଓ ଉତ୍କଳ ନାମର ପ୍ରଚାର ନଥିଲା । ଏହି କେତେକ ଶତାବ୍ଦୀ ମଧ୍ୟରେ ବୋଧହୁଏ କଳିଙ୍ଗର ସୀମା ଉତ୍ତରରେ ସୁହ୍ମ ପ୍ରଦେଶର ଦକ୍ଷିଣ ସୀମା ଅର୍ଥାତ୍ କପିଶା ନଦୀଠାରୁ ଦକ୍ଷିଣରେ ସ୍ଥୂଳତଃ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଅର୍ଥାତ୍ କପିଶାଠାରୁ ଗୋଦାବରୀ ପର୍ଯ୍ୟନ୍ତ ସମସ୍ତ ଭୂଖଣ୍ଡ କଳିଙ୍ଗ ନାମରେ ଅଭିହିତ ହେଉଥିଲା । ସ୍ଥାନେ ସ୍ଥାନେ

Digitized by srujanika@gmail.com

କଳିଙ୍ଗର ଦକ୍ଷିଣ ସୀମା କୃଷ୍ଣା ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । କପିଶାନଦୀକୁ କଳିଙ୍ଗର ଉତ୍ତର ସୀମା ନିର୍ଦ୍ଦେଶ କରିବାର କାରଣ ଉପର୍ଯ୍ୟୁକ୍ତ ଆଲୋଚନାରୁ ପ୍ରତିପନ୍ନ ହେବ । କପିଶା ଶବ୍ଦ କପିଶାବତୀ ଶବ୍ଦର ସଂକ୍ଷିପ୍ତାକୃତି । ଏହି ନଦୀ ଆଜିକାଲି କସାଇ ବା କଂସାଇ ନାମରେ ମେଦିନୀପୁର ଜିଲ୍ଲା ମଧ୍ୟରେ ପ୍ରବାହିତ ହେଉଅଛି । କିନ୍ତୁ କଳିଙ୍ଗ ଏହି ସୁଦୀର୍ଘ କାଳରେ ଅନନ୍ୟ ଦେଶୀ ଭାବ ଅକ୍ଷୁଣ୍ଣ ରଖି ପାରି ନଥିଲା । କାଳକ୍ରମେ ଏହା ତ୍ରିଧା ବିଭକ୍ତ ହୋଇ ପ୍ରତ୍ୟେକ ଖଣ୍ଡ ଏକ ସ୍ୱତନ୍ତ୍ର ନାମ ଦ୍ୱାରା ଚିହ୍ନିତ ହେଲା ଏବଂ ସେଥିରୁ ତ୍ରିକଳିଙ୍ଗ ଶବ୍ଦର ଉଦ୍ଭବ ହେଲା । ଓଡ଼ିଶାର ରାଜାମାନେ ବହୁକାଳଯାଏ ତ୍ରିକଳିଙ୍ଗାଧିପତି ଉପାଧି ଗ୍ରହଣ କଲେ । ଖ୍ରୀଷ୍ଟୀୟ ପ୍ରଥମ ଓ ଦ୍ୱିତୀୟ ଶତାବ୍ଦୀ ମଧ୍ୟରେ ପ୍ଲିନି ଏହି ତିନି ବିଭାଗର ଭିନ୍ନ ନାମ ଉଲ୍ଲେଖ କରିଅଛନ୍ତି ।

ଯଥା :—(Calinga)

ଗଙ୍ଗାରିଡେସ୍ କଳିଙ୍ଗ (Gangarides Calingae)

ମଡ୍ଡୋ (ମଧ୍ୟ) କଳିଙ୍ଗ (Maddo Calingae)

ଉତ୍ତର ଭାଗ ଗଙ୍ଗାରିଡେସ୍ କଳିଙ୍ଗ ନାମରେ ଅଭିହିତ ହେଲା । ବୋଧହୁଏ, ଗଙ୍ଗାନଦୀର ସନ୍ନିକଟରେ ଥିବାରୁ ପ୍ଲିନି ଏହାକୁ ଏହିପରି ନାମ ଦେଇଛନ୍ତି । ଅଥବା ମଧ୍ୟ ଅନ୍ୟ ଦୁଇଟି ବିଭାଗର ଉତ୍ତରରେ ଅବସ୍ଥିତ ଥିବାରୁ କ୍ରମେ ଲୋକମୁଖରେ ଏହାର 'ଉତ୍ତର କଳିଙ୍ଗ' ନାମ ହୋଇଥିବ । 'ଉତ୍ତର କଳିଙ୍ଗ' ନାମ କ୍ରମଶଃ ସଂକ୍ଷିପ୍ତ ହୋଇ ଯଥାକ୍ରମେ 'ଉତ୍କଳିଙ୍ଗ' ବା 'ଉତ୍କଳ' ଶବ୍ଦରେ ପରିଣତ ହୋଇଥିବ ।

କିନ୍ତୁ ମଡ୍ଡୋ କଳିଙ୍ଗ ବା ମଧ୍ୟ କଳିଙ୍ଗର କୌଣସି ସ୍ୱତନ୍ତ୍ର ଚିହ୍ନ ଦେଖାଯାଏ ନାହିଁ । ବୋଧହୁଏ ଏହାର କିୟଦଂଶ ଉତ୍କଳିଙ୍ଗ ଓ କିୟଦଂଶ କଳିଙ୍ଗ ବା ଦକ୍ଷିଣ କଳିଙ୍ଗର ଅନ୍ତର୍ଭୁକ୍ତ ହୋଇଗଲା । ତଥାପି 'ତ୍ରିକଳିଙ୍ଗ' ନାମ ବହୁକାଳ-ଯାବତ୍ ଜନସ୍ମୃତିରେ ଜାଗ୍ରତ ଥିଲାପରି ବୋଧହୁଏ । ଆଲେକ୍‌ଜାଣ୍ଡର କନିଙ୍ଗହାମ୍ ତ୍ରିକଳିଙ୍ଗ ଅର୍ଥରେ ଅମରାବତୀ, ଓରଙ୍ଗଲ୍ ଓ ରାଜମାହେନ୍ଦ୍ରୀ ଏହି ତିନୋଟି ସ୍ଥାନ ବୁଝିଅଛନ୍ତି । ସେ ଏହି ମତ ସପକ୍ଷରେ କୌଣସି କାରଣ ଦେଇ ନାହାନ୍ତି । ତାଙ୍କର ଅନୁମାନ ଭ୍ରାନ୍ତ ବୋଧହୁଏ ।

ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀ ବେଳକୁ 'ମଧ୍ୟ କଳିଙ୍ଗ' 'ଉତ୍କଳ' ନାମଧାରୀ ଉତ୍କଳିଙ୍ଗ ବା ଉତ୍ତର କଳିଙ୍ଗ ଓ କଳିଙ୍ଗ ବା ଦକ୍ଷିଣ କଳିଙ୍ଗର ଅନ୍ତର୍ଭୁକ୍ତ ହୋଇଯାଇଥିଲା । ସେଥିପାଇଁ ଏହି ଶତାବ୍ଦୀର ପ୍ରଥମ ଭାଗରେ କାଳିଦାସ

Digitized by srujanika@gmail.com

ରଘୁଙ୍କର ଦିଗ୍‌ବିଜୟ ବର୍ଣ୍ଣନା କଲାବେଳେ ବଙ୍ଗୋପସାଗରର ଉପକୂଳରେ 'ଉତ୍କଳ' ଓ 'କଳିଙ୍ଗ' ନାମକ ଦୁଇଟି ମାତ୍ର ବିଭିନ୍ନ ପ୍ରଦେଶର ଉଲ୍ଲେଖ କରିଅଛନ୍ତି ।

"ସେ ତୀର୍ତ୍ୱା କପିଶାଂ ସୈନ୍ୟୈର୍ବଦ୍ଧ ଦ୍ୱିରଦ ସେତୁଭିଃ ।
ଉତ୍କଳା ଦର୍ଶିତ ପଥଃ କଳିଙ୍ଗାଭିମୁଖଂ ଯଯୌ ।"

(ରଘୁବଂଶ—୪ର୍ଥ ସର୍ଗ—୩୮ ଶ୍ଳୋକ)

ଉପରୋକ୍ତ ପଂକ୍ତିରୁ ଜଣାଯାଏ ଯେ, ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀ ବେଳକୁ ପ୍ରାଚୀନ କଳିଙ୍ଗ ରାଜ୍ୟ 'ଉତ୍କଳ' ଓ 'କଳିଙ୍ଗ' ନାମକ ଦୁଇଟି ବିଭିନ୍ନ ରାଜ୍ୟରେ ପରିଣତ ହୋଇଥିଲା । ଉତ୍କଳ ରାଜ୍ୟ ଉତ୍ତରରେ କପିଶା ବା କଂସାଇ ନଦୀଠାରୁ ଦକ୍ଷିଣରେ ବୈତରଣୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ସେହେତୁ ପାଣ୍ଡବମାନେ ଉତ୍କଳ ରାଜ୍ୟ ଅତିକ୍ରମ କରି ଏକ ସମୟରେ ବୈତରଣୀ ନଦୀ ଓ କଳିଙ୍ଗ ରାଜ୍ୟରେ ଉପସ୍ଥିତ ହୋଇଥିଲେ ।

"ତତଃ ସମୁଦ୍ର ତୀରେଣ ଜଗାମ ବସୁଧା ଧିପଃ
ଭ୍ରାତୃଭିଃ ସହିତୋ ବୀରଃ କଳିଙ୍ଗାନ୍ ପ୍ରତି ଭାରତ ।"

ଲୋମଶ ଉବାଚ —

"ଏତେ କଳିଙ୍ଗା କୌନ୍ତେୟ ଯତ୍ର ବୈତରଣୀ ନଦୀ ।
ଯତ୍ରାଽଯଜତ ଧର୍ମୋଽପି ଦେବାଚ୍ଛରଣ ମେତ୍ୟବୈ ।" (ବନପର୍ବ)

ଉତ୍କଳ ଓ କଳିଙ୍ଗ ମଧ୍ୟରେ ଅର୍ଥାତ୍ କପିଶାଠାରୁ କୃଷ୍ଣା ପର୍ଯ୍ୟନ୍ତ ସମସ୍ତ ଉପକୂଳବର୍ତ୍ତୀ ଭୂଖଣ୍ଡରେ ଉତ୍କଳ ଓ କଳିଙ୍ଗ ବ୍ୟତୀତ ଅନ୍ୟ କୌଣସି ରାଜ୍ୟ ଥିଲାପରି ବୋଧ ହୁଏନାହିଁ ।

ଆମ୍ଭେମାନେ ପୂର୍ବେ କହିଅଛୁ, ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ରାମାୟଣ ଓ ମହାଭାରତ ପ୍ରଚଳିତ ଆକାରରେ ରଚିତ ହୋଇଥିଲା । ସୁତରାଂ ଏଥି ବର୍ଣ୍ଣିତ ଦେଶମାନଙ୍କୁ ଆମ୍ଭେମାନେ ଅନ୍ୟ କୌଣସି ଖଣ୍ଡିତ ପ୍ରମାଣ ନଥିବା ସ୍ଥଳେ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର ପ୍ରାକ୍‌କାଳୀନ ଇତିହାସ ମଧ୍ୟରେ ସ୍ଥାନ ଦେଇ ନାହୁଁ । ମହାଭାରତରେ ବନପର୍ବୋକ୍ତ ଉଲ୍ଲିଖିତ ଶ୍ଳୋକ ସଙ୍ଗେ ସଙ୍ଗେ ସଭାପର୍ବ ଓ ଭୀଷ୍ମପର୍ବରେ 'ଉଡ୍ର' ବା 'ଔଡ୍ର' ନାମର ଉଲ୍ଲେଖ ଦେଖାଯାଏ । ଏଥିରୁ ସ୍ପଷ୍ଟ ଅନୁମେୟ ଯେ, ଉଡ୍ର, ଉତ୍କଳ ଓ କଳିଙ୍ଗ ଏହି ତିନି ପ୍ରଦେଶ ସମସାମୟିକ । ମାତ୍ର ଶେଷୋକ୍ତ ଦୁଇଟି ପ୍ରଦେଶର ସୀମା କପିଶା ଓ ଗୋଦାବରୀ ବା କୃଷ୍ଣାର ମଧ୍ୟବର୍ତ୍ତୀ ସମସ୍ତ ଉପକୂଳ ଖଣ୍ଡକୁ ଅଧିକାର କରିଥିବା ସ୍ଥଳେ ଉଡ୍ର ରାଜ୍ୟର ଅବସ୍ଥାନ କେଉଁଠାରେ ଥିଲା ? ପାର୍ଜିଟର କହନ୍ତି, ମାନଭୂମ ଜିଲ୍ଲା ମେଦିନୀପୁରର

Digitized by srujanika@gmail.com

ପଶ୍ଚିମାଞ୍ଚଳ, ସିଂହଭୂମିର ପୂର୍ବ ଅଞ୍ଚଳ ଏବଂ ବାଙ୍କୁଡ଼ା ଜିଲ୍ଲାର ଦକ୍ଷିଣ ଅଞ୍ଚଳକୁ ନେଇ ଏହି ଓଡ୍ର ପ୍ରଦେଶ ଗଠିତ ହୋଇଥିଲା । ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ରଘୁଙ୍କର ଦିଗ୍‌ବିଜୟ ଓ ପାଣ୍ଡବମାନଙ୍କର ତୀର୍ଥଯାତ୍ରା ବର୍ଣ୍ଣନାରେ ଓଡ୍ର ନାମର ଅଭାବ ପାର୍ଜିଟରଙ୍କ ଏହି ଅନୁମାନକୁ ସପ୍ରମାଣ କରୁଅଛି । ଯେହେତୁ ପୂର୍ବାଞ୍ଚଳ ବାଟେ ଯାତ୍ରା କରିଥିବାରୁ ଓଡ୍ର ପ୍ରଦେଶ ସେମାନଙ୍କ ମାର୍ଗରେ ପଡ଼ି ନଥିବ ।

ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀର ପରାର୍ଦ୍ଧରେ ଯଯାତି କେଶରୀଙ୍କର ବିଜୟ ପତାକା ବଙ୍ଗୋପସାଗର ପର୍ଯ୍ୟନ୍ତ ଅଗ୍ରସର ହେଲା । ଉତ୍କଳ ଓ କଳିଙ୍ଗ ରାଜ୍ୟ ତାଙ୍କର ହସ୍ତଗତ ହେଲା । ସେ ଉତ୍ତର ଭାରତରୁ ଅନେକ ବ୍ରାହ୍ମଣ ଆଣି ପ୍ରଦେଶରେ ସେମାନଙ୍କୁ ଭୂମି ଦାନକରି ବସାଇଥିଲେ । ତାଙ୍କ ରାଜତ୍ୱର ନବମ ବର୍ଷ ଅର୍ଥାତ୍ ୪୮୩ ଖ୍ରୀ: ଅ: ରେ ପ୍ରଦତ୍ତ ତାମ୍ର ଶାସନରେ ଅଛି :—

"ମଧ୍ୟ ଦେଶୀୟ ଶ୍ରୀବଲ୍ଲଗ୍ରାମ ବିନର୍ଗତାୟ

ଓଡ୍ର ଦେଶେ

ଶ୍ରୀ ସିଲାଭଞ୍ଜପଟୀ ବାସ୍ତବ୍ୟାୟ × × × ×

ଶ୍ରୀ ଗଙ୍ଗାପାଣି ନାମ୍ନେ ଉବାକର ପୁତ୍ରାୟ × × × × ।

ଯଯାତି ଗଙ୍ଗାପାଣିଙ୍କୁ ମଧ୍ୟଦେଶରୁ ଆଣି ଓଡ୍ର ଦେଶସ୍ଥ ସିଲାଭଞ୍ଜପଟୀ ନାମକ ସ୍ଥାନରେ ବସାଇଥିଲେ । ତାହାହେଲେ ଓଡ୍ର ଶବ୍ଦ ତାଙ୍କ ରାଜତ୍ୱ ସମୟରେ ସ୍ୱତନ୍ତ୍ର ରାଜ୍ୟର ନାମ ସ୍ୱରୂପ ବ୍ୟବହୃତ ହେଉଥିବ । ପୁଣି ଆଲୋଚିତ ତାମ୍ର ଶାସନରେ ଯଯାତି ତ୍ରିକଳିଙ୍ଗାଧିପତି ବୋଲି ବର୍ଣ୍ଣିତ ହୋଇଅଛନ୍ତି । ତାଙ୍କର ପୂର୍ବବର୍ତ୍ତୀ ବଂଶଧରମାନଙ୍କର ପ୍ରଭୁତ୍ୱ କଳିଙ୍ଗ ବା ଉତ୍କଳ ନାମଧାରୀ ରାଜ୍ୟ ଖଣ୍ଡରେ ପ୍ରତିଷ୍ଠିତ ନଥିଲେ ହେଁ ସେମାନେ ମଧ୍ୟ ତ୍ରିକଳିଙ୍ଗାଧିପତି ଉପାଧି ଦ୍ୱାରା ଭୂଷିତ ହୋଇଥିବାର ଦେଖାଯାଏ । ସେମାନଙ୍କ ବନ୍ଦନାରେ ଏହି ପ୍ରଶସ୍ତି ଅବଶ୍ୟ ପ୍ରକ୍ଷିପ୍ତ । ମାତ୍ର ଆଲୋଚିତ ଶାସନରେ ଓଡ୍ର ଓ କଳିଙ୍ଗ ନାମର ଯୁଗପତ୍ ଉଲ୍ଲେଖଥିବା ହେତୁ ଅନୁମିତ ହୁଏ, ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ଓଡ୍ର, ଉତ୍କଳ ଓ କଳିଙ୍ଗ ନାମରେ ତିନଗୋଟି ସ୍ୱତନ୍ତ୍ର ଓ ସମସାମୟିକ ରାଜ୍ୟ ଥିଲା ଏବଂ ଏହି ତିନଗୋଟି ରାଜ୍ୟ ଏହି ଶତାବ୍ଦୀର ପରାର୍ଦ୍ଧରେ ଯଯାତି କେଶରୀଙ୍କର ଶାସନଭୁକ୍ତ ହୋଇଥିଲା ।

ବୋଧହୁଏ ଓଡ୍ର, ଉତ୍କଳ ଓ କଳିଙ୍ଗ ଉପରୋକ୍ତ ମତେ କଥିତ କାଳଯାଏ ଏକଛତ୍ର ଅଧୀନରେ ରହିବାରୁ କାଳକ୍ରମେ ଏହି ତିନଗୋଟି ନାମ ଅବାଧିତ ଭାବରେ ପରସ୍ପରର ପ୍ରତି ପ୍ରଯୁକ୍ତ ହେଲା । ଓଡ୍ର ନାମ ଉତ୍ତର ପଶ୍ଚିମ ଅଞ୍ଚଳରୁ ବହୁକାଳ ସୀମାବଦ୍ଧ ରହି ନଥିଲା । ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ଯେଉଁ ଭୂଖଣ୍ଡ

Digitized by srujanika@gmail.com

'ଉତ୍କଳ' ନାମରେ ଅଭିହିତ ହେଉଥିଲା, ତାହାକୁ ହିଁ ସପ୍ତମ ଶତାବ୍ଦୀରେ ହୁଏନ୍‌ସାଂ 'ଓଚ' ବା 'ଓଡ୍ର' ନାମ ଦେଇଅଛନ୍ତି । ସେ ଉତ୍କଳ ନାମର ଉଲ୍ଲେଖ ମୁଦ୍ଧା କରି ନାହାନ୍ତି ।

ଏହି ଶତାବ୍ଦୀରେ ଗୋଟିଏ ନୂତନ ନାମର ଆବିର୍ଭାବ ଦେଖାଯାଏ । ଉତ୍କଳର ଦକ୍ଷିଣ ଅର୍ଥାତ୍ ପୂର୍ବୋକ୍ତ କଳିଙ୍ଗର ଉତ୍ତର ଭାଗର କିୟଦଂଶ ଏହି ସମୟରେ 'କଙ୍ଗୋଦ' ନାମରେ ଅଭିହିତ ହେଉଥିଲା । ହୁଏନ୍‌ସାଂ 'କଙ୍ଗଆନ୍-ଯୁ-ମୋ' ନାମରେ ଏହି ଭୂଭାଗର ଉଲ୍ଲେଖ କରିଅଛନ୍ତି ଏବଂ କଳିଙ୍ଗକୁ ଏହାର ଦକ୍ଷିଣରେ ସ୍ଥାନ ଦେଇଅଛନ୍ତି । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ, 'କଳିଙ୍ଗ' ନାମ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ବେଳକୁ 'କଙ୍ଗଆନ୍-ଯୁ-ମୋ' ବା କଙ୍ଗୋଦର ଦକ୍ଷିଣରେ ସୀମାବଦ୍ଧ ହୋଇଥିଲା ।

'କଙ୍ଗଆନ୍-ଯୁ-ମୋ' ବା କଙ୍ଗୋଦର ଆଧୁନିକ ନାମ ଗଞ୍ଜାମ, ଏହାର ବର୍ଣ୍ଣିତ ଅବସ୍ଥାନ ଆଧୁନିକ ଗଞ୍ଜାମର ଅବସ୍ଥାନ ସଙ୍ଗେ ପ୍ରାୟ ସମାନ । ଏହା ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ସମୟେ ସମୟେ 'ଓଚ' ବା 'ଓଡ୍ର' ନାମରେ ମଧ୍ୟ ଅଭିହିତ ହେଉଥିଲା । ଖୁବ୍ ସମ୍ଭବ, ଏହି ଭୂଖଣ୍ଡ ମଧ୍ୟ କେଶରୀବଂଶୀୟମାନଙ୍କ ସମୟରେ ଓଡ୍ର ବା ଉତ୍କଳ ସହିତ କେତେକାଳ ଅଧୀନରେ ରହିଥିଲା । ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର ପ୍ରଥମଭାଗରେ କଳିଙ୍ଗ, କେଶରୀ ହର୍ଷବର୍ଦ୍ଧନଙ୍କ ଦ୍ୱାରା ପରାଜିତ ହୋଇ ଗଞ୍ଜାମରେ ଆଶ୍ରୟ ଗ୍ରହଣ କରିଥିଲେ । ସୁତରାଂ ଗଞ୍ଜାମ ଉତ୍କଳପରି କାଳକ୍ରମେ 'ଓଚ' ବା 'ଓଡ୍ର' ନାମ ଧାରଣ କରିବା ସ୍ୱାଭାବିକ । ଏହି ଶତାବ୍ଦୀରେ କିନ୍ତୁ ଗଞ୍ଜାମର 'କଳିଙ୍ଗ' ନାମ ମଧ୍ୟ ସ୍ଥାନେ ସ୍ଥାନେ ବ୍ୟବହୃତ ହେଉଥିଲା । ପ୍ରାୟ ଏହି ଶତାବ୍ଦୀ ଲିଖିତ 'ଶକ୍ତି ସଙ୍ଗମ ତନ୍ତ୍ର'ରେ ଅଛି—

"ଜଗନ୍ନାଥାତ୍ ପୂର୍ବଭାଗାତ୍ କୃଷ୍ଣା ତୀରାନ୍ତରଂ ଶିବେ ।
କଳିଙ୍ଗ ଦେଶ ସମ୍ପ୍ରୋକ୍ତଃ ବାମମାର୍ଗ ପରାୟଣ ।"

ସ୍ଥୂଳତଃ ଦେଖିବାକୁ ଗଲେ, କପିଶା ବା କଂସାଇଠାରୁ ଗୋଦାବରୀ ପର୍ଯ୍ୟନ୍ତ ସମସ୍ତ ଭୂଭାଗ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ବେଳକୁ 'ଓଡ୍ର' ବା 'ଓଡ୍ର' ବା ଓଡ୍ର ନାମରେ ଅଭିହିତ ହେଉଥିଲା । କେତେବେଳେ ଏହି ସୀମା ମଧ୍ୟରେ ଉତ୍କଳ ଓ କଳିଙ୍ଗ ନାମ ମଧ୍ୟ ବ୍ୟବହୃତ ହେଉଥିଲା । 'ସିଉକ' ନାମକ ବୌଦ୍ଧଧର୍ମ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ଲିଖିତ । ଏଥିରେ 'ଓଡ୍ର', 'ଦକ୍ଷିଣ କୋଶଳ' ଓ 'ପ୍ରାଚୀନ କଳିଙ୍ଗ' ନାମର ଉଲ୍ଲେଖ ଅଛି । ବୋଧହୁଏ, ଏହି 'ଓଡ୍ର' ପାର୍ଜିଟରଙ୍କ ପୂର୍ବୋକ୍ତ ନିର୍ଦ୍ଦିଷ୍ଟ ଭୂଭାଗ । ଏହି ପ୍ରାଚୀନ କଳିଙ୍ଗ ଚତୁର୍ଥ ଓ ସପ୍ତମ ଶତାବ୍ଦୀର ଉତ୍କଳ, କଳିଙ୍ଗ ଓ କଙ୍ଗୋଦ ଏବଂ ଏହି ଦକ୍ଷିଣ କୋଶଳ ସମ୍ବଲପୁରର ପଶ୍ଚିମ

Digitized by srujanika@gmail.com

ସୀମାନ୍ତ ମଧ୍ୟପ୍ରଦେଶରେ ଅନ୍ତର୍ଗତ ଭୂଖଣ୍ଡ । ମାତ୍ର ଉକ୍ତଲିଖିତ 'ଓଡ୍ର', 'ଦକ୍ଷିଣ କୋଶଳ' ଓ 'ପ୍ରାଚୀନ କଳିଙ୍ଗ' ନାମ ଭିନ୍ନ ଭିନ୍ନ ଭୂଭାଗକୁ ନିର୍ଦ୍ଦେଶ କରିବା ଛଡ଼ା କପିଶାଠାରୁ ଗୋଦାବରୀ ପର୍ଯ୍ୟନ୍ତ ସମସ୍ତ ଭୂଖଣ୍ଡର ବିଭିନ୍ନ ନାମ ସ୍ୱରୂପ ସ୍ଥଳ ବିଶେଷରେ ବ୍ୟବହୃତ ହୋଇଥିବା ବିଚିତ୍ର ନୁହେଁ ।

ଉଲ୍ଲିଖିତ ଆଲୋଚନାଗୁଡ଼ିକୁ ଆମ୍ଭେମାନେ ନିମ୍ନୋକ୍ତ ଭାବରେ ସଂକ୍ଷିପ୍ତ କରିପାରୁଁ । ପ୍ରାଚୀନତମ କାଳରେ କପିଶା ଓ କୃଷ୍ଣାନଦୀର ମଧ୍ୟବର୍ତ୍ତୀ ଉପକୂଳ ଭୂମି କଳିଙ୍ଗ ନାମରେ ଅଭିହିତ ହେଉଥିଲା । କାଳକ୍ରମେ ଏହି ଭୂଭାଗ ଦ୍ୱିଧା ବିଭକ୍ତ ହୋଇ ଉତ୍କଳ ଓ କଳିଙ୍ଗ ଏହି ବିଭିନ୍ନ ନାମ ଧାରଣ କଲା । ତଦନନ୍ତର କପିଶା ଓ ଗୋଦାବରୀ ମଧ୍ୟବର୍ତ୍ତୀ ଭୂଭାଗ କେଶରୀବଂଶୀୟ ରାଜାମାନଙ୍କ ସମୟରେ ଓଡ୍ର ଓ ଦକ୍ଷିଣ କୋଶଳ ରାଜ୍ୟମାନଙ୍କ ସହ ଏକ ଶାସନାଧୀନ ହେବାରୁ ଏହା ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ବେଳକୁ ଅର୍ଥ ନିର୍ବିଶେଷରେ 'ଓଡ୍ର' ବା 'ଉତ୍କଳ' ନାମରେ ଆଖ୍ୟାତ ହୋଇଥିଲା । 'କଳିଙ୍ଗ' ନାମ ଗୋଦାବରୀର ଦକ୍ଷିଣକୁ ବିତାଡ଼ିତ ହୋଇଥିଲା । ଏହା ତାହାର କାହାର ଦ୍ୱାରା ରଷ୍ଟ୍ରାମ କମ୍ପା ଉତ୍କଳର ଅନ୍ୟ କୌଣସି ଅଞ୍ଚଳ ପ୍ରତି ପ୍ରଯୁକ୍ତ ହେଉଥିଲେ ହେଁ ତାହା ଅତ୍ୟନ୍ତ ବିରଳ ଥିଲା । ତଥା କପିଶା ଓ ଗୋଦାବରୀର ମଧ୍ୟବର୍ତ୍ତୀ କିୟଦଂଶ କଙ୍ଗୋଦ ନାମରେ ଅଭିହିତ ହେଉଥିଲେ ହେଁ ଏହି ନାମ ସୁବିଦିତ ନଥିଲା । ତଦ୍ୱିଧ ମଧ୍ୟ ମହା କୋଶଳ ବା ଦକ୍ଷିଣ କୋଶଳ ନାମ କେଶରୀବଂଶୀୟ ରାଜାମାନଙ୍କ ଆଗମନ ସଙ୍ଗେ ସଙ୍ଗେ ଆନୀତ । କପିଶା ଓ ଗୋଦାବରୀର ମଧ୍ୟବର୍ତ୍ତୀ ଭୂଭାଗ ମଧ୍ୟରେ ସ୍ଥଳବିଶେଷରେ ପ୍ରଯୁକ୍ତ ହୋଇଥିଲେ ହେଁ ସୁପ୍ରଚଳିତ ହୋଇ ନଥିଲା । ସୁତରାଂ କପିଶା ଓ ଗୋଦାବରୀର ମଧ୍ୟବର୍ତ୍ତୀ ସମସ୍ତ ଭୂଭାଗ ସପ୍ତମ ଶତାବ୍ଦୀଠାରୁ ଓଡ୍ର, ଉତ୍କଳ ବା କଳିଙ୍ଗ ନାମ ଦ୍ୱାରା ଆଖ୍ୟାତ ହୋଇପାରେ ।

ଏହି ବିଶାଳ ଉତ୍କଳ ରାଜ୍ୟ ଗଙ୍ଗବଂଶୀୟ ରାଜାମାନଙ୍କ ସମୟରେ ବିଶାଳତର ଆକାର ଧାରଣ କରିଥିଲା । ପ୍ରାୟ ୧୧୦୦ ଖ୍ରୀ: ଅଃରେ ଉତ୍କଳୀୟ ଧୀବରମାନେ ତାମ୍ରଲିପ୍ତ ଜୟ କଲେ । ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀର ପର୍ବାର୍ଦ୍ଧରେ ଅନଙ୍ଗ ଭୀମଦେବ ସ୍ୱୀୟ ରାଜତ୍ୱର ଦ୍ୱାଦଶ ବର୍ଷରେ ପୁରୀ ମନ୍ଦିର ମଧ୍ୟରେ ଯେଉଁ ଚଳୁବା ଦେଇଥିଲେ, ସେଥିରେ ସେ କହିଅଛନ୍ତି ଯେ, ଉତ୍କଳ ସାମ୍ରାଜ୍ୟ ଗଙ୍ଗବଂଶୀୟ ରାଜାମାନଙ୍କ ସମୟରେ ଦାମୋଦର ନଦୀ ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା । ଦାମୋଦର କପିଶାର ଆହୁରି ଉତ୍ତରରେ ଗଙ୍ଗାନଦୀର ନାତି ଦକ୍ଷିଣରେ ପ୍ରବାହିତ । ବୋଧହୁଏ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀର ପ୍ରାରମ୍ଭରୁ ତାମ୍ରଲିପ୍ତି ପ୍ରାୟ ଉତ୍କଳ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା । ଦେବଦେବଭୁ ରାଜା ଚୋଡଗଙ୍ଗ ବନ୍ଦୋବସ୍ତ

Digitized by srujanika@gmail.com

କାଗଜପତ୍ରରେ ତାମ୍ରଲିପ୍ତିକୁ ଓଡ଼ିଶାର କଟକେଶ୍ୱର ସୁବା ମାହାଲର ଅନ୍ତର୍ଭୁକ୍ତ କରିଥିଲେ। ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀ ପୂର୍ବରୁ ତାମ୍ରଲିପ୍ତି କେତେବେଳେ ସ୍ୱାଧୀନ, କେତେବେଳେ ଅବା ପାର୍ଶ୍ୱବର୍ତ୍ତୀ କୌଣସି ରାଜ୍ୟର ଅଧୀନସ୍ଥ ଥିଲା। କିନ୍ତୁ ଏହି ଶତାବ୍ଦୀ ପୂର୍ବରୁ କୌଣସି ସମୟରେ ତାମ୍ରଲିପ୍ତି ଉତ୍କଳ ସାମ୍ରାଜ୍ୟର ଅଧୀନସ୍ଥ ହୋଇଥିଲା କି ନାହିଁ, ସେ ସମ୍ବନ୍ଧରେ ପ୍ରମାଣ ଅଦ୍ୟାବଧି ହସ୍ତଗତ ହୋଇ ନାହିଁ। ସେ ଯାହାହେଉ, ଉଲ୍ଲିଖିତ କାରଣ ବଶତଃ ଆମ୍ଭେମାନେ ଏହି ପ୍ରବନ୍ଧରେ 'ଉତ୍କଳ ଶବ୍ଦକୁ ତାମ୍ରଲିପ୍ତ ଠାରୁ ଗୋଦାବରୀ ପର୍ଯ୍ୟନ୍ତ ସମସ୍ତ ଭୂଖଣ୍ଡ ଅର୍ଥରେ ବ୍ୟବହାର କରିଅଛୁଁ।

ଓଡ୍ର, ଉତ୍କଳ, କଳିଙ୍ଗ, ଓ କଙ୍ଗୋଦ ନାମର ଐତିହାସିକ ତତ୍ତ୍ୱ ଆଲୋଚିତ ହୋଇଅଛି। ବର୍ତ୍ତମାନ ଓଡ଼ିଶା ଇତିହାସର ଅନ୍ୟ ଗୋଟିଏ ନାମ ଆଲୋଚ୍ୟ। କେଶରୀବଂଶୀୟ ରାଜାମାନଙ୍କ ତାମ୍ରଶାସନରେ 'କୋଶଳ' ବା 'ଦକ୍ଷିଣ କୋଶଳ' ନାମର ଉଲ୍ଲେଖ ଦେଖାଯାଏ। ଏହି 'କୋଶଳ' ନାମ ଉତ୍କଳର କେଉଁ ଅଞ୍ଚଳ ପ୍ରତି ପ୍ରଯୁକ୍ତ ହେଉଥିଲା ଏବଂ କାହିଁକି ?

କେଶରୀବଂଶୀୟ ରାଜାମାନଙ୍କର ପିତୃ-ପିତାମହ ପ୍ରାଚୀନ ମେକଳର ଦକ୍ଷିଣ ଅର୍ଥାତ୍ ମଧ୍ୟପ୍ରଦେଶର ପୂର୍ବାଞ୍ଚଳରେ ରାଜତ୍ୱ କରୁଥିଲେ। ଏହି ଅଞ୍ଚଳକୁ ପୂର୍ବେ ମହାକୋଶଳ ବା ଦକ୍ଷିଣ କୋଶଳ କୁହାଯାଉଥିଲା। କେହି କେହି ଅନୁମାନ କରନ୍ତି କୋଷାକୃତ ହେବାରୁ ଏହି ଅଞ୍ଚଳର ଉକ୍ତ ନାମ ହୋଇଥିଲା। ଏ ସବୁ ବିଷୟର ସବିଶେଷ ଆଲୋଚନା କିନ୍ତୁ ବର୍ତ୍ତମାନ ପ୍ରବନ୍ଧର ଉଦ୍ଦେଶ୍ୟ ନୁହେଁ। ବର୍ତ୍ତମାନ ଏତିକି ବକ୍ତବ୍ୟ ଯେ, ଜନମେଜୟ ଯଯାତି ଉତ୍କଳ ଜୟକରିବା ସଙ୍ଗେ ସଙ୍ଗେ ସେମାନଙ୍କ ପୈତୃକ ରାଜ୍ୟର ନାମ 'କୋଶଳ' ଉତ୍କଳକୁ ଆଗତ ହୋଇ ସ୍ଥାନେ ସ୍ଥାନେ ବ୍ୟବହୃତ ହେଉଥିଲା। କେଶରୀବଂଶୀୟ ରାଜାମାନେ ସମୟେ ସମୟେ 'ଉତ୍କଳ' ସ୍ଥଳରେ 'କୋଶଳ' ଶବ୍ଦ ବ୍ୟବହାର କରୁଥିଲେ। ଯଥା :—

× × × × ଶ୍ରୀ ମହାଭବ ଗୁପ୍ତଦେବଃ
କୁଶଳୀ। କୋଶଳ ଦେଶେ ଯୋଧା ବିଷୟୀ
ଦଣ୍ଡାଗ୍ରାମେ ତଥା
ଝଳାଣ୍ଡଳ ଗ୍ରାମେ ବ୍ରାହ୍ମଣାନ୍
ସମ୍ପୂଜ୍ୟ × × ×
ଶ୍ରୀ ମହାଭବ ଗୁପ୍ତଦେବଃ
କୁଶଳୀ, ଦକ୍ଷିଣ କୋଶଳୀୟା
ମଭଡ଼ ବିଷୟୀୟ ବୃଦ୍ଧଗ୍ରାମେ
× × × ଇତ୍ୟାଦି।

Digitized by srujanika@gmail.com

ପୁଣି ଓ ଅନୁଗୁଳର ଅନେକ ଅଞ୍ଚଳ ଅଦ୍ୟାବଧି କୋଶଳ ନାମରେ ଅଭିହିତ ହେଉଅଛି । ପୁଣି ଜଗନ୍ନାଥ ଧଉଳ ପାହାଡ଼ ନିକଟରେ ଯେଉଁ ହ୍ରଦର ଚିହ୍ନ ଅଛି, ତାହାର ନାମ ତୋଷଳ ଗଙ୍ଗା କିମ୍ବା କୋଶଳ ଗଙ୍ଗା-କୌଶଲ୍ୟା ଗଙ୍ଗା ନୁହେଁ । ଏକ ହ୍ରଦ ଗଙ୍ଗବଂଶୀୟ ରାଜାମାନଙ୍କ ଦ୍ୱାରା କଳିଙ୍ଗର ପ୍ରାଚୀନ ରାଜଧାନୀ ତୋଷଳୀରେ ଖୋଦିତ ହୋଇ ତୋଷଳ ଗଙ୍ଗା ଆଖ୍ୟା ପ୍ରାପ୍ତ ହୋଇଥିଲା ; କିମ୍ବା କୌଣସି ଗଙ୍ଗ ବଂଶୀୟ ରାଜା ଏହାକୁ ଖୋଦନ କରି ନିଜ ପ୍ରସ୍ତରିତ କୋଶଳ ନାମର ବହୁଳ ପ୍ରଚାର ଆଶାରେ କୋଶଳ ଗଙ୍ଗା ନାମ ଦେଇଥିଲେ । ପ୍ରଥମୋକ୍ତ ଅନୁମାନଟି ଅଧିକ ସମ୍ଭାବନାପୂର୍ଣ୍ଣ ବୋଧହୁଏ । ଜନସାଧାରଣ ସାଧାରଣ ଏହି ହ୍ରଦ ସମ୍ବନ୍ଧେ ଯେଉଁ ଇତିହାସ ଜନଶ୍ରୁତିକୁ ଉଲ୍ଲେଖ କରି ଯାଇଅଛନ୍ତି; ତାହା ଅଦ୍ୟାବଧି ଏହି ହ୍ରଦର ନିକଟବର୍ତ୍ତୀ ଗ୍ରାମମାନଙ୍କରେ କଥିତ ହେଉଥିଲେ ହେଁ ସମ୍ପୂର୍ଣ୍ଣ ଭିତ୍ତିହୀନ ଓ କୌଣସି ଦସ୍ତାବେଜ ବ୍ୟକ୍ତିବିଶେଷରେ କଳ୍ପନାପ୍ରସୂତ ବୋଲି ବୋଧହୁଏ । ଉତ୍କଳର ପ୍ରାଥମିକ ରାଜାମାନଙ୍କ ଅପେକ୍ଷା ପରବର୍ତ୍ତୀ ରାଜାମାନଙ୍କ ସମୟରେ 'କୋଶଳ' ଶବ୍ଦର ବ୍ୟବହାର ଅତି ଅଳ୍ପ । ଏହାର କାରଣ ବୋଧହୁଏ କେଶରୀ ବଂଶୀୟ ରାଜାମାନେ ଉତ୍କଳ ଜୟ କରିବା ସଙ୍ଗେ ସଙ୍ଗେ ପୈତୃକ ରାଜ୍ୟର ନାମ କୋଶଳ ଉତ୍କଳକୁ ଆଣିତ ହୋଇଥିଲେ ହେ ଏହା ସର୍ବାଦୃତ ନହେବାରୁ କାଳକ୍ରମେ ବିଲୁପ୍ତ ହେଲା । କୋଶଳା ଶାଗ ବା କୋଶଳାଗତ ଶାଗ ଓ କୋଶଳୀ ଡଙ୍ଗ ବା କୋଶଳାଗତ ଡଙ୍ଗା ଏହିପରି ଦୁଇଟି ଗୋଟିଏ ଦେଶୀୟ ଶବ୍ଦ ଦ୍ୱାରା ପୂର୍ବ ପ୍ରଚଳିତ 'କୋଶଳ' ନାମ ଅଦ୍ୟାବଧି ଚିହ୍ନିତ ହେଉଅଛି ।

ଡାକ୍ତର ରାଜେନ୍ଦ୍ର ଲାଲ କହନ୍ତି;'ଉତ୍କଳ' ଶବ୍ଦ 'ଉତ୍' ଓ 'କୋଲ୍' ଶବ୍ଦରୁ ନିର୍ମିତ । 'ଉତ୍'ର ଅର୍ଥ 'ଓଡ଼' ବା ଓଡ଼ିଆ ଏବଂ କୋଲ ଅନାର୍ଯ୍ୟ ଜାତି-ମାନଙ୍କ ସାଧାରଣ ନାମ । ସୁତରାଂ ସେ କହନ୍ତି, ଉତ୍କଳର ଅର୍ଥ ଓଡ଼ ଶ୍ରେଣୀୟ କୋଲ ବା ଅନାର୍ଯ୍ୟ । ଏହି ଓଡ଼ ଶ୍ରେଣୀୟ ଅନାର୍ଯ୍ୟ ଜାତିର ନାମାନୁସାରେ ଉତ୍କଳ ଦେଶର ନାମକରଣ ହୋଇଅଛି । ରାଜେନ୍ଦ୍ରଲାଲ ତାଙ୍କର ଉପରୋକ୍ତ ଅନୁମାନର ସପକ୍ଷରେ ସିଦ୍ଧାନ୍ତ ଶେଷ ଲିଖିତ 'ଓଡ୍ରା ଉତ୍କଳ ନାମାନଃ' ବାକ୍ୟ ଉଦ୍ଧାର କରିଅଛନ୍ତି । କିନ୍ତୁ ତାଙ୍କର ଏହି ଅନୁମାନ ସମ୍ପୂର୍ଣ୍ଣ କାଳ୍ପନିକ ବୋଲି ବୋଧହୁଏ । କାରଣ ଉକ୍ତ ବାକ୍ୟର ଅର୍ଥ, ଉଡ୍ରମାନେ ଉତ୍କଳ ନାମଧାରୀ ଅଟନ୍ତି । ଉତ୍କଳନାମଧାରୀମାନେ ଉଡ୍ର ବା ଉଡ୍ରବଂଶଜ, ଏହା ବାକ୍ୟର ଅର୍ଥ ନୁହେଁ । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ବେଳକୁ ଓଡ୍ର ଓ 'ଉତ୍କଳ' ଏହି ଦୁଇ ନାମର ବ୍ୟବହାରର ପାର୍ଥକ୍ୟ ପରିତ୍ୟକ୍ତ ହେଲାପରେ ଏହି ଦୁଇ ନାମ ନିର୍ବିରୋଧରେ ଅନ୍ୟୋନ୍ୟ ଅର୍ଥରେ ପ୍ରଯୁକ୍ତ ହୋଇଥିଲା । ମାତ୍ର ଏଭଳି

Digitized by srujanika@gmail.com

ସ୍ୱାଧୀନ ବ୍ୟବହାରର ମୂଳରେ ଏପୋଷ୍ଟୀଥିକ କୌଣସି ତଥ୍ୟ ନାହିଁ । ବୋଧହୁଏ, ଉପରୋକ୍ତ ବାକ୍ୟ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ବା ତତ୍ପରବର୍ତ୍ତୀ ସମୟର ରଚନା ଓ ସାମାଜିକ ଚିତ୍ରଣ ।

କାହାର କାହାର ମତରେ କେବଳ ଆଧୁନିକ ମୟୂରଭଞ୍ଜ, କେନ୍ଦୁଝର ଓ ନୀଳଗିରି ପ୍ରାଚୀନକାଳରେ ଉତ୍କଳ ନାମରେ ଅଭିହିତ ଥିଲା । ଆଧୁନିକ ଗାଙ୍ଗପୁର ଏହାର ପଶ୍ଚିମ ସୀମା ଥିଲା । ଆମ୍ଭେମାନେ କିନ୍ତୁ ଏଭଳି ମତର ସପକ୍ଷରେ କୌଣସି କାରଣ ଦେଖୁନାହୁଁ । ମତାବଲମ୍ବୀ ମଧ୍ୟ କାରଣ ସମ୍ବନ୍ଧରେ ସମ୍ପୂର୍ଣ୍ଣ ନୀରବ ।

ପୁଣି ମୟୂରଭଞ୍ଜ ଓ କେନ୍ଦୁଝରର ସୀମାଠାରୁ ମହାନଦୀ ପର୍ଯ୍ୟନ୍ତ ସମସ୍ତ ଅରଣ୍ୟଦେଶ ପୂର୍ବେ 'ଓଡ୍ର' ନାମରେ ଅଭିହିତ ଥିଲା ବୋଲି ଉକ୍ତ ମତାବଲମ୍ବୀ କହନ୍ତି । ତାଙ୍କର ଏହି ମତର କାରଣ, ଭୁର ମଳୟ ଅନୁଶାସନରେ ନାୟକ ଜିତକଳଙ୍କ ଜୟ କରି ଉଡ୍ର ଦେଶର ମଧ୍ୟ ଦେଇ କୋଶଳକୁ ଯାଇଥିଲେ । ଅନୁଶାସନ ନାୟକ 'ଉଡ୍ର ଦେଶ' ବାଟେ କୋଶଳକୁ ଯାଇଥିଲେ ବୋଲି ଉଡ୍ର ଦେଶକୁ ମହାନଦୀ ଓ କେନ୍ଦୁଝରର ସୀମା ମଧ୍ୟରେ ସ୍ଥାନ ଦେବା ଅପ୍ରାସଙ୍ଗିକ ଅଟେ ।

ସ୍ୱର୍ଗତ ପ୍ୟାରୀମୋହନ ଆଚାର୍ଯ୍ୟ ଖୋର୍ଦ୍ଧା ଅଞ୍ଚଳକୁ ପ୍ରାଚୀନ 'ଉଡ୍ର ଦେଶ' ବୋଲି ଅନୁମାନ କରିଅଛନ୍ତି । ଏହି ଅଞ୍ଚଳର ଓଡ଼ ଚଷାମାନଙ୍କର ସଂଖ୍ୟାଧିକ ଉକ୍ତ ଅନୁମାନର ପ୍ରଧାନ କାରଣ । କିନ୍ତୁ ବାଲେଶ୍ୱରର ଉତ୍ତର ଓ ଉତ୍ତର ପଶ୍ଚିମ ଅଞ୍ଚଳରେ ମଧ୍ୟ ଅନେକ ଓଡ଼ ଚଷା ଅଛନ୍ତି । ପୁଣି ଖୋର୍ଦ୍ଧା ଅଞ୍ଚଳକୁ ଆଜିକାଲି ସାଧାରଣ ଲୋକେ ଓଡ଼ିଶା ବୋଲି କହନ୍ତି । ଏହା ମଧ୍ୟ ଆଚାର୍ଯ୍ୟ ମହାଶୟଙ୍କ ଉକ୍ତବିଧ ଅନୁମାନର ସାମର୍ଥକ ନୁହେଁ । ସାଧାରଣ ଲୋକେ ଖୋର୍ଦ୍ଧା ଅଞ୍ଚଳକୁ ଓଡ଼ିଶା କହିବାର କାରଣ ବିଶାଳ ଓଡ଼ିଶା ବା ଉତ୍କଳ ରାଜ୍ୟ କ୍ରମେ ସଙ୍କୁଚିତ ହୋଇ ଅବଶେଷରେ ଖୋର୍ଦ୍ଧା ମଧ୍ୟରେ ସୀମାବଦ୍ଧ ହୋଇଥିଲା । ଲୋକେ ପ୍ରାଚୀନ ତତ୍ତ୍ୱ ଭୁଲିଯାଇ କେବଳ ଖୋର୍ଦ୍ଧା ରାଜକୁ ମନେ ରଖିଅଛନ୍ତି । ସେଥିପାଇଁ ସେମାନେ ପ୍ରାଚୀନ ଓଡ଼ିଶା ରାଜ୍ୟକୁ କେବଳ ଏହି କ୍ଷୁଦ୍ର ଖୋର୍ଦ୍ଧା ଅଞ୍ଚଳ ବୋଲି ମନେ କରୁଅଛନ୍ତି । ସୁତରାଂ ଉଡ୍ର ବା ଓଡ୍ର ରାଜ୍ୟର ପ୍ରାଚୀନ ଅବସ୍ଥାନ ସମ୍ବନ୍ଧରେ ଆମ୍ଭେମାନେ ଆଚାର୍ଯ୍ୟଙ୍କ ମତକୁ ଗ୍ରହଣ କରି ନପାରୁ । ଏଠାରେ ଉଲ୍ଲେଖଯୋଗ୍ୟ ଯେ, 'ଉଡ୍ର' ଓ ଉତ୍କଳୀୟମାନେ ସଜାତିକ ନଥିଲେ । ଉଭୟ ଜାତି ଏକଚ୍ଛତ୍ରାଧୀନ ହୁଅନ୍ତେ କାଳକ୍ରମେ ଉଭୟ ନାମର

Digitized by srujanika@gmail.com

ପ୍ରାର୍ଥିତ୍ୟ ବସ୍ତୃତ ହେବ । ହେତୁପରୁ ଲୋକମୁଖରେ ଉଡ୍ରମାନେ ଉତ୍କଳୀୟ ଏବଂ ଉତ୍କଳୀୟମାନେ ଉଡ୍ର ବୋଲି ପରିଗଣିତ ହେଲେ । ସେଥିପାଇଁ ହିନ୍ଦାଣ୍ଡ ଶେଷରେ ଅଛି—ଓଡ୍ରା ଉତ୍କଳା ନାମାନଃ । ବହୁ ଉଡ୍ର ଉତ୍ତର-ପଶ୍ଚିମ ଅଞ୍ଚଳରୁ ଆସି କାଳକ୍ରମେ ଉତ୍କଳର ସ୍ଥିରଅଙ୍ଗେ ବସତି ସ୍ଥାପନ କଲେ । ଏହା ହିଁ ଖୋର୍ଦ୍ଧା ପ୍ରଭୃତି ଅଞ୍ଚଳରେ ବହୁ ଉଡ୍ର ଅଧିବାର କାରଣ ।

ଆମ୍ଭେମାନେ 'ଉଡ୍ର' ଉତ୍କଳ, କୋଶଳ, କଳିଙ୍ଗ ଓ କଙ୍ଗୋଦର ଐତିହାସିକ ତଥ୍ୟ ସମ୍ବନ୍ଧରେ ସଂକ୍ଷିପ୍ତ ଆଲୋଚନା କରିଅଛୁଁ । ପରବର୍ତ୍ତୀ ଯୁଗରେ କଳିଙ୍ଗ ନାମ ଦକ୍ଷିଣକୁ ସଂକୁଚିତ ହୋଇଥିଲା । 'କୋଶଳ' ନାମ କାଳକ୍ରମେ ଜନମାନସରୁ ବିସ୍ମୃତ ହେଲା । କେବଳ ଉଡ୍ର ଓ ଉତ୍କଳ ନାମ କପିଶାଠାରୁ ଗୋଦାବରୀ ପର୍ଯ୍ୟନ୍ତ ସମସ୍ତ ଭୂଖଣ୍ଡ ପ୍ରତି ପ୍ରଯୁକ୍ତ ହେଲା । ଉଡ୍ର ବା ଉତ୍କଳର କଳେବର କ୍ରମଶଃ ପରିବର୍ଦ୍ଧିତ ହୋଇ କାଳକ୍ରମେ ତାମ୍ରଲିପ୍ତି ପ୍ରଭୃତିକୁ ଅନ୍ତର୍ଭୁକ୍ତ କଲା । 'ଉତ୍କଳ' ନାମ ସର୍ବତ୍ର ପରିଚିତ ଏବଂ ଏଥିରେ ପ୍ରାଚୀନ କଳିଙ୍ଗର ନାମ ଚନ୍ଦ୍ର ଅଛି । ସେଥିପାଇଁ ଆମ୍ଭେମାନେ ପ୍ରବନ୍ଧରେ ଏହି ଉତ୍କଳ ନାମକୁ ଅବଲମ୍ବନ କରି ତାମ୍ରଲିପ୍ତିଠାରୁ ଗୋଦାବରୀ ପର୍ଯ୍ୟନ୍ତ ସମସ୍ତ ଭୂଖଣ୍ଡର ଜନଯାତ୍ରା ସମ୍ବନ୍ଧରେ ଆଲୋଚନା କରିବୁଁ ।

—୦—

Digitized by srujanika@gmail.com

# ଇତିହାସ

( ୨ )

ଐତିହାସିକମାନେ କହନ୍ତି, ଯେଉଁ ଦେଶ ପକ୍ଷରେ ଜଳଯାତ୍ରାର ସୁବିଧା ଯେତେ ବେଶି, ସେହି ଦେଶ ସେତେ ପରିମାଣରେ ଜଳଯାତ୍ରାରେ ପଟୁ । ଏହି ମତ ପୃଥିବୀରେ ସବୁ ଯୁଗରେ ପ୍ରତିପାଦିତ ହୋଇଅଛି । ପ୍ରାଚୀନ ସ୍ପାର୍ଟା ଦେଶ ଅନ୍ୟାନ୍ୟ ବହୁ ବିଷୟରେ ଉନ୍ନତ ହୋଇଥିଲେ ହେଁ ଏଥେନ୍ସ ପରି ଜଳଯାତ୍ରାରେ ପ୍ରବୀଣ ନଥିଲା । ଚଳିତ ଯୁଗରେ ଇଂଲଣ୍ଡ ଓ ଆମେରିକା ପ୍ରଭୃତି ଦେଶର ପ୍ରାଧାନ୍ୟ କେବଳ ସମୁଦ୍ର ହେତୁରୁ ବୋଲି କହିଲେ ଚଳେ । ଏହାଙ୍କ ଦେଶର ଚାରିଆଡ଼େ ଅନନ୍ତ ସମୁଦ୍ର । ସୁତରାଂ ଏ ଦେଶର ଲୋକେ ସମୁଦ୍ରକୁ ଆସିବା ପାଇଁ ଏକପ୍ରକାର ବାଧ୍ୟ । ଫଳତଃ ଏମାନେ ଜଳଯାତ୍ରାରେ ପଟୁ, ତଥା ସମୃଦ୍ଧିଶାଳୀ ହେବା ସ୍ୱାଭାବିକ ।

ଭାରତବର୍ଷର ଚତୁର୍ଦ୍ଦିଗରେ ବିଶାଳ ସମୁଦ୍ର ବିଦ୍ୟମାନ । ତା'ହେଲେ ଉପରୋକ୍ତ ପ୍ରତିଜ୍ଞାନୁଯାୟୀ ଭାରତବର୍ଷ ମଧ୍ୟ ଜଳଯାତ୍ରାରେ ପ୍ରବୀଣ ହେବା ସ୍ୱାଭାବିକ । ଭାରତ କେବେ ଜଳଯାତ୍ରୀ ଥିଲା କି ? ଏହି ଗୁରୁତର ବିଷୟର ଆଲୋଚନା ବର୍ତ୍ତମାନ ପ୍ରବନ୍ଧର ଉଦ୍ଦେଶ୍ୟ ନୁହେଁ । ନିଖିଳ ଭାରତର କେବଳ ଏକ କ୍ଷୁଦ୍ର ଅଂଶ ଅର୍ଥାତ୍ ଉତ୍କଳ ବର୍ତ୍ତମାନ ଆମ୍ଭମାନଙ୍କର ଆଲୋଚନାର ପରିସର । ଉତ୍କଳ ରାଜ୍ୟ ପ୍ରଥମେ କପିଶା ଓ କହାଇ ନଦୀଠାରୁ ଗୋଦାବରୀଯାଏ ବିସ୍ତୃତ ଥିଲା । କିଛିକାଳ ପରେ ଏହାର କଳେବର ଭାଗୀରଥୀ ପର୍ଯ୍ୟନ୍ତ ପରିବର୍ଦ୍ଧିତ ହୋଇ ଦୃଢ଼ୀଭୂତ ହେଲା । ଏହି ସମୟରେ ଏହାର ଶୌର୍ଯ୍ୟ ଗଙ୍ଗା ତଟରେ ତ୍ରିବେଣୀଘାଟ ବନ୍ଦର କୀର୍ତ୍ତିସ୍ତମ୍ଭ ସ୍ଥାପନ କରିଥିଲା । ଦକ୍ଷିଣରେ କୃଷ୍ଣାନଦୀ ଏହି ସମୟରେ ଏହାର ପାଦ ଧୌତ କରୁଥିଲା । ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗରେ ଉତ୍କଳର ସ୍ୱାଧୀନତା ଲୁପ୍ତ ହେବାପରେ ଦାକ୍ଷିଣାତ୍ୟ ଗୋଲକୁଣ୍ଡା ପ୍ରଭୃତିର ପଠାଣ ରାଜାମାନେ ଗୋଦାବରୀ ଅତିକ୍ରମ କରି କ୍ରମଶଃ ଓଡ଼ିଶାର ଦକ୍ଷିଣ ଅଞ୍ଚଳ ହସ୍ତଗତ କଲେ । ଉତ୍ତର ଦିଗରେ ବଙ୍ଗ ନବାବ ଆଲିବର୍ଦ୍ଦି ଖାଁ ମରହଟ୍ଟାମାନଙ୍କ ଅତ୍ୟାଚାରରୁ ରକ୍ଷାପାଇବା ଆଶାରେ ୧୭୫୧ ଖ୍ରୀଷ୍ଟାବ୍ଦରେ ସୁବର୍ଣ୍ଣରେଖାର ଦକ୍ଷିଣସ୍ଥ ଭୂଖଣ୍ଡକୁ ମରହଟ୍ଟମାନଙ୍କ ହସ୍ତରେ

Digitized by srujanika@gmail.com

ଗ୍ରହଣ କଲେ । ଫଳରେ ସେହିଦିନଠୁ ସୁବର୍ଣ୍ଣରେଖାର ଉତ୍ତର ପାର୍ଶ୍ୱବର୍ତ୍ତୀ ଉତ୍କଳାଂଶ ଉତ୍କଳରୁ ବିଚ୍ଛିନ୍ନ ହୋଇ ବଙ୍ଗଦେଶର ଅଙ୍ଗ ସ୍ୱରୂପ ଗଣାହେଲା । ଇଂରେଜମାନେ ମୁସଲମାନମାନଙ୍କଠାରୁ ବଂଗର ଅଂଗ ସ୍ୱରୂପ ଯାହା ଅଧିକାର କଲେ, ତାହାକୁ ହିଁ ବଂଗ ବୋଲି ଗ୍ରହଣକରି ଶାସନ କଲେ । ବଂଗର ଅନ୍ତର୍ଗତ ଉତ୍କଳାଂଶର 'ମହାନ୍ତି' ଆଖ୍ୟାଧାରୀ ଉତ୍କଳୀୟମାନେ ବର୍ତ୍ତମାନ 'ମାଇତି' ଆଖ୍ୟାଧାରୀ ବଙ୍ଗୀୟ ହୋଇଅଛନ୍ତି । ମାନ୍ଦ୍ରାଜରେ ଇଂରେଜ ଫୌଜ ଦକ୍ଷିଣର ଅନ୍ୟାନ୍ୟ କେତେକ ରାଜ୍ୟ ସହ ଗଞ୍ଜାମ ଅଞ୍ଚଳକୁ ଦଖଲକରି ଉକ୍ତ ଗଞ୍ଜାମକୁ ମାନ୍ଦ୍ରାଜ ପ୍ରଦେଶର ଅଙ୍ଗ ସ୍ୱରୂପ ଶାସନ କଲେ । କେବଳ ସୁବର୍ଣ୍ଣରେଖା ଓ ଗଞ୍ଜାମ ଜିଲ୍ଲାର ମଧ୍ୟବର୍ତ୍ତୀ ଭୂଖଣ୍ଡ ରାଜନୈତିକ କ୍ଷେତ୍ରରେ ଉତ୍କଳ ନାମରେ ପରିଣତ ହେଲା । ଅତଏବ ବର୍ତ୍ତମାନ ରାଜନୈତିକ ଉତ୍କଳ, ଉତ୍କଳର ପ୍ରାକୃତିକ କଳେବର ନୁହେଁ । ପ୍ରାକୃତିକ ଉତ୍କଳ ତାମ୍ରଲିପ୍ତିଠାରୁ ଗୋଦାବରୀଯାଏ ବିସ୍ତୃତ । ଏହି ବିସ୍ତୀର୍ଣ୍ଣ ଭୂଖଣ୍ଡକୁ ବଙ୍ଗୋପସାଗର ବେଳାଭୂମି କୁହାଯାଇପାରେ । ତେବେ ଏହି ଭୂଖଣ୍ଡ ପକ୍ଷରେ ଆଦିମ କାଳରୁ ଜଳଯାତ୍ରାର ଏଭଳି ସୁବିଧା ଥିବା ସ୍ଥଳେ ଏହାର ଅଧିବାସୀମାନେ ଜଳଯାନ ବ୍ୟବହାରରେ ପ୍ରବୀଣ ଥିବା ସ୍ୱାଭାବିକ ଏବଂ ଏହି ସ୍ୱାଭାବିକ ବିଷୟକୁ କେତେକ ପ୍ରମାଣ ସାହାଯ୍ୟରେ ସିଦ୍ଧ କରିବା ବର୍ତ୍ତମାନ ପ୍ରବନ୍ଧର ଉଦ୍ଦେଶ୍ୟ ।

ପ୍ରାଚୀନ ଉତ୍କଳ; ଅର୍ଥାତ୍ ତାମ୍ରଲିପ୍ତି ଓ ଗୋଦାବରୀର ମଧ୍ୟବର୍ତ୍ତୀ ଭୂଭାଗରେ ଆର୍ଯ୍ୟବସତି ସର୍ବାଦୌ କେବେ ସ୍ଥାପିତ ହେଲା, ଜଣାନାହିଁ । ଏ ସମ୍ପର୍କରେ ଦେଶୀୟ ଉପାଦାନର ମତାମତ କଳ୍ପନାମୂଳକ ଏବଂ ଐତିହାସିକମାନେ ଭିନ୍ନପନ୍ଥାବଲମ୍ବୀ । ତେବେ ଏହା ନିଶ୍ଚିତ ଯେ ବୁଦ୍ଧଦେବଙ୍କ ସମୟକୁ ଉତ୍କଳରେ ଆର୍ଯ୍ୟବସତି ଦୃଢ଼ୀଭୂତ ହୋଇଥିଲା । ଖ୍ରୀ : ପୂ : ୪୬୦ ଅବ୍ଦରେ ମଗଧରାଜ କଳିଂଗ ବା ଉତ୍କଳ ଜୟ କରିଥିବାର ଜଣାଯାଏ । ସେତେବେଳେ ଉତ୍କଳ ଅତି ସମୃଦ୍ଧିଶାଳୀ ଥିଲା । ସୁତରାଂ ଏହି ଅବ୍ଦର କେତେବର୍ଷ ପୂର୍ବରୁ ଉତ୍କଳ ସମୃଦ୍ଧିର ସୂତ୍ରପାତ ହୋଇଥିବ । ଡାକ୍ତର ସ୍ମିଥଙ୍କ ଆଡ଼ିଷ୍ଟିତ ଖଣ୍ଡିଏ ତାଳପତ୍ର ପୋଥିରୁ ଜଣାଯାଏ ଯେ, ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ପୂର୍ବରୁ କଳିଂଗ ବା ଉତ୍କଳ ମହାରାଜ ଐରଙ୍କ ନେତୃତ୍ୱରେ ମଗଧଠାରୁ ସ୍ୱାଧୀନତା ଘୋଷଣା କରିଥିଲା । ଫଳରେ ମହାରାଜ ଅଶୋକଙ୍କୁ ଖ୍ରୀ: ପୂ: ୨୬୧ ଅବ୍ଦରେ ଘୋର ଯୁଦ୍ଧକରି ଆଉଥରେ ଉତ୍କଳ ଅଧିକାର କରିବାକୁ ହେଲା ।

ଉତ୍କଳ ଇତିହାସରେ ଖ୍ରୀ. ପୂ. ୨୬୧ ଅବ୍ଦ ଏକ ଐତିହାସିକ ବର୍ଷ । ଏହି ବର୍ଷର ଘଟଣା ସମ୍ବନ୍ଧରେ ବର୍ତ୍ତମାନ କୌଣସି ସନ୍ଦେହ ନାହିଁ । ମାତ୍ର ଏହି ବର୍ଷର ପରବର୍ତ୍ତୀ କାଳ ସମ୍ବନ୍ଧରେ ଦୃଷ୍ଟି ତଥ୍ୟ ଅଦ୍ୟାବଧି ପ୍ରଚ୍ଛନ୍ନ ।

Digitized by srujanika@gmail.com

ଧର୍ମପାଳଙ୍କ ଗୌତମବୁଦ୍ଧଙ୍କ ଲିଖିତ—ଗୌତମବୁଦ୍ଧଙ୍କ ଜୀବନୀରେ ଅଛି; ବ୍ରହ୍ମଦେଶର ତପସୁ ଓ ଭଲ୍ଲିକ ନାମକ ଦୁଇ ବଣିକ ଭ୍ରାତା ବୁଦ୍ଧଦେବଙ୍କ ପାଇଁ କେତେଗୁଡ଼ିଏ ଉପହାର ନେଇ ସମୁଦ୍ର ପଥରେ ଭାରତବର୍ଷକୁ ଆସିଥିଲେ । ସେମାନଙ୍କ ଜାହାଜରେ ପ୍ରାୟ ପାଞ୍ଚଶତ ଗାଡ଼ି ଦ୍ରବ୍ୟ ଥିଲା ଏବଂ ଏମାନେ ଅଜ୍ଝିତ (Adzeitta) ନାମକ କଳିଙ୍ଗ ବା ଉତ୍କଳର ଏକ ବନ୍ଦରରେ ଜାହାଜରୁ ଅବତରଣ କରିଥିଲେ । ଏହିଠାରେ ଜାହାଜ ରଖି ସେମାନେ ସ୍ଥଳପଥରେ ମଗଧ ଯାଇଥିଲେ । ଅଜ୍ଝିତ ବନ୍ଦର ଉତ୍କଳର ଉତ୍ତର ଅଞ୍ଚଳରେ ଅବସ୍ଥିତ ଥିଲା । ବ୍ରହ୍ମଦେଶାଗତ ବଣିକ ଭ୍ରାତା ଏତେଗୁଡ଼ିଏ ଦ୍ରବ୍ୟ ସହିତ ଏଠାକୁ ଆସିଥିବାର କାରଣ ବୋଧହୁଏ ବାଣିଜ୍ୟ ଜଗତରେ ଏହି ବନ୍ଦରର ତତ୍କାଳୀନ ପ୍ରତିଷ୍ଠା । ସେ ଯାହାହେଉ, ଖ୍ରୀ. ପୂ. ପଞ୍ଚମ ଓ ଷଷ୍ଠ ଶତାବ୍ଦୀରେ ଉତ୍କଳର ବାଣିଜ୍ୟ, ତଥା ଜଳଯାତ୍ରା ସମ୍ବନ୍ଧରେ କେତେକ ଆଭାସ ଏହି କ୍ଷୁଦ୍ର ଗଳ୍ପରୁ ଅନୁମାନ କରାଯାଇ-ପାରେ । ଦୁଃଖର କଥା, ପ୍ରାଚୀନ ଅଜ୍ଝିତ ବନ୍ଦରର ସ୍ଥାନ ଅଦ୍ୟାବଧି ନିରୂପିତ ହୋଇ ନାହିଁ ।

ଖ୍ରୀ: ପୂ: ଚତୁର୍ଥ ଶତାବ୍ଦୀର ଶେଷଭାଗରେ ଚନ୍ଦ୍ରଗୁପ୍ତ ରାଜ୍ୟାରମ୍ଭ କରିଥିଲେ । କୌଟିଲ୍ୟ ବା ଚାଣକ୍ୟ ତାହାଙ୍କର ମନ୍ତ୍ରୀ । ଚାଣକ୍ୟଙ୍କ ଲିଖିତ ଅର୍ଥଶାସ୍ତ୍ରରୁ ଭାରତର ତତ୍କାଳୀନ ରୀତି-ନୀତି ଓ ଅବସ୍ଥା ସମ୍ବନ୍ଧରେ ଅନେକ ତଥ୍ୟ ମିଳେ । ତେତେବେଳେ ଭାରତୀୟମାନଙ୍କର ଜଳଯାତ୍ରା କପରି ନିୟମରେ ନିୟନ୍ତ୍ରିତ ଥିଲା ସେ ସମ୍ବନ୍ଧରେ ଅର୍ଥଶାସ୍ତ୍ରରେ ବିଶେଷ ବର୍ଣ୍ଣନା ଅଛି । ଏହି ବର୍ଣ୍ଣନା ଭାରତର ସର୍ବାଂଶ ପ୍ରତି ପ୍ରଯୁଜ୍ୟ ନହେଲେ ହେଁ, ଅନ୍ତତଃ ମଗଧ ବଙ୍ଗ, ଉତ୍କଳ ଓ ମଗଧର ନିକଟବର୍ତ୍ତୀ ଅନ୍ୟାନ୍ୟ କେତେକ ଅଞ୍ଚଳ ପ୍ରତି ସମ୍ପୂର୍ଣ୍ଣ ପ୍ରଯୁଜ୍ୟ । ଏହିସବୁ ଅଞ୍ଚଳ ସମ୍ବନ୍ଧରେ ଚାଣକ୍ୟଙ୍କର ଅଭିଜ୍ଞତା ଅର୍ଥଶାସ୍ତ୍ରରେ ଏକାଧିକ ସ୍ଥାନରେ ସୂଚିତ ହୋଇଅଛି । ସୁତରାଂ ଏହିସବୁ ଅଞ୍ଚଳରେ ତେତେବେଳେ ପ୍ରଚଳିତ ଜଳଯାତ୍ରା ସଂକ୍ରାନ୍ତ ନିୟମାବଳୀ ଚାଣକ୍ୟଙ୍କ ଦୃଷ୍ଟି ଆକର୍ଷଣ କରିଥିବା ସ୍ୱାଭାବିକ । ଚାଣକ୍ୟ ଯେଉଁ ରାଜାଙ୍କର ମନ୍ତ୍ରୀ ସେହି ରାଜାଙ୍କର ରାଜ୍ୟ ମଗଧ ଅର୍ଥାତ୍ ବହାର । ମାନଚିତ୍ର ପ୍ରତି ଦୃଷ୍ଟିପାତ କଲେ ଦେଖାଯିବ ଯେ, ବହାର ପକ୍ଷରେ ବଙ୍ଗଳା-ଉପକୂଳକୁ ଆସିବା ଯେପରି ସହଜ, ଅନ୍ୟ କୌଣସି ଉପକୂଳକୁ ଯିବା ସେପରି ନୁହେଁ । ପୁଣି ବହାରର ସ୍ୱତନ୍ତ୍ର ଉପକୂଳ ନାହିଁ । ଓଡ଼ିଶାର ଉପକୂଳକୁ ହିଁ ବହାରର ଉପକୂଳ ବୋଲି କହିଲେ ଚଳେ । ତେବେ ଚାଣକ୍ୟଙ୍କ ଜଳଯାତ୍ରା ସମ୍ବନ୍ଧୀୟ ବର୍ଣ୍ଣନାର ଆଦର୍ଶ ପ୍ରଧାନତଃ କେଉଁ ଦେଶ ହୋଇପାରେ ? ଆମ୍ଭେମାନେ ମନେକରୁ; ଚାଣକ୍ୟଙ୍କ କଥିତ ସମୁଦ୍ର ଯାତ୍ରା ଓ ପୋତ ନିର୍ମାଣ ପ୍ରସଙ୍ଗରେ କଳିଙ୍ଗ ବା ଉତ୍କଳର ଉଜ୍ଜ୍ୱଳ ପ୍ରଭାବ ଅଛି । ଅତଏବ ଆମ୍ଭମାନେ ଉପରୋକ୍ତ ଗ୍ରନ୍ଥ ଲିଖିତ ପୋତ ନିର୍ମାଣ ଓ ଜଳଯାତ୍ରା

Digitized by srujanika@gmail.com

ସଂକ୍ରାନ୍ତ ବର୍ଣ୍ଣନାରୁ ଖ୍ରୀ. ପୂ. ଚତୁର୍ଥ ଓ ତୃତୀୟ ଶତାବ୍ଦୀର ଉତ୍କଳ ପ୍ରତି ପ୍ରୟୋଗ କରିପାରୁଁ ।

ମୌର୍ଯ୍ୟଙ୍କ ସମୟରେ ପୋତ ଭ୍ରମଣ ସମ୍ବନ୍ଧ ସରକାରଙ୍କ ଏକଚ୍ଛତ୍ରିଆ ଅଧିକାର ଥିଲା । ନୌବିଭାଗ ଜଣେ ସ୍ୱତନ୍ତ୍ର କର୍ମଚାରୀଙ୍କ ତତ୍ତ୍ୱାବଧାନରେ ଥିଲା । ତାଙ୍କ ଉପାଧି ନାବାଧ୍ୟକ୍ଷ । କୌଣସି ପ୍ରଜା ବ୍ୟବସାୟ କରିବାକୁ ଇଚ୍ଛାକଲେ ସେ ସରକାରଙ୍କଠାରୁ ଜାହାଜ ଭଡ଼ାରେ ନେଉଥିଲେ । ସୁବିଧାନୁଯାୟୀ ନୌକା ଓ ଜାହାଜ ଗମନାଗମନ ପକ୍ଷରେ ପ୍ରକୃଷ୍ଟ ସ୍ଥାନ ଥିଲା । ଦୂରଦେଶରୁ ମଧ୍ୟ ଅନେକ ଜାହାଜ ବାଣିଜ୍ୟ ଉଦ୍ଦେଶ୍ୟରେ ଆସୁଥିଲା । ବିଦେଶାଗତ ଜାହାଜକୁ ଜଳପଥରେ ରକ୍ଷାକରିବା ନାବାଧ୍ୟକ୍ଷଙ୍କର ଏକ ପ୍ରଧାନ କର୍ତ୍ତବ୍ୟ ଥିଲା । ଜଳପଥରେ ଯେପରି ବିପଦ ନ ଘଟେ ସେଥିପାଇଁ ନାବାଧ୍ୟକ୍ଷ ନାନା ନିୟମ ପ୍ରଣୟନ କରୁଥିଲେ । ଏହି ନିୟମମାନଙ୍କ ମଧ୍ୟରୁ ଗୋଟିଏ ଆମ୍ଭମାନଙ୍କ ପ୍ରବନ୍ଧରେ ବିଶେଷ ଭାବେ ଦ୍ରଷ୍ଟବ୍ୟ । ଏତଦ୍ଦ୍ୱାରା ମଧ୍ୟ ମୌର୍ଯ୍ୟଙ୍କ ଜଳଯାତ୍ରା ସଂକ୍ରାନ୍ତ ବର୍ଣ୍ଣନା ଉତ୍କଳ ପ୍ରତି କେତେଦୂର ପ୍ରଯୁଜ୍ୟ, ତାହା ସ୍ପଷ୍ଟ ପ୍ରତୀୟମାନ ହେବ ।

"ଧ୍ରୁବାତ୍ତ ଚୂର୍ଣ୍ଣମାଷାଢ଼ୀଂ କାର୍ତ୍ତିକ୍ୟାଂ ସ୍ନାନସଂଭବଃ ।
କାର୍ମିକ ପ୍ରତ୍ୟୟଂ ଦଦ୍ୟାତ୍ ନିତ୍ୟଂ ଚାନ୍ତିକ ମାବହେତ୍ ।"

ଅର୍ଥାତ୍ ଆଷାଢ଼ ସପ୍ତମୀଠାରୁ କାର୍ତ୍ତିକମାସ ପର୍ଯ୍ୟନ୍ତ ଜଳଯାତ୍ରା କରିବା ପ୍ରଶସ୍ତ । ଆଷାଢ଼ ମାସରେ ବୃଷ୍ଟିଯୋଗେ ସମ୍ପନ୍ନ ଜଳପୂର୍ଣ୍ଣ ହୁଏ । ପ୍ରାୟ କାର୍ତ୍ତିକ ମାସ ବେଳକୁ ଉଦ୍‌ବୃତ୍ତ ଜଳ ମରୁ ନିଷ୍କାସିତ ହୋଇଯାଇଥାଏ । ସୁତରାଂ ଆଷାଢ଼ ମାସଠାରୁ କାର୍ତ୍ତିକମାସ ଯାଏ ବଡ଼ ବଡ଼ ଜାହାଜ ନଦୀ ସ୍ରୋତଦ୍ୱାରା ଦେଶର ଭିତରେ ପ୍ରବେଶ କରିବା ସୁବିଧାଜନକ । ପୁଣି ଏହି କେତେକ ମାସ ମୌସୁମୀବାୟୁ ଦକ୍ଷିଣ-ପଶ୍ଚିମ ଦିଗରୁ ପ୍ରବାହିତ ହେବାର ସମୟ । ଏହି ହେତୁରୁ ଲଙ୍କା ଓ ଦକ୍ଷିଣସ୍ଥ ସ୍ଥାନମାନଙ୍କରୁ ଏହି ସମୟରେ ଜାହାଜ ଫେରାଇବା ସୁବିଧାଜନକ । ଏହି ସମୟରେ ଉତ୍ତରଗାମୀ ପୋତ ଅଳ୍ପ ଆୟାସରେ ମୁହାଣକୁ ଆସି ନଦୀର ଉନ୍ନତ କଲେବର ସାହାଯ୍ୟରେ ଦେଶ ମଧ୍ୟରେ ପ୍ରବେଶ କରିପାରେ । ସେଥିପାଇଁ ବୋଧହୁଏ ପୂର୍ବ ଜଳଯାତ୍ରୀମାନେ ଆଷାଢ଼ଠାରୁ କାର୍ତ୍ତିକ ପର୍ଯ୍ୟନ୍ତ କେତେକ ମାସକୁ ଜଳଯାତ୍ରା ପାଇଁ ପ୍ରଶସ୍ତ ମନେକରୁଥିଲେ ଏବଂ ଅର୍ଥଶାସ୍ତ୍ର ଲେଖକ ଏହି ଲୋକମତକୁ ଗ୍ରହଣଯୁକ୍ତ କରିଥିଲେ ।

ବୋଧହୁଏ, ତତ୍କାଳୀନ ଉତ୍କଳରେ ଅର୍ଥଶାସ୍ତ୍ର କଥିତ ଏହି ନିୟମ ଅକ୍ଷରେ ଅକ୍ଷରେ ଅନୁସୃତ ହେଉଥିଲା । ହୁଏତ ମୌର୍ଯ୍ୟ ଉତ୍କଳରେ ଏହି ପ୍ରଚଳିତ ନିୟମକୁ

ଉକ୍ତବିଧ ଶ୍ଳୋକ ଆକାରରେ ଅର୍ଥଶାସ୍ତ୍ରରେ ଲିପିବଦ୍ଧ କରିଥିଲେ । ଅଦ୍ୟାବଧି ଉତ୍କଳରେ ଖ୍ରୀ: ପୂ: ଚତୁର୍ଥ ଶତାବ୍ଦୀ ପ୍ରଚଳିତ ଏହି ନିୟମର ଗୋଟିଏ ପ୍ରଧାନ ଚିହ୍ନ ଥିବାପରି ବୋଧହୁଏ । କାର୍ତ୍ତିକ ଅମାବାସ୍ୟା ଦିନ ଉତ୍କଳର ଲୋକେ ଘରେ ଘରେ ପିତୃଶ୍ରାଦ୍ଧ କରନ୍ତି । ଏହି ଶ୍ରାଦ୍ଧ ସାଧାରଣ ଶ୍ରାଦ୍ଧପରି ନୁହେଁ । ଏଥିରେ ବହୁ ସଂଖ୍ୟକ ପିତୃଙ୍କର ଆବାହନ କରାଯାଏ । ଏହିଦିନ ରାତିରେ ପ୍ରତ୍ୟେକ ଗୃହିଣୀ ନିଜ ନିଜ ଗୃହର ଅଗଣାରେ ଝୋଟି ପଥରର ଚୂନ ବା ମୁରୁଜ ଦ୍ୱାରା ଗୋଟିଏ ଗୋଟିଏ ବୋଇତ ବା ଜାହାଜର ଚିତ୍ର ଲେଖନ୍ତି । ତତ୍ପରେ ଗୃହର ସମସ୍ତ ଆସବାବ ନେଇ ଏହି ଚିତ୍ରାଙ୍କିତ ଜାହାଜ ଉପରେ ରଖନ୍ତି । ପ୍ରାତଃକାଳରେ ଗୃହର ସ୍ତ୍ରୀମାନେ ଏହି ଚିତ୍ରାଙ୍କିତ ଜାହାଜକୁ ବନ୍ଦାପନା କରନ୍ତି । ସେମାନଙ୍କର ବିଶ୍ୱାସ, ପ୍ରତିଦିନ ଏହି ପ୍ରଥା ଅନୁସରଣ କଲେ ଗୃହରେ ଧନବୃଦ୍ଧି ହୁଏ । ସେମାନେ କହନ୍ତି, "ବୋଇତ ବାଣିଜ୍ୟ କରି ଆସି ଦରିଆ କୂଳରେ ଲାଗିଛୁ; ଆମେମାନେ ତାକୁ ବନ୍ଦାଇ ଜିନିଷପତ୍ର ଘରକୁ ଆଣୁ ।"

ବୋଧହୁଏ, ଅର୍ଥଶାସ୍ତ୍ର ଲିଖିତ ଉପରୋକ୍ତ ନିୟମ ଅନୁଯାୟୀ ଉତ୍କଳର ଦକ୍ଷିଣଗାମୀ ନାବିକମାନେ ଦକ୍ଷିଣ-ପଶ୍ଚିମ ବାୟୁର ସାହାଯ୍ୟରେ ଜାହାଜ ଫେରାଇ କାର୍ତ୍ତିକମାସ ସମୟକୁ ସ୍ୱଦେଶରେ ଆସି ପହଞ୍ଚୁଥିଲେ ଏବଂ ବଣିକ ବଧୂମାନେ ଏକ ନିର୍ଦ୍ଦିଷ୍ଟ ଦିନରେ ଅର୍ଥାତ୍ କାର୍ତ୍ତିକ ଅମାବାସ୍ୟା ରାତିରେ ସମ୍ମିଳିତ ଭାବରେ ଜାହାଜ ବନ୍ଦାପନା କରି ଦ୍ରବ୍ୟସବୁ ଗୃହକୁ ଆଣିବାର ଆରମ୍ଭ କରୁଥିଲେ । ଉପ୍ରୋକ୍ତ ଖଣ୍ଡଗଳଣି. ବର୍ତ୍ତମାନ କେବଳ ତାହା ପଡ଼ି ରହିଛି । ଆହୁରି ମଧ୍ୟ ବୋଧହୁଏ ବହୁ ପୂର୍ବରୁ ଉତ୍ତର ପୂର୍ବାଞ୍ଚଳୀୟ ଦେଶରେ ବାଣିଜ୍ୟ କରିବା ପାଇଁ ଉତ୍କଳୀୟ ବଣିକମାନେ ଆଷାଢ଼ ଓ କାର୍ତ୍ତିକମାସ ମଧ୍ୟରେ ଜାହାଜ ସବୁକୁ ଦକ୍ଷିଣ-ପଶ୍ଚିମ ମୌସୁମୀ ବାୟୁରେ ମେଲି ଦେଉଥିଲେ ।

ପୁଣି ଉତ୍କଳରେ ଗୋଟିଏ ଉକ୍ତି ଅଛି—'ଚଇତ; ଶୀତଯାଏ, ଯାଏ ବୋଇତ' । ଅର୍ଥାତ୍ ଚୈତ୍ରମାସ ସମୟକୁ ଶୀତ ସମ୍ପୂର୍ଣ୍ଣ ଗୁଞ୍ଜିଯାଏ ଏବଂ ଏହି ସମୟଠାରୁ ଜଳପଥ ପାଇଁ ବୋଇତର ବ୍ୟବହାର ସ୍ଥାପିତ ହୁଏ । ପ୍ରାୟ କାର୍ତ୍ତିକମାସଠାରୁ ଚୈତ୍ରମାସ ଯାଏଁ ଉତ୍ତର ପୂର୍ବଦିଗରୁ ବାୟୁ ପ୍ରବାହିତ ହୁଏ । ସୁତରାଂ ଏହି କେତେକମାସ ବ୍ରହ୍ମଦେଶ ପ୍ରଭୃତି ସ୍ଥାନକୁ ଜାହାଜ ଫେରାଇବା ପାଇଁ ପ୍ରଶସ୍ତ ସମୟ । ବୋଧହୁଏ, ଉତ୍କଳୀୟ ବଣିକମାନେ କାର୍ତ୍ତିକ ଓ ଚୈତ୍ର ମଧ୍ୟରେ ଉତ୍ତର-ପୂର୍ବସ୍ଥ ଦେଶମାନଙ୍କରୁ ଏବଂ ଆଷାଢ଼ ଓ କାର୍ତ୍ତିକ ମଧ୍ୟରେ ଦକ୍ଷିଣସ୍ଥ ଦେଶମାନଙ୍କରୁ ବାହୁଡ଼ୁଥିଲେ । ସେହେତୁ ଆଷାଢ଼ଠାରୁ କାର୍ତ୍ତିକ ଏବଂ କାର୍ତ୍ତିକଠାରୁ ଚୈତ୍ର, ବର୍ଷର ଏହି ଦୁଇ ସମୟ ଯଥାକ୍ରମେ ଉତ୍କଳର ଉତ୍ତରଗାମୀ ଓ ଦକ୍ଷିଣଗାମୀ ପୋତ ପକ୍ଷରେ ପରମ ଉପଯୋଗୀ । କାର୍ତ୍ତିକମାସ-

Digitized by srujanika@gmail.com

ସାଗ୍ର ଧର୍ମ କର୍ମ କରିବାଦ୍ୱାରା ହୃଦୟ ପବିତ୍ରକର ପୂର୍ଣ୍ଣିମାଦିନ ପ୍ରାତଃ କାଳରେ ଶୁଭମନରେ ନଦୀ ଓ ପୁଷ୍କରିଣୀରେ ନୌକା ଭସାଇବା ପ୍ରଥା ଏ ସମ୍ପର୍କରେ ଉଲ୍ଲେଖଯୋଗ୍ୟ । ବୋଧହୁଏ, ଏହିଦିନ ପ୍ରଭୁତରେ ଉତ୍କଳୀୟ ବାଣିଜ୍ୟ ପୋତ ବିଦେଶ ଅଭିମୁଖରେ ବିଶେଷତଃ ଲଙ୍କା ପ୍ରଭୃତି ଦକ୍ଷିଣଦିଗସ୍ଥ ଦେଶମାନଙ୍କ ଅଭିମୁଖରେ ଉତ୍ତର-ପୂର୍ବ ବାୟୁର ସାହାଯ୍ୟରେ ଶୁଭଯାତ୍ରା କରୁଥିଲେ । ସେ ଯାହାହେଉ, ଆମ୍ଭମାନଙ୍କ ଦେଶ ପ୍ରଚଳିତ କାର୍ତ୍ତିକ ଅମାବାସ୍ୟା ଦିନର ବୋଇତ ବନ୍ଦାପନା ବିଧି ଓ ପୂର୍ଣ୍ଣିମାଦିନର ନୌକା ଭସାଇବା ବିଧି ଅର୍ଥଶାସ୍ତ୍ର କଥିତ ପୂର୍ବୋକ୍ତ ନିୟମର ଚିହ୍ନ ବୋଲି ବୋଧହୁଏ । ଆହୁ ମଧ୍ୟ ଉପରୋକ୍ତ ଆଲୋଚନାରୁ ଦୃଷ୍ଟିରେ ଉତ୍କଳକୁ ଏକ ପ୍ରାଚୀନ ସମୁଦ୍ରଗାମୀ ଦେଶ ବୋଲି ସ୍ୱୀକାର କରିବାକୁ ହେବ ଏବଂ ଏହି ଦୃଷ୍ଟିରେ ମଧ୍ୟ ଖ୍ରୀଷ୍ଟପୂର୍ବ ଚତୁର୍ଥ ଓ ତୃତୀୟ ଶତାବ୍ଦୀରେ କଳିଙ୍ଗ ବା ଉତ୍କଳର ସମୁଦ୍ର-ଯାତ୍ରା ସମ୍ବନ୍ଧରେ ନିଃସନ୍ଦେହ ହେବାକୁ ହେବ ।

ଖ୍ରୀ: ପୂ: ତୃତୀୟ ଶତାବ୍ଦୀ ଓ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ମଧ୍ୟରେ ଆମ୍ଭେମାନେ ଉତ୍କଳର ଜଳଯାତ୍ରା ସମ୍ବନ୍ଧରେ କୌଣସି ପ୍ରମାଣ ପାଇ ନାହୁଁ । କିନ୍ତୁ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଉତ୍କଳର ଜଳଯାତ୍ରା ସମ୍ବନ୍ଧରେ ଯେଉଁ ଆଭାସ ମିଳେ, ତହିଁରୁ ଅନୁମାନ ହୁଏ, ଉତ୍କଳର ଲୋକେ ଏହି ଶତାବ୍ଦୀରେ ସର୍ବପ୍ରଥମେ ସମୁଦ୍ରଯାତ୍ରା କାର୍ଯ୍ୟ ଆରମ୍ଭ କରି ନଥିବେ । ଏହି ସମୟର ଅନ୍ତତଃ ତିନି ଚାରି ଶତାବ୍ଦୀ ପୂର୍ବରୁ ସେମାନେ ଏହି କାର୍ଯ୍ୟରେ ଅଗ୍ରସର ହୋଇଥିବେ ।

ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ଉତ୍କଳ ଇତିହାସରେ ଏକ ସ୍ମରଣୀୟ ଶତାବ୍ଦୀ ଅଟେ । ଏହି ଶତାବ୍ଦୀର କେତେ ଶତବର୍ଷ ପୂର୍ବରୁ ଉତ୍କଳର ଲୋକେ ଜଳପଥରେ ଯାଇ ବ୍ରହ୍ମଦେଶ, ଜାଭା, ମଲକା ଓ ସିଂହଳ ଦ୍ୱୀପ ସଙ୍ଗେ ବାଣିଜ୍ୟ କରୁଥିଲେ । କିନ୍ତୁ ଏହି ଶତାବ୍ଦୀରେ ସେମାନଙ୍କର ବାଣିଜ୍ୟ ସ୍ଥାୟୀ ଆକାରରେ ପରିଣତ ହେଲା ଏବଂ ଏହି ଶତାବ୍ଦୀଠାରୁ ସେମାନଙ୍କର ବାଣିଜ୍ୟ ପୂର୍ବ ସାଗରସ୍ଥ ଦେଶ ଓ ଦ୍ୱୀପମାନଙ୍କ ସଙ୍ଗେ ବୃହତ୍ତର ଆକାରରେ ପରିଚାଳିତ ହେଲା । ବାଣିଜ୍ୟ ଉଦ୍ଦେଶ୍ୟରେ ଯାଇ ସେମାନେ କାଳକ୍ରମେ ଦେଶ ବିଦେଶରେ ଉପନିବେଶ ସ୍ଥାପନ କଲେ । ୭୫ ଖ୍ରୀ: ଅ: ରେ କେତେଜଣ କଳିଙ୍ଗ ନାବିକ ଜାଭା ଉପକୂଳରେ ଉପନିବେଶ ସ୍ଥାପନ କଲେ, ସେହିଦିନଠାରୁ ଜାଭା ଦ୍ୱୀପରେ ଏକ ନୂତନ ଅବ୍ଦ ଚଳିଆସୁଅଛି । ଆଜି ଉତ୍କଳ ବା କଳିଙ୍ଗ ନାବିକମାନଙ୍କର ବଂଶଧରମାନେ ଅଦ୍ୟାବଧି ଜାଭା ଦ୍ୱୀପରେ ବାସ କରୁଅଛନ୍ତି ଏବଂ ସେମାନେ ଅଦ୍ୟାବଧି 'କ୍ଲିଙ୍ଗ୍' ଉପାଧି ଦ୍ୱାରା ଜାଭାଦ୍ୱୀପର ଅନ୍ୟାନ୍ୟ ଅଧିବାସୀମାନଙ୍କ ମଧ୍ୟରେ ଚିହ୍ନିତ ହେଉଅଛନ୍ତି । ଆଜିକାଲି ମଲକା ଦ୍ୱୀପରେ 'ସିଂଗାପୁର' ନାମକ

Digitized by srujanika@gmail.com

ବନ୍ଦରରେ 'କ୍ଲଙ୍ଗ୍' ଉପାଧିଧାରୀ ଅନେକ ଅଧିବାସୀ ଦେଖାଯାନ୍ତି । ବ୍ରହ୍ମଦେଶରେ ଉତ୍କଳ ନାବିକମାନେ ଉପନିବେଶ ସ୍ଥାପନ କରିବାର କିଛିକାଳ ପରେ ସେମାନେ ସେଠାରେ ସମ୍ପୂର୍ଣ୍ଣ ବିସ୍ତାର କରିଥିଲେ । ଫଳରେ ସେମାନେ କାଳକ୍ରମେ ଉତ୍କଳଠାରୁ ବିଚ୍ଛିନ୍ନ ହୋଇ ଏକ ସ୍ୱତନ୍ତ୍ର ଜାତିରୂପେ ପରିଗଣିତ ହୋଇଅଛନ୍ତି । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଆଧୁନିକ ଆସାମୀ ଭାଷା ଓ ଓଡ଼ିଆ ମଧ୍ୟରେ ବହୁ ସାମ୍ୟ ଦେଖାଯାଏ ।

ଉତ୍କଳର ଉପରୋକ୍ତ ବାଣିଜ୍ୟୋନ୍ନତିବେଳେ ଦେଶର ଅନ୍ତରରେ ତଥା ଉପକୂଳରେ ଅନେକ ନଗର ଓ ବନ୍ଦର ଥିବା ସ୍ୱାଭାବିକ । ସିଂହଳ ନାମକ ବୌଦ୍ଧଗ୍ରନ୍ଥରୁ ଜଣାଯାଏ, ଉତ୍କଳ ଉପକୂଳରେ କେତେବେଳେ ଅନେକଗୁଡ଼ିଏ ବନ୍ଦର ଥିଲା । ଟୋଲେମି (Ptolemy) ଖ୍ରୀଷ୍ଟାବ୍ଦ ପ୍ରଥମ ଶତାବ୍ଦୀରେ ତାହାଙ୍କର ଭୂଗୋଳ ଲେଖି ଅଛନ୍ତି । ସେ ଓଡ଼ିଶାର କେତେଗୁଡ଼ିଏ ପ୍ରଧାନ ନଦୀ ଓ ନଗରର ନାମୋଲ୍ଲେଖ କରିଛନ୍ତି । ଯଥା :--

ପକୁର (Pakowra) ଗଞ୍ଜାମ ସନ୍ନିକଟସ୍ଥ ଏକ ନଗର ।
ନନିଗେନ୍ (Nanigaina) ପୁରୀ ।
କଟିକର୍ଦ୍ଦମ (Katikardam) କଟକ ।
କୋଣଗର (Konagara) କୋଣାର୍କ ।
କୋଶମ୍ବ (Kosamba) ବାଲେଶ୍ୱର ।
ପଲୁର (Palowra) ଜଳେଶ୍ୱର ।
ମନଦ ( Manada ) ମହାନଦୀ ।
ଟିନ୍ଦିସ୍ (Tyndis) ବ୍ରାହ୍ମଣୀ ।
ଦୋସରମ୍ (Dosaram) ବୈତରଣୀ ।
ଅଦମସ୍ (Adamas) ସୁବର୍ଣ୍ଣରେଖା ।

ଏହାଛଡ଼ା ତାମ୍ରଲିପ୍ତି ଓ କଳିଙ୍ଗ ନଗର ପ୍ରଭୃତି ଅନ୍ୟାନ୍ୟ କେତୋଟି ନଗର ମଧ୍ୟ ଥିଲା । ଉପରୋକ୍ତ ନଦୀ ଓ ସ୍ଥାନମାନ ବୋଧହୁଏ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ, ତତ୍ପୂର୍ବ ଓ ପରବର୍ତ୍ତୀ କାଳରେ ବାଣିଜ୍ୟୋପଯୋଗୀ ନଦୀ ଓ ନଗର ଥିଲା ।

ଉପରୋକ୍ତ ନଗରମାନଙ୍କ ମଧ୍ୟରୁ ପୁରୀ, କୋଣାର୍କ, ବାଲେଶ୍ୱର, ତାମ୍ରଲିପ୍ତି ଓ କଳିଙ୍ଗ ନଗର ସମୁଦ୍ର କୂଳରେ ଅବସ୍ଥିତ । ବାଲେଶ୍ୱରର ବାଣିଜ୍ୟ ଅଳ୍ପଦିନ ହେଲା ଲୁପ୍ତ ହୋଇଅଛି । କେବଳ ପୁରୀ ଏବଂ କୋଣାର୍କ ସମ୍ବନ୍ଧରେ

Digitized by srujanika@gmail.com

ତାହାର ସନ୍ଦେହ ହୋଇପାରେ ; କିନ୍ତୁ ଏଭଳି ସନ୍ଦେହ ସମ୍ପୂର୍ଣ୍ଣ ଅମୂଳକ । ଆମ୍ଭମାନଙ୍କର ଦୃଢ଼ ବିଶ୍ୱାସ, ବାଲିଚଡ଼ା ହେତୁ ଢାଲିଝମ ପୁରୀ ଏବଂ କୋଣାର୍କ ଉପକୂଳ ଜାହାଜର ଗମନାଗମନ ପକ୍ଷରେ ଅନତିକ୍ରମଣୀୟ ହୋଇ ପଡ଼ିଅଛି । ଏହି କାରଣରୁ ଓଡ଼ିଶାର ଉପକୂଳବର୍ତ୍ତୀ ସ୍ଥାନମାନ ବର୍ଷକୁବର୍ଷ ସମୁଦ୍ରଠାରୁ ଅପସାରିତ ହେଉଅଛି । ଓଡ଼ିଶାର ତାମ୍ରଲିପ୍ତି ପ୍ରଭୃତି ବନ୍ଦରମାନଙ୍କର ମଧ୍ୟ ଏହି ଦଶା । ନୀଳଗିରି ପାହାଡ଼ରେ ଡ଼ମ୍ବୁରୁ ଓ ଡ଼ମ୍ବୁରୁଣୀ ନାମରେ ଦୁଇଟି ପ୍ରସ୍ତର ମୂର୍ତ୍ତି ଅଛି । ଏମାନେ ସମୁଦ୍ର ଆଡ଼କୁ ହାତ ବଢ଼ାଇ ଅଛନ୍ତି । ଲୋକେ କହନ୍ତି, ଏ ଦୁଇଟି ଦେବତା; ପୂର୍ବେ ଏମାନେ ସେହିଠାରେ ବସି ବନ୍‌ସିଦ୍ୱାରା ସମୁଦ୍ରରୁ ମାଛ ଧରୁଥିଲେ; ସମୁଦ୍ର ପାହାଡ଼ଠାରୁ ଘୁଞ୍ଚିଯିବାରୁ ସେମାନେ ଆଉ ମାଛ ଧରିପାରୁ ନାହାନ୍ତି; କେବଳ ସମୁଦ୍ର ପୁଣି ଫେରି ଆସିବାଯାଏ ସେମାନେ ସେହିଠାରେ ଅପେକ୍ଷାକରି ବସି ରହିଅଛନ୍ତି । ସମୁଦ୍ର ବର୍ଷକୁବର୍ଷ ଓଡ଼ିଶାର ଉପକୂଳରୁ ଅପସାରିତ ହେଉଥିବା ଉକ୍ତ ଘଟଣା ବିଷୟ ଏହି କିମ୍ବଦନ୍ତୀ ଦ୍ୱାରା ସୂଚିତ ହେଉଅଛି । ଚିଲିକା ହ୍ରଦ ଏକ ସମୟରେ ବିଦେଶାଗତ ବାଣିଜ୍ୟପୋତ ଦ୍ୱାରା ଆଚ୍ଛାଦିତ ହେଉଥିଲା । ଏହିଠାରୁ ନାନାଜାତୀୟ ବାଣିଜ୍ୟ ପୋତମାନ ସୁଦୂର ଜାଭା, ମଲୟ ଓ ସିଂହଳ ପ୍ରଭୃତି ଦେଶମାନଙ୍କୁ ଯାଉଥିଲା । ବ୍ରହ୍ମାଣ୍ଡ ପୁରାଣାନ୍ତର୍ଗତ ଉତ୍କଳ-ପ୍ରକୃତିଖଣ୍ଡ ଏହି ସମ୍ପର୍କିୟ ପ୍ରମାଣ । ଏଥିରେ ଅଛି ;—

"ଚିଲ୍କାହ୍ରଦେ ସହସ୍ରଂଶ୍ଚ ଜଳଯାନୀ ସୁବୋଇତାଃ ।
ତାମ୍ରାଚ୍ଛାଦିତ ବୈତ୍ରୁତାଃ ଚନ୍ଦ୍ର ଜନଧାରକାଃ ॥
ବହୁଚକ୍ରାନ୍ୱିତାଃ ଶୀଘ୍ରାଃ ଯନ୍ତ୍ରଣୀ ସ୍ଥଳଗାମ୍ଭିତାଃ ।
ବାଣିଜ୍ୟକରଣେ ଶକ୍ତାଃ ଜିପଞ୍ଚ ଶିକ୍ଷକୃତାଃ ॥
ଦ୍ୱୀପାନ୍ତର ଗତାସ୍ତାତାଃ ଜାଭା ମଲୟ ସିଂହଳେ ।
ଗଙ୍ଗାସାଗର ପେଟନା ତଦାଗତ ଯଦେଚ୍ଛୟା ॥
ଦେଶଦେଶାନ୍ତ ଦ୍ରବ୍ୟାଣି ଗମନାଗମନେ ସିଦ୍ଧା ।
ଜଳଜନ୍ମେ ଭୁବା କେଚନ୍ ମନ୍ତ୍ରେ ଗୁପ୍ତ କୌଶଳେ ॥
ଲୁକ୍‌ଚାୟୁ ତୋ ଭୂତଭୁଯଂ ମହାଶ୍ଚର୍ଯ୍ୟ ପରଂଗତଃ ।
କୂର୍ମଯନ୍ତ୍ରଂ ଲଦୟନ୍ତଂ ମତ୍ସ୍ୟରୂପଂ ଚ ପକ୍ଷୀନଂ ।
ତ୍ରୁସ ଜାଷ୍ଟମଯଂ ଦେହଂ ତାମ୍ରପଟେ ସୁରକ୍ଷିତଂ ।
ଲୌହକଣ୍ଟକ ଗତୋ କମ୍ପେ ନିକଟ୍ୟେ ସନନ୍ତିତଃ ॥
ବାଯୁନାଳୋ ଯନ୍ତ୍ରନ୍ୟଦ୍ଧଂ ଫଦୋଟୈବ ସ୍ଥିତାକୃତାଃ ।
ବସ୍ତୁତେ ମଜ୍ଜନଂ କ୍ଷେପଂ ସଚୋକତି ଝସମାନକଂ ॥

Digitized by srujanika@gmail.com

ଦୀପନେ ଜ୍ୱଳନେ ଚୈବ ଚକ୍ରବ୍ୟୂହାଦ୍ୟସ୍ଥଳନେ ।
କୃଟନେ ଫୋଟନେ ବାପି ଖେଳନେ ପ୍ରେରଣଂ ଚରେତ୍ ।”

ଉକ୍ତ ଶ୍ଳୋକଗୁଡ଼ିକୁ ଭୁବନେଶ୍ୱରର ଜଣେ ବ୍ରାହ୍ମଣ ଗୃହରେ ଥିବା ଖଣ୍ଡିଏ ତାଳପତ୍ର ପୋଥିରୁ ଅବିକଳ ନକଲ କରାଥିବାରୁ ସେଥିରେ ବହୁ ଅଶୁଦ୍ଧି ପରିଲକ୍ଷିତ ହୁଏ । ନିମ୍ନ ସଂଶୋଧନ ଅନୁଯାୟୀ ଆମ୍ଭେମାନେ ଏହି ଶ୍ଳୋକଗୁଡ଼ିକୁ ପାଠକର ଆମ୍ଭମାନଙ୍କ ପ୍ରବନ୍ଧରେ ପ୍ରମାଣ ସ୍ୱରୂପ ଗ୍ରହଣ କରିପାରୁ ।

ଚିଲିକା ହ୍ରଦେ ସହସ୍ରଂଶ୍ଚ ସୁପୋତାଃ ଜଳଗାମିନଃ
ତାମ୍ରାଚ୍ଛାଦିତାଃ ଦୈର୍ଘ୍ୟ ତାଃ ସହସ୍ର ଜନଧାରକାଃ ।
ବହୁ ଚକ୍ରାନ୍ୱିତାଃ ଶୀଘ୍ରାଃ ଯନ୍ତ୍ରଗାଃ ସ୍ଥଳକାଙ୍କ୍ଷିତାଃ ।
ବାଣିଜ୍ୟ କରଣେ ଶକ୍ତାଃ ଦ୍ୱିପଞ୍ଚ ଶିଖର ଯୁତାଃ ।
ଦ୍ୱୀପାନ୍ତର ଗତାସ୍ତାଃ ଜାଭା-ମଳୟ ସିଂହଳ—
ଗଙ୍ଗାସାଗର-ଚୀନେଷୁ ଯଦୃଚ୍ଛୟା ତଦା ଗତାଃ ।
ଦେଶଦେଶାନ୍ତ ଦ୍ରବ୍ୟାଣି ବହନ୍ତୋ ଯାନ୍ତି କେପିବା ।
ଜଳନିମ୍ନେ ରୂବା କେଚନ୍ତ୍ ମନ୍ତ୍ରେନ ଗୁପ୍ତ କୌଶଳେ ।
ଲୁକ୍କାୟିତାଃ ଭୂତପୂର୍ବଂ ମହାଶ୍ଚର୍ଯ୍ୟଂ ପରଂଗତାଃ ।
କର୍ମଯନ୍ତ୍ରଂ ଲବଣଯନ୍ତ୍ରଂ ମତ୍ସ୍ୟରୂପଂ ଚ ପକ୍ଷିକଂ ।
ହ୍ରସ୍ୱଂ ବାଷ୍ପନିଷ୍ଟେଦନ୍ତଂ ନାମ ପଞ୍ଚ ସୁରକ୍ଷିତଂ ।
ଲୌହ ଚକ୍ରଗତଂ ନିମ୍ନେ ଚକ୍ରବ୍ୟୂହ ସମନ୍ୱିତଂ ।
ବାୟୁଜାଲ-ପରିଚ୍ଛେଦଂ ସଂକୋଚ ବିସ୍ତାର କରଂ ।
ଧ୍ୱଷ୍ଟେତୀ ମନ୍ତ୍ରକଂ ଜ୍ଞେୟଂ ସଂକୋଚେ ବସମାନକଂ ।
ଦୀପନେ ଜଳନେ ଚୈବ ଚକ୍ରବ୍ୟୂହାଦ ସ୍ଥଳନେ ।
କୃଟନେ ଫୋଟନେ ବାପି ଖେଳନେ ପ୍ରେରଣଂ ଚରେତ୍ ।

ଦୁଃଖରକଥା ଉପରୋକ୍ତ ସଂସ୍କୃତ ଶ୍ଳୋକର ରଚନାକାଳ ସମ୍ବନ୍ଧରେ କୌଣସି ପ୍ରମାଣ ନାହିଁ । ତଥାପି ସେଥିରେ ପ୍ରାଚୀନ ଉତ୍କଳରେ ପ୍ରଚଳିତ ପୋତର ଆକୃତି ଓ ନିର୍ମାଣ ପ୍ରଣାଳୀ ସମ୍ବନ୍ଧରେ ନିଃସନ୍ଦେହ ପ୍ରମାଣମାନ ମିଳେ । ବାସ୍ତବରେ ଯଦି ଉପରୋକ୍ତ ଶ୍ଳୋକଗୁଡ଼ିକ ସତ୍ୟାଶ୍ରିତ ହୁଏ, ତାହାହେଲେ ଦେଖାଯିବ ଯେ, ଉତ୍କଳ ପ୍ରଚଳିତ ତତ୍କାଳୀନ ପୋତମାନ ପ୍ରାୟ ଆଧୁନିକ ସମୁଦ୍ରଗାମୀ ପୋତମାନଙ୍କର ସଦୃଶ ଥିଲା । ବର୍ତ୍ତମାନ ଏହି ଚିଲିକା ହ୍ରଦର ମୁହାଣ ପ୍ରାୟ ବନ୍ଦ । ଏହାର ଦୂରବସ୍ଥା ପ୍ରତି ଦୃଷ୍ଟିପାତ କଲେ ଓଡ଼ିଆ ଜାତିର

Digitized by srujanika@gmail.com

ହୁଡସ୍ଥ ଫାଟିଯାଏ । ଓଡ଼ିଶାର ମହାନଦୀ, ବୈତରଣୀ ଓ ସୁବର୍ଣ୍ଣରେଖା ପ୍ରଭୃତି ନଦୀ ଟୋଲେମିଙ୍କ ଭୂଚିତ୍ରରେ ସ୍ଥାନ ପାଇବାର କାରଣ ବୋଧହୁଏ ସେ ସବୁ ନଦୀର ଜାହାଜଚାଳନ ବାଣିଜ୍ୟ ସୁବିଧା; କିନ୍ତୁ ସେହିସବୁ ନଦୀ ବର୍ତ୍ତମାନ ବାଣିଜ୍ୟର ସୁବିଧା ଯୋଗାଇବା ଦୂରେଥାଉ, କେବଳ ବର୍ଷକୁବର୍ଷ ଓଡ଼ିଶା ଲୋକଙ୍କର ସର୍ବନାଶ କରୁଅଛି, ମୁହାଣମାନଙ୍କରେ ବାଲି ଜମିଯାଇ ସେହିସବୁ ନଦୀମାନଙ୍କର ଏଭଳି ଦୁରବସ୍ଥା ଘଟାଇଅଛି ।

ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ପୂର୍ବରୁ ଉତ୍କଳର ଲୋକେ ସମୁଦ୍ର ପାରହୋଇ ବିଦେଶ ସଙ୍ଗେ ବାଣିଜ୍ୟ କରୁଥିଲେ । ଏହି ଶତାବ୍ଦୀରେ ସେମାନେ ବିଦେଶରେ ଉପନିବେଶ ସ୍ଥାପନ କରିବାକୁ ଆରମ୍ଭ କଲେ । ସେମାନଙ୍କ ବିଦେଶ ବାଣିଜ୍ୟ ବୃହତ୍ତର ଆକାର ଧାରଣ କଲା ; କିନ୍ତୁ କେଉଁ ଦ୍ରବ୍ୟରେ ସେମାନେ ବାଣିଜ୍ୟ କରୁଥିଲେ ?

ପେରିପ୍ଲସ ନାମକ ପୁସ୍ତକ (Peryplus of the Erythrean Sea) ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଲିଖିତ ହୋଇଥିଲା । ଏହି ପୁସ୍ତକରେ ଅଛି ସେତେବେଳେ ଓଡ଼ିଶାରେ ବହୁପରିମାଣରେ ହାତୀଦାନ୍ତ ଏବଂ ସୂକ୍ଷ୍ମବସ୍ତ୍ର ମିଳୁଥିଲା ଏବଂ ସୁନ୍ଦର ସୂକ୍ଷ୍ମବସ୍ତ୍ର ତାମ୍ରଲିପ୍ତି ବନ୍ଦରର ପ୍ରଧାନ ବାଣିଜ୍ୟ ଦ୍ରବ୍ୟ ଥିଲା । ଅର୍ଥଶାସ୍ତ୍ରରୁ ମଧ୍ୟ ଜଣାଯାଏ ଯେ, ଚନ୍ଦ୍ରଗୁପ୍ତଙ୍କ ସମୟରେ କଳିଙ୍ଗ ବା ଉତ୍କଳର ଅରଣ୍ୟରେ ବହୁ ହାତୀ ବାସ କରୁଥିଲେ । ବୋଧହୁଏ, ଉତ୍କଳର ଲୋକେ ହାତୀଦାନ୍ତ ଓ ସୂକ୍ଷ୍ମବସ୍ତ୍ର ପ୍ରଭୃତି ଅନ୍ୟାନ୍ୟ କେତେକ ପ୍ରକାର ଦ୍ରବ୍ୟ ଦେଇ ବିଦେଶରୁ ସୁନା ଓ ମୁକ୍ତା ଆଦି ମୂଲ୍ୟବାନ ବସ୍ତୁ ଆମଦାନି କରୁଥିଲେ । ପ୍ରାଚୀନ ଉତ୍କଳ ସୂକ୍ଷ୍ମ ବସ୍ତ୍ର ନିମନ୍ତେ ପ୍ରସିଦ୍ଧ । କଥିତ ଅଛି, କଳିଙ୍ଗ ବା ଉତ୍କଳର ରାଜା ଅଯୋଧ୍ୟାର ରାଜାଙ୍କୁ ଖଣ୍ଡିଏ ସୂକ୍ଷ୍ମବସ୍ତ୍ର ଉପହାର ଦେଇଥିଲେ । ସେହି ବସ୍ତ୍ରଖଣ୍ଡି ଜଣେ ବୌଦ୍ଧ ସନ୍ନ୍ୟାସିନୀ ପରିଧାନ କରିଥିଲେ । କିନ୍ତୁ ବସ୍ତ୍ରଖଣ୍ଡି ଏତେ ସୂକ୍ଷ୍ମ ଥିଲା ଯେ, ଲୋକେ ହଠାତ୍ ଏହାକୁ ଦେଖି ନପାରି ତପସ୍ୱିନୀଙ୍କୁ ଉଲଗ୍ନ ମନେକରି ତିରସ୍କାର କଲେ । ଓଡ଼ିଶାର ରଣପୁର, ଢଗିରିଆ, ଓ କଳାପଥର ପ୍ରଭୃତି ସ୍ଥାନମାନଙ୍କରେ ଅଦ୍ୟାବଧି ତନ୍ତୀମାନେ ଏହିପରି ସୂକ୍ଷ୍ମବସ୍ତ୍ର ବୁଣି ପାରନ୍ତି । କିନ୍ତୁ ପୋଷକ ଅଭାବରୁ ଏହି କଳା କ୍ରମଶଃ ଲୁପ୍ତ ହେଉଅଛି । ରାତିରେ ସୂକ୍ଷ୍ମବସ୍ତ୍ରକୁ ଘାସ ଉପରେ ବିଛାଇ ଦିଆଯାଏ । ସକାଳେ ଶିଶିର ହେତୁ ଯଦି ସେହି ବସ୍ତ୍ରଖଣ୍ଡ ଅଳ୍ପ ଦୂରରୁ ଘାସଠାରୁ ବାରିହୋଇ ନ ପାରେ, ତାହାହେଲେ ସେହି ବସ୍ତ୍ରଟି ସୂକ୍ଷ୍ମବସ୍ତ୍ର ଭିତରେ ଗଣ୍ୟହୁଏ. ଏହା ଉତ୍କଳରେ ସୂକ୍ଷ୍ମବସ୍ତ୍ରର ପରୀକ୍ଷା । ଏ ପ୍ରକାର ସୂକ୍ଷ୍ମବସ୍ତ୍ରମାନଙ୍କୁ ବଣାକଳା ମଧ୍ୟରେ ଜଣାଯାଏ । କବିବର ଉପେନ୍ଦ୍ର ଭଞ୍ଜ

Digitized by srujanika@gmail.com

'ବୈଦେହୀଶ ବିଳାସ'ର ଅନୁଷଙ୍ଗିକ ବର୍ଣ୍ଣନାରେ ତାଙ୍କର ଜୀବନକାଳ ଅଷ୍ଟାଦଶ ଶତାବ୍ଦୀର ଉତ୍କଳ ସମାଜରେ ଏଭଳି ସୂକ୍ଷ୍ମ ବସ୍ତ୍ର ପ୍ରଚଳନ ବିଷୟ ଲେଖି ଯାଇ-ଅଛନ୍ତି—

"ବେଢ଼ରେ ପାଦରେ ଲେଖିଲେ ଲକ୍ଷା ।
ବାଣରେଖ ବେଢ ରଙ୍ଗ କ ଦକ୍ଷା ।
ଚିତ୍ରିତ କୋକନଦ ମଧ୍ୟର
ଦେଖି ଭ୍ରମେ କି ସରସ୍ୱତୀ ନୀର ସେ ।
କଣନଳୀରେ ଥିବା ଯେ
ବାଛୁ ପିଛ ଦୂର୍ବାଦଳ          ନୀଳଚେଳ ଢୋଳ
ଭଳି ଶ୍ରୀରାମର ଯେ ।"
(ବୈ : ବି: ୧°ମ ଛନ୍ଦ/୧୭ ପଦ )

"କଣନଳୀରେ ରଖି ଲେଖି ବସନ ଦେଲେ ସୀତା ପାଇଁ ଆଣି ।
ବନ୍ଧିଲେ ସେ ପାଟ ଲକ୍ଷ୍ମଣ ଇକ୍ଷ୍ୱାକୁ କୁଳର ଯେ ଚୂଡ଼ାମଣି ।
ଜାହ୍ନାନ୍ଧଲେ ସେ ଠନ, ବଧୂ ବୋଧନ୍ତି ଗ୍ରାମ ଜନନୀ ।"
( ବୈ : ବି ୧୬ଶ ଛନ୍ଦ ୨୮ ପଦ)

ଉପରୋକ୍ତ କାବ୍ୟ ସୂଚିତ ବସ୍ତ୍ର ପାଟବ ହଠାତ୍ ଅଷ୍ଟାଦଶ ଶତାବ୍ଦୀରେ ଆବିର୍ଭୂତ ହୋଇ ପୂର୍ଣ୍ଣାଙ୍ଗପ୍ରାପ୍ତ ହୋଇ ନଥିବ । ଏହା ଅବଶ୍ୟ, ଏକଧାରାରେ ସାଧନା ଓ ସଂସ୍କାର ଫଳ ହୋଇଥିବ । କେହି କେହି କହନ୍ତି ଦକ୍ଷିଣରେ ଲୋକେ କଳିଙ୍ଗ ବା ଉତ୍କଳରୁ ସୂକ୍ଷ୍ମବସ୍ତ୍ର ନିର୍ମାଣ ଶିକ୍ଷା କରିଥିଲେ, ସେଥିପାଇଁ ପ୍ରାଚୀନ ତାମିଲ ଭାଷାରେ ବସ୍ତ୍ରକୁ କଳିଙ୍ଗ କହନ୍ତି ।

ଏହି ସମୟରେ ଉତ୍କଳର ଯେଉଁମାନେ ସମୁଦ୍ର ପାରହୋଇ ବିଦେଶରେ ବାଣିଜ୍ୟ ଓ ଉପନିବେଶ ସ୍ଥାପନ କରିଥିଲେ, ସେମାନେ କେଉଁ ଧର୍ମାବଲମ୍ବୀ ଏ ବିଷୟରେ ମତଭେଦ ଦେଖାଯାଏ । କେହି କହନ୍ତି, ସେମାନେ ବୌଦ୍ଧ, କେହି ପୁଣି କହନ୍ତି, ସେମାନେ ବ୍ରାହ୍ମଣ୍ୟ ଧର୍ମାବଲମ୍ବୀ । କିନ୍ତୁ ଉପସ୍ଥିତ ପ୍ରବନ୍ଧ ଏ ବିଷୟ ଆଲୋଚନାର ସ୍ଥାନ ନୁହେଁ । ବୌଦ୍ଧ ବା ବ୍ରାହ୍ମଣ ଯେ କୌଣସି ଧର୍ମର ଅବଲମ୍ବୀ ହୁଅନ୍ତୁ ସେମାନେ ଉତ୍କଳର ଅଧିବାସୀ । ତଥାପି ଏଭଳି ମତଦ୍ୱୈଧର କୌଣସି କାରଣ ଥିଲାପରି ବୋଧହୁଏ ନାହିଁ । ଏହି ସମୟରେ ଉତ୍କଳରେ କେବଳ ବୌଦ୍ଧ ନଥିଲେ କିମ୍ବା କେବଳ ବ୍ରାହ୍ମଣ ନଥିଲେ । ଉଭୟ ମତାବଲମ୍ବୀ ଲୋକେ ଏକତ୍ର ବାସ କରୁଥିଲେ ମଧ୍ୟ ଯେଉଁସବୁ ଦେଶରେ ଏହି ସମୟରେ ଉତ୍କଳର ଲୋକେ ବାଣିଜ୍ୟ କରୁଥିଲେ ଓ ଉପନିବେଶ ସ୍ଥାପନ କରିଥିଲେ, ସେ ସବୁଦେଶର

Digitized by srujanika@gmail.com

ଇତିହାସରେ କୌଣସିଠାରେ ନାହିଁ ଯେ କେବଳ ବୌଦ୍ଧ ବା କେବଳ ବ୍ରାହ୍ମଣମାନେ ଉତ୍କଳରୁ ଯାଇ ଏହିସବୁ କାର୍ଯ୍ୟ କରିଥିଲେ । ବରଂ ହିନ୍ଦୁ ଦେବଦେବୀଙ୍କର ଚିହ୍ନାଙ୍କିତ ପ୍ରାଚୀନ ମୁଦ୍ରା ଓ ପଦକ ସବୁ ପେଗୁ ଅଞ୍ଚଳରେ ମିଳିଥିବାର ସାର ଏ. ପି. ଫେର ମହାଶୟ ବ୍ରହ୍ମଦେଶର ଇତିହାସରେ ଲେଖିଛନ୍ତି । ଜାଭାଦ୍ୱୀପରେ ମଧ୍ୟ ହିନ୍ଦୁଧର୍ମର ଅନେକ ଅବଶେଷ ମିଳିଅଛି । ପୁଣି ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ଚୀନ୍‌ପରିବ୍ରାଜକ ଫାହିୟାନ୍ ସ୍ପଷ୍ଟ ଲେଖି ଅଛନ୍ତି ଯେ, ସେ ଜାଭାଠାରୁ ଚୀନ୍‌ଦେଶକୁ ଯେଉଁ ଜାହାଜରେ ଯାଇଥିଲେ, ସେହି ଜାହାଜକୁ ବ୍ରାହ୍ମଣ ନାବିକମାନେ ଚଳାଇଥିଲେ ।

ଆମ୍ଭେମାନେ ପୂର୍ବେ କହିଅଛୁଁ ଯେ, ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ଓ ତତ୍ପୂର୍ବରୁ ଆରମ୍ଭକରି ଉତ୍କଳର ଅଧିବାସୀମାନେ ସମୁଦ୍ର ପାରହୋଇ ବ୍ରହ୍ମ, ଜାଭା, ମଲକା, ସୁମାତ୍ରା ଓ ସିଂହଳ ପ୍ରଭୃତି ଦେଶ ସଙ୍ଗେ ବାଣିଜ୍ୟ କରୁଥିଲେ । ଏହାଛଡ଼ା ସୁଦୂର ଚୀନ, ଇଜିପ୍ଟ, ଗ୍ରୀସ୍ ଓ ରୋମ ସଙ୍ଗେ ମଧ୍ୟ ଏହି ସମୟରେ ଉତ୍କଳର ବାଣିଜ୍ୟ ସମ୍ପର୍କ ଥିବା ସ୍ପଷ୍ଟ ଅନୁମିତ ହୁଏ । ଭାରତ ଇତିହାସରୁ ଜଣାଯାଏ ଯେ, ଏହିସବୁ ବିଦେଶର ବଣିକମାନେ ଏହି ସମୟରେ ଦକ୍ଷିଣ ଭାରତର କୌଣସି କୌଣସି ଅଞ୍ଚଳରେ ଉପନିବେଶ ସ୍ଥାପନ କରିଥିଲେ । ଭାରତୀୟମାନେ ଏହି ବିଦେଶୀମାନଙ୍କୁ 'ମ୍ଳେଚ୍ଛ' ଓ 'ଯବନ' ଆଖ୍ୟା ଦେଉଥିଲେ । ଏହି ମ୍ଳେଚ୍ଛ ଓ ଯବନମାନଙ୍କ ମଧ୍ୟରୁ ଅନେକ ତାମିଲ୍ ରାଜାମାନଙ୍କର ସୈନ୍ୟ ବିଭାଗରେ କାର୍ଯ୍ୟ କରୁଥିଲେ । ସୁତରାଂ ଏମାନେ ଯେ ଉତ୍କଳର ଉପକୂଳକୁ ଆସି ନଥିବେ ଏହା ଅତ୍ୟନ୍ତ ଅସ୍ୱାଭାବିକ ।

ଉତ୍କଳ ଇତିହାସରେ ଖ୍ରୀଷ୍ଟୀୟ ପ୍ରଥମ ଓ ପଞ୍ଚମ ଶତାବ୍ଦୀ ମଧ୍ୟରେ ଏକାଧିକ ଯବନ ଆକ୍ରମଣର ଉଲ୍ଲେଖ ଅଛି । ପୁଣି ଏହି ଯବନମାନଙ୍କ ମଧ୍ୟରୁ କେହି କେହି ସମୁଦ୍ରପଥରେ ଉତ୍କଳକୁ ଆସିଥିବାର ପ୍ରକାଶ । ରକ୍ତବାହୁ ଅର୍ଣ୍ଣବପୋତରେ ଆସି ଉତ୍କଳ ଜୟ କରିଥିବା ମାଦଳା ପାଞ୍ଜିରେ ଲିଖିତ ଅଛି । ବୋଧହୁଏ ଏହି ସମୟରେ ଗ୍ରୀସ୍, ରୋମ୍, ଚୀନ୍, ଇଜିପ୍ଟ, ପାରସ୍ୟ ଓ ସିଂହଳ ପ୍ରଭୃତି ଦେଶରୁ ବାଣିଜ୍ୟ ଉଦ୍ଦେଶ୍ୟରେ ଆସିଥିବା ନାବିକମାନେ 'ଯବନ' ନାମରେ ଆଖ୍ୟାତ ହୋଇ ଉତ୍କଳ ଇତିହାସରେ ସ୍ଥାନ ପାଇଅଛନ୍ତି । ସମ୍ଭବତଃ ସେମାନଙ୍କ ମଧ୍ୟରୁ କେହି କେହି ଉତ୍କଳ ଉପକୂଳରେ ଉପନିବେଶ ସ୍ଥାପନ କରି ସାମୟିକ ପ୍ରଭୁତ୍ୱ ଲାଭ କରିଥିବା ହେତୁ ପରବର୍ତ୍ତୀ ଦେଶୀୟ ଲେଖକ ସେମାନଙ୍କୁ କିଛିକାଳ ପାଇଁ ଏ ଦେଶର ଶାସନକର୍ତ୍ତା ବୋଲି କହିଅଛନ୍ତି । ଦେଶୀୟ ଇତିହାସ ଲିଖିତ 'ଯବନ' ଶବ୍ଦର ଅର୍ଥ ମୁସଲମାନ ନୁହେଁ, ବିଦେଶୀୟ ବା ଅଭାରତୀୟ । ଏହି ଯବନ ଶବ୍ଦ ମଧ୍ୟ ବୌଦ୍ଧ ଅର୍ଥରେ ବ୍ୟବହୃତ ହୋଇଥିବା ଅସମ୍ଭବ ନୁହେଁ ।

Digitized by srujanika@gmail.com

ଶାମ୍ବ ପୁରାଣରେ ଅଛି, କୋଣାର୍କରେ ସୂର୍ଯ୍ୟଦେବ ପ୍ରତିଷ୍ଠିତ ହେଲାପରେ ତାହାଙ୍କର ସେବାପୂଜା କରିବା ପାଇଁ ଶାକଦ୍ୱୀପ ବା ପାରସ୍ୟରୁ ପୁରୋହିତ ଆଣିତ ହୋଇଥିଲେ । ପୁରାଣର ଏହି ବିବରଣରୁ ଅନୁମିତ ହୁଏ, ପାରସ୍ୟରୁ ଆସିଥିବା ସୂର୍ଯ୍ୟ ଉପାସକ କୌଣସି ଶିଷ୍ଟ ବଣିକ କୋଣାର୍କ ବନ୍ଦରରେ ସର୍ବପ୍ରଥମେ ସୂର୍ଯ୍ୟପୂଜାର ପ୍ରତିଷ୍ଠା କରିଥିଲେ । ପରେ ଉତ୍କଳର ନରପତିମାନେ ଏଠାରେ ମନ୍ଦିର ଆଦି ତୋଳାଇଥିଲେ । କୋଣାର୍କ ପୂର୍ବକାଳରେ ଏକ ପ୍ରଧାନ ବନ୍ଦର ଥିଲା । ଏହା ନିକଟରେ ପ୍ରାଚୀନ ଚିତ୍ରୋତ୍ପଳା ନଦୀ ବଙ୍ଗୋପସାଗରକୁ ପ୍ରବାହିତ ହେଉଥିଲା । ଆଧୁନିକ ଚନ୍ଦ୍ରଭାଗା ପ୍ରାଚୀନ ଚିତ୍ରୋତ୍ପଳାର ଏକ ଅଂଶ । ଚିତ୍ରୋତ୍ପଳା ନଦୀ ପ୍ରାଚୀ ଆଦି ଅନ୍ୟାନ୍ୟ ନଦୀମାନଙ୍କ ସଙ୍ଗେ ମିଳିତ ହୋଇ ବାଣିଜ୍ୟ ପୋତର ଗମନାଗମନ ପକ୍ଷେ ବିଶେଷ ସୁବିଧାଜନକ ହୋଇଥିବ । ସୁଦୂର ଖଲଗିର ପ୍ରଭୃତି ସ୍ଥାନମାନଙ୍କରୁ କୋଣାର୍କ ମନ୍ଦିର ପାଇଁ ପ୍ରସ୍ତର ସବୁ ଏହି ନଦବାଟେ ଆଣିତ ହୋଇଥିଲା । କୋଣାର୍କର ପ୍ରତିଷ୍ଠା ଟୋଲେମିଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ସେ ଏହାକୁ 'କୋଣ ନଗର' ଆଖ୍ୟା ଦେଇଅଛନ୍ତି । 'କୋଣ ନଗର' ବା 'କୋଣାର୍କ'ର କଳେବର କ୍ରମଶଃ ପରିବର୍ଦ୍ଧିତ ହୋଇ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର ପ୍ରଥମଭାଗରେ ହୁଏନ୍‌ସାଂଙ୍କ ଆଗମନ ବେଳକୁ ଏକ ସୁବିସ୍ତୀର୍ଣ୍ଣ ନଗରୀରେ ପରିଣତ ହୋଇଥିଲା । କୋଣାର୍କର ଉପକଣ୍ଠରେ ପ୍ରବାହିତା ଚିତ୍ରୋତ୍ପଳା ନଦୀର ବାଣିଜ୍ୟ ସୁବିଧା ହେତୁ କାଳକ୍ରମେ ଚିତ୍ରୋତ୍ପଳା ନାମ ପ୍ରାଧାନ୍ୟ ଲାଭକରି କୋଣାର୍କ ନଗର ପ୍ରତି ପ୍ରଯୁକ୍ତ ହେଲା । ଫଳରେ ସପ୍ତମ ଶତାବ୍ଦୀରେ ହୁଏନ୍‌ସାଂ କୋଣନଗର ବା କୋଣାର୍କକୁ 'ଚେଲିତାଲୋ' ବା ଚିତ୍ରୋତ୍ପଳା ନାମରେ ଲିପିବଦ୍ଧ କରିଅଛନ୍ତି ।

ଆମ୍ଭେମାନେ ଖ୍ରୀଷ୍ଟପୂର୍ବ ପଞ୍ଚମ ବା ଷଷ୍ଠ ଶତାବ୍ଦୀ ଓ ଖ୍ରୀଷ୍ଟୀୟ ଚତୁର୍ଥ ବା ପଞ୍ଚମ ଶତାବ୍ଦୀ ମଧ୍ୟରେ ଉତ୍କଳର ଜଳଯାତ୍ରା ସମ୍ବନ୍ଧରେ କେତେକ ଆଭାସ ଦେଇଅଛୁଁ । ବର୍ତ୍ତମାନ ଏହି ସମୟରେ ଉତ୍କଳ ପ୍ରଚଳିତ ପୋତର ଆକୃତି ଓ ନିର୍ମାଣ ପ୍ରଣାଳୀ ସମ୍ବନ୍ଧରେ ଗୋଟିଏ ଉଦାହରଣ ଦେବୁ । ଦାଠାଧାତୁବଂଶ ଲିଖିତ ଦନ୍ତକୁମାର ବୁଦ୍ଧଦେବଙ୍କ ଦନ୍ତ ନେଇ ତାମ୍ରଲିପ୍ତିଠାରୁ ଜଳପଥରେ ସିଂହଳକୁ ପଳାଇ ଯାଇଥିଲେ । ସେ ଯେଉଁ ଜାହାଜରେ ଯାଇଥିଲେ ତାହାର ଆୟତନ ସୁବୃହତ୍ । ଅନେକ କାଠପଟାକୁ ଘନିଷ୍ଠ ଭାବରେ ମିଳାଇ ଏହି ଜାହାଜ ନିର୍ମାଣ କରାଯାଇଥିଲା ଏବଂ ପଟାଗୁଡ଼ିକ ଯେପରି ହୁଗୁଳି ନଯାଏ, ସେଥିପାଇଁ ଅନେକ ଦଉଡ଼ି ମଧ୍ୟ ଭିଡ଼ାଯାଇଥିଲା । ଏହି ଜାହାଜରେ ଏକ ଉଚ୍ଚ ମାସ୍ତୁଲ ଏବଂ ଏକ ପ୍ରଶସ୍ତ ପାଲ ଥିଲା । ଜଣେ କୌଶଳୀ ନାବିକ ଏହି ଜାହାଜର ଅଧ୍ୟକ୍ଷ ଥିଲେ । ଦାଠାଧାତୁବଂଶ କଥିତ ଏହି ଉପରୋକ୍ତ ଘଟନାକୁ ୩୦୨ ଖ୍ରୀ: ଅ: ଓ ୩୨୦ ଖ୍ରୀ: ଅ: ମଧ୍ୟରେ ସ୍ଥାନ ଦିଆଯାଇପାରେ । ବହୁଦେଶାଗତ ତଥ୍ୟ ଓ ଫଳକ ଯେଉଁ

Digitized by srujanika@gmail.com

ଜାହାଜରେ ଅନେକ ବନ୍ଦରକୁ ଆସିଥିଲେ, ଏଥିରେ ଥିବା ଦ୍ରବ୍ୟର ପରିମାଣ (୫୦୦ ଗାଣ୍ଡି) ଦେଖିଲେ, ତାହା ଆମ୍ଭେମାନେ ଉଲ୍ଲେଖ କରିଅଛୁଁ । ଏହି ପରିମାଣଟିରୁ ଜାହାଜଟିର ଆକୃତି ସହଜରେ ଅନୁମେୟ । ଏହାଛଡ଼ା ଜାଭା ଓ ବରବ-ଦୁର ପ୍ରଭୃତି ସ୍ଥାନମାନଙ୍କର ଏହି ସମୟର ସ୍ଥାପତ୍ୟ ମଧ୍ୟରେ ଅନେକ ସୁବୃହତ୍ ଜାହାଜର ଚିତ୍ର ଦେଖାଯାଏ । ଦକ୍ଷିଣ ଭାରତରେ ଆବିଷ୍କୃତ ପ୍ରାଚୀନ ମୁଦ୍ରାମାନଙ୍କରେ ଏହି ସମୟ ପ୍ରଚଳିତ ଅନେକ ପ୍ରକାର ବୃହତ୍ ଜାହାଜର ଚିତ୍ର ମଧ୍ୟ ଦେଖିବାକୁ ମିଳେ ।

ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ କେଶରୀବଂଶୀୟ ରାଜାମାନେ ଓଡ଼ିଶାରେ ରାଜ୍ୟ ସ୍ଥାପନ କରିଥିଲେ । ଏମାନଙ୍କ ସୁଦୀର୍ଘ ରାଜତ୍ୱ ସମୟରେ ଅର୍ଥାତ୍ ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରୁ ଏକାଦଶ ଶତାବ୍ଦୀଯାଏ ଓଡ଼ିଶାର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ଥିଲା । ଚତୁର୍ଦ୍ଦିଗରେ ଅଦ୍ୟାବଧି ଦୃଶ୍ୟମାନ ବହୁସଂଖ୍ୟକ କୂପ, ମନ୍ଦିର ଓ ପୁଷ୍କରିଣୀମାନ ଏହାର ପ୍ରତ୍ୟକ୍ଷ ପ୍ରମାଣ । କିନ୍ତୁ ବାଣିଜ୍ୟ ଓ ଜଳଯାତ୍ରା ଏହି ସମୃଦ୍ଧିର କେତେଦୂର ସହାୟ, ସେ ସମ୍ବନ୍ଧରେ ପ୍ରମାଣ ଅଦ୍ୟାବଧି ପ୍ରଚ୍ଛନ୍ନ । ଭୁବନେଶ୍ୱରରେ ଲିଙ୍ଗରାଜ ମନ୍ଦିରର ଅନତି ଦୂରରେ 'ବୋଇତାଳ' ନାମରେ ଗୋଟିଏ ଦେଉଳ ଅଛି । ଏହି ଦେଉଳ କେଶରୀବଂଶର କୀର୍ତ୍ତି ଏବଂ ଖ୍ରୀଷ୍ଟୀୟ ଷଷ୍ଠ ଓ ସପ୍ତମ ଶତାବ୍ଦୀ ମଧ୍ୟରେ ଏହାର ନିର୍ମାଣ କାଳକୁ ସ୍ଥାନ ଦିଆଯାଇପାରେ । ପ୍ରାଚୀନ କାଳରୁ ଏହା 'ବୋଇତାଳ' ନାମରେ ଅଭିହିତ ହେଉଅଛି । ଦୂରରୁ ଏହା ଗୋଟିଏ ଓଲଟି ପଡ଼ିଥିବା ବୋଇତ ବା ଜାହାଜପରି ଦେଖାଯାଏ । ଏଭଳି ଆକୃତିର ମନ୍ଦିରଟିଏ କାହିଁକି ନିର୍ମିତ ହୋଇଥିଲା ଜଣାଯାଏ ନାହିଁ । ତେବେ ଏହି ମନ୍ଦିରର ନାମ ଓ ଗଠନ ପ୍ରଣାଳୀ ଦୃଷ୍ଟିରେ ଖ୍ରୀଷ୍ଟୀୟ ଷଷ୍ଠ ଓ ସପ୍ତମ ଶତାବ୍ଦୀରେ ଉତ୍କଳରେ ବୋଇତର ବହୁଳ ବ୍ୟବହାର ଥିବା ସ୍ପଷ୍ଟ ଅନୁମିତ ହୁଏ ।

ଦଶକୁମାର ଚରିତ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ରଚିତ ହୋଇଥିଲା । ଏହି ଗ୍ରନ୍ଥରେ ତାମ୍ରଲିପ୍ତିର ବର୍ଣ୍ଣନା ଓ ନାମୋଲ୍ଲେଖ ଦେଖାଯାଏ । ଏହି ସମୟରେ ବଙ୍ଗୋପସାଗରର ବାଣିଜ୍ୟପୋତ ସବୁ ତାମ୍ରଲିପ୍ତି ବନ୍ଦରକୁ ଯାତାୟାତ କରୁଥିଲା । କଥିତ ଅଛି, ଦଶକୁମାରଙ୍କ ମଧ୍ୟରୁ ଜଣେ କୁମାର ଏହି ବନ୍ଦରଠାରୁ ଜାହାଜରେ ଆରୋହଣ କରିଥିଲେ ଏବଂ ରମେସୁ ନାମକ ଜଣେ ଯବନ ତାଙ୍କ ଜାହାଜକୁ ମାର୍ଗରେ ବୁଡ଼ାଇ ଦେଇଥିଲେ । ପ୍ରାଚୀନ କାଳରେ ଇଜିପ୍ତ ଦେଶରେ ରାମସେସ୍ ନାମରେ ଜଣେ ପରାକ୍ରାନ୍ତ ରାଜା ଥିଲେ । ବୋଧହୁଏ ଇଜିପ୍ତାଗତ ନାବିକମାନଙ୍କ ଦ୍ୱାରା ରାମସେସ୍‌ଙ୍କ ନାମ ଭାରତକୁ ଆନୀତ ହୋଇଥିଲା ଏବଂ ସେହିଦିନୁ ରାମସେସ୍ ବା ରମେସୁ ନାମ ଏକ ପରାକ୍ରାନ୍ତ ଯବନ ଅର୍ଥରେ ଭାରତୀୟମାନଙ୍କ ସ୍ମୃତିରେ ଜାଗ୍ରତ ଥିଲା । ବର୍ତ୍ତମାନ କୁମାରଙ୍କ ଜାହାଜ କୌଣସି ବିଦେଶୀୟ ଜଳଦସ୍ୟୁ ଦ୍ୱାରା

Digitized by srujanika@gmail.com

ସନ୍ନିହିତାର ଶୁଣି ଭାରତୀୟମାନେ ଜଳଦସ୍ୟୁଙ୍କୁ ରୋମେଶୁ ବା ରୋମଶେଷ୍ ନାମ ଦେଲେ । ଏହା ଅବଶ୍ୟ ଅନୁମାନ । ତଥାପି ଦଶକୁମାର ଚରିତର ଉପରୋକ୍ତ ଗଳ୍ପଟି ତଦାନୀନ୍ତନ ଯୁଗରେ ବାଣିଜ୍ୟର ଅବସ୍ଥା ଓ ତାମ୍ରଲିପ୍ତିର ପ୍ରତିଷ୍ଠା ସମ୍ବନ୍ଧରେ ଅନେକ ଆଭାସ ଦେଉଅଛି ।

ଚୀନ ଓ ଉତ୍କଳର ରାଜାମାନଙ୍କ ମଧ୍ୟରେ ଉପଢୌକନାଦିର ଆଦାନ ପ୍ରଦାନ ହେଉଥିଲା । ତାଙ୍ଗବଂଶ, ଲଳିତ ବିସ୍ତର ଓ ସିହଳ ପ୍ରଭୃତି ବୌଦ୍ଧଗ୍ରନ୍ଥରେ ଏହାର ପ୍ରମାଣ ମିଳେ । ୭୯୫ ଖ୍ରୀ: ଅ: ରେ ଓଡ଼ିଶାର ଶୁଭକର କେଶରୀ ନାମକ ଜଣେ ରାଜା ଚୀନ ରାଜାଙ୍କ ନିକଟକୁ କେତେକ ଉପଢୌକନ ପଠାଇଥିଲେ । ଶୁଭକର ଜଣେ 'କର' ବଂଶୀୟ ରାଜା । କରବଂଶୀୟମାନେ ବୋଧହୁଏ କେଶରୀବଂଶର ଏକ ସମସାମୟିକ ଶାଖା ଏବଂ ସେମାନଙ୍କ ଅଧୀନସ୍ଥ ସାମନ୍ତରାଜା । ଯେ ଯାହାହେଉ, ଶୁଭକରଙ୍କ ଉପଢୌକନ ଅବଶ୍ୟ ଜାହାଜରେ ଚୀନକୁ ପ୍ରେରିତ ହୋଇଥିବ ଏବଂ ଚୀନଗାମୀ ଜାହାଜ ତାମ୍ରଲିପ୍ତି ବନ୍ଦରରୁ ଯାତ୍ରା କରିଥିବ । ଯେହେତୁ କଥା ସରିତ୍ ସାଗରର ସଂସ୍କୃତ ଗ୍ରନ୍ଥ ଏବଂ ଢୋରଆବାଦୀ ହୁଇଲ୍ସନ୍ କହନ୍ତି, ତାମ୍ରଲିପ୍ତି ଏହି ସମୟରେ ଚୀନ ବାଣିଜ୍ୟର ପ୍ରଧାନ ବନ୍ଦର ଥିଲା ।

ଉତ୍କଳର ଉପକୂଳବର୍ତ୍ତୀ କେତେକ ସ୍ଥାନକୁ ହିନ୍ଦୁମାନେ ତୀର୍ଥ ବୋଲି ମନେକରନ୍ତି । ଏହିସବୁ ସ୍ଥାନରେ ସେମାନେ ବଙ୍ଗୋପସାଗରର ଜଳକୁ ତୀର୍ଥଜଳ ଜ୍ଞାନକରି ଭକ୍ତି କରନ୍ତି । ଏହାର କାରଣ କ'ଣ ? ବୃହତ୍ ସଂହିତାରେ ଅଛି :—

''ଅଥବା ସମୁଦ୍ରତୀରେ କୁଶଳାଗତ ବହୁପୋତ ସମ୍ବାଧେ
ଧନନ୍ଦ ରତ୍ନ-ସ୍ନାନ-ଜଳଚର-ସିତ-ସ୍ୱର୍ଣବହଳୀକୃତୋ ପାତ୍ରେ ।''

ଅର୍ଥାତ୍ ଯେଉଁସବୁ ସ୍ଥାନରେ ବହୁସ୍ତୁ ଦ୍ରବ୍ୟର ବହୁଳ ଆମଦାନି ଓ ରପ୍ତାନି ଯୋଗୁଁ ପ୍ରଚୁର ରତ୍ନର ଆମଦାନି ହୁଏ, ସେହିସବୁ ସ୍ଥାନରେ ସମୁଦ୍ର ଜଳରେ ସ୍ନାନକରିବା କର୍ତ୍ତବ୍ୟ । ଶାସ୍ତ୍ରକାରଙ୍କର ଏହି ଉପଦେଶ ଯଦି ତୀର୍ଥସ୍ନାନର କାରଣ ହୁଏ, ତାହାହେଲେ ଉତ୍କଳର ଉପକୂଳସ୍ଥ ସମସ୍ତ ତୀର୍ଥସ୍ନାନର ସ୍ଥାନଗୁଡ଼ିକ ଏକ ସମୟରେ ପ୍ରସିଦ୍ଧ ବନ୍ଦର ଥିବା ଅନୁମେୟ । ମଧ୍ୟ ଉତ୍କଳର ଉପକୂଳବର୍ତ୍ତୀ ତୀର୍ଥସ୍ନାନର ସ୍ଥାନଗୁଡ଼ିକ ପୂର୍ବେ ବନ୍ଦର ଥିବା ଅନ୍ୟାନ୍ୟ ଉପାଦାନରୁ ଅନୁମିତ ହୋଇଅଛି । ଏ ସ୍ଥାନମାନଙ୍କ ମଧ୍ୟରୁ ପୁରୀ, କୋଣାର୍କ ଓ ତାମ୍ରଲିପ୍ତି ଉଲ୍ଲେଖଯୋଗ୍ୟ । କୋଣାର୍କରେ ଅର୍ଥାତ୍ ପ୍ରାଚୀନ ଚନ୍ଦ୍ରଭାଗା ନଦୀର ଖଣ୍ଡାଂଶ ଚନ୍ଦ୍ରଭାଗାରେ ସ୍ନାନକରିବା ପାଇଁ ପ୍ରତିବର୍ଷ ମାଘ ଶୁକ୍ଳ ସପ୍ତମୀ ତିଥିଟି ପ୍ରଶସ୍ତ । ୧୮ [illegible] ଖ୍ରୀଷ୍ଟାବ୍ଦ [illegible] ପ୍ରବର୍ତ୍ତିତ ହୋଇଥିବାର ଶୁଣାଯାଏ

Digitized by srujanika@gmail.com

ବିଷୟ ସ୍ୱରୂପ ଅନୁମାନ କରିଅଛନ୍ତି । ସୁତରାଂ ଶାସ୍ତ୍ରକାରଙ୍କର ଉପରୋକ୍ତ ଉପଦେଶ ଦୃଷ୍ଟିରେ ଦେଖିଲେ କୋଣାର୍କ ଏବଂ ଚନ୍ଦ୍ରଭାଗା ନଦୀ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ପୂର୍ବରୁ ବାଣିଜ୍ୟ ଜଗତରେ ପ୍ରସିଦ୍ଧି ଲାଭ କରିଥିବ । ଅସ୍ମମାନଙ୍କର ପୂର୍ବୋକ୍ତ ଆଲୋଚନା ଓ ହୁଏନସାଂଙ୍କ ଦ୍ୱାରା "ଚେଲିତାଲୋ"ର ଉଲ୍ଲେଖ ଏହି ଉକ୍ତିର ଅନ୍ୟ କାରଣ ।

କଥିତ ଅଛି, ତାମ୍ରଲିପ୍ତିରେ ବର୍ଗଭୀମାଙ୍କ ମନ୍ଦିର ନିକଟରେ ଗୋଟିଏ କୂପ ଥିଲା । ସେହି କୂପର ଜଳରେ କୌଣସି ଦ୍ରବ୍ୟ ବୁଡ଼ାଇଦେଲେ ତାହା ତତ୍‌କ୍ଷଣାତ୍ ସୁନା ପାଲଟିଯାଉଥିଲା । ଧନେ ଏକ ସୌଦାଗର ଜଣେ ଲୋକଠାରୁ ଏହି ତଥ୍ୟ ଜାଣିପାରି ମାଠିଆ ନେଇ କୂପ ଜଳରେ ବୁଡ଼ାଇ ଦେଲେ । ମାଠିଆଟି ତତ୍‌କ୍ଷଣାତ୍ ସୁନା ହୋଇଗଲା । ସୌଦାଗର ଏହି ସୁନା ସାହାଯ୍ୟରେ ସିଂହଳ ପ୍ରଭୃତି ଦୂରଦେଶରେ ବାଣିଜ୍ୟ କରି ପ୍ରଚୁର ଧନ ଲାଭକଲେ ଏବଂ ସ୍ୱଦେଶକୁ ଫେରିଲାବେଳେ ମାର୍ଗରେ ତାମ୍ରଲିପ୍ତିଠାରେ ବର୍ଗଭୀମାଙ୍କ ମନ୍ଦିର ନିର୍ମାଣ କରାଇଥିଲେ । ଏହି ଗଳ୍ପରୁ ଅନୁମିତ ହୁଏ, ପୂର୍ବକାଳରେ ବିଦେଶ ବାଣିଜ୍ୟ ଦ୍ୱାରା ତାମ୍ରଲିପ୍ତି ବନ୍ଦରରେ ପ୍ରଚୁର ଧନ ଆମଦାନି ହେଉଥିଲା ।

ତାମ୍ରଲିପ୍ତିରେ ମୟୂରଧ୍ୱଜ ବଂଶୀୟ ରାଜତ୍ୱ କରୁଥିଲେ । ଏହି ବଂଶର ଶେଷରାଜା ଶଶାଙ୍କ ନାରାୟଣ ରାୟ ନିଃସନ୍ତାନ ଥିଲେ । କଥିତ ଅଛି, ପ୍ରାୟ ୧୧୦୦ ଖ୍ରୀ. ଅ.ରେ ଉତ୍କଳରେ କେତେକ ନାବିକ କାଲୁଭୁୟାଁ ନାମକ ଧୀବରର ନେତୃତ୍ୱରେ ଜଳପଥରେ ଯାଇ ଶଶାଙ୍କ ନାରାୟଣଙ୍କୁ ବିତାଡ଼ିତ କରି ତାମ୍ରଲିପ୍ତିରେ ରାଜପଦ କରିଥିଲେ । ଅଦ୍ୟାବଧି କାଲୁଭୁୟାଁ ବା କାଳୁଭୁୟାଁ । ରାୟର ବଂଶଧରମାନେ ଏଠାରେ ଅଛନ୍ତି ।

କେଶରୀବଂଶର ଶେଷ ସମୟରୁ ଅର୍ଥାତ୍ ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀଠାରୁ ଉତ୍କଳର ସ୍ୱାଧୀନତା ଲୁପ୍ତ ହେବାଯାଏ ପ୍ରାୟ ପାଞ୍ଚଶତ ବର୍ଷ ଅତିବାହିତ ହୋଇଅଛି । ଏହି ପାଞ୍ଚଶତ ବର୍ଷ ମଧ୍ୟରେ ଉତ୍କଳର ଜଳଯାତ୍ରା ସମ୍ବନ୍ଧରେ ତଥ୍ୟାତଥ୍ୟ ସୁସ୍ପଷ୍ଟ ନୁହେଁ । ତଥାପି ଭାରତର ଅନ୍ୟାନ୍ୟ ଅଞ୍ଚଳରେ ଏହି ସମୟରେ ଜଳଯାତ୍ରା ପ୍ରଚଳିତ ଥିବା ସ୍ଥଳରେ ଏବଂ ଉତ୍କଳରେ ଏହି ସମୟରେ ସମୃଦ୍ଧିର କୌଣସି ନ୍ୟୂନତା ନଥିବା ସ୍ଥଳେ ଆମ୍ଭେମାନେ ଏହି ସମୟ ସମ୍ବନ୍ଧରେ ଅନୁକୂଳ ଅନୁମାନ ପୋଷଣ କରିପାରୁଁ ।

ବଙ୍ଗ ନରପତି ଲକ୍ଷ୍ମଣସେନଙ୍କ ସଭାରେ ଧୋୟୀକ ନାମରେ ଜଣେ କବି ଥିଲେ । ସେ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ପବନଦୂତଂ ନାମକ କାବ୍ୟ ଲେଖି ଅଛନ୍ତି । ଏହି କାବ୍ୟରେ ଗନ୍ଧର୍ବ କନ୍ୟା କୁବଳୟାବତୀ ଦକ୍ଷିଣ ପବନକୁ ଦୂତ ସ୍ୱରୂପ

Digitized by srujanika@gmail.com

ଲକ୍ଷ୍ମଣସେନଙ୍କ ସଭାକୁ ପଠାଇ ଅଛନ୍ତି । କବିଙ୍କ କାବ୍ୟରେ ପବନର ମାର୍ଗ ନିର୍ଦ୍ଦିଷ୍ଟ ହୋଇଅଛି ।

"ରନ୍ଧ୍ରାନ୍ ହତ୍ୱା ଜଳନିଧିପଦବୀଂ ଗାଢ଼ ଗୋଦାବରୀଭାନ୍ ।
କାଲିଙ୍ଗସ୍ୟାନୁସର ନଗରୀଂ ନାମ ରାଂ-ରାଜଧାନୀଂ ।"

କଳିଙ୍ଗ ବା ଉତ୍କଳର ପ୍ରାଚୀନ ରାଜଧାନୀ କଳିଙ୍ଗ ନଗର ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ସମୁଦ୍ରକୂଳରେ ଏକ ସମୃଦ୍ଧିଶାଳୀ ନଗର ଥିଲା । ସେଥିପାଇଁ ଏହା ବଙ୍ଗ କବିଙ୍କ ଦୃଷ୍ଟିରୁ ଅନ୍ତର ହୋଇପାରି ନଥିଲା ।

ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀରେ ଭୁବନ ବିଖ୍ୟାତ କୋଣାର୍କ ମନ୍ଦିର ନିର୍ମିତ ହୋଇଥିଲା । ମାଦଳାପାଞ୍ଜିରେ ଅଛି :—

"ଇହାଙ୍କ ଅନ୍ତରୁ ଇହାଙ୍କ ପୋ ଲଙ୍ଗୁଳିଆ ନରସିଂହଦେବ ଭୋଗବାନ୍ ୪୫ ବର୍ଷ । ଶକାବ୍ଦ ୧୨୦୪ । ଏ ରାଜା ଅର୍କ କ୍ଷେତ୍ରରେ କୋଣାର୍କ ଦେବଙ୍କୁ ଦେଉଳ ତୋଳାଇଲେ । ଏ ରାଜାର ମୂଦଳ—

"ସ-ବୃନ୍ଦ ନରସିଂହେନ ଶ୍ରେଷ୍ଟଦାରୁରେଣାଂଶୁ ମାଳିନଃ ।
ପ୍ରାସାଦଃ କାରିତୋ ରଜ୍ଜୁ ଶତେ ଦ୍ୱାଦଶକେ ଗତେ ।"

ଅର୍ଥାତ୍ ୧୨୦୦ ଶକ ବା ୧୨୭୮ ଖ୍ରୀ: ଅ:ରେ କୋଣାର୍କ ମନ୍ଦିର ନିର୍ମିତ ହୋଇଥିଲା । ଅନେକମାନେ ପୂର୍ବେ କହିଅଛୁ ଏହି ମନ୍ଦିର ପାଇଁ ନୀଳଗିରି ପ୍ରଭୃତି ସ୍ଥାନରୁ ପ୍ରସ୍ତର ସବୁ ଜଳପଥରେ ଆନୀତ ହୋଇଥିଲା । କୋଣାର୍କରେ ନବଗ୍ରହ ପ୍ରସ୍ତର ଖଣ୍ଡର ବର୍ତ୍ତମାନ ଓଜନ ୨୬·୫ ଟନ । ଏଠାକୁ ପ୍ରଥମେ ଆନୀତ ହେଲାବେଳେ ଏହାର ଓଜନ ଆହୁରି ବେଶୀ ଥିବ । ଯେଉଁ ଜାହାଜଦ୍ୱାରା ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀରେ ଏତେ ବୃହତ୍ ପ୍ରସ୍ତରଖଣ୍ଡମାନ ଆନୀତ ହୋଇଥିଲା, ସେହି ଜାହାଜର ଆକୃତି ସହଜରେ ଅନୁମେୟ ଏବଂ ଯେଉଁ ସ୍ଥାନରେ ଅଦ୍ଭୁତ ମନ୍ଦିର ନିର୍ମିତ ହେଲା, ସେହିସ୍ଥାନ ସେତେବେଳେ ସ୍ୱଦେଶ ବିଖ୍ୟାତ୍ ସମୃଦ୍ଧିଶାଳୀ ନଗର ଥିବା ସ୍ୱାଭାବିକ । କେହି କେବେ ଜଙ୍ଗଲରେ ଏଭଳି ମନ୍ଦିର ନିର୍ମାଣ କରିବା ପାଇଁ ଇଚ୍ଛା କରେ କି ?

ପୁରୀ ଜଗନ୍ନାଥ ମନ୍ଦିର ଭୋଗମଣ୍ଡପରେ ଭଗ୍ନ କୋଣାର୍କ ମନ୍ଦିରର ଅନେକ ଚିତ୍ର ବ୍ୟବହୃତ ହୋଇଥିବାର ପ୍ରକାଶ । ସେମାନଙ୍କ ମଧ୍ୟରୁ ଗୋଟିଏ ଚିତ୍ର ବର୍ତ୍ତମାନ ପ୍ରବନ୍ଧରେ ଉଲ୍ଲେଖଯୋଗ୍ୟ । ଏହା ଗୋଟିଏ ସ୍ୱତନ୍ତ୍ର ନୌକାର ଚିତ୍ର । ପୂର୍ବେ ନୌକା ବା ଜାହାଜରେ ସ୍ଥକୋଣର ଅବସ୍ଥାନ ଅନୁଯାୟୀ ତାହାର ନାମକରଣ

Digitized by srujanika@gmail.com

ହୋଇଥିଲା । ଯେଉଁ ନୌକା ବା ଜାହାଜର ସମ୍ମୁଖ ଭାଗରେ ପ୍ରକୋଷ୍ଠ ବା ମନ୍ଦିର ଥାଏ, ତାହାକୁ ଅଗ୍ରମନ୍ଦିର କୁହାଯାଉଥିଲା । ଆମ୍ଭମାନଙ୍କ ଜଗନ୍ନାଥ ମନ୍ଦିର ଉପରୋକ୍ତ ନୌକା ମଧ୍ୟ ମନ୍ଦିରଶ୍ରେଣୀୟ । ନୌକାସ୍ଥିତ ମନ୍ଦିରର ଉପରିଭାଗର ଖଣ୍ଡିଏ ଦଣ୍ଡ ବା ଶିକୁଳି ଝୁଲୁଅଛି । ନୌକାଧୀଶ ଏହି ଶିକୁଳି ବା ଦଉଡ଼ିକୁ ଧରି ଅବିଚଳିତ ଭାବରେ ମନ୍ଦିର ମଧ୍ୟରେ ବସିଅଛନ୍ତି । କେତେଗୁଡ଼ିଏ ଅହୁଳ ଟାଣୁ ଅଛନ୍ତି । ନୌକାର ଗତି ଓ ଅହୁଳର ଆଘାତରେ ନିମ୍ନସ୍ଥ ଜଳ ଇତସ୍ତତଃ ହୋଇଅଛି । ଏହି ଚିତ୍ରର ନିର୍ମାଣରେ ଉତ୍କଳର ଶିଳ୍ପୀ ଜଳପଥ ସମ୍ବନ୍ଧରେ ତାହାର ଅଭିଜ୍ଞତା ସ୍ପଷ୍ଟଭାବରେ ଦେଖାଇଅଛି । ଏହା ଉତ୍କଳରେ ଖ୍ରୀଷ୍ଟୀୟ ଦ୍ୱାଦଶ ବା ତ୍ରୟୋଦଶ ଶତାବ୍ଦୀର ଚିତ୍ର ।

ପୁରୁଷୋତ୍ତମଦେବ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀରେ ଉତ୍କଳରେ ରାଜପଣ କରିଥିଲେ । ଅନ୍ୟାନ୍ୟ ଘଟଣା ମଧ୍ୟରେ କାଞ୍ଚି ବିଜୟ ଏହାଙ୍କ ରାଜତ୍ୱର ପ୍ରଧାନ ଗୌରବ ଚିହ୍ନ ।

କଥିତ ଅଛି, କାଞ୍ଚି ଯୁଦ୍ଧରେ ପୁରୁଷୋତ୍ତମ ଦେବଙ୍କୁ ସାହାଯ୍ୟ ଦେବାପାଇଁ ସ୍ୱୟଂ ଜଗନ୍ନାଥ ଓ ବଳଭଦ୍ର ଦୁହେଁ ରାଉତ (ଅଶ୍ୱାରୋହୀ) ବେଶରେ ଯୁଦ୍ଧଭୂମିକୁ ଯାଇଥିଲେ । ମାର୍ଗ ମଧ୍ୟରେ ସେମାନେ ଆଦରଗ୍ରାମଠାରେ ମାଣିକା ନାମ୍ନୀ ଗୋପାଳୁଣୀଠାରୁ ଦହି ଖାଇ ତାକୁ ସ୍ୱହସ୍ତର ଅଙ୍ଗୁରୀୟ ବନ୍ଧକ ଦେଇ ଯାଇଥିଲେ । କିୟତ୍‌କ୍ଷଣ ପରେ ପୁରୁଷୋତ୍ତମଦେବ ସସୈନ୍ୟରେ ଉପସ୍ଥିତ ହୁଅନ୍ତେ, ମାଣିକା ତାଙ୍କୁ ବନ୍ଧକ ମୁଦି ଦେଖାଇଥିଲା । ପୁରୁଷୋତ୍ତମଦେବ ଏହି ମୁଦିକୁ ପ୍ରଭୁଙ୍କର ବୋଲି ଚିହ୍ନିପାରି ମୂଲ୍ୟଲାଗି ନେଇଥିଲେ । ସ୍ୱୟଂ ପ୍ରଭୁ ଯୁଦ୍ଧକୁ ବିଜେ କରିଅଛନ୍ତି ଜାଣି ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ମାଣିକ୍ୟ ଉପରୋକ୍ତ ଅଙ୍ଗୁରୀୟ ଦେଖାଇବା ଦ୍ୱାରା ତାଙ୍କର ଏହି ଅସୀମ ଆନନ୍ଦର କର୍ତ୍ତ୍ରୀ ହୋଇଥିବାରୁ ସେ ତାହାଠାରେ ସାତିଶୟ ପ୍ରୀତ ହୋଇଥିଲେ ଏବଂ ସେ ସ୍ୱୟଂ ଭଗବାନଙ୍କୁ ଦେଖିଅଛି ଭାବି ତାହାପ୍ରତି ତାଙ୍କର ବିଶେଷ ଭକ୍ତିଜାତ ହେଲା । ସୁତରାଂ ମାଣିକାର ସ୍ମୃତି ରକ୍ଷାର୍ଥେ ସେ ସେହିଦିନୁ ଆଦରଗ୍ରାମକୁ ମାଣିକାପାଟଣା ନାମ ଦେଲେ ।

ମାଣିକ ପାଟଣା ଗ୍ରାମ ଚିଲିକା ମୁହାଣର କୂଳରେ ଅବସ୍ଥିତ । ଅତଏବ ଉପରୋକ୍ତ କିମ୍ବଦନ୍ତୀରୁ ସ୍ପଷ୍ଟ ଅନୁମିତ ହୁଏ ଯେ, ପୁରୁଷୋତ୍ତମ ଦେବଙ୍କ ସୈନ୍ୟମାନେ ମାଣିକ୍ୟ ପାଟଣାଠାରେ ଚିଲିକା ମୁହାଣ ପାରି ହୋଇ କାଞ୍ଚି ବିରୁଦ୍ଧରେ ଯାତ୍ରା କରିଥିଲେ । ପୁରୁଷୋତ୍ତମ ଦାସଙ୍କ ରଚିତ କାଞ୍ଚିକାବେରୀ ଚରିତରେ ମଧ୍ୟ ଅଛି ;—

Digitized by srujanika@gmail.com

"ଯେବେ ପ୍ରଭୁ ଜଗନ୍ନାଥ ରାଉତ ରୂପରେ ।
ସମୁଦ୍ର-ମୁହାଣ ପଥେ ଯାଉଛନ୍ତି ଧୀରେ ।"

ପୁରୁଷୋତ୍ତମ ଗଜପତିଙ୍କ ସୈନ୍ୟ ମଧ୍ୟରେ ବହୁ ହସ୍ତୀ ଓ ଅଶ୍ୱାରୋହୀ ଥିବେ । ଅଶ୍ୱାରୋହୀ ସୈନ୍ୟ ନଥିଲେ କାଞ୍ଚିକାବେରୀ ଚରିତରେ ଜଗନ୍ନାଥ ଓ ବଳଭଦ୍ରଙ୍କର ରାଉତ ବେଶ କଳ୍ପିତ ହୋଇନଥା'ନ୍ତା । ପଶ୍ଚାତ୍‌ରେ ଜଗନ୍ନାଥ ଓ ବଳଭଦ୍ର ରାଉତ ବେଶରେ ଯୁଦ୍ଧଭୂମିକୁ ଯାଉଥିବା ସମ୍ବାଦ ଉତ୍କଳରେ ଏତେ ସୁପରିଚିତ ଯେ ପୁରୀ ମନ୍ଦିରର ଜଗମୋହନ ମଣ୍ଡପରେ ରାଉତବେଶଧାରୀ ଜଗନ୍ନାଥ ଓ ବଳଭଦ୍ରଙ୍କ ପ୍ରତିମୂର୍ତ୍ତି ସ୍ୱରୂପ ଦୁଇଟି ମୂର୍ତ୍ତି ନିର୍ମିତ ହୋଇଅଛି । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଉକ୍ତ ମୂର୍ତ୍ତି ଦୁଇଟି ମନ୍ଦିରର ସମସାମୟିକ ନୁହେଁ ।

କିନ୍ତୁ କି ଉପାୟରେ ପୁରୁଷୋତ୍ତମ ଦେବଙ୍କର ହସ୍ତୀ, ଅଶ୍ୱ ଓ ପଦାତିକ-ମାନେ ଚିଲିକା ମୁହାଣ ପାର ହୋଇଥିଲେ ? ଅବଶ୍ୟ ସେତେବେଳେ ଚିଲିକା ବକ୍ଷରେ ହସ୍ତୀ ଓ ଅଶ୍ୱମାନଙ୍କୁ ପାର କରାଇବା ପାଇଁ ବୃହଦାକାର ନୌକା ବା ପୋତମାନ ବ୍ୟବହୃତ ହେଉଥିବ ।

ଚିଲିକା ବକ୍ଷରେ ନାନାଜାତୀୟ ବିଦେଶଗାମୀ ପୋତମାନ ବ୍ୟବହୃତ ହେଉଥିବା ବିଷୟ ଆମ୍ଭେମାନେ ଏଥିପୂର୍ବେ କେତେକ ସଂସ୍କୃତ ଶ୍ଳୋକ ସାହାଯ୍ୟରେ ପ୍ରମାଣ କରିଅଛୁ । ବର୍ତ୍ତମାନ ମାଣିକ୍ୟପାଟଣାଠାରେ ଆବିଷ୍କୃତ ଖଣ୍ଡିଏ ତାମ୍ରଶାସନ ଏ ସମ୍ପର୍କରେ ଉଲ୍ଲେଖଯୋଗ୍ୟ । ଏଥିରେ କୌଣସି ପ୍ରାଚୀନ-ଘାଟର ପଣି (ପତ୍ତନ ମାହାସୂଲ) ବର୍ଣ୍ଣିତ ହୋଇଅଛି ଯଥା :—

| | |
|---|---|
| ପ୍ରତ୍ୟେକ ମନୁଷ୍ୟ | ଟ ୦ ୯ ପାହୁଲ |
| ଖଣ୍ଡେ ସବାରୀ, ଅଠଜଣ ଗଉଡ଼<br>ଜଣେ ଝରୁଆ ଓ ଜଣେ ମଶାଲ ବେହେରା | ଟ° ସୁଣଅଣା |
| ଜଣେ ଭରିଥିବା ଝରୁଆ | ଟ ° ଏକଅଣା |
| ଜଣେ ଅଶ୍ୱାରୋହୀ | ଟ° ଛଅଣା |
| ଅଶ୍ୱାରୋହୀ ନୌକାରେ<br>ଏବଂ ଅଶ୍ୱ ପାଣିରେ ପଶିଗଲେ | ଟ° ତିନଅଣା |
| ଘରେ ବୋହାଇ ଥିବା ହାଣ୍ଡି | ଟ ୧ ଟଙ୍କା ଅଣାନସ୍ତ |
| ଗୋଟିଏ ଓଟ ଓ ତାର ଆରୋହୀ | ଟ° ଦଶଅଣା |

Digitized by srujanika@gmail.com

| | |
|---|---|
| ଅଶ୍ୱେସ୍ୱ ନୌକାରେ ଓ ଓଟ ପାଣିଲେ ପଶିଗଲେ | ଟº ସୁବର୍ଣ୍ଣ |
| ହାଣୀ ପାଣିରେ ପଶିଲେ ଓ ତାହା ସହିତ ଅବା ଲୋକେ ନୌକାରେ ଗଲେ | ଟº ଏକଟଙ୍କା |
| ପ୍ରତ୍ୟେକ ମେଣ୍ଢା ବା ଛେଳି | ଟº ଏକଅଣା |
| ବଳଦଗାଡ଼ି | ଟº ୩ ଅର୍ଦ୍ଧଅଣା |
| ବୋଝିଆ ବଳଦ ବା ଗଧ | ଟº ଦୁଇ ଅଣା |
| ବୋଝ ନଥିବା ବଳଦ ବା ଗଧ | ଟº ଛ ପାହୁଲ |
| ମାଟି ବୋଝ | ଟº ଏକ ଅଣା |

ଖ୍ରୀ.ପୂ. ଦ୍ୱିତୀୟ ଶତାବ୍ଦୀର ଉପରୋକ୍ତ ପଞ୍ଜିରେ ମାଣିକପାଟଣା ଘାଟ ସମ୍ବନ୍ଧୀୟ ଅଟେ। କିନ୍ତୁ ଶାସନଟି କେଉଁ ଶତାବ୍ଦୀର ସେ ସମ୍ବନ୍ଧରେ କୌଣସି ଆଭାସ ନାହିଁ। ତଥାପି ଏହି ଶାସନରେ ସମସାମୟିକ ଯୁଗରେ ଉତ୍କଳ ପ୍ରଚଳିତ ଅଶ୍ୱବାହୀ ଓ ହସ୍ତୀବାହୀ ନୌକା ବା ପୋତସବୁର ଆକୃତ ସହଜରେ ଅନୁମେୟ। ପୁରୁଷୋତ୍ତମଙ୍କର ଚନ୍ଦନଯାତ୍ରା ଏହିପରି ସୁବୃହତ୍ ନୌକା ବା ପୋତଦ୍ୱାରା ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀରୁ ମାଣିକପାଟଣାଠାରେ ଚଳିତା ମୁହାଣ ପାର ହୋଇଥିବେ।

ପ୍ରତାପରୁଦ୍ରଦେବ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ପ୍ରଥମ ଭାଗରେ ରାଜତ୍ୱ କରିଥିଲେ। ଭକ୍ତକବି ଅଚ୍ୟୁତାନନ୍ଦ ଦାସ ଏହାଙ୍କର ସମସାମୟିକ। ଅଚ୍ୟୁତାନନ୍ଦଙ୍କ ଲେଖା ଶୂନ୍ୟ ସଂହିତାରୁ ଜଣାଯାଏ ଯେ, ତାଙ୍କ ସମୟରେ ପ୍ରାଚୀ-ନଦୀର ଉପକୂଳରେ ବହୁତ ଜନାକୀର୍ଣ୍ଣ ଓ ସମୃଦ୍ଧିଶାଳୀ ନଗର ଥିଲା। 'ପ୍ରାଚୀ ମହାତ୍ମ୍ୟ' ମଧ୍ୟ ଏହାର ଅନ୍ୟତମ ପ୍ରମାଣ। ବୋଧହୁଏ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀରେ ମଧ୍ୟ ପ୍ରାଚୀ ଓ ଚନ୍ଦ୍ରଭାଗା ନଦୀ ଉତ୍କଳର ସମୁଦ୍ର ବାଣିଜ୍ୟର ଦ୍ୱାର ଥିଲା।

ଏହି ଶତାବ୍ଦୀର ପ୍ରଥମ ଭାଗରେ ଆମ୍ଭେମାନେ ବାଲେଶ୍ୱର ଜିଲ୍ଲାର ସୁବର୍ଣ୍ଣରେଖା କୂଳରେ ପିପିଲି ନାମକ ଏକ ବନ୍ଦରର ଉଲ୍ଲେଖ ଦେଖୁ। ପିପିଲି ସମୁଦ୍ରଠାରୁ ଜଳପଥରେ ବାର ଓ ସ୍ଥଳ ପଥରେ ଛ ମାଇଲ ଦୂରରେ ଅବସ୍ଥିତ। ପର୍ତ୍ତୁଗୀଜମାନେ ମଲାକାରୁ ବିତାଡ଼ିତ ହୋଇ ୧୫୧୪ ଖ୍ରୀ. ଅ. ରେ ଏହିଠାରେ ବାଣିଜ୍ୟ କୋଠିମାନ ସ୍ଥାପନ କରିଥିଲେ।

ଯାହା କହିଗଲା ପୂର୍ବରୁ ଟିକିଏ ବେଶୀ କଲ ହେଉ। ଉତ୍କଳୀୟ ସମୁଦ୍ର ବାଣିଜ୍ୟର କର୍ଣ୍ଣଧାର କ୍ରମଶଃ କ୍ଷୀଣ ହୋଇ ଆସୁଥିଲା। ସେଥିପାଇଁ ଖ୍ରୀଷ୍ଟୀୟ ଷୋଡ଼ଶ

Digitized by srujanika@gmail.com

ଓ ସପ୍ତଦଶ ଶତାବ୍ଦୀ ମଧ୍ୟରେ ଏହି ସମୁଦ୍ର ବାଣିଜ୍ୟ କ୍ରମଶଃ ଉନ୍ନତ ଆକାର ଧାରଣ କରିଥିଲା । ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗରେ ଉତ୍କଳର ସ୍ୱାଧୀନତା ଲୁପ୍ତ ହେଲା । ତତ୍ପରେ ମୁସଲମାନଗଣ ଓଡ଼ିଶାର ଶାସନକର୍ତ୍ତା ହେଲେ । ଏମାନଙ୍କ ରାଜତ୍ୱ ସମୟରେ ଭାରତର ପ୍ରାଚୀନ ଜଳଯାତ୍ରା ଅକ୍ଷୁଣ୍ଣ ରହିଥିଲା । ପୁଣି ଏହି ସମୟରେ ଫରାସୀ, ଇଂରାଜ ଓ ଡନାମାର ପ୍ରଭୃତି ଅନ୍ୟାନ୍ୟ ପାଶ୍ଚାତ୍ୟ ଜାତିମାନେ ଉତ୍କଳ ସଙ୍ଗେ ବାଣିଜ୍ୟ ଆରମ୍ଭ କଲେ । ଏହି ସମୟରେ ଜଳଯାତ୍ରା ସମ୍ବନ୍ଧୀୟ କେତେକ ଫରାସୀ ଶବ୍ଦ ଅଦ୍ୟାବଧି ଉତ୍କଳରେ ବ୍ୟବହୃତ ହେଉଅଛି । ଯଥା —

ତଣ୍ଡେଲ—ନାବିକମାନଙ୍କର ଅଧ୍ୟକ୍ଷ ।
ଖଲସି—ନାବିକ ।
କଗ୍ରନ, ଇତ୍ୟାଦି ।

ଏହି ସମୟରେ ହିଜଳି ନାମକ ଏକ ନୂତନ ବନ୍ଦର ଉତ୍କଳରେ ପ୍ରାଧାନ୍ୟ ଲାଭ କରିଥିବା ପରି ବୋଧହୁଏ । ବସ୍ତୁତଃ ବିଦେଶୀୟ ରାଜାମାନଙ୍କ ଅଧୀନରେ ମଧ୍ୟ ଉତ୍କଳର ବାଣିଜ୍ୟ ଓ ଜଳଯାତ୍ରା ବହୁକାଳଯାଏ ଅକ୍ଷୁଣ୍ଣ ରହିଥିଲା ।

ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀରେ ପିପିଲି, କଟକ ଓ ବୁଢ଼ାବଳଙ୍ଗ ତୀରସ୍ଥ ବାଲେଶ୍ୱର ଉତ୍କଳୀୟ ସମୁଦ୍ର ବାଣିଜ୍ୟର ପ୍ରଧାନ ଦ୍ୱାର ଥିଲା । ପର୍ତ୍ତୁଗିଜମାନେ ଆରାକାନମାନଙ୍କ ସଙ୍ଗେ ମିଳିତ ହୋଇ ଜଳପଥରେ ନାନା ଅତ୍ୟାଚାର କରିବାରୁ ମୋଗଲ ସମ୍ରାଟ କ୍ରୁଦ୍ଧ ହୋଇ ସେମାନଙ୍କୁ ପିପିଲିରୁ ତଡ଼ି ଦେଇଥିଲେ । ସୁତରାଂ ଇଂରାଜମାନେ ୧୬୩୪ ଖ୍ରୀ: ଅ: ରେ ସେହିଠାରେ ବାଣିଜ୍ୟ କୋଠି ସ୍ଥାପନ କଲେ । ଏହାର ଦୁଇବର୍ଷ ପରେ ଅର୍ଥାତ୍ ୧୬୩୭ ଖ୍ରୀ. ଅ. ରେ ସେମାନେ ବାଲେଶ୍ୱରରେ ଉପନିବେଶ ସ୍ଥାପନ କଲେ । କଟକ ଯାତ୍ରୀମାନଙ୍କୁ ଧାମରା ମୁହାଣ ଠାରୁ ନଦୀବକ୍ଷରେ ଅଗ୍ରସର ହେବାକୁ ହେଉଥିଲା ।

ଆକବରଙ୍କ ସମୟରେ ରାଜା ତୋଡରମଲ୍ଲ ଯେଉଁ ବନ୍ଦୋବସ୍ତ କରିଥିଲେ, ତଦ୍ଦ୍ୱାରା ସମ୍ରାଟଙ୍କ ନଓଆର ପାଇଁ ମାସିକ ୨୯,୮୨ ଟଙ୍କା ଖଞ୍ଜା କରାଯାଇଥିଲା । ଢାକା ଏହି ନଓଆରର କେନ୍ଦ୍ର ଥିଲା । ଦାମୋଦର ଓ ରୂପନାରାୟଣର ସଙ୍ଗମଠାରୁ ବାଲେଶ୍ୱର ବନ୍ଦର ପର୍ଯ୍ୟନ୍ତ ସମସ୍ତ ଉପକୂଳ ଏହି ନଓଆରର ତତ୍ତ୍ୱାବଧାନରେ ରକ୍ଷିତ ହୋଇଥିଲା । ଫିରିଙ୍ଗି ଜଳଦସ୍ୟୁମାନଙ୍କ ଆକ୍ରମଣରୁ ଭାରତୀୟ ପୋତମାନଙ୍କୁ ରକ୍ଷା କରିବା ଏହି ନଓଆରର ପ୍ରଧାନ କର୍ତ୍ତବ୍ୟ ଥିଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଏହି ଫିରିଙ୍ଗି ଜଳଦସ୍ୟୁମାନେ ସେତେବେଳେ ଉତ୍କଳୀୟ, ତଥା ଭାରତୀୟ ବାଣିଜ୍ୟପୋତର ପ୍ରଧାନ ଶତ୍ରୁ ଥିଲେ ।

Digitized by srujanika@gmail.com

ନବାବ ସାଏସ୍ତା ଖାଁ ୧୬୬୪ ଖ୍ରୀ. ଅ. ରେ ଉପରୋକ୍ତ ଫିରିଙ୍ଗି ଜଳଦସ୍ୟୁମାନଙ୍କର ଦମନାର୍ଥେ ସଙ୍କଳ୍ପ କଲେ । ଏହି ସମୟରେ ହୁଗୁଳି, ବାଲେଶ୍ୱର, ପିପିଲି, ମୁରଙ୍ଗ, ଚଲ୍‌ମାରି ଓ ଯେଶୋର ପ୍ରଭୃତି ସ୍ଥାନରେ ଜାହାଜ ନିର୍ମିତ ହେଉଥିଲା । ସାଏସ୍ତା ଖାଁ ତାଙ୍କର ଉପରୋକ୍ତ ଉଦ୍ଦେଶ୍ୟ ସାଧନ କରିବା ପାଇଁ ଜାହାଜ ନିର୍ମାଣର ଖର୍ଚ୍ଚ ସକାଶେ ପ୍ରତ୍ୟେକ ବନ୍ଦରରୁ କର ଆଦାୟ କରିଥିଲେ । କିନ୍ତୁ ହୁଗୁଳି, ଯେଶୋର, ପିପିଲି ଓ ବାଲେଶ୍ୱର ବନ୍ଦରରୁ ଏହି କରକୁ ଟଙ୍କା ଆକାରରେ ଆଦାୟ ନକରି ତତ୍ପରିବର୍ତ୍ତେ ୪୦୦, ୫୦୦ ବା ୬୦୦ ଟନ୍ ବୋଝେଇ ନେବାଭଳି ଖଣ୍ଡିଏ କିମ୍ବା ଦୁଇଖଣ୍ଡ ଜାହାଜ ବୁଝିଥିଲେ । ଏହାର କାରଣ, ଏହିସବୁ ସ୍ଥାନରେ ସେତେବେଳେ ସୁଦୃଢ଼ ଜାହାଜ ନିର୍ମିତ ହେଉଥିଲା । ବୋରେ (Bowrey) ସାହେବ କହନ୍ତି; ଏହି ସମୟରେ ବାଲେଶ୍ୱର, ପିପିଲି ଓ ଢାକା ବନ୍ଦରରୁ ଯେଉଁସବୁ ଜାହାଜ ସିଂହଳ ଓ ଟେନାସରିମ୍ ପ୍ରଭୃତି ସ୍ଥାନକୁ ବାଣିଜ୍ୟ ସକାଶେ ଯାଉଥିଲା, ସେଥିମଧ୍ୟରୁ ପ୍ରତ୍ୟେକଟିରେ ପ୍ରାୟ ୨୦ଖଣ୍ଡ ଲେଖାଏଁ ପାଲ ଥିଲା ।

ହଣ୍ଟର ସାହେବ ତାଙ୍କ ଇତିହାସରେ ଯେତେକ ନଦୀ ଓ ବନ୍ଦରର ଯେଉଁ ବର୍ଣ୍ଣନା ଦେଇ ଅଛନ୍ତି; ସେଥିରୁ ଅନୁମିତ ହୁଏ, ସେହିସବୁ ନଦୀ ଓ ବନ୍ଦର ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀରେ ଉତ୍କଳୀୟ ସମୁଦ୍ର ବାଣିଜ୍ୟର ପ୍ରଧାନ ସହାୟ ହୋଇଥିବ । ତାଙ୍କ ସମୟରେ ଅର୍ଥାତ୍ ଊନବିଂଶ ଶତାବ୍ଦୀରେ ଦେବୀନଦୀ ସମୁଦ୍ରଠାରୁ ସାତ ମାଇଲଯାଏ ବଡ଼ ବଡ଼ ଜାହାଜ ପକ୍ଷରେ ଉପଯୋଗୀ ଥିଲା । ମହାନଦୀର ମୁହାଣଠାରୁ ନଦୀ ଭିତରେ ବହୁ ଦୂରଯାଏ ୩୦୦ ବା ୪୦୦ ଟନ୍ ବୋଝେଇ ନେବାଭଳି ଜାହାଜମାନ ଚଳିପାରୁଥିଲା । ବାଲେଶ୍ୱରର ଉପକୂଳରେ ପିପିଲି (ସୁବର୍ଣ୍ଣରେଖା) ଓ ବାଲେଶ୍ୱର ବ୍ୟତୀତ ସାଥୋ, ଛନୁଆ, ଲଇଚନପୁର, ଚୂଡ଼ାମଣି ଓ ଧାମ୍ରା ନାମରେ ଅନ୍ୟ ପାଞ୍ଚଗୋଟି ବନ୍ଦର ଥିବ । ସାଥୋ ଓ ଛନୁଆ ପିପିଲି ବନ୍ଦରର ୧୫ମାଇଲ ଦକ୍ଷିଣ ପଶ୍ଚିମରେ ଅବସ୍ଥିତ । ଏଠାରେ ବହୁଦେଶୀୟ ଧାନ ଚାଉଳ ସମ୍ବେତ ହେଉଥିଲା । ଲଇଚନପୁର ବୁଢ଼ାବଳଙ୍ଗର ୨୩ମାଇଲ ଦୂରରେ ଦକ୍ଷିଣରେ ଏବଂ ଚୂଡ଼ାମଣି ଲଇଚନପୁରର ୫ମାଇଲ ଦକ୍ଷିଣରେ ଅବସ୍ଥିତ । ଚୂଡ଼ାମଣି ପରେ ନଦୀ ଓ ସମୁଦ୍ରର ପାର୍ଶ୍ୱରେ ପଙ୍କ ଜମିଥାଏ । ସେଥିପାଇଁ ଏଠାରେ ଝଡ଼ବେଳେ ଜାହାଜ ସବୁ ଅପେକ୍ଷାକୃତ ନିରାପଦରେ ରହେ । ଧାମ୍ରା ପୂର୍ବେ ଲବଣ ରପ୍ତାନିର ଏକ ପ୍ରଧାନ କେନ୍ଦ୍ର ଥିଲା । ପୂର୍ବ ବନ୍ଦରକୁ ସମସ୍ତ ସମୟରେ କେବଳ ଖଣ୍ଡେ ଜାହାଜ ଆସୁଥିଲା । ଦେବୀ ନଦୀ ମୁହାଣ ନିକଟସ୍ଥ ମାଛଗାଁ ଧାନ ରପ୍ତାନିର ଏକ ପ୍ରଧାନ କେନ୍ଦ୍ର ଥିଲା । ମହାନଦୀ କୂଳରେ ତିନିଗୋଟି ପ୍ରଧାନ ବାଣିଜ୍ୟକେନ୍ଦ୍ର ନଗର ଥିଲା । ଯଥା ବୈଦେଶ୍ୱର, କଣ୍ଟିଲୋ ଏବଂ ପଦ୍ମାବତୀ । ଏହି

Digitized by srujanika@gmail.com

ସ୍ଥାନମାନଙ୍କର ପୂର୍ବଗୌରବ ଆଜି କେବଳ ଇତିହାସର ଅନ୍ତର୍ଭୁକ୍ତ ହୋଇଅଛି । ନାବିକମାନେ ଏହିଠାରୁ ଲୁଣ, ମସଲା, ନଡ଼ିଆ ଓ ପିତଳର ଜିନିଷମାନ ନେଇ ସମ୍ବଲପୁରଅଞ୍ଚଳ କପା, ରେଶମ, ହଳଦୀ, ଲୁହା, ଟସର ଓ ଧାନ ଚାଉଳ ଆଦି ଆଣୁଥିଲେ । କିନ୍ତୁ ହଣ୍ଟରଙ୍କ ସମୟରୁ ଅର୍ଥାତ୍ ଊନବିଂଶ ଶତାବ୍ଦୀବେଳକୁ ଉଲ୍ଲିଖିତ ସାଗରକୂଳବର୍ତ୍ତୀ ସ୍ଥାନମାନ ବାଲିଚଡ଼ା ହେବାରୁ ଅକର୍ମଣ୍ୟ ଏବଂ ନଦୀତୀରସ୍ଥ ନଗରମାନ ଶ୍ରୀହୀନ ହୋଇଯାଇଥିଲା । ସେଥିପାଇଁ ଆମ୍ଭେମାନେ ଉତ୍କଳ ବାଣିଜ୍ୟୋନ୍ନତିର ଶେଷ ଅଧ୍ୟାୟରେ ଅର୍ଥାତ୍ ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀ ମଧ୍ୟରେ ସେହିସବୁ ବନ୍ଦର ଓ ନଗରମାନଙ୍କୁ ସ୍ଥାନ ଦେଇଅଛୁଁ ।

ସପ୍ତଦଶ ଶତାବ୍ଦୀରେ ଇଂରେଜମାନେ ବାଲେଶ୍ୱରଠାରେ ବାଣିଜ୍ୟକୋଠିମାନ ସ୍ଥାପନ କରିଥିଲେ । ଫରାସୀ, ଦିନାମାର, ଓଲନ୍ଦାଜ ଓ ପର୍ତ୍ତୁଗିଜମାନେ ଏହି ସ୍ଥାନକୁ ଆକୃଷ୍ଟ ହୋଇ ଆସିଥିଲେ । ସୁତରାଂ ଏହି ସ୍ଥାନ ଖ୍ରୀଷ୍ଟୀୟ ଷୋଡ଼ଶ ଓ ସପ୍ତଦଶ ଶତକରେ ବାଣିଜ୍ୟ ଜଗତରେ ପ୍ରତିଷ୍ଠା ଲାଭ କରିଥିବ ଏବଂ ବୋଧହୁଏ ବାଲେଶ୍ୱରରେ ଅଦ୍ୟାବଧି ଯେଉଁ ବାଣିଜ୍ୟ ଚିହ୍ନମାନ ଦେଖାଯାଏ, ସେ ସବୁ ଅଧିକାଂଶ ଏହି ସମୟରେ ଉଦ୍ଭୂତ ହୋଇଥିବ । ବାଲେଶ୍ୱର ସହରରେ ଫରାସିଡିଙ୍ଗା, ଦିନାମାରଡିଙ୍ଗା ଓ ଓଲନ୍ଦାଜ ସାହି ନାମରେ ତିନୋଟି ସାହି ଅଛି । ବୋଧହୁଏ ଏହିସବୁ ସ୍ଥାନରେ ଯଥାକ୍ରମେ ଫରାସୀ, ଦିନାମାର ଓ ଓଲନ୍ଦାଜମାନେ ବାସକରୁଥିଲେ । ସହରର ଯେଉଁ ଅଂଶକୁ ନୂଆବଜାର କୁହାଯାଏ, ସେଥିରେ ଏକ ବିସ୍ତୀର୍ଣ୍ଣ ପଡ଼ିଆ ଅଛି । ଲୋକେ ଏହାକୁ ପରମିନ୍ ପଡ଼ିଆ ବୋଲି କହନ୍ତି । ବୋଧହୁଏ ପର୍ତ୍ତୁଗୀଜମାନଙ୍କ ନାମାନୁସାରେ ଏହି ପଡ଼ିଆର ନାମକରଣ ହୋଇଅଛି । ବାଲେଶ୍ୱର ସହରର ଲୋକମାନଙ୍କ ମଧ୍ୟରେ ଅନେକ ଟାମ୍ଭୁଲି ବା ସଡ଼ିଆ ଓ ଚନ୍ଦ ଉପାଧିଧାରୀ ବଙ୍ଗାଳୀ ତନ୍ତୀ ଅଛନ୍ତି । 'ଟାମ୍ଭୁଲି' ବୋଧହୁଏ 'ଟାମିଲ' ଶବ୍ଦର ଲୌକିକ ବ୍ୟବହାର । ବୃଦ୍ଧମାନେ କହନ୍ତି ଯେ, ସେମାନେ ପୂର୍ବେ ବାଣିଜ୍ୟ ଉଦ୍ଦେଶ୍ୟରେ କଟକ ଓ ଚଟ୍ଟଗ୍ରାମ ପ୍ରଭୃତି ସ୍ଥାନମାନଙ୍କରୁ ଏଠାକୁ ଆସିଥିଲେ । ଜାଭା ପ୍ରଭୃତି ଦ୍ୱୀପର ମାଟିରେ ହାଣ୍ଡି ନିର୍ମିତ ହୋଇପାରେ ନାହିଁ । ସେଥିପାଇଁ ସେହିସବୁ ଦ୍ୱୀପର ଅଧିବାସୀମାନେ ନଡ଼ିଆ ବଦଳରେ ବାଲେଶ୍ୱରଠାରୁ ମାଟିହାଣ୍ଡି ଜାହାଜରେ ନେଇଯାଉଥିଲେ । ଲୋକେ କହନ୍ତି, ପୂର୍ବେ ବୁଢ଼ାବଳଙ୍ଗ ଓ ସମୁଦ୍ରର କୂଳରେ ମାଟିହାଣ୍ଡି ଗଦାଗଦା ହୋଇ ରହୁଥିଲା । ପିଲାମାନେ ନଡ଼ିଆ ଲୋଭରେ ହାଣ୍ଡି ଅଡ଼କୁ ଟେକା ଫୋପାଡ଼ୁଥିଲେ ବିଦେଶାଗତ ଖରିଦଦାରମାନେ ନଡ଼ିଆ ଦେଇ ସେମାନଙ୍କୁ ନିବୃତ୍ତ କରୁଥିଲେ । ବାଲେଶ୍ୱର ଓ ତନ୍ନିକଟବର୍ତ୍ତୀ ସ୍ଥାନମାନଙ୍କରେ ଅଦ୍ୟାବଧି ଅନେକ କୁମ୍ଭାର ଦେଖାଯାଆନ୍ତି । ବୁଢ଼ାବଳଙ୍ଗର ଉତ୍ତର ପାର୍ଶ୍ୱବର୍ତ୍ତୀ ଏବଂ ବାଲେଶ୍ୱରର ନିକଟସ୍ଥ ନଲକୁଲଠାରେ ଅଲ୍‌ବିନ ପରଙ୍କ ଜାହାଜ ମରାମତି

Digitized by srujanika@gmail.com

ନେଉଥିଲା । ଏହି ନଗରର ମୁହାଣ ନିକଟରେ ବଳରାମ ଗଡ଼ଠାରେ ଏକ ବାଣିଜ୍ୟ-କୋଠିର ଭଗ୍ନାବଶେଷ ଅଦ୍ୟାବଧି ପରିଦୃଷ୍ଟ ହୁଏ । ଖଡ଼୍ (ପାଲ), କପି ( ପାଲ ଟାଣିବା କଳ ) ଏବଂ ନଙ୍ଗର ଅଦ୍ୟାବଧି ବାଲେଶ୍ୱରରେ ଅନେକଙ୍କ ଗୃହରେ ଦେଖିବାକୁ ମିଳେ । ପରମିଟ୍ ଘାଟ ବା ପର୍ତ୍ତୁଗୀଜ ଘାଟରେ ପ୍ରାୟ ୭୦ ଫୁଟ ଉଚ୍ଚ ଗୋଟିଏ ପତାକାସ୍ତମ୍ଭ ଅଛି । ବାଲେଶ୍ୱରର ପ୍ରତ୍ୟେକ ବଜାର ନାମରେ 'ଗଞ୍ଜ' ଶବ୍ଦ ଦେଖାଯାଏ । 'ଗଞ୍ଜ'ର ଅର୍ଥ ଗୋଦାମ, ସୁତରାଂ ଏହି ଶବ୍ଦର ବ୍ୟବହାରରୁ ବାଲେଶ୍ୱର ପୂର୍ବେ ଏକ ପ୍ରସିଦ୍ଧ ବନ୍ଦର ଥିବା ବିଷୟ ସ୍ପଷ୍ଟ ଅନୁମିତ ହୁଏ ।

ଗଙ୍ଗବଂଶୀୟ ରାଜାମାନଙ୍କ ସମୟରେ ପୁରୀ ଓ କୋଣାର୍କ ମନ୍ଦିର ନିର୍ମିତ ହୋଇଥିଲା । ବ୍ରାହ୍ମଣମାନେ ଏହି ତୀର୍ଥମାନଙ୍କ ସମ୍ବନ୍ଧରେ ସଂସ୍କୃତ ଭାଷାରେ ପୁରାଣ ଓ ମାହାତ୍ମ୍ୟ ସବୁ ପ୍ରଣୟନ କରିଥିଲେ । ବସ୍ତୁତଃ ଏହି ସମୟରେ ଉତ୍କଳରେ ଗ୍ରନ୍ଥମାନ ପ୍ରାୟ ସଂସ୍କୃତ ଭାଷାରେ ଲିଖିତ ହେଉଥିଲା । କାଳକ୍ରମେ ସାଧାରଣ ଲୋକେ ସଂସ୍କୃତ ପରିବର୍ତ୍ତେ ଓଡ଼ିଆ ଭାଷା ପ୍ରତି ବିଶେଷ ଅନୁରକ୍ତ ହେଲେ । ପ୍ରତାପରୁଦ୍ରଙ୍କ ସମୟରେ ଚୈତନ୍ୟଦେବ ଲୌକିକ ଭାଷାରେ ଧର୍ମପ୍ରଚାର କରିଥିଲେ । ସେଥିପାଇଁ ତାଙ୍କର ଧର୍ମ ସର୍ବସାଧାରଣଙ୍କର ହୃଦୟକୁ ସ୍ପର୍ଶ କରିଥିଲା । ସେହିଦିନୁ ଧର୍ମଭାବର ପ୍ରସାର ସଙ୍ଗେ ସଙ୍ଗେ ସର୍ବସାଧାରଣଙ୍କର ଓଡ଼ିଆ ଭାଷା ପ୍ରତି ଆସ୍ଥା ବଳବତୀ ହେଲା । ଲୋକେ ଓଡ଼ିଆ ଭାଷାରେ ଧର୍ମଗ୍ରନ୍ଥମାନ ପାଠକରିବା ସୁବିଧାଜନକ ମନେକଲେ । ସେହିଦିନୁ ସଂସ୍କୃତ ଲିଖିତ ପୁରାଣ ଓ ମାହାତ୍ମ୍ୟମାନ ଓଡ଼ିଆ ଭାଷାରେ ଅନୂଦିତ ହେଲା । ପୁରାଣ ଓ ମାହାତ୍ମ୍ୟର ଆରମ୍ଭ ପ୍ରଣାଳୀରେ ଗୋଟିଏ ବିଶେଷତ୍ୱ ଅଛି । ସେ ସବୁର ଆଦ୍ୟରେ କୌଣସି ଦେବଦେବୀ ବା ଯୋଗୀ-ଋଷିଙ୍କର କଥୋପକଥନ ଥାଏ । ସୁତରାଂ ଏହି ଅନୁବାଦ ଯୁଗରେ ଓଡ଼ିଆ ଭାଷାରେ ଅନ୍ୟ ଯେଉଁସବୁ ପଦ ଲିଖିତ ହୋଇଅଛି, ସେ ସବୁର ଆଦ୍ୟରେ ପ୍ରାୟ କୌଣସି ଦେବଦେବୀ ବା ଯୋଗୀଋଷିଙ୍କର କଥୋପକଥନ ଅଛି ।

ଉତ୍କଳରେ 'ଚଉପୋଇ' ଶୀର୍ଷକ ଗୋଟିଏ ପଦ୍ୟ ପ୍ରଚଳିତ ଅଛି । ଏହା ଓଡ଼ିଆ ଭାଷାରେ ଲିଖିତ । ଏହାର ପ୍ରାରମ୍ଭରେ ଶ୍ରୀକୃଷ୍ଣ ଓ ରୁକ୍ମିଣୀଙ୍କର କଥୋପକଥନ ଅଛି । ସୁତରାଂ ଆମ୍ଭେମାନେ ଏହାର ରଚନାକାଳକୁ ଉପରୋକ୍ତ ଅନୁବାଦ ଯୁଗ ବା ଚୈତନ୍ୟଦେବଙ୍କର କେତେକବର୍ଷ ପରେ ସ୍ଥାନ ଦେଇପାରୁଁ । ପୁଣି, ଚୈତନ୍ୟଙ୍କ ଆଗମନ ପରେ ଉତ୍କଳରେ ବୈଷ୍ଣବଧର୍ମ ସର୍ବବ୍ୟାପୀ ହୋଇଅଛି । ସେ ସମୟର ଶ୍ରୀକୃଷ୍ଣଙ୍କ ନାମ ବା ଲୀଳା ଏହି ଓଡ଼ିଆ ପଦ୍ୟ ମଧ୍ୟରେ ସ୍ଥାନ ପାଇଛି ।

Digitized by srujanika@gmail.com

ଏହି ଦୃଷ୍ଟିରେ ମଧ୍ୟ 'ତଅପୋଇ' ପଦ୍ୟ ଚୈତନ୍ୟଙ୍କର କେତେକ ବର୍ଷ ପରେ ଲିଖିତ ହୋଇଥିବା ଅନୁମେୟ ।

'ତଅପୋଇ' ପଦ୍ୟରେ ସାତଜଣ ବଣିକ ଭ୍ରାତାଙ୍କର ସମୁଦ୍ରଯାତ୍ରା ବିଷୟ ବର୍ଣ୍ଣିତ ହୋଇଅଛି । ଏହି ସାତଭାଇ ମଙ୍ଗଳାଙ୍କ ପ୍ରସାଦରୁ ଜପର ବିଦେଶରେ ବାଣିଜ୍ୟ କରି ବହୁକାଳ ପରେ ଜାହାଜ ଯୋଗେ ସ୍ୱଦେଶକୁ ଫେରି ଆସିଥିଲେ, ତାହା ଦେଖାଇବା ଏହି ପଦ୍ୟର ପ୍ରଧାନ ଉଦ୍ଦେଶ୍ୟ । ଏଥିଲିଖିତ ମଙ୍ଗଳାଙ୍କର ପ୍ରଧାନ ଶକ୍ତି ନିରାପଦରେ ସମୁଦ୍ର ଜାହାଜ ପାରି କରାଇବା ।

"ଜୟଗୋ ଜୟଗୋ ମଙ୍ଗଳା,
ଉଦ୍ଧରୁ ବୁଡ଼ିବାର ବେଳା

× × × ×

ସଙ୍କଟ ତାରିଣୀ ମଙ୍ଗଳା,
ଉଦ୍ଧର ବୁଡ଼ିବାର ବେଳା ।"

ତଅପୋଇ ପ୍ରତ୍ୟେକ ଭାଦ୍ରମାସର ରବିବାର ଦିନ ଏହି ମଙ୍ଗଳାଙ୍କର ପୂଜା କରିବା ହେତୁ ମଙ୍ଗଳା ପ୍ରସନ୍ନା ହୋଇ ସାତଭାଇଙ୍କୁ ନିରାପଦରେ ଫେରାଇ ଆଣିଲେ । ଏହି ପୂଜାର ନାମ ଖୁଦୁରୁକୁଣୀ ପୂଜା । କିନ୍ତୁ ତଅପୋଇ ଭାଦ୍ରମାସର ରବିବାର ଦିନ କାହିଁକି ଏହି ପୂଜା କରିଥିଲେ ? ଏହି ମାସର ଏହି ଦିନରେ ବଣିକ ଭ୍ରାତାମାନେ ଜାହାଜରେ ଯାତ୍ରା କରିଥିଲେ କି ?

ତଅପୋଇର ଭାଇମାନେ ଜାହାଜ ଯୋଗେ ସ୍ୱଦେଶକୁ ଫେରିଲାବେଳେ ସେମାନଙ୍କ ସ୍ତ୍ରୀମାନେ ଜାହାଜ ବନ୍ଦାଇବା ପାଇଁ ଯାଇଥିଲେ । ତଅପୋଇ ପଦ୍ୟରେ ବ୍ୟକ୍ତିମାନଙ୍କର ନାମ ଉଲ୍ଲେଖନୀୟ । ସେମାନଙ୍କର ପରସ୍ପର ମଧ୍ୟରେ ଯେଉଁ ସମ୍ବନ୍ଧ କଥିତ ହୋଇଅଛି, ତାହା ମଧ୍ୟ ଉଲ୍ଲେଖନୀୟ । ସେମାନଙ୍କର ପରସ୍ପର ପ୍ରତି ଯେଉଁ ବ୍ୟବହାର ଲିଖିତ ହୋଇଅଛି, ତାହା ତତ୍‌ସାମୟିକ ଉତ୍କଳ ସମାଜର ଚିତ୍ର । ତଅପୋଇକୃତ ଖୁଦୁରୁକୁଣୀବ୍ରତ ଅଦ୍ୟାବଧି ଉତ୍କଳରେ ଅନୁଷ୍ଠିତ ହେଉଅଛି । ସୁତରାଂ 'ତଅପୋଇ' ପଦ୍ୟ ଉତ୍କଳର ତଦା ପ୍ରଚଳିତ ସମୁଦ୍ରଯାତ୍ରା କିମ୍ବା ସମୁଦ୍ରଯାତ୍ରା ସମ୍ବନ୍ଧୀୟ ନିର୍ଦ୍ଦିଷ୍ଟ ଘଟଣାକୁ ଲକ୍ଷ୍ୟକରି ଲିଖିତ ହୋଇଥାଇପାରେ । ଖ୍ରୀଷ୍ଟୀୟ ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀ ଉତ୍କଳର ବାଣିଜ୍ୟ ଇତିହାସରେ ଘଟଣାପୂର୍ଣ୍ଣ ସମୟ ଥିବା ସ୍ଥଳେ ଏବଂ 'ତଅପୋଇ' ପଦ୍ୟର ରଚନାପ୍ରଣାଳୀ ଚୈତନ୍ୟଦେବଙ୍କର କିଞ୍ଚିତ୍ ପରକାଳୀନ ଥିବା ସ୍ଥଳେ, ଆମ୍ଭେମାନେ ଏହି ପଦ୍ୟକୁ ଖ୍ରୀଷ୍ଟୀୟ

Digitized by srujanika@gmail.com

ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀ ମଧ୍ୟରେ ସ୍ଥାନ ଦେଇପାରୁ । ତାହାହେଲେ ସପ୍ତଦଶ ଶତାବ୍ଦୀରେ ଉତ୍କଳୀୟ ଜଳଯାତ୍ରା ସମ୍ବନ୍ଧରେ ଏହି ପଦ୍ୟ ଏକ ସୁଦୃଢ଼ ପ୍ରମାଣ ।

ଭକ୍ତକବି ଦୀନକୃଷ୍ଣ ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ଲେଖକ । ତାଙ୍କ କୃତ 'ପ୍ରସ୍ତାବ ସିନ୍ଧୁ' ନାମକ ପୁସ୍ତକରେ ନୌକା ଗଠନର ପ୍ରଣାଳୀ ନିମ୍ନୋକ୍ତ ଭାବରେ ବର୍ଣ୍ଣିତ ହୋଇଅଛି ।

"ସେ ଲୁହା କାଟଇ କରତ ପଟା ।
ନାବ ଖଞ୍ଜିବାକୁ ଗଢ଼ାଇ କଣ୍ଟା ॥
ଦୁଇମୁଣ୍ଡ ପଟା ଭିତରେ ପଶେ ।
ଯେସନେ ନାଗର ଦେହରେ ବସେ ॥
ଏତେ ଶଠ୍‌ପଣ କଲେ ଦୁର୍ଜନ ।
କାଷ୍ଠମନେ ତାକୁ ନଥାଇ ଆନ ॥
ସେ ନାବ ଜଳରେ ମେଲିଲେ ନେଇ ।
ଲୁହା ଶଏ ବଣା ଭିତରେ ଥୋଇ ॥
ନାନା ଶସ୍ତ୍ରମାନ ଭିତରେ ଥୋଇ
ଅକୂଳ ସମୁଦ୍ରେ ମେଲିବା ନେଇ ॥
ସେ ନାବ ସ୍ୱର୍ଗର ପନ୍ଥ ସମାନ ।
ଲୁହା ପ୍ରତ କେବେ ନୋହେ ଭ୍ରମନ ॥
ଏତକ ପାଞ୍ଚ ନକରଇ ଚତ୍ତେ ।
ଏ ଯେ ଶଠ୍‌ପଣ କରୁଛୁ ମୋତେ ॥
ଖଣ୍ଡନ୍ତ ରୂପେ ମୂଳ ଖୋଳ ଆଣି ।
ଖଣ୍ଡ ଖଣ୍ଡ କରି କାଟିଲ ପୁଣି ॥
ଦେହ କଣାକରି ଭିତରେ ପଶି ।
ଏବେ ଯାଉଅଛୁ ଉପରେ ବସି ॥
ଏତେ ଶଠ୍‌ପଣ କରୁଛୁ ଯେବେ ।
ଏହାକୁ କପାଇଁ ବହିବ ଏବେ ॥
ମଝି ସମୁଦ୍ରରେ ଦେବଇଁ ଗୁଡ଼ି ।
ସପତ ସମୁଦ୍ରେ ଏମନ୍ତ ବୁଡ଼ି ॥

କବିଙ୍କର ନୌକା କେବଳ ନଦୀବକ୍ଷଗାମୀ ନୌକା ବୋଲି ବୋଧ ହୁଏ ନାହିଁ । ଯେହେତୁ ଉପରୋକ୍ତ ପଂକ୍ତିରେ ଏହି ନୌକା ସମୁଦ୍ର ତଥା ଦୂରଦେଶ

Digitized by srujanika@gmail.com

ସହିତ ସମ୍ପୃକ୍ତ ହୋଇ ଅଛି । ପୁଣି ଏହି ନୌକା ଭିତରେ ନାନା ଶସ୍ତ୍ରମାନ ଥୋଇ ଅକୂଳ ସମୁଦ୍ରରେ ମେଲିବା ପଥା କବି ଦେଖିଅଛନ୍ତି । ତେବେ ଉତ୍କଳୀୟ ରଣଭସ୍ତ ମଧ୍ୟ ଏଠାରେ କହିବାର ଲକ୍ଷ୍ୟ ଥିଲା କି ?

ଉତ୍କଳରେ ଅନେକଗୁଡ଼ିଏ ପାଲା ପ୍ରଚଳିତ ଅଛି । ହିନ୍ଦୁର ନାରାୟଣ ଓ ମୁସଲମାନର ସତ୍ୟପୀର, ଦୁହିଁଙ୍କୁ ଏକ ବୋଲି ପ୍ରମାଣିତ କରି ଉଭୟ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ମୈତ୍ରୀଭାବ ସ୍ଥାପନ କରିବା ଏହି ପାଲାସବୁର ପ୍ରଧାନ ଉଦ୍ଦେଶ୍ୟ । ପାଲାସବୁ ବଙ୍ଗୀୟ ପାଲାମାନଙ୍କର ଅନୁକରଣରେ ରଚିତ ହୋଇଥିଲା ପରି ବୋଧହୁଏ । କିନ୍ତୁ ଠିକ୍ କେଉଁ ଶତାବ୍ଦୀରେ ଏସବୁ ଉତ୍କଳରେ ପ୍ରବେଶଲାଭ କଲା, ତାହା କହିବା ସହଜ ନୁହେଁ । ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗରେ ଉତ୍କଳରେ ହିନ୍ଦୁ ସ୍ୱାଧୀନତା ଲୁପ୍ତ ନହେବାଯାଏ ମୁସଲମାନ ପ୍ରତି ମୈତ୍ରୀଭାବ ସ୍ଥାପନ କରାଇବା ପାଇଁ ଉକ୍ତବିଧ କୌଣସି ଉଦ୍ୟମ ହୋଇ ନଥିବ ।

ଉତ୍କଳ ପ୍ରଚଳିତ ପାଲାମାନଙ୍କରେ ସ୍ଥାନେ ସ୍ଥାନେ ଚୈତନ୍ୟଦେବ ବିଷ୍ଣୁଙ୍କର ଅବତାର ସ୍ୱରୂପ ବର୍ଣ୍ଣିତ ହୋଇଅଛନ୍ତି ।

କବିକର୍ଣ୍ଣ ବିରଚିତ ବିଦ୍ୟାଧର ପାଲାରେ ଅଛି :—

"କୌଶଲ୍ୟା ସୁନ୍ଦରୀ ଗର୍ଭେ ଶ୍ରୀରାମ ଜନମ ।
ସୀତାର ହରଣେ ରାମ ବଧିଲ ରାବଣ ॥
ନଦୀଆ ନଗରେ ଶଚୀଗର୍ଭେ ଜନ୍ମ ହୁଏଁ । ।
ପାଷାଣ୍ଡ ତାରିଲ କତ ହରିନାମ ଦଅ ॥
ଦେବକୀ ଗର୍ଭରେ ଜନ୍ମ କଂସ ବନ୍ଦି ଘରେ ।
ଗୋଧନ ରଖିଲ ଭୂମି ଗୋକୁଳ ନଗରେ ॥"

ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ପ୍ରଥମଭାଗରେ ଚୈତନ୍ୟ ଜୀବିତ ଥିଲାବେଳେ ତାଙ୍କୁ କେହି ଅବତାର ବୋଲି କହୁ ନଥିଲେ । ତାଙ୍କ ସମ୍ବନ୍ଧୀୟ ଅବତାରବାଦ ତାଙ୍କ ମୃତ୍ୟୁର ପ୍ରାୟ ଏକ ଶତାବ୍ଦୀ ପରେ ଉଦ୍ଭୂତ ହୋଇଥିବ । ତାହାହେଲେ ପାଲାମାନଙ୍କରେ ଚୈତନ୍ୟଦେବ ବିଷ୍ଣୁଙ୍କର ଅବତାର ସ୍ୱରୂପ ବର୍ଣ୍ଣିତ ହୋଇଥିବା ସ୍ଥଳେ, ସେ ସବୁର ରଚନା ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀ ପୂର୍ବରୁ ହୋଇ ନଥିବ ।

କବିକର୍ଣ୍ଣ ବିରଚିତ । 'ଅଭିନନ୍ଦନ' ପାଲାରେ ଅଛି —

"ଉଙ୍ଗମୀ ମଣ୍ଡଳେ ଚଳେ ରାଜାର କୁମର ।
ସମୁଦ୍ର ସାପାନ୍ତେ ଅଛେ ରାଜାର ମଣ୍ଡଳ ॥
ବ୍ୟାଘ୍ର ଜିନ କୂପ ଜିନ ସନ୍ନ୍ୟାସ ଏଢ଼ୁଆ ।

Digitized by srujanika@gmail.com

ମରହଟ୍ଟ ଦେଶେ ବାହ୍ମା ପ୍ରବେଶିଲ ଗିଆ ।।
ରଙ୍ଗଣୀ ମଣ୍ଡଳେ ରାଜା ଉତ୍ତମଦେଶସ୍ଥ ।
ମରହଟ୍ଟ ଦେଶେ ଆଛେ ଘୋର ଯୁଦ୍ଧ କରି ।।

ନିମ୍ନରେ ଦେଖାଯିବ ଯେ ରଙ୍ଗଣୀ ବନ୍ଦର ଉତ୍କଳର ଉତ୍ତରରେ ବଙ୍ଗୋପସାଗରର ସନ୍ନିକଟରେ ଅବସ୍ଥିତ । ଏ ଅଞ୍ଚଳର ରାଜାମାନଙ୍କ ସଙ୍ଗେ ମରହଟ୍ଟାମାନଙ୍କ ସଂଘର୍ଷ ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀ ପୂର୍ବରୁ ଘଟି ନାହିଁ । ସୁତରାଂ ପାଲାରେ ଉକ୍ତ ସଂଘର୍ଷ ବିଷୟ ବର୍ଣ୍ଣିତ ହୋଇଥିବା ସ୍ଥଳେ, ସେସବୁ ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀ ପୂର୍ବରୁ ରଚିତ ହୋଇ ନଥିବ । ଅତଏବ ଆମ୍ଭେମାନେ ଖ୍ରୀଷ୍ଟୀୟ ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀ ମଧ୍ୟରେ ଉତ୍କଳ ପ୍ରଚଳିତ ପାଲାମାନଙ୍କ ରଚନାକାଳ ନିର୍ଦ୍ଦେଶ କରିପାରୁଁ ।

ଅବଶ୍ୟ ଗୋଟିଏ ଦୁଇଟି ପାଲା ଊନବିଂଶ ଶତାବ୍ଦୀରେ ରଚିତ ହୋଇଥାଇପାରେ । କିନ୍ତୁ ଉପସ୍ଥିତ ଆଲୋଚନାରେ ଆମ୍ଭେମାନେ ଯେଉଁ ପାଲାମାନଙ୍କୁ ଅବଲମ୍ବନ କରିଅଛୁଁ ଅନ୍ତତଃ ସେହି ସବୁ ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀ ମଧ୍ୟରେ ରଚିତ ।

ପାଲାବର୍ଣ୍ଣିତ ମୂଳ ଗଳ୍ପଗୁଡ଼ିକ ସତ୍ୟ ହେଉ ବା ଅଳୀକ ହେଉ; ତହିଁରେ ଥିବା ସ୍ଥୂଳ ବର୍ଣ୍ଣନାସବୁ ଯେ ସମସାମୟିକ ଉତ୍କଳର ଚିତ୍ର, ଏଥିରେ କୌଣସି ସନ୍ଦେହ ନାହିଁ । ପାଲାବର୍ଣ୍ଣିତ ବାଣିଜ୍ୟଜୀବୀ ବଣିକମାନଙ୍କର ବାସସ୍ଥାନ ଉତ୍କଳରେ ହେଉ ବା ଉତ୍କଳର ବାହାରେ ହେଉ, ସେମାନଙ୍କର ବାଣିଜ୍ୟ ବର୍ଣ୍ଣନାରେ ଉତ୍କଳୀୟ ଲେଖକ ସମସାମୟିକ ଉତ୍କଳ ସମାଜକୁ ଚିତ୍ରିତ କରିଅଛନ୍ତି ।

କବିକର୍ଣ୍ଣ ବିରଚିତ 'ଭାଠୁରସ୍ୱା' ପାଲାରେ ଅଛି —

"ନାନାଦ୍ରବ୍ୟ ନଉକାତେ ଲଦିଣ । ଭରିଲ ।
ହରି ହରି ବଲି ସାଧୁ ଅନୁକୂଳ କୈଲ ।।

× × × ×

ଲୀଳାବତୀ ଆଦି ସବେ ମିଳିତେ ଫେରିଲ
ଲଙ୍କାଗର ଶ୍ରେଷ୍ଠ ସାଧୁ ନୌକା ଚଳାଇଲ ।।
ଦୂର ସନ୍ତେ ଦେଖେ ନୀଳାଚଳେର ଦେଉଳ ।
ଶଙ୍ଖଧ୍ୱନି ବଲେ ବାଣୀ ଶୁଣ ହେ ଈଶ୍ୱର ।।
ଦେଖିଲ ଦକ୍ଷିଣେ ସେଇ କୋନ ଦେବପୁର ।
ଶୁଣି ଲକ୍ଷପତି ତାରେ କହିଲେ ଉତ୍ତର ।।

Digitized by srujanika@gmail.com

ମୁକ୍ତପଥ ଏତେଖାନେ ଶୁଣିଛି ଶ୍ରବଣେ ।
କଳିଯୁଗେ ବୌଦ୍ଧରୂପେ ଅଛେନ ସେଖାନେ ॥
ଜଗନ୍ନାଥ ବଳଭଦ୍ର, ସୁଭଦ୍ରା ଭଗିନୀ ।
ଇନ୍ଦ୍ରଦ୍ୟୁମ୍ନ ଚନଦେବେ ସ୍ଥାପିଅଛେ ଆଜ ॥

× × × ×

ପ୍ରଣାମ କରିଯା ସବେ ଚଲିଲ ତୁରିତେ ।
ଶ୍ୱେତବନ୍ଧ ରାମେଶ୍ୱର ଦେଖିଲ ସେ ପଥେ ॥"

ଉପରୋକ୍ତ କେତୋଟି ପଂକ୍ତିରୁ ସ୍ପଷ୍ଟ ଜଣାଯାଏ ଯେ, ଖ୍ରୀଷ୍ଟୀୟ ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀରେ ବଙ୍ଗୋପସାଗରର ଉପକୂଳ ବାଟେ ବାଣିଜ୍ୟ ପୋତରେ ଯାତାୟାତ କରୁଥିଲ । ବିଦେଶୀଯାତ୍ରୀ ମହାଜନମାନେ ସମୁଦ୍ର ବକ୍ଷରୁ ପୁରୀଧାମରେ ନୀଳାଚଳନାଥଙ୍କର ଦର୍ଶନ କରୁଥିଲେ ।

କବିକଣ୍ଠ ବିରଚିତ 'ଅଭିନ ମଦନ' ପାଲରେ ଅନ୍ୟତ୍ର ଅଛି—

"ରଙ୍ଗମା ମହଲେ ତଲେ ରାଜାର କୁମର ।
ସମୁଦ୍ର ସାପାନ୍ତେ ଅଛେ ରାଜାର ମହଲ ॥"

ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ, 'ରଙ୍ଗମା' ସମୁଦ୍ର କୂଳରେ ଅବସ୍ଥିତ ଥିଲ । କବିକଣ୍ଠ ରଚିତ 'ସଦାନନ୍ଦ ସୌଦାଗର' ପାଲରେ ଅଛି—

"ଅଙ୍ଗ ବଙ୍ଗ ଜନଗଲେ କଳିଙ୍ଗ ସହର ।
ଚମ୍ପଟ ଛାଡ଼ିଆ ଗେଲ ମଗଧ ଦେଶର ॥
କୋଶଲ ମାଣିକ୍ୟ ଜାନ ହୁଗ୍ଲି ସହର ।
ନୈରଙ୍ଗ ଛାଡ଼ିଆ ଗେଲ ଭେରଙ୍ଗ ଦେଶର ॥
ଭେରଙ୍ଗ ସହର ଜାନ ହୁଗ୍ଲି ପାଟନ ।
ସେହ ପାଟେ ପ୍ରବେଶିଲ ସାଇ ଦୁଇଜନ ॥
ପ୍ରବେଶିଲ ଦୁଇଭାଇ ରଙ୍ଗମା ଘାଟରେ ।
କମାନ ଉଲ୍ଲସ କରାଇଲେ ତୋପଦାରେ ॥"

ଉପରୋକ୍ତ ପଂକ୍ତିରେ ଆମ୍ଭେମାନେ ହୁଗ୍ଲି ବା ହେଙ୍ଗ୍ଲି ନାମକ ଏକ ନୂତନ ସ୍ଥାନର ଉଲ୍ଲେଖ ପାଉଅଛୁଁ । ବଣିକଭ୍ରାତା ଦୁହେଁ ଜାହାଜ ନେଇ

Digitized by srujanika@gmail.com

ହିଙ୍ଗୁଳି ଘାଟ ବା ଦଣ୍ଡପାଟରେ ପହଞ୍ଚୁଥିଲେ ଏବଂ ଏହି ଦଣ୍ଡପାଟର ଅନ୍ତର୍ଗତ ରଙ୍ଗଣୀ ନାମକ ଘାଟରେ ଜମାଣ ଖଲାସ କରୁଥିଲେ । ସୁତରାଂ ରଙ୍ଗଣିଘାଟ ତଥା ହିଙ୍ଗୁଳି ଦଣ୍ଡପାଟ ଏକ ପ୍ରଧାନ ବାଣିଜ୍ୟ କେନ୍ଦ୍ର ହୋଇଥିବ । ବୋଧହୁଏ ଆମ୍ଭମାନଙ୍କ ହିଜଳି ପ୍ରଗଣା ଉପରୋକ୍ତ ପାଲିକଥିତ ହିଙ୍ଗୁଳି ଦଣ୍ଡପାଟ ଅଟେ । ପୂର୍ବେ ରୂପନାରାୟଣଠାରୁ ଜଳେଶ୍ୱର ପର୍ଯ୍ୟନ୍ତ ସମସ୍ତ ଭୂଖଣ୍ଡ ହିଜଳି ନାମରେ ଅଭିହିତ ହେଉଥିଲା । ଆଜିକାଲି ହିଜଳି ନାମରେ କାନ୍ଥି ସବ୍‌ଡିଭିଜନରେ ଏକ ଗ୍ରାମ ଅଛି । ଟୋଡରମଲ୍ଲଙ୍କ ବନ୍ଦୋବସ୍ତ ଦ୍ୱାରା ହିଜଳି ପ୍ରଗଣା ଜଳେଶ୍ୱର ସରକାରର ଅନ୍ତର୍ଭୁକ୍ତ ହୋଇଥିଲା । ପରେ ସମ୍ରାଟ ପୁତ୍ର ସୁଜାଙ୍କ ସମୟରେ ଏହା ବଙ୍ଗର ମାଲଝାଟ ସରକାରର ଅନ୍ତର୍ଭୁକ୍ତ ହେଲା । ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀରେ ରାଲଫ୍ ଫିଚ୍ (Raliph Fitch) ହିଜଳିକୁ ଏକ ପ୍ରଧାନ ବାଣିଜ୍ୟ କେନ୍ଦ୍ର ବୋଲି କହି ଅଛନ୍ତି । ଉପରୋକ୍ତ ପାଲିରେ କଥିତ ଅଛି, ହିଙ୍ଗୁଳି ବା ହିଜଳି ପ୍ରଗଣା ଅନ୍ତର୍ଗତ ରଙ୍ଗଣୀ ଘାଟରେ ପ୍ରବେଶ କରି ବଣିକଭ୍ରାତା ଜାହାଜରୁ ତୋପ ଖଲାସ କରୁଥିଲେ । ଜାହାଜକୌଣସି ବିଦେଶୀୟ ବନ୍ଦରରେ ଉପନୀତ ହେଲେ ସମ୍ବାଦ ଓ ଅଭିବାଦନ ସ୍ୱରୂପ ତୋପ ଖଲାସ କରାଯାଏ । ସ୍ଥଳବିଶେଷରେ ପତାକା ସଙ୍କେତଦ୍ୱାରା ମଧ୍ୟ ତୋପ ଖଲାସିର କାର୍ଯ୍ୟ କରାଯାଉଥିଲା ।

ଭ୍ରମରବର ପାଲିରେ ଏକ ବଣିକ ପୁତ୍ରର ଶିକ୍ଷାପ୍ରଣାଳୀ ବର୍ଣ୍ଣିତ ହୋଇଅଛି । ଯଥା :—

"ପ୍ରଥମ ବୟସରେ ସେହି ଓଡ଼ିଆ ପଢ଼ିଲା ।
ଦ୍ୱିତୀୟ ବୟସରେ ସେ ବଙ୍ଗଳାକୁ ସାରିଲା ॥
ତୃତୀୟ ବୟସରେ ପଢ଼େ ଫାରସୀ, ନାଗରୀ ।
ସ୍ୱରବନେ ସ୍ୱରପାଠ ପଢ଼େ ହରି କରି ॥"

ବଣିକ ପୁତ୍ରମାନେ ଓଡ଼ିଆ, ବଙ୍ଗଳା, ଫାରସୀ ଓ ନାଗରୀ ପ୍ରଭୃତି ବିଭିନ୍ନ ଭାଷା ଶିକ୍ଷା କରୁଥିଲେ । ଏହାର କାରଣ, ବୋଧହୁଏ ସେମାନଙ୍କୁ ଏହିସବୁ ଭାଷା ପ୍ରଚଳିତ ଥିବା ଦେଶମାନଙ୍କ ସଙ୍ଗେ କିମ୍ବା ଏହିସବୁ ଭାଷା କହୁଥିବା ଲୋକମାନଙ୍କ ସଙ୍ଗେ ବାଣିଜ୍ୟ କରିବାକୁ ହେଉଥିଲା । କେବଳ ଉଦାହରଣ ସ୍ୱରୂପ ଆମ୍ଭେମାନେ ଏହିଠାରେ ପାଲିମାନଙ୍କ ମଧ୍ୟରୁ କେତୋଟି ପଂକ୍ତି ଉଦ୍ଧାର କଲୁ । କିନ୍ତୁ ପାଲି-ପୁସ୍ତକମାନ ପାଠକଲେ ଏହିପରି ଅନେକାନେକ ଦୃଷ୍ଟାନ୍ତ ଦୃଷ୍ଟିଗୋଚର ହେବ ।

ଉତ୍କଳରେ ଅନେକ କାହାଣୀ ପ୍ରଚଳିତ ଅଛି । ସେ ସବୁରେ ଡଙ୍ଗା ଓ ବୋଇତର ବିବରଣ ବହୁତ । କାହାଣୀ ସବୁ ଅଳୀକ ନୁହେଁ; କିମ୍ବା ସେଥିରେ ଥିବା

Digitized by srujanika@gmail.com

ଡଙ୍ଗା ଓ ବୋଇତର ଅନେକ ବିବରଣ ଶୁଣା କଥା ହୋଇପାରେ । କିନ୍ତୁ ଅନ୍ତତଃ କେତେକ ବିବରଣ ସମସାମୟିକ ପ୍ରଥାର ଚିତ୍ର ଦେଇଥିବା ଅସମ୍ଭବ ନୁହେଁ । "କୁହୁକ ମଣ୍ଡଳ ଚଢ଼େଇ" କଥାରେ ଅଛି, ଥରେ ଦୁଇ ବଣିକ ଭ୍ରାତା ବାଣିଜ୍ୟ କରିବା ପାଇଁ ବିଦେଶକୁ ବାହାରିଲେ । ଘରୁ ଗଲାବେଳେ ସ୍ତ୍ରୀମାନେ କଳାମେଘୀ ପାଟ ଓ ମେଘଡ଼ମ୍ବରୁ ଶାଢ଼ୀ ପାଇଁ ଅନୁରୋଧ କରିଥିଲେ । ସେମାନେ ଜାହାଜ ନେଇ ବିଦେଶରୁ ଫେରିବାବେଳେ ସ୍ତ୍ରୀମାନେ ଜାହାଜର ବନ୍ଦାପନା କଲେ । ଏ ଦୁହିଙ୍କର ଦୁଇଜଣ ସାନ ଥିଲେ । ସେ ଏଥିପୂର୍ବରୁ ବିଦେଶରେ ବାଣିଜ୍ୟ କରିବାପାଇଁ ଯାଇ ସେହିଠାରେ ବିବାହାଦି କରି ରହିଥିଲେ । କିଛିଦିନ ପରେ ଏହି ତୃତୀୟ ଭ୍ରାତା ମଧ୍ୟ ନବବିବାହିତା ପତ୍ନୀ ସହିତ ସ୍ୱଦେଶକୁ ଫେରିଆସିଲେ । ସ୍ୱଦେଶର ଉପକୂଳରେ ପ୍ରବେଶ କରିବା ମାତ୍ରକେ ହଠାତ୍ ଥରେ ଏହି ତୃତୀୟ ଭ୍ରାତା ଏକ ସ୍ଥାନରେ ସଜା ମନୋମୀତ ହୋଇ ପତ୍ନୀଙ୍କୁ ସେହିଠାରେ ତ୍ୟାଗକରି ଚାଲିଗଲେ । ପତ୍ନୀ ସେହିଠାରେ ସମୁଦ୍ର କୂଳରେ ବସି କାନ୍ଦୁଅଛନ୍ତି, ଏହି ସମୟରେ ଅନ୍ୟ ଏକ ଜାହାଜ ସେଠାରେ ଆସି ଉପସ୍ଥିତ ହେଲା । ଜାହାଜର ଅଧ୍ୟକ୍ଷ ରମଣୀଙ୍କୁ ନିରାଶ୍ରୟା ଦେଖି ନିଜର ଜାହାଜରେ ତାଙ୍କୁ ସେଠାରୁ ନେଇଗଲେ । ଭାଗ୍ୟକ୍ରମେ କିଛିଦିନ ପରେ ଏହି ଦମ୍ପତି ପୁନରାୟ ମିଳିତ ହୋଇଥିଲେ ।

ଉପରୋକ୍ତ 'କୁହୁକମଣ୍ଡଳ ଚଢ଼େଇ' କଥାଟିକୁ କେବଳ ଉଦାହରଣ ସ୍ୱରୂପ ଆମ୍ଭେମାନେ ଏଠାରେ ସଂକ୍ଷିପ୍ତ କଲୁଁ । ଏଥିରୁ ସମସାମୟିକ ଉତ୍କଳର ବାଣିଜ୍ୟ ସମ୍ବନ୍ଧରେ ନିମ୍ନୋକ୍ତ; ସତ୍ୟ ଓ ଗୀତ ସ୍ପଷ୍ଟ ପ୍ରତିପନ୍ନ ହୁଏ । ଆମ୍ଭେମାନେ କହିଅଛୁଁ, ବିଦେଶରୁ ଜାହାଜ ଫେରି ଆସିଲେ ସ୍ତ୍ରୀମାନେ ପ୍ରଥମେ ତାହାର ବନ୍ଦାପନା କରନ୍ତି । ବୋଧହୁଏ, କୌଣସି କୌଣସି ବଣିକ ବାଣିଜ୍ୟ ଉଦ୍ଦେଶ୍ୟରେ ବିଦେଶକୁ ଯାଇ ସେଠାରେ ବିବାହାଦି କରି ରହୁଥିଲେ, ଏହା ଅସମ୍ଭବ ନୁହେଁ । ପୁଣି କୌଣସି କୌଣସି ବଣିକ ମାର୍ଗରେ ଫେରି ଆସିଲାବେଳେ ଅନ୍ତର୍ବିବାଦର ସାହାଯ୍ୟରେ ସ୍ଥାନ ବିଶେଷର ଶାସନକର୍ତ୍ତା ହେବା ବିଚିତ୍ର ନୁହେଁ । ଆଉ ମଧ୍ୟ ଯେକୌଣସି ଜାହାଜର ଅଧ୍ୟକ୍ଷ ସମୁଦ୍ର କୂଳରେ କାହାରିକୁ ନିଃସହାୟ ଦେଖିଲେ ତାଙ୍କୁ ସ୍ୱଜାହାଜରେ ଆଶ୍ରୟ ଦେବା କର୍ତ୍ତବ୍ୟ ମନେକରୁଥିଲେ ।

'ବୁଦ୍ଧି ମହାଜନ ପୁଅ' କଥାରେ ଅଛି, ହାତୀଟିଏ ଓଜନ କରାଇବାକୁ ହେଲେ ତାକୁ ଗୋଟିଏ ଡଙ୍ଗା ଉପରେ ଚଢ଼ାଇବାକୁ ହୁଏ । ଡଙ୍ଗା ଯେତେଦୂର ପାଣିରେ ବୁଡ଼େ, ସେହିଠାରେ ଏକ ଚିହ୍ନ ଦିଆଯାଏ । ପରେ ସେହି ନେଇଯାଏ ଡଙ୍ଗା ବୁଡ଼ିବା ପର୍ଯ୍ୟନ୍ତ ବାଲି ପୂରାଇ ସେହି ବାଲିକୁ ଓଜନ କରାଯାଏ । ଏହି ଘଟଣାରୁ ଏହି ସମୟରେ ବ୍ୟବହୃତ ଡଙ୍ଗାର କଳେବର ଅନୁମେୟ ।

Digitized by srujanika@gmail.com

ଆମ୍ଭେମାନେ ପୂର୍ବେ କହିଅଛୁଁ; ଖ୍ରୀଷ୍ଟୀୟ ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀ ଉତ୍କଳୀୟ ସମୁଦ୍ର-ବାଣିଜ୍ୟ-ସମୃଦ୍ଧିର ଶେଷ ଯୁଗ । କିନ୍ତୁ ତାହା ବୋଲି ଏହି ବାଣିଜ୍ୟ ସପ୍ତଦଶ ଶତାବ୍ଦୀ ସଙ୍ଗେ ସଙ୍ଗେ ଏକାବେଳକେ ବିଲୁପ୍ତହୋଇ ନଥିବ । ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀ ବେଳକୁ ଏହାର କିଛିତ ଧନଷ୍ଟାଂଶ ମିଳିତ ଥିବ । ଯେକୌଣସି ସମୃଦ୍ଧିର ଉତ୍କ୍ଷେପ କ୍ରମେ ସଙ୍କୁଚିତ ହୋଇଥାଏ । ପ୍ରାଚୀନ ଉତ୍କଳର ସମୁଦ୍ର ବାଣିଜ୍ୟ ଏହି ବିଧାନକୁ ଅତିକ୍ରମ କରି ନପାରେ । ସେଥିପାଇଁ ଆମ୍ଭେମାନେ ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀରେ ଯେଉଁ ଧନଷ୍ଟାଂଶମାନ ଦେଖୁ ତାହା ସପ୍ତଦଶ ଶତାବ୍ଦୀୟ ସମୃଦ୍ଧିର କେବଳ ଛାୟା ବୋଲି ବୋଧହୁଏ ।

କବି ଉପେନ୍ଦ୍ର ଭଞ୍ଜ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀରେ ଲାବଣ୍ୟବତୀ କାବ୍ୟ ଲେଖିଥିଲେ । ଏଥି କଥିତ ଘଟନାବଳି ସତ୍ୟହେଉ ବା ମିଥ୍ୟା ହେଉ; ଏହାର ବର୍ଣ୍ଣନାଗୁଡ଼ିକ ଅବଶ୍ୟ ସମସାମୟିକ ଉତ୍କଳ ସମାଜର ଚିତ୍ର । ସୁତରାଂ ଏଥିଲିଖିତ ପୋତ ସମ୍ବନ୍ଧୀୟ ବର୍ଣ୍ଣନାଗୁଡ଼ିକ ତତ୍କାଳୀନ ଉତ୍କଳ ପକ୍ଷ ସମ୍ପୂର୍ଣ୍ଣ ପ୍ରଯୋଜ୍ୟ ବୋଲି ମନେହୁଏ । ସପ୍ତଦଶ ଛାନ୍ଦରେ କବି ଉତ୍କଳର ପୋତ ବନ୍ଦନାକୁ ଲକ୍ଷ୍ୟକରି ଅଛନ୍ତି—

''ବହିତ୍ର ଲାଗିଲା ଆସି ସିଂହଳ ଦ୍ୱୀପରେ
ସାଧବ ଯୁବତୀମାନେ ଅତି ପ୍ରମୋଦରେ
ଗଲେ ବହିତ୍ର ବନ୍ଦାଇ;
ଅର୍ଘ୍ୟଥାଳୀମାନ କରେ ହୁଳହୁଳି ଦେଇ ।''

ଊନବିଂଶ ଛାନ୍ଦରେ କବି ତତ୍କାଳୀନ ଉତ୍କଳୀୟ ବାଣିଜ୍ୟ ପୋତର ପରମ ଶତ୍ରୁ ଜଳଦସ୍ୟୁମାନଙ୍କୁ ଲକ୍ଷ୍ୟକରି ଅଛନ୍ତି—ଜଳଯାତ୍ରାର ଅନ୍ୟତମ ଶତ୍ରୁ ଝଡ଼ ଓ ତୋଫାନ ମଧ୍ୟ କବିଙ୍କର ଦୃଷ୍ଟିରୁ ଅନ୍ତର ହୋଇପାରି ନାହିଁ ।

''ଅଟ ଦରିଦ୍ର ମୁଁ ବହିତ୍ର ବଣିକ,
କରିଛୁ ଉପାସ୍ୟ ବଳରେ ।
ଭଲ-ମନ୍ଦ ଅଛି ନା କପାଳରେ,
ତଳବ ଯେ ରୁହି ନେ ତୋତେ ଗୋଚର ।
ଦସ୍ୟୁରେ ଲଗା କୂଳରେ ରେ 'ସୁନ୍ଦରୀ',
ମାର ଡସ୍କର ଯେଣ ଡର ଅଛି,
ପ୍ରାଣଧନ ଲୁଟିବାକୁ ଜଗିଛୁ ।
ଅସ୍ତ୍ର ପାର୍ଶ୍ୱିକ ଅଣସ୍ତ୍ରଣ ପବନ ଚନ୍ଦ୍ର ଭ୍ରମେ ପକାଉଛୁ ବେ ।''

Digitized by srujanika@gmail.com

୧୮୧୧ ଖ୍ରୀ: ଅ: ରେ ଏଫ୍. ବଲ୍ଜର ସଲଭିନସ (F. Ballazar Solvyns) 'ଲେସ୍ ହିନ୍ଦୁସ୍' ନାମକ ପୁସ୍ତକରେ କେତେକ ଆଦର୍ଶ-ଜାହାଜ ସ୍ୱଦେଶପୋତର ବର୍ଣ୍ଣନା କରିଅଛନ୍ତି । ସେ କହନ୍ତି, ବାଲେଶ୍ୱର କେତେବେଳେ ହୁଗ୍ଲିର ପ୍ରବେଶ ଦ୍ୱାର ଥିଲା । ନାନାଜାତୀୟ ପୋତ ଏଠାକୁ ଆସୁଥିଲା । ଯଥା ଝୁଙ୍ଗର (ଏହା ଉତ୍ତମାଶେପ ପର୍ଯ୍ୟନ୍ତ ସମୁଦ୍ରରେ ଯାଇପାରୁଥିଲା); ଗ୍ରାବ୍ (ଲୌକିକ ଘୋରାପ; ଏହାର ମୁଖ ଗୋଲିଆ ଓ ଏଥିରେ ତିନୋଟି ମାସ୍ତୁଲ ଥାଏ), ବ୍ରିଗ୍ (ଏହି ଶ୍ରେଣୀସ୍ଥ ପୋତ କରମଣ୍ଡଳ ଓ ମାଲବାର ଉପକୂଳରୁ ଆସୁଥିଲା); ପଟୁଆ (ଏଥିରେ ଆଦୌ ପାଲ ନଥିଲା) । ଉପରୋକ୍ତ କେତେକ ପ୍ରକାର ଜଳଯାନ ମଧ୍ୟରୁ ପଟୁଆ ଆଜି ଯାଏଁ ନଦୀବକ୍ଷରେ ହୁଗୁଳିରେ ବ୍ୟବହୃତ ହେଉଅଛି ।

ଫୁଲ ଫଳରୂପେ ଫୁଟିଗଲେ ମଉଳିବାକୁ ଆରମ୍ଭ କରେ । ଚନ୍ଦ୍ର ପୂର୍ଣ୍ଣରୂପେ ବିକଶିତ ହେଲାପରେ ହ୍ରାସହେବାକୁ ଆରମ୍ଭ କରନ୍ତି । ପୂର୍ଣ୍ଣ ଯୌବନ ପରେ ମନୁଷ୍ୟର ବାର୍ଦ୍ଧକ୍ୟ ଆରମ୍ଭ ହୁଏ । ଦୁନିଆ ଅନେକ ସମୟରେ ପୂର୍ଣ୍ଣ ବିକାଶ ହେଉଥିବା ସଙ୍ଗେ ସଙ୍ଗେ ଅଧୋଗତି ଦ୍ୱାରା ଉନ୍ମୁକ୍ତ ହୋଇଥାଏ । ସମ୍ରାଟ ଶାହାଜାହାନଙ୍କ ରାଜତ୍ୱ ମୋଗଲ ରାଜତ୍ୱର ଐଶ୍ୱର୍ଯ୍ୟର ଶେଷସୀମା ; ଅଥଚ ଏହି ରାଜତ୍ୱରେ ହିଁ ମୋଗଲ ସାମ୍ରାଜ୍ୟର ପତନର ସୂତ୍ରପାତ ହୋଇଥିଲା । ମହାରାଜ ଅଶୋକ ଭାରତର ସର୍ବପ୍ରଥମ ଐତିହାସିକ ସମ୍ରାଟ । ଅଥଚ ତାଙ୍କର ସମୟରେ ହିଁ ମୌର୍ଯ୍ୟବଂଶର ପତନର ସୂତ୍ରପାତ । ଖ୍ରୀଷ୍ଟୀୟ ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀ ଉତ୍କଳୀୟ ସମୁଦ୍ର ବାଣିଜ୍ୟର ସମୃଦ୍ଧତମ ଯୁଗ; ଅଥଚ ଏହି ଯୁଗରେ ହିଁ ବାଣିଜ୍ୟର ପତନର ସୂତ୍ରପାତ ହୋଇଥିଲା ।

ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗରେ ଉତ୍କଳର ସ୍ୱାଧୀନତା ବିଲୁପ୍ତ ହେଲା । ତଦନନ୍ତର ମୁସଲମାନମାନେ ଉତ୍କଳ ଅଧିକାର କଲେ; କିନ୍ତୁ ସେମାନଙ୍କ ରାଜତ୍ୱ ସମୟରେ ଦେଶ ମଧ୍ୟରେ ମୁହୁର୍ମୁହୁ ଯୁଦ୍ଧ ଓ ବିଦ୍ରୋହମାନ ସଙ୍ଘଟିତ ହେଲା । କେତେବର୍ଷ ପରେ ମହରଟ୍ଟାମାନେ ରଙ୍ଗଭୂମିରେ ଅବତୀର୍ଣ୍ଣ ହୁଅନ୍ତେ ଏହି ଅଶାନ୍ତି ଘୋରତର ଆକାର ଧାରଣ କରିଥିଲା । ଜାହାଜ ନେଇ ବିଦେଶକୁ ଯିବା ଦୂରେ ଥାଉ ସାଧାରଣ ଲୋକେ ଲୁଣ୍ଠନ ଭୟରେ ଅର୍ଥକୁ ଅନର୍ଥ ବୋଲି ମନେକଲେ । ଅନେକ ଦରିଦ୍ର ହୋଇ ଗୃହ ତ୍ୟାଗକରି ଇତସ୍ତତଃ ହେଲେ । ସମାଜରେ ମହା ବିଶୃଙ୍ଖଳା ଉପସ୍ଥିତ ହେବାରୁ ସଙ୍ଗତିସମ୍ପନ୍ନ ବ୍ୟକ୍ତିମାନେ ବିଦେଶ ବାଣିଜ୍ୟ ଦ୍ୱାରା ବିପୁଳ ଧନଲାଭ କରି ସେହି ଧନଦ୍ୱାରା ଲାଞ୍ଛିତ ଓ ଲୁଣ୍ଠିତ ହେବାପାଇଁ ଇଚ୍ଛା ପ୍ରକାଶକଲେ ନାହିଁ । ଅନେକେ ପାଣିର ଭୟରେ ଦେଶର ଅଭ୍ୟନ୍ତରରେ ମଧ୍ୟ ବାଣିଜ୍ୟ କରିବାପାଇଁ କେହି ସାହସ କରି ନଥିଲେ ।

Digitized by srujanika@gmail.com

୧୭୫୧ ଖ୍ରୀ: ଅ: ରେ ବଙ୍ଗ ନବାବ ଅଲିବର୍ଦ୍ଦି ଖାଁ ମରହଟ୍ଟାମାନଙ୍କ ଅତ୍ୟାଚାରରୁ ରକ୍ଷାପାଇବା ଆଶାରେ ସୁବର୍ଣ୍ଣରେଖାର ଦକ୍ଷିଣସ୍ଥ ସମସ୍ତ ଉତ୍କଳଖଣ୍ଡ ସେମାନଙ୍କ ହସ୍ତରେ ଅର୍ପଣ କଲେ । ତଥାପି ଏହି ଅଶାନ୍ତିର ଉପଶମ ହେଲା ନାହିଁ । ଏହା ଉତ୍କଳୀୟ ବାଣିଜ୍ୟର ଧ୍ୱଂସ ସାଧନ କରି ୧୮୦୩ ଖ୍ରୀ: ଅ: ଠାରୁ ଦୂରୀଭୂତ ହୋଇଅଛି ।

ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀ ମଧ୍ୟରେ ପାଶ୍ଚାତ୍ୟମାନେ ଉତ୍କଳରେ ବାଣିଜ୍ୟକୋଠି ସ୍ଥାପନ କଲେ । ସେମାନଙ୍କ ମଧ୍ୟରୁ କେହି କେହି ସମୁଦ୍ର ମଧ୍ୟରେ ଦସ୍ୟୁବୃତ୍ତି ଅବଲମ୍ବନ କରୁଥିଲେ । ଏ ଦେଶର ଲୋକେ ସେମାନଙ୍କୁ ଫିରିଙ୍ଗି ଜଳଦସ୍ୟୁ କହୁଥିଲେ । ପିପିଲିରୁ ବିତାଡ଼ିତ ହୋଇ ପର୍ତ୍ତୁଗୀଜମାନେ ଆରାକାନ୍ ଉପକୂଳସ୍ଥ ସନ୍ଦୀପ ନାମକ ସ୍ଥାନରେ ଉପନିବେଶ ସ୍ଥାପନ କଲେ । ସେଠାରୁ ସେମାନେ ଆରାକାନମାନଙ୍କ ସଙ୍ଗେ ମିଳିତ ହୋଇ ବାଣିଜ୍ୟପୋତ ପ୍ରତି ମହାଉପଦ୍ରବ ଘଟାଇଲେ । ପର୍ତ୍ତୁଗୀଜ ଦଳପତି ଗଞ୍ଜାଲେସଙ୍କ ଦସ୍ୟୁବୃତ୍ତି ସ୍ମରଣ କରି ଲୋକେ ଅଦ୍ୟାବଧି ଶଙ୍କିତ ହୁଅନ୍ତି । କତିପୟ ଦିବସ ପରେ ପର୍ତ୍ତୁଗୀଜମାନେ ସନ୍ଦୀପରୁ ବିତାଡ଼ିତ ହେଲେ ସତ୍ୟ; ମାତ୍ର ସେମାନେ ହୁଗୁଳିଠାରେ ଉପନିବେଶ ସ୍ଥାପନ କରି ସେଠାରୁ ନବାବ କାସିମ ଖାଁ ଜୁବୁର୍ଣ୍ଣିଙ୍କ ଶାସନକାଳ ପର୍ଯ୍ୟନ୍ତ ଦସ୍ୟୁବୃତ୍ତି ଚରିତାର୍ଥ କରିବାକୁ ଲାଗିଲେ । ଏଣେ ଆରାକାନମାନେ ସେମାନଙ୍କ ସହିତ ଏକତ୍ରିତ ହୋଇ ପର୍ତ୍ତୁଗୀଜମାନଙ୍କ ଉଦାହରଣକୁ କାର୍ଯ୍ୟରେ ପରିଣତ କରିବାକୁ ଲାଗିଲେ । ଏହିସବୁ ଜଳଦସ୍ୟୁମାନଙ୍କ ଦମନାର୍ଥ ଶାଏସ୍ତା ଖାଁଙ୍କ ଆୟୋଜନ ବିଷୟ ଆମ୍ଭେମାନେ ପୂର୍ବେ କହିଅଛୁଁ । କିନ୍ତୁ ଏହି ନରରାକ୍ଷସମାନଙ୍କ ଯୋଗେ ପୋତାଧ୍ୟକ୍ଷମାନେ ନିରୁତ୍ସାହ ହୋଇ କ୍ରମେ ସମୁଦ୍ରଯାତ୍ରାରୁ କ୍ଷାନ୍ତ ହେଉଥିଲେ ।

ମାନବର ଉଦ୍ୟମ ସଙ୍ଗେ ସଙ୍ଗେ ଦୈବ ଉଦ୍ୟମର ହିଁ ମଧ୍ୟ ଅଭାବ ନଥିଲା । ଉତ୍କଳୀୟ ବନ୍ଦରଗୁଡ଼ିକର ଦ୍ୱାରଦେଶରେ କ୍ରମଶଃ ବାଲିଚଡ଼ା ଜମି ଯାଉଥିଲା । ଏହି ହେତୁରୁ ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀ ବେଳକୁ ଆମ୍ଭେମାନେ ପୁରୀ ଓ କୋଣାର୍କ ପ୍ରଭୃତିର ଉଲ୍ଲେଖ ବାଣିଜ୍ୟ ଜଗତରେ ଦେଖିବାକୁ ପାଉ ନାହୁଁ । କେବଳ ପିପିଲି ଓ ବାଲେଶ୍ୱର ପ୍ରଭୃତି କେତେକ ସ୍ଥାନ ଆଉ କିଛିକାଳ ପ୍ରକୃତିର କବଳରୁ ରକ୍ଷା ପାଇଥିଲା । କିନ୍ତୁ ସେମାନଙ୍କର ଆୟୁ କ୍ରମଶଃ ହ୍ରାସ ହୋଇ ଆସୁଥିଲା ।

ବଙ୍ଗଦେଶ ଅତି ସମୃଦ୍ଧ ଦେଶ; ସୁତରାଂ ଏହି ଦେଶ ସଙ୍ଗେ ବାଣିଜ୍ୟ କରିବା ବିଶେଷ ଲାଭଜନକ । ସେଥିପାଇଁ ପାଶ୍ଚାତ୍ୟମାନଙ୍କର ଏହି ଦେଶରେ

Digitized by srujanika@gmail.com

ବାଣିଜ୍ୟ ପ୍ରତି ବାଲେଶ୍ୱର ଅଗ୍ରଗତି ଥିଲା । କିନ୍ତୁ ହୁଗୁଳି ପଥ ଉନ୍ମୁକ୍ତ ନ ହେବାଯାଏ ବଣିକମାନେ ବାଲେଶ୍ୱର ବନ୍ଦରବାଟେ ବଙ୍ଗ ମଧ୍ୟକୁ ପ୍ରବେଶ କରୁଥିଲେ । ସେଥିପାଇଁ ବାଲେଶ୍ୱରର ଗୁରୁତ୍ୱ କିଛିଦିନ ସ୍ଥାୟୀ ହୋଇଥିଲା । କିନ୍ତୁ ପରେ ହୁଗୁଳିପଥ ଉନ୍ମୁକ୍ତହେବା ସଙ୍ଗେ ସଙ୍ଗେ ବାଲେଶ୍ୱରର ପ୍ରତିଷ୍ଠା ବିଲୁପ୍ତ ହୋଇଥିଲା । ବୁଢ଼ାବଳଙ୍ଗର ବନ୍ଧ ଏବଂ ବାଲୁକାପୂର୍ଣ୍ଣ କଳେବର ବଣିକମାନଙ୍କ ପକ୍ଷରେ ଆଉ ସୁବିଧାଜନକ ହେଲ ନାହିଁ ।

ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀରେ ସଙ୍ଘଟିତ ଉକ୍ତବିଧ ନାନାକାରଣ ସତ୍ତ୍ୱେ ଓଡ଼ିଶାର ଉପକୂଳ ଏକାବେଳେକେ ବନ୍ଦ ହୋଇ ନଥିଲା । ବାଲିଚଡ଼ା ହେତୁ ଜାହାଜ ସବୁ କୂଳ ପର୍ଯ୍ୟନ୍ତ ଆସିପାରୁ ନଥିଲେ ମଧ୍ୟ ଭୂସ୍ୱାମୀମାନଙ୍କ ଡ଼ଙ୍ଗା, ବୋଇତମାନଙ୍କ ପଟୋଉ ଦ୍ୱାରା ଦ୍ରବ୍ୟସବୁ କୂଳରୁ ଜାହାଜକୁ ଏବଂ ଜାହାଜରୁ କୂଳକୁ ବାହିତ ହେଉଥିଲା । ସେତେବେଳେ ଓଡ଼ିଶାର ଉପକୂଳରେ ଲୁଣର ଆମଦାନି ହେଉଥିଲା । ଫ୍ରାନ୍ସର ବେଲଜିୟମ ଜାହାଜ ଲୁଣ ନେବାପାଇଁ ଓଡ଼ିଶାର ଉପକୂଳକୁ ଆସୁଥିଲା । ମାତ୍ର ଏହି ଉଦ୍ଦେଶ୍ୟରେ ମଧ୍ୟ କାନ୍ଥି ଓ ହିଜଳିଠାରେ କେତେକ 'ହୋଲ' ନାମୀୟ ଜାହାଜ ନିର୍ମିତ ହେଉଥିଲା । ୧୮୦୪ ଖ୍ରୀ. ଅ. ରେ ଲବଣ ଆଇନର ଶେଷ ସୃଷ୍ଟି ହେଲା । ଇଂରେଜ ସରକାର ହସ୍ତରେ ଲବଣ ଆମଦାନୀ କାର୍ଯ୍ୟ ଗ୍ରହଣ କଲେ । କିନ୍ତୁ ଏହା ଲାଭଜନକ ନହେବାରୁ ଏକାବେଳକେ ପରିତ୍ୟକ୍ତ ହେଲା । ଲୋକେ ମଧ୍ୟ ପୂର୍ବପରି ଲବଣ ଆମଦାନୀ କରିବା ପାଇଁ ଅନୁମତି ପାଇଲେ ନାହିଁ । ଫଳତଃ ଲବଣ ନେବାପାଇଁ ଯେଉଁ ବେଲଜିୟମ ଜାହାଜ ଓଡ଼ିଶାକୁ ଆସୁଥିଲା, ତାହାର ମଧ୍ୟ ଦ୍ୱାର ବନ୍ଦ ହୋଇଗଲା ।

ଦେଶରେ ଯେଉଁମାନେ ପୂର୍ବେ ଜାହାଜ ଚଳାଉଥିଲେ, ସେମାନଙ୍କ ହସ୍ତରେ କେତେକ ଜାହାଜ ଥିଲା । ଉନବିଂଶ ମଧ୍ୟରେ ସୁଦ୍ଧା ସେମାନେ ସମୟେ ସମୟେ ଏହି ଜାହାଜମାନଙ୍କରେ ଧାନ, ଚାଉଳ ନେବା ଆଣିବା କରୁଥିଲେ । କିନ୍ତୁ ଏହା ମଧ୍ୟ ବନ୍ଧର ଅଦୃଶ୍ୟ ହେଲା । ୧୮୫୧ ଖ୍ରୀ. ଅ. ରେ ଏକ ଭୀଷଣ ଝଡ଼ ସଂଘଟିତ ହୋଇ ଏହି କେତେକ ଜାହାଜର ଧ୍ୱଂସ ସାଧନ କଲା । ନୂତନ ଜାହାଜ ପ୍ରସ୍ତୁତ କରାଇବା ପାଇଁ କେହିକେହି କେବେ ତା ଉଦ୍ୟୋଗ କଲେ । ଅତ ପୌରସି ଉତ୍କଳୀୟ ଜାହାଜର ଅଧିକାର ନୁହେଁ । ବିଦେଶୀୟ ଜାହାଜ କେବେ ଧାନ ଚାଉଳ ପାଇଁ କୂଳକୁ ଆସିଲେ ଲୋକେ ତାକୁ ଦେଖିବା ପାଇଁ ଧାଆନ୍ତି । ଅଜକାଲି ଉତ୍କଳରେ କେବଳ ଦେଖିବାକୁ ମିଳେ ନଦୀବକ୍ଷରେ ପଟୁଆ ଓ ସମୁଦ୍ରବକ୍ଷରେ ବୋଇତମାନଙ୍କ ପଟୋଉ ଓ କୁଜଙ୍ଗର ଭୂସ୍ୱାମୀମାନଙ୍କ ଦ୍ରୁତଗାମୀ ଜାଲିଆ ।

Digitized by srujanika@gmail.com

ଆଜ ଓଡ଼ିଶାର ନାମ ବାଣିଜ୍ୟ ଜଗତରେ ଧ୍ୱନିତ ହେଉ ନାହିଁ । ବାଣିଜ୍ୟ ପ୍ରବୀଣ ଦେଶମାନଙ୍କ ମଧ୍ୟରେ ଉତ୍କଳ ଆଜ ଗଣ୍ୟ ହେଉ ନାହିଁ । ଉତ୍କଳରେ ଲୋକେ ଆଜ ସମୁଦ୍ର ଦେଖି ଭୀତ । ଆଜ ଆମର ଲୋକେ ସମୁଦ୍ର ପାରହୋଇ କୌଣସି ସ୍ଥାନକୁ ଗଲେ ଜାତ ହରାଉଥାନ୍ତି । ଆଜ ସମୁଦ୍ର ଲଙ୍ଘନରେ ମର୍ଦ୍ଦିବା ଏତେ ଆଶ୍ଚର୍ଯ୍ୟଜନକ ହୋଇଅଛି ଯେ, ଲୋକେ ପାଣି ଭିତରକୁ ପଇସା ଫୋପାଡ଼ି ନୋଳିଆମାନଙ୍କର ସନ୍ତରଣ କୌତୁକ ଦେଖୁଅଛନ୍ତି ।

ବାସ୍ତବରେ ଉତ୍କଳର ବର୍ତ୍ତମାନ ଦୁରବସ୍ଥା ଦେଖି କିଏ ବିଶ୍ୱାସ କରିବ ଯେ ଏହି ଦେଶର ଲୋକେ ଏକ ସମୟରେ ଜଳପଥରେ ସୁଦୂର ଚୀନ ଓ ଗ୍ରୀସ ପ୍ରଭୃତି ଦେଶ ସହ ବାଣିଜ୍ୟ କରୁଥିଲେ । ଜାହାଜ ପାଠଅ ଅର୍ଥାତ୍ ଜାହାଜରେ ବ୍ୟବହୃତ ଲୁହାର ପାଠଅ, ଜାହାଜ ବଣ୍ଟି, ଅର୍ଥାତ୍ ଜାହାଜ ଆକୃତି ବଣ୍ଟି ଏବଂ ଜାହାଜ ଫାଟିଗଲା, ଅର୍ଥାତ୍ ସର୍ବନାଶ ହେଲା—ଏହିପରି କେତେକ ଦେଶପ୍ରଚଳିତ କଥା ଆଜିକାଲି କେବଳ ଲୁପ୍ତ ଗୌରବର ପରିଚୟ ଦେଉଅଛି ମାତ୍ର । ପ୍ରକୃତ ଉତ୍କଳ ପକ୍ଷରେ ପ୍ରତିକୂଳ ହୋଇଅଛନ୍ତି ସତ୍ୟ, ମାତ୍ର କୃତ୍ରିମ ଉପାୟ ଏ କ୍ଷେତ୍ରରେ ବହୁ ଆଶାପ୍ରଦ ହେଲେହେଁ ଶକ୍ତିଶ୍ୱରମାନେ ଏ ଦିଗରେ ସଂପୂର୍ଣ୍ଣ ନିଶ୍ଚେଷ୍ଟ । ଏ ଦେଶର ଭାଗ୍ୟ ପରିବର୍ତ୍ତନ କେବଳ ବିଧାତାଙ୍କ ହସ୍ତରେ । ସମୟରେ ଏହାର ସମୃଦ୍ଧି ଭୁବନ ବିଦିତ ଥିଲା । ଆଜ ଏଠାରେ ଦୁର୍ଭିକ୍ଷର କଙ୍କାଳ ଦୃଶ୍ୟ କରୁଅଛୁ । ଭାବି କ'ଣ ହେବ, ସେ କଥା କେବଳ ବିଧାତାଙ୍କ ଗୋଚର । ମନେହୁଏ, ଆମ୍ଭେମାନେ ପୂର୍ବେ ଯେଉଁ ପରିମାଣରେ ସୁଖ ଭୋଗ କରିଥିଲୁ, ବର୍ତ୍ତମାନ ସେହି ପରିମାଣରେ ଦୁଃଖ ସହିବା ପାଇଁ ଉଦ୍ଦିଷ୍ଟ ।

—*—

Digitized by srujanika@gmail.com

# BIBLIOGRAPHY


( I )

1. Rigveda Mandal I, 147.
2. Indian Antiquary XVI (1887), P. P. 1-8.
3. B. & O. Research Society Journal Dec (1917) (Hatigumpha Inscription)
4. J. A. S. B. 1897 I, Part P P. 85—112
5. J. A. S. B. XLVI. Part—I. P. P. 149—57.
6. Journ & Proc. A. S. B.-IV (1908) (Notes on Geography of old Bengal)
7. Proc A. S. B. 1882. P. P. 9—14.
8. Journal Asiatique, 1839 P—404.
9. Indian Antiquary—V. (1876) P. P. 55—60.
10. Cunningham's Geography of Ancient India.
11. Beal's Life of Hiuen Tsang.
12. Stirling's Account of Orissa.
13. Ain-e-Akbari, Jarret-II—142.
14. R. L. Mitra's Antiquities of Orissa—Vol.-I.
15. Journ B & O, Res. Soe (1920) P. P. 348—60.
16. P. M, Achary's History of Orissa.
17. Hunter's Orissa Vol. 1.
18. Manmohan Ganguly's Orissa and Her Remains.

( II )

1. B & O Res. Soc. Journal 1919. (Contribution of Bengal to Hindu Civilization)
2. Indian Shipping and Maritime Activity. by R. K. Mukherjee.
3. Indian Antiquiry XVI. 1887 (Deccan in the Time of Buddha)


Digitized by srujanika@gmail.com

4. Bangiya Sahitya Patrika IX.
(Tamluk by Srish Chandra Ghose)
5. Journ and Proc, A. S. B. IV. 1908.
(Notes on Geography of Old Bengal by
M. M. Chakravarty
6. R. L. Mitra's Antiquities of Orissa.
7. Journ and Proc. A. S. B. 1905-1
(Pavana Dutam by Dhoyika)
8. Konark by K. Misra (Oriya)
9. History of PURI by B. K. Ghose.
10. B & O Res. Soc. Journal V. 1919.
11. The Periplus of the Erythrean Sea by Scoff.
12 Ptolemy's Geography (Notes by a Professor
Calcutta University.)
13. Prastab Sindhu by D. K. Das (Oriya)
14. Lavanyavati by Upendra Bhanja (Oriya)
15. Kautilya's Artha Sastra.
16. J. A. S. B. VII 1838 (Articles of Lt. Kittoe)
17 Pala books in Oriya.
18. J. A. S B. VI. 1837 (Articles by George Tarnuer)
19. Life of Huen Tsang by Beal.
20. Fa-hien's Travels by Beal.
21. V. A. Smith's Early History of India.
22. History of Egypt by Breasted.
23. History of Orissa by Toynbee.
24. Statistical accounts of the Districts of Cuttack and Balasore by W. W. Hunter.
25. Statistical account of the District of PURI
by W. W. Hunter.
26. W. W. Hunter's Orissa Vol-II.
27. Ta' Poi (Oriya)
28. Brahmanda Puran (Ms.)


—●—

Digitized by srujanika@gmail.com

# ଆଲୋଚନା

କେହି କେହି କହନ୍ତି, ଅମୁକ ଦେଶର ବା ଜାତିର ଇତିହାସ ନାହିଁ । ତଥାପି ଏକଥାଟିକେ ସତ୍ୟ ନୁହେଁ । 'ଇତିହାସ' କହିଲେ ଆମ୍ଭେମାନେ ସାଧାରଣତଃ ଐତିହାସିକ ପୁସ୍ତକ ମନେ କରିଥାଉଁ । ଏହି ଅର୍ଥରେ ଦେଖିଲେ, ବାସ୍ତବରେ ଅନେକ ଦେଶର ବା ଜାତିର ଇତିହାସ ନାହିଁ ବୋଲି ମାନିବାକୁ ହେବ । କିନ୍ତୁ ଇତିହାସର ପ୍ରକୃତ ଅର୍ଥ 'ପୂର୍ବକଥା' । ପ୍ରତ୍ୟେକ ଲୋକର, ତଥା ପ୍ରତ୍ୟେକ ଜାତିର କିଛି ନା କିଛି 'ପୂର୍ବକଥା' ଅଛି । ସେହି ଘଟଣାଗୁଡ଼ିକ ଉକ୍ତ ଦେଶ ବା ଜାତିର 'ପୂର୍ବକଥା' ବା ଇତିହାସ ।

ଇତିହାସ କିନ୍ତୁ ସବୁବେଳେ ସମସ୍ତଙ୍କୁ ଜଣାନଥାଏ । 'ପୂର୍ବକଥା'ଗୁଡ଼ିକ ନାନାଭାବରେ ଲୁପ୍ତ ହୋଇଥାଏ । ଇତିହାସ-ଲେଖକ ସେଗୁଡ଼ିକୁ ଖୋଜି ସଂଗ୍ରହ କରି ପୁସ୍ତକାକାରରେ ଲିପିବଦ୍ଧ କରନ୍ତି । ଘଟଣା ଘଟିଲାବେଳେ ହୁଏତ କେହି ସେ ବିଷୟରେ କିଛି ଲେଖିଥାଏ । ଇତିହାସ-ଲେଖକ ସେହି ଲେଖାକୁ ସମସାମୟିକ ସାହିତ୍ୟ (Contemporary literature) ବୋଲି କହନ୍ତି । ସମସାମୟିକ ସାହିତ୍ୟ ଐତିହାସିକଙ୍କ ଏକ ପ୍ରଧାନ ସହାୟ । ଆଜି ଆମ୍ଭେମାନେ ସମସାମୟିକ ସାହିତ୍ୟର ଏକ ନବୀନ ଦୃଷ୍ଟିରେ ଓଡ଼ିଶା ଇତିହାସର କିୟଦଂଶ ଆଲୋଚନା କରିବୁଁ ।

ହଣ୍ଟର, ଷ୍ଟର୍ଲିଂ ଓ ପୁରୀଜିଲ୍ଲା ଗେଜେଟିଅର ମତରେ ଓଡ଼ିଶାର ନିମ୍ନୋକ୍ତ ରାଜାମାନେ ନିମ୍ନଲିଖିତ ଭାବରେ ରାଜତ୍ୱ କରିଥିଲେ :—

| | ହଣ୍ଟର୍ | ଷ୍ଟର୍ଲିଂ | ପୁରୀଜିଲ୍ଲା ଗେଜେଟିଅର୍ |
|---|---|---|---|
| ବୀରକିଶୋର ଦେବ (ପ୍ରଥମ) | ୧୭୩୬—୭୩=୩୭ | ୧୭୪୩—୮୬=୪୩ | ୧୭୪୨-୩—୧୭୭୯-୮୦=୩୭ |
| ଦିବ୍ୟସିଂହ ଦେବ (ପ୍ରଥମ) | ୧୭୭୩—୯୧=୧୮ | ୧୭୮୬—୯୩=୭ | ୧୭୭୯-୮୦—୧୭୯୩-୮=୧୮ |

Digitized by srujanika@gmail.com

| | | |
|---|---|---|
| ମୁକୁନ୍ଦ ଦେବ | ୧୭୯୧—୧୮୧୦=୧୯ | ୧୭୯୭-୮—୧୮୧୭=୧୯ |
| ରାମଚନ୍ଦ୍ର ଦେବ | ୧୮୧୦—୫୬=୪୬ | ୧୮୧୭—୫୬=୩୯ |
| ବୀରକିଶୋର ଦେବ (ଦ୍ଵିତୀୟ) | | ୧୮୫୬—୭୨=୧୬ |
| ଦିବ୍ୟସିଂହ ଦେବ (ଦ୍ଵିତୀୟ) | ୧୮୫୭—୭୧=୧୪ | ୧୮୬୨—୭୬=୧୪ |

ସର୍ବପ୍ରଥମେ ହଣ୍ଟର, ଷ୍ଟର୍ଲିଂ ଓ ଜିଲ୍ଲା ଗେଜେଟିୟରର ତାଲିକା ପରୀକ୍ଷା କରାଯାଉ । ସେମାନଙ୍କ ମଧ୍ୟରୁ କେହି କାହାର ସଙ୍ଗରେ ଏକମତ ନୁହନ୍ତି । ହଣ୍ଟରଙ୍କ ତାଲିକାରେ ଦ୍ଵିତୀୟ ବୀରକିଶୋରଙ୍କ ନାମ ଏକାବେଳକେ ନାହିଁ । ତେବେ ମୁକୁନ୍ଦଦେବଙ୍କ ରାଜତ୍ଵର ଶେଷଯାଏ ପ୍ରତ୍ୟେକ ରାଜତ୍ଵର ପରିମାଣ ସମ୍ବନ୍ଧରେ ହଣ୍ଟର ଓ ଜିଲ୍ଲା ଗେଜେଟିୟର ଦୁହେଁ ଏକମତ ଥିବାର ଦେଖାଯାଏ । ଏହି ରାଜତ୍ଵକାଳର ପରିମାଣ ଯଦି ଠିକ୍ ହୁଏ, ତାହାହେଲେ ଜିଲ୍ଲା ଗେଜେଟିୟରର ତାଲିକାକୁ ଠିକ୍ ବୋଲି ଗ୍ରହଣ କରିବାକୁ ହେବ । କାରଣ ଉକ୍ତ ଗେଜେଟିୟରରେ ଲେଖାଅଛି ଯେ, ମୁକୁନ୍ଦ ଦେବ ୧୮୧୭ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ପାଇକ ବିଦ୍ରୋହରେ ଯୋଗଦେଇ ପରାସ୍ତ ହୋଇଥିଲେ । ସେହି ବର୍ଷ ପରେ ସେ ବନ୍ଦୀ ଥିବାବେଳେ ପ୍ରାଣତ୍ୟାଗ କରିଥିଲେ । ୧୮୧୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ମୁକୁନ୍ଦଦେବ କହୁଥିବା ବିଷୟରେ ଇଂରେଜମାନଙ୍କ ରିପୋର୍ଟ ଭ୍ରାନ୍ତ ହୋଇ ନପାରେ । ବର୍ତ୍ତମାନ ୧୮୧୭ ଖ୍ରୀଷ୍ଟାବ୍ଦରୁ ଆରମ୍ଭ କରି ରାଜତ୍ଵର ଉପରୋକ୍ତ ପରିମାଣ ସାହାଯ୍ୟରେ ହିସାବ କରିଗଲେ ଦେଖାଯିବ ଯେ, ପୁରୀଜିଲ୍ଲା ଗେଜେଟିୟରର ତାଲିକାଟି ସଂପୂର୍ଣ୍ଣ ଠିକ୍ । ଏହି ଦୃଷ୍ଟିରେ ଦେଖିଲେ ଅଦ୍ୟାବଧି ମଧ୍ୟ ଗେଜେଟିୟରର ତାଲିକାକୁ ବିଶ୍ଵାସ ବୋଲି ମାନିବାକୁ ହେବ ।

ଅନ୍ୟ ଦିଗରୁ ମଧ୍ୟ ଆଲୋଚନା କଲେ ହଣ୍ଟରଙ୍କ ତାଲିକାରେ ବିଶ୍ଵାସ କରି ହୁଏ ନାହିଁ । ଓଡ଼ିଶା ରାଜାମାନଙ୍କର ନାମ ଦୁଇ ପୁରୁଷ ପରେ ଫେରିଆସେ । ତଦନୁସାରେ ରାମଚନ୍ଦ୍ର ଦେବଙ୍କ ପର ରାଜାଙ୍କର ନାମ ବୀରକିଶୋର ଦେବ ହେବା ଉଚିତ । ହଣ୍ଟର କିନ୍ତୁ ରାମଚନ୍ଦ୍ରଙ୍କ ପରେ କୌଣସି ବୀରକିଶୋରଙ୍କର ନାମୋଲ୍ଲେଖ ପର୍ଯ୍ୟନ୍ତ କରି ନାହାନ୍ତି । ପକ୍ଷାନ୍ତରେ ଗେଜେଟିୟର ମତରେ ଜଣେ ବୀରକିଶୋର ୧୮୫୬ରୁ ୧୮୭୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ଵ କରିଅଛନ୍ତି ।

ପ୍ରଥମ ବୀରକିଶୋରଦେବ ୧୭୮୦ ଖ୍ରୀଷ୍ଟାବ୍ଦରେ ପାଗଳ ହୋଇ ଅତ୍ୟାଚାରୀ ହେବାରୁ ପ୍ରଜାମାନେ ତାଙ୍କ ପ୍ରତି ଅସନ୍ତୁଷ୍ଟ ହୋଇଥିଲେ । ସେତେବେଳେ ରାଜାରାମ ପଣ୍ଡିତ ବାରବାଟି ଦୁର୍ଗରେ ମରହଟ୍ଟାମାନଙ୍କର ପ୍ରତିନିଧି ଥିଲେ । ମରହଟ୍ଟା ସୁବାଦାର ସୁବିଧା ପାଇ ବୀରକିଶୋରଙ୍କୁ ବନ୍ଦୀ କରିନେଲେ । ତାଙ୍କ ପର

ଦିବ୍ୟସିଂହ ଦେବ ମରହଟ୍ଟାମାନଙ୍କୁ ବାର୍ଷିକ ଦଶ ହଜାର ଟଙ୍କା କର ଦେବାପାଇଁ ସ୍ୱୀକୃତ ନହେବାଯାଏ ସୁବାଦାର ତାଙ୍କୁ ଓଡ଼ିଶାର ରାଜା ବୋଲି ମାନିଲେ ନାହିଁ । ପରବର୍ଷ ଅର୍ଥାତ୍ ୧୭୮୧ ଖ୍ରୀଷ୍ଟାବ୍ଦରେ ଇଂରାଜମାନଙ୍କ ସଙ୍ଗେ ଯୁଦ୍ଧ କରିବାପାଇଁ ରାଜ୍ୟରୁ ଜ୍ୱେନ୍‌ହାଙ୍କର ପ୍ରତିଭୂ ସ୍ୱରୂପ କଲିକତା ଯାଇଥିଲେ । କିନ୍ତୁ ହଣ୍ଟରଙ୍କ ମତରେ ରାଜକିଶୋରଙ୍କ ରାଜତ୍ୱ ୧୭୭୩ ଖ୍ରୀଷ୍ଟାବ୍ଦରେ ଶେଷ ହୋଇଥିଲା । ଏପରି ସ୍ଥଳରେ ହଣ୍ଟରଙ୍କ ତାଲିକାକୁ ଠିକ୍ ବୋଲି ବୋଲଯାଇ ନପାରେ ।

ହଣ୍ଟରଙ୍କ ତାଲିକା ଭ୍ରାନ୍ତ ହେବା ସ୍ୱାଭାବିକ । ସେ କେବଳ ତାଳପତ୍ର ପୋଥି ଉପରେ ନିର୍ଭର କରି ଲେଖିଯାଇ ଅଛନ୍ତି; କିନ୍ତୁ ପରୀକ୍ଷା କରି ସେଥିରୁ ସତ୍ୟ ନିର୍ଣ୍ଣୟ କରିବାକୁ ଯାଇନାହାନ୍ତି । ସେ ନିଜେ ମଧ୍ୟ କହିଛନ୍ତି ଯେ, ପଠାଣ-ରାଜତ୍ୱର ଶେଷଠାରୁ ଓଡ଼ିଶା ଇତିହାସ ସମ୍ବନ୍ଧରେ ସେ ଯାହା ଲେଖି ଯାଇଅଛନ୍ତି, ସେ ସବୁ ସଂପୂର୍ଣ୍ଣ ସତ୍ୟ ନୁହେଁ । ପକ୍ଷାନ୍ତରେ ପୁରୀଜିଲ୍ଲାର ବନ୍ଦୋବସ୍ତ ରିପୋର୍ଟ ଉପରୋକ୍ତ ଗେଜେଟିୟରର ଅବଲମ୍ବନ । ସୁବିବେଚକ ମନମୋହନ ଚକ୍ରବର୍ତ୍ତୀ ଏମ୍.ଏ,ବି,ଏଲ ମଧ୍ୟ ଗେଜେଟିୟରର ଉପରୋକ୍ତ ମତକୁ ସମର୍ଥନ କରିଅଛନ୍ତି ।

କେହି କହି ପାରନ୍ତି, ହଣ୍ଟର ୧୮୭୨ ଖ୍ରୀଷ୍ଟାବ୍ଦରେ ତାଙ୍କର ଇତିହାସ ଲେଖିଥିଲେ । ସୁତରାଂ ତାଙ୍କ ମତ ପରବର୍ତ୍ତୀ ଲେଖକମାନଙ୍କ ମତଠାରୁ ଗୁରୁତର ହେବା ଉଚିତ । ୧୮୧୭-୧୮ ଖ୍ରୀଷ୍ଟାବ୍ଦର ଘଟଣା ୧୮୭୨ ଖ୍ରୀଷ୍ଟାବ୍ଦର ଅନେକ ଲୋକଙ୍କୁ ଜଣା ଥିବ; ଏପରି କି ସ୍ୱଚକ୍ଷୁରେ ଦେଖିଥିବା ଲୋକ ଅନେକ ୧୮୭୨ ଖ୍ରୀଷ୍ଟାବ୍ଦକୁ ବଞ୍ଚି ରହିଥିବେ । ଏହି ଦୃଷ୍ଟିରେ ଦେଖିଲେ ହଣ୍ଟରଙ୍କ ତାଲିକାରେ ବିଶ୍ୱାସ କରିବାକୁ ଇଚ୍ଛା ହୁଏ । କିନ୍ତୁ ଟଏନବି ୧୮୭୩ ଖ୍ରୀଷ୍ଟାବ୍ଦରେ ଅର୍ଥାତ୍ ହଣ୍ଟରଙ୍କ ଏକ ବର୍ଷ ପରେ କଣ ଲେଖିଅଛନ୍ତି ? ମୁକୁନ୍ଦଦେବ ୧୮୧୭ ଖ୍ରୀଷ୍ଟାବ୍ଦରେ ପାଇକବିଦ୍ରୋହରେ ଯୋଗ ଦେଇଥିବା କଥା ସେ ମଧ୍ୟ କହିଅଛନ୍ତି । ତେବେ ଆଉ କେଉଁ ହେତୁରୁ ହଣ୍ଟରଙ୍କ ମତକୁ ବେଶୀ ମୂଲ୍ୟ ଦିଆଯାଇ ପାରେ ?

ବର୍ତ୍ତମାନ ଷ୍ଟର୍ଲିଂଙ୍କ ତାଲିକା ଆଲୋଚନା କରାଯାଉ । ତାଙ୍କ ମତରେ ପ୍ରଥମ ବୀରକିଶୋର ୧୬୪୩ ଖ୍ରୀଷ୍ଟାବ୍ଦଠାରୁ ୧୭୮୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ ସେହି ପ୍ରବନ୍ଧରେ ଅନ୍ୟତ୍ର ଲେଖିଅଛନ୍ତି ଯେ, ଏହି ରାଜା ପାଗଳ ହେବାରୁ ମରହଟ୍ଟା ସୁବାଦାର ରାଜାରାମ ପଣ୍ଡିତ ତାଙ୍କୁ ବନ୍ଦୀ କରି ନେଲେ ଏବଂ ସେହି ବର୍ଷ ତାଙ୍କ ମୃତ୍ୟୁ ପରେ ଦିବ୍ୟସିଂହ ଦେବ ବାର୍ଷିକ ଦଶ ହଜାର ଟଙ୍କା କର ଦେବାକୁ ସ୍ୱୀକୃତ ହେବାରୁ ଓଡ଼ିଶାର ରାଜା ବୋଲି ସ୍ୱୀକୃତ ହୋଇଥିଲେ । ଏ ସମସ୍ତ କାର୍ଯ୍ୟ ରାଜାରାମଙ୍କର । କିନ୍ତୁ ଗେଜେଟିୟରରୁ ଦେଖାଯାଏ ଯେ, ରାଜାରାମଙ୍କର ସୁବାଦାରି

Digitized by srujanika@gmail.com

୧୧୮୦ ଅଙ୍କ (୧୧୮୦+୫୯୩=୧୭୭୮ ଖ୍ରୀଷ୍ଟାବ୍ଦରେ) ଆରମ୍ଭ ହୋଇ ୧୭୮୬ ଖ୍ରୀଷ୍ଟାବ୍ଦରେ ଶେଷ ହୋଇଅଛି । କେବେ ୧୭୮୭ ଖ୍ରୀଷ୍ଟାବ୍ଦ ନା ରାଜାରାମଙ୍କର ସୁବାଦାରି ମଧ୍ୟରେ ପଡ଼ୁନାହିଁ । ଆଉ ମଧ୍ୟ ହଣ୍ଟର୍ ଓ ଗେଜେଟିଅରଙ୍କ ମତରେ ପ୍ରଥମ ବୀରକିଶୋର ଦେବ ୩୭ ବର୍ଷ ରାଜତ୍ୱ କରିଥିଲେ । ଷ୍ଟର୍ଲିଂ କହନ୍ତି, ଏହି ରାଜା ୧୭୪୩ ଖ୍ରୀଷ୍ଟାବ୍ଦରେ ରାଜା ହୋଇଥିଲେ । ସେ ଯଦି ୩୭ ବର୍ଷ ରାଜତ୍ୱ କରିଥାନ୍ତି, ତାହାହେଲେ ତାଙ୍କର ରାଜତ୍ୱ ୧୭୮୦ ଖ୍ରୀଷ୍ଟାବ୍ଦରେ (୧୭୪୩+୩୭) ଶେଷ ହୋଇ ଯାଇଥିବ । ୧୭୮୦ ଖ୍ରୀଷ୍ଟାବ୍ଦ ରାଜାରାମଙ୍କର ସୁବାଦାରି ମଧ୍ୟରେ ପଡ଼ୁଅଛି; ମଧ୍ୟ ଜିଲ୍ଲା ଗେଜେଟିୟର ଏହି ବର୍ଷକୁ ବୀରକିଶୋରଙ୍କ ରାଜତ୍ୱର ଶେଷ ବର୍ଷ ବୋଲି ସ୍ଥିର କରିଅଛନ୍ତି ।

ଏହିସବୁ ଆଲୋଚନା ଦୃଷ୍ଟିରେ ଆମ୍ଭେମାନେ ଜିଲ୍ଲା ଗେଜେଟିୟରର ଉପରୋକ୍ତ ତାଲିକାକୁ ଠିକ୍ ମନେ କରୁ । ହଣ୍ଟର୍ ଓ ଷ୍ଟର୍ଲିଂ ଯାହା ଶୁଣିଅଛନ୍ତି ବା ଯାହା ସେମାନଙ୍କର ହସ୍ତଗତ ହୋଇଅଛି, ତାହାହିଁ ଲେଖିଅଛନ୍ତି । ସେମାନେ ସେଗୁଡ଼ିକୁ ସତ୍ୟ ବୋଲି ଦାବୀ କରି ନାହାନ୍ତି କିମ୍ବା ସେ ସବୁ ସତ୍ୟ ବା ଅସତ୍ୟ ସ୍ଥିର କରିବାକୁ ଯାଇ ନାହାନ୍ତି । କେବଳ ପରବର୍ତ୍ତୀ ଲେଖକର ଆଲୋଚନା ପାଇଁ ସେମାନେ ବାଟ ଦେଖାଇ ଯାଇଅଛନ୍ତି ।

ଓଡ଼ିଶାରେ ଏକପ୍ରକାର ଅଙ୍କ-ଗଣନା ପ୍ରଚଳିତ ଅଛି । ଓଡ଼ିଶାର ରାଜାମାନେ ଦୁଇ ଅଙ୍କ କଟାଇ ରାଜା ହୁଅନ୍ତି । ଅର୍ଥାତ୍ ପ୍ରତ୍ୟେକ ନୂତନ ରାଜାଙ୍କ ରାଜତ୍ୱର ପ୍ରଥମ ବର୍ଷ ଦୁଇ ବୋଲି ଗଣ୍ୟ ହୁଏ । ପୁଣି ଏହି ନୂତନ ରାଜାଙ୍କର ପ୍ରଥମ ବର୍ଷ (ଦୁଇ ଅଙ୍କ) ତାଙ୍କ ପୂର୍ବବର୍ତ୍ତୀ ରାଜାଙ୍କର ଶେଷ ବର୍ଷ ବା ଅଙ୍କ ଅଟେ ।

ଓଡ଼ିଆ ପାଞ୍ଜିକାରମାନଙ୍କ ମତରେ ମୁକୁନ୍ଦ ଦେବ, ରାମଚନ୍ଦ୍ର ଦେବ, ଦ୍ୱିତୀୟ ବୀରକିଶୋର ଦେବ ଓ ଦ୍ୱିତୀୟ ଦିବ୍ୟସିଂହ ଦେବ ଯଥାକ୍ରମେ ୨୦, ୪୭, ୮ ଓ ୩୦ ଅଙ୍କ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଦିବ୍ୟସିଂହ ବାସ୍ତବରେ ୩୦ ଅଙ୍କ ଯାଏ ସିଂହାସନରେ ନ ଥିଲେ । ସେ ତାଙ୍କ ରାଜତ୍ୱର ୨୩ ଅଙ୍କରେ ବନ୍ଦୀ ହୋଇଥିଲେ । ସୁତରାଂ ଏହି ଅଙ୍କକୁ ତାଙ୍କ ରାଜତ୍ୱର ଶେଷ ବର୍ଷ ବୋଲି ସରକାର ଗ୍ରହଣ କରିବା ସ୍ୱାଭାବିକ । କିନ୍ତୁ ଦିବ୍ୟସିଂହ ବନ୍ଦୀ ଥିଲେହେଁ ଜୀବିତ ଥିବାରୁ ପାଞ୍ଜିକାରମାନେ ତାଙ୍କର ନାମରେ ୩୦ ଅଙ୍କଯାଏ ଗଣନା କରିଥିଲେ । ବର୍ତ୍ତମାନ ରାଜା ମୁକୁନ୍ଦଦେବ ଏହି ୩୦ ଅଙ୍କରେ ୯ ଅଙ୍କ କଟାଇ ରାଜା ହୋଇଅଛନ୍ତି ।

ପୂର୍ବେ କୁହା ଯାଇଅଛି—ପୁରୀ ଜିଲ୍ଲା ଗେଜେଟିୟରର ତାଲିକା ବିଶ୍ୱାସ୍ୟ । ବର୍ତ୍ତମାନ ଗେଜେଟିୟରପ୍ରଦତ୍ତ ମୁକୁନ୍ଦ ଦେବଙ୍କ ରାଜତ୍ୱର ପ୍ରଥମ ବର୍ଷ ୧୭୯୭-

Digitized by srujanika@gmail.com

୯୮ ଖ୍ରୀଷ୍ଟାବ୍ଦକୁ ଠିକ୍ ବୋଲି ଗ୍ରହଣ କରି ଆମ୍ଭେମାନେ ଓଡ଼ିଆ ପାଞ୍ଜିକାରମାନଙ୍କ ଅଙ୍କ ଗଣନା ସୂତ୍ରରେ ନିମ୍ନୋକ୍ତ ତାଲିକା ପାଉଅଛୁଁ ।

୧୭୯୭—୯୮ ଖ୍ରୀଷ୍ଟାବ୍ଦ=ମୁକୁନ୍ଦ ଦେବଙ୍କ ୨ ଅଙ୍କ

ମୁକୁନ୍ଦ ଦେବଙ୍କ ୨୫ ଅଙ୍କ=୧୮୧୭-୮ ଖ୍ରୀଷ୍ଟାବ୍ଦ=ରାମଚନ୍ଦ୍ରଙ୍କ ୨ ଅଙ୍କ

ରାମଚନ୍ଦ୍ର ଦେବଙ୍କ ୪୭ ଅଙ୍କ=୧୮୫୪-୫ ଖ୍ରୀଷ୍ଟାବ୍ଦ=ଦ୍ୱିତୀୟ ବୀରକିଶୋରଙ୍କ ୨ ଅଙ୍କ

ଦ୍ୱିତୀୟ ବୀରକିଶୋରଙ୍କ ୮ ଅଙ୍କ=୧୮୫୯-୬୦ ଖ୍ରୀଷ୍ଟାବ୍ଦ—ଦ୍ୱିତୀୟ ଦିବ୍ୟସିଂହଙ୍କ ୨ ଅଙ୍କ

ଦ୍ୱିତୀୟ ଦିବ୍ୟସିଂହଙ୍କ ୯ ଅଙ୍କ=୧୮୬୫-୬ ଖ୍ରୀଷ୍ଟାବ୍ଦ
" ୨୩ " =୧୮୬୭-୮ ଖ୍ରୀଷ୍ଟାବ୍ଦ
" ୩୫ " =୧୮୮୭-୮ ଖ୍ରୀଷ୍ଟାବ୍ଦ=ମୁକୁନ୍ଦ ଦେବଙ୍କ ୯ ଅଙ୍କ

ବର୍ତ୍ତମାନ ରାଜା ମୁକୁନ୍ଦ ଦେବଙ୍କ ୪୭-୮ ଅଙ୍କ=୧୯୨୦ ଖ୍ରୀଷ୍ଟାବ୍ଦ ।

ଉପରୋକ୍ତ ହିସାବରୁ ସ୍ପଷ୍ଟ ଦେଖାଯାଉଅଛି ଯେ, ଉକ୍ତ ଗେଜେଟିଅରର ତାଲିକାଟି ଭ୍ରାନ୍ତ । ଯେଉଁ ସାମାନ୍ୟ ବ୍ୟତିକ୍ରମ ଦେଖା ଯାଉଅଛି, ତାହା ପାଞ୍ଜିକାର ଏବଂ ସରକାରୀ କର୍ମଚାରୀମାନଙ୍କ ଗଣନାପାର୍ଥକ୍ୟ ଦୃଷ୍ଟିରେ ଅଛି ହେବ । ୧୮୬୬ ଖ୍ରୀଷ୍ଟାବ୍ଦ ଓଡ଼ିଶାର ଭୀଷଣ ଦୁର୍ଭିକ୍ଷ ନଅଙ୍କ ନାମରେ ପ୍ରସିଦ୍ଧ । ଏହାକୁ ଲୋକେ ୯ ଅଙ୍କ କହନ୍ତି ।

"ଦିବ୍ୟସିଂହ ଦେବ ରାଜା ନଅଙ୍କ ।
ମୂଲରେ ମୂଲରେ ଯେଉଁ ଲୋକେ ରଙ୍କ ।
ଧନୀ ଲୋକମାନେ ଉଚ୍ଛନ୍ନ ହୋଇଲେ
ଅନେକ ହୋଇଲେ ଗରବଜାକ ।

ଦେଲେ ଝଟପଟ ନ ମିଳେ ବାଟ ।
ଗ୍ରନ୍ଥ ପକାଉଛନ୍ତି ଖ୍ରିଷ୍ଟ ବାଳକ ।
ନଚିନ୍ତ ଖେଳ,
ନ ମିଳେ ଭାତ,
ଦ୍ୱାର ଦ୍ୱାର ଭଣ ମାଗନ୍ତି ଭାତ,
ମହତ ରଖିବ ଏକା ଉତ୍ତମ ।" ଇତ୍ୟାଦି ।

ଏହି ଅଦଶକ୍ତଚଳନ ପ୍ରଦେନଲଧାରୁ ସ୍ପଷ୍ଟ ଜଣାଯାଏ, ଓଡ଼ିଶାର ଉପରୋକ୍ତ ଦୁର୍ଭିକ୍ଷ ଦିବ୍ୟସିଂହ ଦେବଙ୍କ ୯ ଅଙ୍କରେ ସଂଘଟିତ ହୋଇଥିବ । ମଧ୍ୟ ଉପରୋକ୍ତ ହିସାବରୁ ଦେଖାଯାଏ ଯେ, ଦିବ୍ୟସିଂହଙ୍କ ୯ ଅଙ୍କ ୧୮୬୬ ଖ୍ରୀଷ୍ଟାବ୍ଦରେ ପଡ଼ିଥିବ । ସୁତରାଂ ପୁସ୍ତ ଲେଖା ଗେଜେଟିୟରର ତାଲିକାକୁ ଅବିଶ୍ୱାସ କରିବାର କୌଣସି କାରଣ ନାହିଁ । ଆମ୍ଭେମାନେ ଏହାର ଅବଲମ୍ବନରେ ସମସାମୟିକ ସାହିତ୍ୟ ମଧ୍ୟରୁ ଗୋଟିଏ କ୍ଷୁଦ୍ର କବିତାର ଆଲୋଚନା କରିବୁ ।

କବିତାଟି ଏହି—

ଆହେ ନୀଳାଦ୍ରି ବିହାରୀ
କଟକେ ଅଟକ ହେବାରୁ ମୋ ଧନ
ସବୁ ନାହିଁ ହୁଇ ଛୁଇ । ଘୋଷା ।
ବାବୁ ବନମାଳି ତରକ ନ ଜାଣି
ରାମଚନ୍ଦ୍ରକୁ ଆଣିଲେ,
ବାଳକ ପଣ୍ଡିତ କୈବଲ୍ୟ ଲଙ୍ଘିତ
ବାରବାଟୀ ଧରାଇଲେ ।
ତୁଳସୀର ମାଳ ତୁଳସୀର ଚୂଳ
ତୁଳସୀ ଭୂଷଣ ହର
ତୁଳସୀ ଚଉରା ମୂଳେ ଜଣାଇଲେ
ଦଣ୍ଡଧର ନୀଳଗିର ।
ବାବୁ ହରିହର ସୁପାଣ୍ଡାରର
କେଉଁ ଦୋଷ ଦେଖିବାର,
ଭଣ୍ଡାରୁ ଖଣ୍ଡା କାଢ଼ିଣ ମହାପ୍ରଭୁ
ଓଡ଼ିଶା ଶତ୍ରୁ ନିବାର ।
ରାଜା ମହାରାଜା ମୁକୁନ୍ଦଦେବ ଭଣି
ଚରଣ ତଳେ ଶରଣ,

Digitized by srujanika@gmail.com

ଅସୁର ଚଣ୍ଡାଳ ଧର ଘେନଗଲ

ଅନେକ ଦେଲ୍ଲ ଭଷଣ ।

"ମୁକୁନ୍ଦେବ" କବି, ଆହ୍ମ ସେ କେଉଁ ଘଟନାକୁ ଲକ୍ଷ୍ୟ କରି ଲେଖିଅଛନ୍ତି ? ଏ ସବୁ ଅଜ ଆମ୍ଭମାନଙ୍କର ଅଲୋଚ୍ୟ ବିଷୟ । ରାଜାରାମ ପଣ୍ଡିତଙ୍କ ପୁତ୍ର ସଦାଶିବ ରାଓ ୧୬୦୦ ଅମି (୧୬୦୦+୭୯୩=୧୬୯୩ ଖ୍ରୀ: ଅ:) ପର୍ଯ୍ୟନ୍ତ କଟକରେ ସୁବାଦାର ଥିଲେ । ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ବାରବାଟୀ ଦୁର୍ଗ ଅଧିକାର କରିବା ସମୟରେ ତାଙ୍କର ପଣ୍ଡିତ (ବାଲଜି କୁନ୍ୱାର) ସେଠାରେ ମରହଟ୍ଟା-ସୁବାଦାର ଥିଲେ । ତାଙ୍କର ସୁବାଦାରୀ କେବେ ଆରମ୍ଭ ହେଲା, ଜଣା ନାହିଁ । କେବେ ୧୭୯୩ ଖ୍ରୀଷ୍ଟାବ୍ଦଠାରୁ ୧୮୦୩ ଖ୍ରୀଷ୍ଟାବ୍ଦ ମଧ୍ୟରେ ପାଖ୍ୟ ୩ ଜଣ ସୁବାଦାର କଟକରେ ଶାସନ କରିଥିଲେ (Staring As. Res. Vol. XV.) ୧୮୦୩ ଖ୍ରୀଷ୍ଟାବ୍ଦର କେତେକ ବର୍ଷ ପୂର୍ବରୁ କଟକରେ ବାଲଜିଙ୍କର ସୁବାଦାରି ଆରମ୍ଭ ହୋଇଥିବା ଅସମ୍ଭବ ନୁହେଁ । ପୁରୀ ଗେଜେଟିୟର ମତରେ ମୁକୁନ୍ଦ ଦେବଙ୍କ ରାଜତ୍ୱ ୧୭୯୭ ଖ୍ରୀଷ୍ଟାବ୍ଦରେ ଆରମ୍ଭ ହୋଇଥିଲା । କେବେ ଏହି ମୁକୁନ୍ଦଦେବ ଯେ ବାଲଜିଙ୍କର ସମସାମୟିକ, ଏଥିରେ କୌଣସି ସନ୍ଦେହ ହୋଇ ନ ପାରେ ।

ପୂର୍ବେ କୁହା ଯାଇଅଛି, ରାଜାରାମ ପଣ୍ଡିତ ବାର୍ଷିକ ଦଶ ହଜାର ଟଙ୍କା କର ସମାଶେ ଦିବ୍ୟସିଂହ ଦେବଙ୍କୁ ବାଧ୍ୟ କରିଥିଲେ (୧୭୮୦) । ଦିବ୍ୟସିଂହ ଦେବ କର ଦେବାକୁ ସ୍ୱୀକୃତ ହେଲେ ସତ୍ୟ; କିନ୍ତୁ କାଗଜପତ୍ରରେ ଲେଖା ହେବା ଛଡ଼ା ସେ କରର ଆଉ କିଛି ଅର୍ଥ ନ ଥିଲା । ବର୍ଷ ଶେଷରେ ସୁବାଦାର କର ମାଗିଲେ ଓଡ଼ିଶା ରାଜା କର ନ ଦେଇ ଯୁଦ୍ଧର ଆୟୋଜନ କରୁଥିଲେ; ଯୁଦ୍ଧରେ ପରାସ୍ତ ହେଲେ କର ଦେଉଥିଲେ, ନଚେତ୍ ମରହଟ୍ଟାମାନଙ୍କୁ ତାଳପତ୍ର ଲେଖାଟିରେ ସନ୍ତୁଷ୍ଟ ହେବାକୁ ହେଉଥିଲା । ଏହି ସାମ୍ୱତ୍ସରିକ ଯୁଦ୍ଧ ଯେ କେତେ କାଳ ଲାଗିଥିଲା, ତାହା ଆମ୍ଭେମାନେ ଜାଣୁ ନାହିଁ । କେବେ ଦିବ୍ୟସିଂହ ଦେବଙ୍କ ପୁତ୍ର ମୁକୁନ୍ଦ ଦେବ ମଧ୍ୟ ଏହି ଯୁଦ୍ଧରେ ପ୍ରବୃତ୍ତ ହୋଇଥିବା ଅସମ୍ଭବ ନୁହେଁ ।

ଓଡ଼ିଶା ରାଜାଙ୍କ ସଙ୍ଗେ ମରହଟ୍ଟାମାନଙ୍କର ଉପରୋକ୍ତ କଳହଚ୍ଛିନ୍ନ ଯୁଦ୍ଧର ଅନ୍ୟ କାରଣ ମଧ୍ୟ ଥିଲା । ୧୭୬୦ ଖ୍ରୀଷ୍ଟାବ୍ଦରେ ଖିମଣ୍ଡିର ରାଜା ନାରାୟଣ ଦେବ ପ୍ରଥମ ଖାରଜଶୋଲଙ୍କର ରାଜ୍ୟ ଆକ୍ରମଣ କରିଥିଲେ । ଶିଓଭଟ୍ଟ ସାନ୍ତ୍ରା ସେତେବେଳେ କଟକରେ ମରହଟ୍ଟା ସୁବାଦାର ଥିଲେ । (District Gazetteer, Puri) ସେ ଖାରଜଶୋଲଙ୍କୁ ଯୁଦ୍ଧରେ ସାହାଯ୍ୟ ଦାନ କରି

Digitized by srujanika@gmail.com

ଖର୍ଦ୍ଦ ସହାଣେ ଲେମ୍ବେଇ, ରହଙ୍ଗ ଓ ହରିହ ନଗର ପର୍ଯ୍ୟନ୍ତ ଭେଟେଇ ସ୍ଥାନ ବନ୍ଧା ଦେଇଥିଲେ । କିନ୍ତୁ ଦିବ୍ୟସିଂହ ଦେବ ବୋଧହୁଏ ମନେ କଲେ ଯେ, ମରହଟ୍ଟାମାନେ ସାମାନ୍ୟ କେତେକ ଟଙ୍କା ସହାଣେ ଅନେକଗୁଡ଼ିଏ ସ୍ଥାନ ଅଧିକାରରେ ଭୋଗ କରୁଅଛନ୍ତି । ସେମାନେ ଅନେକ କାଳ ଭୋଗ କଲେଣି; ଅତଏବ ସେମାନଙ୍କର ଟଙ୍କା ଉଣ୍ଟସୁଧ ଶୁଝି ପାଇଅଛୁ । ସେ ରାଜା ହେବାର ଅଳ୍ପ ସମୟ ପରେ ଚନ୍ଦ୍ରଭେଦି ପାହାଡ଼ର ସଙ୍କଟ ମଧ୍ୟରେ ଏକ ନୂତନ ଦୁର୍ଗ ସ୍ଥାପନ କଲେ । ସେଠାରୁ କ୍ରମଦଳରେ ଆସି ଲେମ୍ବେଇ, ଖୋରଧା ଓ ବାଣପୁର ପ୍ରଭୃତି ତାଲୁକମାନ ସେ ମରହଟ୍ଟାମାନଙ୍କଠାରୁ ଛଡ଼ାଇ ନେଲେ । ସେଥିପାଇଁ ମରହଟ୍ଟାମାନଙ୍କ ସଙ୍ଗେ ତାଙ୍କର ବାରମ୍ବାର ଯୁଦ୍ଧ ହେଉଥିଲା । ଜନକ ଚୁକ୍ତି ଅନୁସାରେ ଟଙ୍କା ନ ଦେଇ ପିତା ଯେଉଁ ବନ୍ଧକ ଦେଇଥିଲେ, ସେହି ବନ୍ଧକ ସମ୍ପତ୍ତିକୁ ଛଡ଼ାଇ ନେବାରୁ ମରହଟ୍ଟାମାନଙ୍କ ଶତ୍ରୁତା ବର୍ଦ୍ଧିତ ହେବା ସ୍ୱାଭାବିକ । ଓଡ଼ିଆ ସୈନ୍ୟଙ୍କ ସହିତ ଯୁଦ୍ଧରେ ମରହଟ୍ଟାମାନେ ବାରମ୍ବାର ପରାସ୍ତ ହେଉଥିଲେ । (As. Res. Vol. XV.) ସେମାନଙ୍କ ପଦାତିକ ସୈନ୍ୟମାନେ ଓଡ଼ିଆ ପାଇକଙ୍କ ସହିତ ସମ୍ମୁଖ ଯୁଦ୍ଧ କରିବାକୁ ସାହସ କରୁ ନ ଥିଲେ । ( District Gazetteer, Puri. p. 49 ) ମୁକୁନ୍ଦ ଦେବଙ୍କୁ ବହୁବାର ଏହି ପୈତୃକ ଯୁଦ୍ଧରେ ପ୍ରବୃତ୍ତ ହେବାକୁ ହୋଇଥିବ । ୧୮୦୩ ଖ୍ରୀଷ୍ଟାବ୍ଦରେ ମରହଟ୍ଟାମାନଙ୍କ ଓଡ଼ିଶାରୁ ଇଂରେଜମାନଙ୍କ ଦ୍ୱାରା ବିତାଡ଼ିତ ନ ହେବାଯାଏ ଯେ କେତେ ଯୁଦ୍ଧ ହୋଇଥିବ, ଓଡ଼ିଶାର କେତେ ସ୍ତ୍ରୀ କନ୍ୟା ଶତ୍ରୁକବଳରେ ପତି ପିତାଙ୍କର ନାମ ଲେଖିଥିବେ, କେତେ ବିରହିଣୀଙ୍କ କୋମଳ ହୃଦୟ ସୁଦୂର ମହାରଣ୍ୟରେ ବିଦୀର୍ଣ୍ଣ ହୋଇଥିବ, ତାହା କିଏ କହି ପାରେ ? ଓଡ଼ିଆ ! ଏ ସବୁ ତୋହର କୀର୍ତ୍ତି ! ତୋହର ରକ୍ତ ସବୁ ଦିନେ ଶତ୍ରୁ-ରକ୍ତରେ ମିଶି ଧାନ ଗଛର ପୁଷ୍ଟି ସାଧନ କରୁଥିଲା ! କାହିଁ ତୋର ସେ ଦିନ, ଯେତେବେଳେ ତୋହର ରକ୍ତପାଳିତ ତଣ୍ଡୁଳ ଖାଇ ତୋହର ସନ୍ତାନ ଶତ୍ରୁ-ରକ୍ତରେ ଖଣ୍ଡାଧାର ବୁଡ଼ାଇ କପାଳରେ ହସି ହସି ହରମହର କାଟୁଥିଲା ! କି ବିଷମ ପରିବର୍ତ୍ତନ ! ଆଜି ଓଡ଼ିଆ ମୃତ; ଆଜି ସେ ଉତ୍କଳୀୟ ଖଣ୍ଡା କାହିଁ ।

ଏ ସମସ୍ତ ଯୁଦ୍ଧ ସହାଣେ ଦାୟୀ କିଏ ? କେହି କହି ପାରନ୍ତି, ଦିବ୍ୟସିଂହ ଦେବ ଚୁକ୍ତି ଅନୁଯାୟୀ କର ନ ଦେଇ ଅନ୍ୟାୟ କରିଅଛନ୍ତି ଏବଂ ପିତାଙ୍କର ବନ୍ଧନକୁ ଅବମାନନା କରି ବନ୍ଧକ ସମ୍ପତ୍ତି ଛଡ଼ାଇ ନେବା ତାଙ୍କ ପକ୍ଷରେ ବିଶ୍ୱାସଘାତକତାର କାର୍ଯ୍ୟ । କିନ୍ତୁ ସମ୍ମୁଖରେ ତାଙ୍କ ସପକ୍ଷରେ ଦୁଇଟି କଥା କୁହା ଯାଇପାରେ । ପ୍ରଥମତଃ ମରହଟ୍ଟାମାନଙ୍କଦ୍ୱାରା ଓଡ଼ିଶାର ରାଜା ବୋଲି ଉକ୍ତ ହେବାପାଇଁ ସେ କାହିଁକି ଲାଳାୟିତ ହେଲେ ? ଦ୍ୱିତୀୟତଃ, ଯେ

Digitized by srujanika@gmail.com

ଏପରି ନିର୍ବାସିତ ହେଲେ, ତାହାଙ୍କ ପରେ ରାଜା ହେବା ପାଇଁ ଯେଉଁ ଚୁକ୍ତି କରିଥିଲେ, ସେ ଚୁକ୍ତିକୁ ନ ମାନିବା ସେମାନଙ୍କ ପକ୍ଷରେ କେତେଦୂର ନ୍ୟାୟସଙ୍ଗତ ? ମରହଟ୍ଟାମାନେ ବୀରକିଶୋରଙ୍କୁ ପ୍ରଜାମାନଙ୍କ ଇଚ୍ଛାନୁସାରେ ବନ୍ଦୀ କରିଥିଲେ । ପ୍ରଜାମାନେ ସ୍ୱାଧୀନଭାବରେ ଅନୁମତି ଦେଇ ନ ଥାଇ ପାରନ୍ତି—କିନ୍ତୁ ସେମାନଙ୍କର ପ୍ରଧାନ ପ୍ରଧାନ ସର୍ଦ୍ଦାର ଓ ସେନାପତିମାନେ ରାଜାଙ୍କର ବନ୍ଧନ ବିପକ୍ଷରେ କୌଣସି ଆନ୍ଦୋଳନ କରିଥିବାର ଦେଖାଯାଏ ନାହିଁ । ଏହି ଦେଶରେ ସବୁବେଳେ ପରସ୍ପରର ବିରୋଧୀ ଦଳ ଥାନ୍ତି । ରାଜବଂଶର ବଳ ଯେତେବେଳେ ଟିକିଏ କମିଯାଏ, ସେତେବେଳେ ପ୍ରତ୍ୟେକ ନୂତନ ରାଜଗାଦିରେ ବସିବା ପୂର୍ବରୁ ଏହି ଦୁଇପକ୍ଷ ଦଳ ମଧ୍ୟରେ ଉକ୍ତ ସମସ୍ତ ଗଣ୍ଡଗୋଳ ହୋଇଥାଏ । ଏ କଥାଟି ପ୍ରାଚୀନ ରାଜାମାନଙ୍କ ସମ୍ବନ୍ଧରେ ଅକ୍ଷରେ ଅକ୍ଷରେ ସତ୍ୟ । ବୀରକିଶୋର ଦେବ ପାଗଳ ହେଲାବେଳେ ଓଡ଼ିଶାର ଓ ଓଡ଼ିଶା ରାଜବଂଶର ଠିକ୍ ଏହି ଅବସ୍ଥା ହୋଇଥିବ । ସୁତରାଂ ଦେଶର ମାନ୍ୟଗଣ୍ୟ ବ୍ୟକ୍ତିମାନେ ବୋଧହୁଏ ବିପ୍ଳବ ଭୟରେ ମରହଟ୍ଟାମାନଙ୍କୁ ମଧ୍ୟସ୍ଥ ମନୋନୀତ କରି ପାଗଳ ରାଜାଙ୍କୁ ସେମାନଙ୍କର ଜିମା କରିଦେଇଥିଲେ । ଉକ୍ତ ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କ ସାହାଯ୍ୟ ନେଇ ତାହା ଶୂନ୍ୟପଦରେ ବୀରକିଶୋରଙ୍କ ପୁଅ ଦିବ୍ୟସିଂହଙ୍କୁ ରାଜା ଘୋଷିତ କରିବା ଏ କ୍ଷେତ୍ରରେ ମରହଟ୍ଟାମାନଙ୍କର କର୍ତ୍ତବ୍ୟ ଥିଲା । କିନ୍ତୁ ବୋଧହୁଏ ହସ୍ତ ପ୍ରବେଶ ହେବାରୁ ସେମାନେ କ୍ରମେ ତାହା ପ୍ରବେଶ କରାଇବାପାଇଁ ସଚେଷ୍ଟ ହେଲେ । ସେମାନେ ମଧ୍ୟସ୍ଥର କାର୍ଯ୍ୟ କରିବାକୁ ଆସି ଓଡ଼ିଶାକୁ ନିଜର ଅଧୀନ କରିବାପାଇଁ ଯତ୍ନବାନ୍ ହେଲେ । ଏହି ଉଦ୍ଦେଶ୍ୟରେ ବୋଧ ହୁଏ ସେମାନେ ଦିବ୍ୟସିଂହଙ୍କଠାରୁ ଉପରୋକ୍ତ ମତେ ସର୍ତ୍ତ ଲେଖାଇ ନେଇଥିଲେ । ଦିବ୍ୟସିଂହ ଅବସ୍ଥାଗତିକରେ ପଞ୍ଚ ସର୍ତ୍ତ ଲେଖି ଦେବାକୁ ବାଧ୍ୟ ହୋଇଥିଲେ । ଦେଶର ନେତାମାନଙ୍କର ଅଭିସନ୍ଧିକ୍ରମେ ପିତା ମରହଟ୍ଟାମାନଙ୍କ ହସ୍ତରେ ବନ୍ଦୀ ହୋଇଥିଲେ । ରାଜସିଂହାସନର ଭବିଷ୍ୟତ୍ ସେମାନଙ୍କ ଉପରେ ନିର୍ଭର କରୁଥିଲା । ସେମାନଙ୍କୁ ମଧ୍ୟସ୍ଥ କଲା ପରି ଦେଶର ପ୍ରଧାନ ପ୍ରଧାନ ବ୍ୟକ୍ତିମାନେ ହୁଏତ ସେମାନଙ୍କର କ୍ରୀତଦାସ ହୋଇଥିଲେ । ସେମାନଙ୍କ ହସ୍ତରୁ ସ୍ୱାଧୀନତା ରକ୍ଷା କରିବାକୁ ହେଲେ ରାଜା ହୋଇ ଲୋକମାନଙ୍କୁ ହସ୍ତଗତ କରିବା ଦିବ୍ୟସିଂହଙ୍କର ପ୍ରଥମ କର୍ତ୍ତବ୍ୟ ଥିଲା । କିନ୍ତୁ ତାଙ୍କୁ ରାଜା କରାଇ ଦେବାପାଇଁ ଉପସ୍ଥିତ କ୍ଷେତ୍ରରେ ମରହଟ୍ଟାମାନଙ୍କ ଛଡ଼ା ଅନ୍ୟ କାହାର ଅଧିକାର ନ ଥିଲା । ସେମାନେ ଯେ ଅନ୍ୟାୟ ସର୍ତ୍ତ ଆବଶ୍ୟକ କରୁଥିଲେ, ଏ କଥା ବୁଝି ଦିବ୍ୟସିଂହଙ୍କର ସପକ୍ଷ ହେବାକୁ କେହି ଗଣ୍ୟମାନ୍ୟ ବ୍ୟକ୍ତି ନ ଥିଲେ । ବୋଧହୁଏ ମଧ୍ୟସ୍ଥ ହେଲା ପରି ମରହଟ୍ଟାମାନେ ସମସ୍ତଙ୍କୁ ହସ୍ତଗତ କରିଥିଲେ । ଦିବ୍ୟସିଂହ ଏହିସବୁ ଜାଣି ବୋଧହୁଏ ସର୍ତ୍ତ ଲେଖାଇ ଦେଇଥିଲେ । କିନ୍ତୁ ଲେଖିଦେଲା ସଙ୍ଗେ ସଙ୍ଗେ ସେ ମନସ୍ଥ କରିଥିଲେ ଯେ, ସୁବିଧାକ୍ରମେ ଏହାକୁ ଭଙ୍ଗ କରି ସ୍ୱାଧୀନ ହେବେ ।

Digitized by srujanika@gmail.com

ମରହଟ୍ଠା ସୁବାଦାର ରଘୁ ମଧ୍ୟସ୍ଥ ହୋଇ ଆସି ଉପରୋକ୍ତ ବିଶ୍ୱାସଘାତକତା କରିଥାନ୍ତି, ତାହାହେଲେ ଦିବ୍ୟସିଂହ କାହିଁକି "ଶଠେ ଶାଠ୍ୟଂ ସମାଚରେତ୍" ନୀତି ଅବଲମ୍ବନ ନ କରିବେ ? ସେଥିପାଇଁ ଦିବ୍ୟସିଂହ ଦେବ ସନ୍ଧି ଲେଖିଦେଇ ରାଜା ହେବା ପରେ ଲୋକମାନଙ୍କୁ ହସ୍ତଗତ କରି କରଦାନ ବନ୍ଦ କରିଥିଲେ । ଏସବୁ ପ୍ରକୃତରେ ଘଟିଥିଲା କି ନାହିଁ, ଆମ୍ଭମାନେ ଜାଣୁ ନାହିଁ । ତେବେ ଏହି ବିବେଚନାରେ ଆମ୍ଭମାନେ ଦିବ୍ୟସିଂହଙ୍କୁ କର ନ ଦେବା ସକାଶେ ଦୋଷୀ ମନେକରି ନ ପାରୁଁ ।

ପୁନଶ୍ଚ ବୀରକିଶୋର ଯେଉଁ ତାଲୁକ ଦେଇଥିଲେ, ଦିବ୍ୟସିଂହଙ୍କର ସେ ସବୁ ଛଡ଼ାଇ ନେବାରେ କି ଅଧିକାର ଥିଲା ? ବୀରକିଶୋର କେତେ ଟଙ୍କା ପାଇଁ ବା କି ସର୍ତ୍ତରେ ତାଲୁକ ଦେଇଥିଲେ, ତାହା ଜଣା ନାହିଁ । ସର୍ତ୍ତ ଜଣା ନ ଥିବା ସ୍ଥଳରେ ଦିବ୍ୟସିଂହଙ୍କର ତାଲୁକ ସମ୍ପତ୍ତି ଅଧିକାର କରିବା ନ୍ୟାଯ୍ୟ କି ଅନ୍ୟାଯ୍ୟ, କିଛି କହି ହେବ ନାହିଁ । ଆହୁରି ମଧ୍ୟ ଏକା ହୋଇ ଚୁକ୍ତିଭଙ୍ଗ କରିବା ହେତୁ ମରହଟ୍ଠାମାନଙ୍କ ସଙ୍ଗେ ଯେତେବେଳେ ଯୁଦ୍ଧ ଉପସ୍ଥିତ ହେଲା, ସେତେବେଳେ ଓଡ଼ିଶାର ରାଜା ଦିବ୍ୟସିଂହ ଦେବ ଓ ମରହଟ୍ଠାମାନେ ପରସ୍ପର ଶତ୍ରୁରୂପେ ଦଣ୍ଡାୟମାନ ହେଲେ । ଶତ୍ରୁର ଯଥାସାଧ୍ୟ ଅନିଷ୍ଟ ସାଧନ କରିବା ଶତ୍ରୁର କାର୍ଯ୍ୟ । ପିତା ବା ପିତାମହଙ୍କର ଅନୁମତିକ୍ରମେ କେଉଁ ସମ୍ପତ୍ତି ଶତ୍ରୁର ହୋଇଅଛି, ସେ କଥା ଶତ୍ରୁ ଶତ୍ରୁତା ସାଧନ କଲାବେଳେ ଭାବି ପାରେ ନାହିଁ । ଶତ୍ରୁ ପିତାଙ୍କର ବନ୍ଧୁ ହୋଇ ପାରେ; କିନ୍ତୁ ସେ ଯେତେବେଳେ ଶତ୍ରୁ, ଶତ୍ରୁ ନିଶ୍ଚୟ ତାହା ପ୍ରତି ଶତ୍ରୁ ବ୍ୟବହାର କରିବ । ସମାଜର ଦୃଷ୍ଟିରେ ଏ କଥା ଯାହା ହେଉ, ରାଜନୈତିକ ଜଗତରେ ଏହା ଅକ୍ଷରେ ଅକ୍ଷରେ ସତ୍ୟ । ସେଥିପାଇଁ ଦିବ୍ୟସିଂହ ମରହଟ୍ଠାମାନଙ୍କଠାରୁ ଯାହା ପାଇଲେ, ତାହା ଅବାଧରୂପରେ ଅଧିକାର କଲେ ।

ପୂର୍ବୋକ୍ତ ବିବରଣୀରୁ ଜଣାଯାଏ, ମୁକୁନ୍ଦ ଦେବ ବୋଲି ଓଡ଼ିଶାର କୌଣସି ରାଜା କଟକର ବାରବାଟୀ ଦୁର୍ଗରେ 'ଅଟକ' ହୋଇଥିଲେ । ଏ ମୁକୁନ୍ଦ ଦେବ କିଏ ? ଆମ୍ଭେମାନେ ପୂର୍ବେ କହିଅଛୁଁ, ମୁକୁନ୍ଦ ଦେବ ୧୭୯୭-୮ରୁ ୧୮୧୭-୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଶାରେ ରାଜତ୍ୱ କରିଥିଲେ । ସେ ମରହଟ୍ଠା ସୁବାଦାର ଭାଲୁଜିଙ୍କର ସମସାମୟିକ ଥିଲେ । ଏହାଙ୍କ ଛଡ଼ା ଅନ୍ୟ କୌଣସି ମୁକୁନ୍ଦ ଦେବ ଭାଲୁଜିଙ୍କର ସମୟରେ ଓଡ଼ିଶାରେ ରାଜତ୍ୱ କରି ନାହାନ୍ତି । କିମ୍ବା ଅନ୍ୟ କୌଣସି ଭାଲୁଜି ଅନ୍ୟ କୌଣସି ମୁକୁନ୍ଦ ଦେବଙ୍କ ସମୟରେ ସୁବାଦାର ହୋଇ ନାହାନ୍ତି । ଗୀତରେ ମଧ୍ୟ ଅଛି, "ଭାଲୁକି ପଣ୍ଡିତ କୈବଲ୍ୟ ଲଙ୍ଘିତ ବାରବାଟୀ ଠରାଇଲେ," ଅର୍ଥାତ୍ ଜଣେ ଭାଲୁକି ପଣ୍ଡିତ ନବାବକାଳ ମୁକୁନ୍ଦଙ୍କର ସମସାମୟିକ, ଅତଏବ ଗୀତୋକ୍ତ ଭାଲୁକି ପଣ୍ଡିତ ଆମ୍ଭମାନଙ୍କର ମରହଟ୍ଠା ସୁବାଦାର ଭାଲୁଜି ବୁଝାଉ

Digitized by srujanika@gmail.com

ଓ ନେଇଟାତାବ ମୁକୁନ୍ଦ ଆମ୍ଭମାନଙ୍କର ମୁକୁନ୍ଦ ଦେବ (୧୭୬୭-୮ ରୁ ୧୮୧୭-୮) ଅଟନ୍ତି । ବୋଧହୁଏ ମୁକୁନ୍ଦ ଦେବ ପିତୃପୁରୁଷରେ କୌଣସି ସମୟରେ ପରାଜିତ ହୋଇ ବାଲିଜ କୁମ୍ଭାରଙ୍କ ହସ୍ତରେ ବାରବାଟୀରେ ବନ୍ଦୀ ହୋଇଥିଲେ । ଉକ୍ତ ରାଜା ବନ୍ଦୀ ଅବସ୍ଥାରେ 'ଜଲାଲ୍ ବହାଗ'ଙ୍କୁ ଗୀତାକାରରେ ଗୁହାରି ଜଣାଇଅଛନ୍ତି ।

"ତାରୁ ବନମାଳୀ ଚରଣ ନ ଜାଣି
ରାମଚନ୍ଦ୍ରଙ୍କୁ ଆଣିଲେ,
ବାଲଜ ପଣ୍ଡିତ କୈବଲ୍ୟ ଲାଗି ତ
ବାରବାଟୀ ଧରାଇଲେ ।"

ବନମାଳୀ ଓ ରାମଚନ୍ଦ୍ର ଏ ଦୁହେଁ କିଏ ? ଆମ୍ଭେମାନେ ଜାଣୁ, ମୁକୁନ୍ଦ-ଦେବଙ୍କ ପୁଅ ରାମଚନ୍ଦ୍ର ଦେବ ୧୮୧୭-୧୮ ଠାରୁ ୧୮୫୫-୫୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ବାଲିଜଙ୍କ ହସ୍ତରେ ମୁକୁନ୍ଦଦେବ ବନ୍ଦୀ ହେଲାବେଳେ ରାମଚନ୍ଦ୍ରଙ୍କର ବୟସ ଅଳ୍ପ ହୋଇଥିବ । ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ବାରବାଟୀ ଦୁର୍ଗ ଅଧିକାର କଲାବେଳେ ମୁକୁନ୍ଦଦେବ ସେଠାରେ ନ ଥିଲେ । ସେ ସେତେବେଳେ ଖୋର୍ଦ୍ଧା ବା କଳାରହଙ୍ଗରେ ସ୍ୱାଧୀନଭାବରେ ରାଜତ୍ୱ କରୁଥିଲେ । ସୁତରାଂ ୧୮୦୩ ଖ୍ରୀଷ୍ଟାବ୍ଦର ଦୁଇ ତିନି ବର୍ଷ ପୂର୍ବେ ମୁକୁନ୍ଦ ଦେବ ବନ୍ଦୀ ହୋଇ-ଥିବେ । ତାହାହେଲେ ପିତା ବନ୍ଦୀ ହେଲା ପରେ ରାମଚନ୍ଦ୍ର ମୁକୁନ୍ଦଙ୍କ ରାଜତ୍ୱର ଶେଷର ସତର ଅଠର ବର୍ଷ ଓ ନିଜର ରାଜତ୍ୱ କାଳ ୩୮ ବା ୩୯ ବର୍ଷ ଏହିପରି ପ୍ରାୟ ୫୭ ବର୍ଷ ବଞ୍ଚିଥିଲେ । ଅତଏବ ତାଙ୍କୁ ଯଦି ୭୦ ବର୍ଷର ଅନୁମାନ କରାଯାଏ, ତାହାହେଲେ ପିତା ବନ୍ଦୀ ହେଲାବେଳେ ସେ କେବଳ ୧୪ ବର୍ଷର ବାଳକ ହୋଇଥିବେ । ଯେ ଯାହାହେଉ, ରାମଚନ୍ଦ୍ର ସେତେବେଳେ ପିଲା ଥିଲେ, ଏଥିରେ କୌଣସି ସନ୍ଦେହ ନାହିଁ ।

ବନମାଳୀ ବୋଧ ହୁଏ ମୁକୁନ୍ଦଙ୍କ ଅଧସ୍ତନ ଜଣେ ପ୍ରଧାନ ନାୟକ ଥିଲେ । ମୁକୁନ୍ଦ ବନ୍ଦୀ ହେଲା ଉତ୍ତାରୁ ରାଜ୍ୟର ଓ ରାଜପରିବାରର ସମସ୍ତ ଭାର ବୋଧ ହୁଏ ତାଙ୍କ ଉପରେ ନ୍ୟସ୍ତ ହୋଇଥିଲା । ସେ ରାଜାଙ୍କର କାରମୁକ୍ତି ସକାଶେ ବାଲିଜଙ୍କ ସଙ୍ଗେ ଯୁଦ୍ଧ କରୁଥିଲେ । ଇତିମଧ୍ୟରେ ଅନ୍ତଃପୁରସ୍ଥ ଶତ୍ରୁତା କରିବେ ନାହିଁ ବୋଲି ସେମାନେ ବୋଧହୁଏ କୈବଲ୍ୟ ହାଣ୍ଡିକରି ପ୍ରତିଜ୍ଞା କରିଥିଲେ । ଆମ୍ଭ ଦେଶରେ ଜଗନ୍ନାଥଙ୍କ ପ୍ରସାଦକୁ 'କୈବଲ୍ୟ' କହନ୍ତି । ହିନ୍ଦୁର ଦୃଷ୍ଟିରେ କୈବଲ୍ୟ ସ୍ୱୟଂ ଭଗବାନ୍ । କୈବଲ୍ୟ ସାକ୍ଷୀକରି ପ୍ରତାରଣା କରିବା ଈଶ୍ୱରଙ୍କୁ ଅବମାନନା କରିବା ସଙ୍ଗେ ସମାନ । ଆଗେ ଆମ ଦେଶରେ ରାଜକପଟରେ ଗୁହା ସାକ୍ଷୀ କ କେହି ମହାପ୍ରସାଦ ବା କୈବଲ୍ୟ ଛୁଇଁ ଚୁକ୍ତି ଆଦି କରୁଥିଲେ । କୈବଲ୍ୟ ସମକ୍ଷରେ

Digitized by srujanika@gmail.com

ଯେଉଁ ଚୁକ୍ତି ହେଲା, ସେଥିରେ ବିଶ୍ୱାସ କରି ବନମାଳୀ ବୋଧହୁଏ ଅଳ୍ପବୟସ୍କ ରାମଚନ୍ଦ୍ରଙ୍କ ସହିତ କାରାମୁକ୍ତ ରାଜାଙ୍କୁ ଭେଟିବାପାଇଁ ବାରବାଟୀ ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ । ବନମାଳୀ ବାଇକଙ୍କର 'ଛଳ' ବା ଅଭିସନ୍ଧି ଜାଣି ନ ପାରି ତାଙ୍କ ପ୍ରତିଜ୍ଞାରେ ବିଶ୍ୱାସ କରିଥିଲେ; କିନ୍ତୁ ବାଇକ କୈବଲ୍ୟ ଲଙ୍ଘନ କରି ସେମାନଙ୍କୁ ବାରବାଟୀଠାରେ ଧରାଇ ନେଲେ । ବନମାଳୀ ହସ୍ତସ୍ଥ ଅଳ୍ପସଂଖ୍ୟକ ଲୋକ ସଙ୍ଗରେ ନେଇ ବାରବାଟୀଠାକୁ ଯାଇଥିବେ ।

"ତୁଳସୀର ମାଳ ତୁଳସୀର ଚୂଳ,
ତୁଳସୀଭୂଷଣ ହରି,
ତୁଳସୀଚଉରା ମୂଳେ ଜଣାଇଲେ
ଦଣ୍ଡବତ ନୀଳଗିରି ।"

ଯେଉଁମାନେ ପୁରୀ ଯାଇଅଛନ୍ତି, ସେମାନେ ଜାଣନ୍ତି ଯେ ଜଗନ୍ନାଥଙ୍କର ପ୍ରଧାନ ଅଳଙ୍କାର ତୁଳସୀ । ସେଥିପାଇଁ ଭକ୍ତ ମୁକୁନ୍ଦଦେବ ତୁଳସୀ ଗଛ ଦେଖି ଜଗନ୍ନାଥଙ୍କୁ ସ୍ମରଣ କରୁଅଛନ୍ତି । ସେ ବାରବାଟୀ ଦୁର୍ଗମଧ୍ୟରେ ଚଉରା ଉପରେ ତୁଳସୀ ବୃକ୍ଷ ଦେଖି ମନେ ମନେ ନୀଳଗିରିରେ ନୀଳାଦ୍ରିବିହାରୀଙ୍କୁ ଦର୍ଶନ କରୁଅଛନ୍ତି ।

ବାରବାଟୀ ଦୁର୍ଗ ଓଡ଼ିଆ ରାଜାମାନଙ୍କ କୀର୍ତ୍ତି । ଓଡ଼ିଆ ରାଜତ୍ୱ ପରେ ପଠାଣମାନେ ତାକୁ ଅତି ଅଳ୍ପ ସମୟପାଇଁ ଅଧିକାର କରିଥିଲେ । ସେମାନଙ୍କ ପରେ ଉକ୍ତ ଦୁର୍ଗ ମହାରାଷ୍ଟ୍ରମାନଙ୍କର ହସ୍ତଗତ ହେଲା । ଅତଏବ ସେଠାରେ ଚଉରା ଓ ତୁଳସୀ ବୃକ୍ଷ ରହିବା ସ୍ୱାଭାବିକ । ୧୮୩୮ ଖ୍ରୀଷ୍ଟାବ୍ଦରେ କିଟୋ ସାହେବ ବାରବାଟୀ ଦୁର୍ଗର ଯେଉଁ ବର୍ଣ୍ଣନା ଦେଇଅଛନ୍ତି ସେଥିରେ ସେ ଏକ ବୃହତ୍ ଚଉରା ଥିବା କଥା ଲେଖିଅଛନ୍ତି । ତାଙ୍କ ସମୟରୁ ଚଉରାଟି ଭଗ୍ନାବସ୍ଥାରେ ଥିଲା । ଏହା ୧୬ ଫୁଟ ଉଚ୍ଚ ଓ ମୁଗୁନିପଥରରେ ନିର୍ମିତ ହୋଇଥିଲା । ମହାରାଷ୍ଟ୍ରମାନେ ଦୁର୍ଗ ମଧ୍ୟରେ ଏକ ଦେଉଳ ନିର୍ମାଣ କରାଇଥିଲେ । ଚଉରାଟି ସେହି ଦେଉଳର ଅନ୍ତର୍ଭୁକ୍ତ ଥିଲା । ତୁଳସୀ ଗଛ ଧାରଣ କରିବା ଉଦ୍ଦେଶେ ଏହା ନିର୍ମିତ ହୋଇଥିଲା ।
(Journal Asiatic Society, Bengal, Vol. VII. 1838.)

"ବାବୁ ହରିହର ସୁପାରିଶପାତର ନେଇଁ ଦୋଷ ଦେଖିବାକୁ ।" ହରିହର ବୋଧହୁଏ ମୁକୁନ୍ଦଦେବଙ୍କ ଅଧୀନସ୍ଥ ଆଉ ଜଣେ ନାୟକ । ଯେବେ ରାମଚନ୍ଦ୍ର ଓ ବନମାଳୀ ବନ୍ଦୀ ହେବା ପରେ ରାଜା ସେମାନଙ୍କର ଉଦ୍ଧାରପାଇଁ କେବଳ ହରିହରଙ୍କ ଉପରେ ନିର୍ଭର କରିଥିଲେ । ବୋଧହୁଏ ହରିହରଙ୍କର କର୍ତ୍ତବ୍ୟରେ

Digitized by srujanika@gmail.com

ବିଳମ୍ବ ହେବାରୁ ରାଜା ଦୁଃଖ କରି କହୁଅଛନ୍ତି, "ବାବୁ ହରିହର, ଆମ୍ଭର କେଉଁ ଦୋଷ ଦେଖି ଅନାଦର କଲ ?"

ବନମାଳୀ ଓ ହରିହର ଦୁହେଁ ଯେ ମୁକୁନ୍ଦଦେବଙ୍କର ସପକ୍ଷର ଲୋକ, ଏଥିରେ ସନ୍ଦେହ ନାହିଁ । ନଚେତ୍ ମୁକୁନ୍ଦଦେବ କହି ନ ଥାନ୍ତେ 'ବାବୁ ବନମାଳୀ' 'ବାବୁ ହରିହର' । ଓଡ଼ିଆ ଭାଷାରେ 'ବାବୁ' ଶବ୍ଦ ଅତି ସ୍ନେହସୂଚକ । ଶ୍ରୀକୃଷ୍ଣ ଗୋଠରୁ ଫେରି ଆସିବାରେ ବିଳମ୍ବ ହେବାରୁ ଯଶୋଦା ବିଳାପ କରି କହୁଅଛନ୍ତି, "ନିଧନ ସଞ୍ଚାଳି ମୋର ଦରିଦ୍ରପଣେ ଗୋ, ଅଞ୍ଚଳ ନିଧି ବାବୁ ହୃଦରତ୍ନହାର । ଭଲାମାଣିକ ରେ ।"

"ଭଣ୍ଡାରୁ ଖଣ୍ଡା କାଢ଼ିଣ ମହାପ୍ରଭୁ ଓଡ଼ିଶା ଶତ୍ରୁ ନିବାର ।" ଏହି ବାକ୍ୟରେ ଓଡ଼ିଶା ଦେଶବାସୀର ସ୍ୱଦେଶପ୍ରୀତି ପୂର୍ଣ୍ଣ ଉଦ୍ଧୃତ ଅଛି । ଶତ ପୁସ୍ତକ ଯାହା ପ୍ରକାଶିତ କରି ପାରନ୍ତା ନାହିଁ, ତାହା ଏହି ବାକ୍ୟଟି କେତେଗୋଟି ଶବ୍ଦଦ୍ୱାରା ପ୍ରକାଶ କରୁଅଛି । "ଭଣ୍ଡାରୁ ଖଣ୍ଡା କାଢ଼ି" ଓଡ଼ିଶା ଶତ୍ରୁକୁ ନିବାରିବାପାଇଁ ରାଜା "ମହାପ୍ରଭୁ"ଙ୍କୁ କହୁଅଛନ୍ତି । ଓଡ଼ିଆ ଭଣ୍ଡାରରେ ଖଣ୍ଡା ରଖେ । ଧନୀ ଯେଉଁ ସବୁ ଦ୍ରବ୍ୟକୁ ସମସ୍ତଙ୍କଠାରୁ ବେଶି ମୂଲ୍ୟବାନ୍ ମନେ କରେ, ତାକୁହିଁ ଭଣ୍ଡାରରେ ରଖେ । ଓଡ଼ିଆ ବୀର; ସେ ଖଣ୍ଡାର ମୂଲ୍ୟ ଜାଣେ, ସେଥିପାଇଁ ସେ ଖଣ୍ଡା ରଖିବା ପାଇଁ ଭଣ୍ଡାର ଛଡ଼ା ଅନ୍ୟ କୌଣସି ସ୍ଥାନ ଉପଯୁକ୍ତ ମନେ କରେ ନାହିଁ । ଅଦ୍ୟାବଧି ମଧ୍ୟ ଆମ୍ଭ ଦେଶରେ ସେହି ପୁରୁଣା କଳଙ୍କି ଧାର ଖଣ୍ଡାକୁ ଗୃହସ୍ଥ ତାହାର ଗମ୍ଭୀର ଘରେ ରଖିଥିବାର ଦେଖାଯାଏ । ପ୍ରତିବର୍ଷ ଦୁର୍ଗାପୂଜାବେଳେ ସେ ତାକୁ ବାହାର କରି ପୂଜା କରିଥାଏ ।

"ଅସୁର ଚଣ୍ଡାଳ ଧରି ଯେତେରଜ ଅନେକ ଦେଲୁ କଷଣ ।" "ଅସୁର, ଚଣ୍ଡାଳ" କିଏ ? ପୂର୍ବ କାଳରେ ଆର୍ଯ୍ୟମାନେ ଅନାର୍ଯ୍ୟମାନଙ୍କୁ ଅସୁର ବୋଲି କହୁଥିଲେ । ଅନାର୍ଯ୍ୟମାନଙ୍କର ବେଶ, ନୀତି ଓ ଧର୍ମ ଅନାର୍ଯ୍ୟମାନଙ୍କଠାରୁ ପୃଥକ ଥିଲା । ନିଜର ରାଜ୍ୟ ବିସ୍ତାର କରିବାପାଇଁ ଆର୍ଯ୍ୟମାନଙ୍କୁ ଅନାର୍ଯ୍ୟମାନଙ୍କ ସଙ୍ଗରେ ବହୁ ଯୁଦ୍ଧ କରିବାକୁ ପଡ଼ିଥିଲା । ସେତେବେଳେ ସେମାନେ ଅନାର୍ଯ୍ୟ ଜାତି ଶତ୍ରୁକୁ ଅସୁର ପ୍ରଭୃତି ନାମ ଦେଇ ନାନା ଗ୍ରନ୍ଥରେ ନିନ୍ଦା କରିଥିଲେ । 'ଚଣ୍ଡାଳ' ଆମ୍ଭ ଦେଶର ନୀଚତମ ଜାତିର ନାମ । କାଳକ୍ରମେ ଏହି ଚଣ୍ଡାଳ ଶବ୍ଦ ଘୃଣାସୂଚକ ଶବ୍ଦରେ ପରିଣତ ହୋଇଅଛି । କେହି କାହାକୁ ତିରସ୍କାର କଲେ 'ଚଣ୍ଡାଳଟାଏ' ବୋଲି କହିଥାଏ । ଏହା ଶତ୍ରୁ ପକ୍ଷରେ ପ୍ରଯୋଜ୍ୟ । ତେବେ ଓଡ଼ିଆ ରଜା ରାଜ୍ୟର ତଥା ଓଡ଼ିଶାର ଶତ୍ରୁ ମରହଟ୍ଟାମାନଙ୍କୁ ଯେ 'ଅସୁର', 'ଚଣ୍ଡାଳ' ବୋଲି କହୁଅଛନ୍ତି, ଏଥିରେ କୌଣସି ସନ୍ଦେହ ନାହିଁ । ବରଂ ଇତିହାସରେ

Digitized by srujanika@gmail.com

ଓଡ଼ିଆ ଜାତି ଯେପରି ନିଜର ସ୍ୱତନ୍ତ୍ର୍ୟ ଓ ସ୍ୱାଧୀନତା ରକ୍ଷି ଆସିଅଛି, ଭାରତ ଛଡ଼ା ଅନ୍ୟ କୌଣସି ଜାତି ସେପରି ରକ୍ଷି ନାହିଁ । ଓଡ଼ିଶା ଓଡ଼ିଆର ଦେଶ, ଓଡ଼ିଆ ଓଡ଼ିଶା ବାହାରର ଲୋକଙ୍କୁ ବିଦେଶୀୟ ମନେ କରୁଥିଲେ । ପୂର୍ବବେଳେ ବିଦେଶୀୟ ପ୍ରତି ଅସୂୟା, ଚଣ୍ଡାଳ ଇତ୍ୟାଦି ଘୃଣାସୂଚକ ଶବ୍ଦ ବ୍ୟବହାର କରିବା ଓଡ଼ିଆ ପକ୍ଷରେ ସ୍ୱାଭାବିକ । ପ୍ରାଚୀନ ଗ୍ରୀସର ଲୋକେ ଯେପରି ଅନ୍ୟ ଦେଶର ଲୋକଙ୍କୁ 'ବର୍ବର' କହୁଥିଲେ, ପ୍ରାଚୀନ ଓଡ଼ିଶାର ଲୋକେ ସେହିପରି ବିଦେଶୀୟଙ୍କୁ ହୀନ ଚକ୍ଷୁରେ ଦେଖୁଥିଲେ । କେବଳ ରାଜ୍ୟ ସମ୍ବନ୍ଧରେ ସେମାନଙ୍କର ଏହିପରି ଦୃଷ୍ଟି ଥିଲା । କିନ୍ତୁ ଧର୍ମ ଜଗତରେ ବିଦେଶୀୟ ପ୍ରତି ସେମାନଙ୍କର ଅଶ୍ରଦ୍ଧା କମ ଥିଲା ।

ଆମ୍ଭେମାନେ ଗୋଟିଏ ଐତିହାସିକ କଥା ଓ ଓଡ଼ିଶା ଇତିହାସର କିୟଦଂଶ ଯଥାଶକ୍ତି ଆଲୋଚନା କରିଅଛୁଁ । ଓଡ଼ିଶାର ପ୍ରାୟ ପ୍ରତ୍ୟେକ ଗ୍ରାମ ଇତିହାସର ଉପାଦାନରେ ପୂର୍ଣ୍ଣ ହୋଇଅଛି । ସେଗୁଡ଼ିକୁ ଏକତ୍ର କରିବାକୁ ହେଲେ ଓଡ଼ିଶାର ସ୍ଥାନ, ଜାତି, ଭାଷା ଓ ଧର୍ମ ସମସ୍ତ ଜାଣିବା ଆବଶ୍ୟକ । ଅବଶ୍ୟ ଲଂଗ୍ରାସ ବୃତ୍ତିଭ ପ୍ରଥମେ ଆମ୍ଭମାନଙ୍କୁ ବାଟ ଦେଖାଇବ । କିନ୍ତୁ ଦେଶ ମଧ୍ୟରେ ଲୁକ୍କାୟିତ ପ୍ରଚ୍ଛନ୍ନ ସାମଗ୍ରୀ ତଥ୍ୟ ସବୁ ସଂଗ୍ରହ ନ କରିବାଯାଏ ଦେଶର କୌଣସି ଇତିହାସ ସମ୍ପୂର୍ଣ୍ଣ ହେବ ନାହିଁ, ଏହା ଆମ୍ଭମାନଙ୍କର ଦୃଢ଼ ବିଶ୍ୱାସ ।

—※—

Digitized by srujanika@gmail.com

# ସରସ୍ୱତୀ ପୂଜା

ମୁଁ କେତେଦିନ ପୂର୍ବେ 'ସତ୍ୟବାଦୀ'ରେ 'ସୋମପୂଜା' ଶୀର୍ଷକ ଗୋଟିଏ ପ୍ରବନ୍ଧ ଲେଖିଥିଲି । ସେଥିରେ କହିଥିଲି ଯେ ପ୍ରକୃତିହିଁ ହିନ୍ଦୁ ଆର୍ଯ୍ୟର ଦେବତା । ଆର୍ଯ୍ୟମାନେ ପ୍ରକୃତିର ଭିନ୍ନ ଭିନ୍ନ ଆକୃତିମାନଙ୍କୁ ଦେବତା କଳ୍ପନା କରି ପୂଜା କରୁଥିଲେ । ସେହି ଆକୃତିମାନଙ୍କର ସ୍ୱଭାବ ଅନୁଯାୟୀ ଦେବତାମାନଙ୍କୁ ବିଭିନ୍ନ ନାମ ଦେଉଥିଲେ ଏବଂ ସେହି ଦୃଷ୍ଟିରେ ମଧ୍ୟ ଦେବତାଙ୍କର ରୂପ କଳ୍ପନା କରୁଥିଲେ । କିନ୍ତୁ ପ୍ରକୃତିର ପ୍ରତ୍ୟେକ ଆକୃତି ସର୍ବକାଳୀନ ସମଠାରୁ ମନୁଷ୍ୟର ଦୃଷ୍ଟି ଆକର୍ଷଣ କରି ନଥାଏ । ପୁଣି ପ୍ରକୃତିର ନୂତନ ବେଶକୁ ଦେବତା କଳ୍ପନା କରି ସେହି ଦେବତାଙ୍କୁ ଜନସମାଜରେ ପରିଚିତ କରାଇବା ପାଇଁ ଏକାଧିକ ବର୍ଷ ଅତିବାହିତ ହୋଇଥିବ । ହିନ୍ଦୁ ଯେତେଗୁଡ଼ିଏ ଦେବଦେବୀଙ୍କୁ ପୂଜାକରେ ସେମାନେ ସମସ୍ତେ ଏକ ସମୟରେ କଳ୍ପିତ ହୋଇନଥିବେ । ସେମାନଙ୍କ କଳ୍ପନା ପାଇଁ ପ୍ରକୃତି ଏକ ସମୟରେ ବିଭିନ୍ନ ଆକୃତି ଧାରଣ କରି ନଥିବ । ସୁତରାଂ ହିନ୍ଦୁ ଶାସ୍ତ୍ରରେ ଏହି ଦେବଦେବୀମାନଙ୍କର ଆଗମନ ଅଗ୍ରପଶ୍ଚାତ୍ ହେବା ସ୍ୱାଭାବିକ । ସେଥିପାଇଁ ଏମାନଙ୍କ ମଧ୍ୟରୁ କାହାରି କାହାରି ନାମ ଅତି ପ୍ରାଚୀନ ଗ୍ରନ୍ଥମାନଙ୍କରେ ପରିଦୃଷ୍ଟ ହୁଏ ଏବଂ କାହାରି ଅବା କେବଳ ପରବର୍ତ୍ତୀ ଯୁଗମାନଙ୍କରେ ଲକ୍ଷିତ ହୁଏ ।

କିନ୍ତୁ ପ୍ରତ୍ୟେକ ଦେବଦେବୀଙ୍କ ସମ୍ବନ୍ଧେ ଏହି ଅନୁମାନକୁ ସପ୍ରମାଣ କରି ହୁଏ ନାହିଁ । ବୋଧହୁଏ ହିନ୍ଦୁ ଆର୍ଯ୍ୟର ପ୍ରତ୍ୟେକ ଦେବଦେବୀ ପ୍ରକୃତିର ନୂତନ ଆକୃତି ଦୃଷ୍ଟିରେ କଳ୍ପିତ ହୋଇ ନାହାନ୍ତି । ଯଜ୍ଞସ୍ଥଳୀ କୁଣ୍ଡରେ ହୁତାଶ ସ୍ୱର୍ଗୀୟ ଶୋଭା ମଧ୍ୟରେ ମନୁଷ୍ୟର ଭାବ ଲହରୀ ଖେଳି ଉଠିଲାବେଳେ ସ୍ୱରମୟୀ ସରସ୍ୱତୀ ଦେବୀ କଳ୍ପିତ ହୋଇ ପାରନ୍ତି; କିନ୍ତୁ ପ୍ରକୃତିର କେଉଁ ବେଶରୁ ଗଣେଶଙ୍କର ରୂପ କଳ୍ପିତ ହୋଇଅଛି ତାହା କହିବା ସହଜ ନୁହେଁ । ଅନେକ ଦେବତା, ସଂସାରର ସତ୍ୟ ବା ଆତ୍ମିକ ଭାବସବୁର ପରିସ୍ଫୁଟ କେତେଗୁଡ଼ିଏ ତତ୍ତ୍ୱରୁ ଏକତ୍ର କରି କୌଣସି କୌଣସି ଦେବତାଙ୍କର ରୂପକଳ୍ପନା ହୋଇଅଛି ।

Digitized by srujanika@gmail.com

ଗଣେଶଙ୍କର ପାଶ, ଅଙ୍କୁଶ ଓ ଗଜବଦନ ଏବଂ ସରସ୍ୱତୀଙ୍କର ବୀଣା ଓ ପୁସ୍ତକ ଏହି ଉଦ୍ଦେଶ୍ୟର ଫଳ । ଯେ ଯାହାହେଉ ହିନ୍ଦୁର ଦେବତାମାନଙ୍କୁ ବସ୍ତୁତ କେବେ ଉପରୋକ୍ତ ଦୁଇଟି ପୃଥକ୍ ଶ୍ରେଣୀର ଅନ୍ତର୍ଭୁକ୍ତ କରାଯାଇ ନପାରେ । ତାହାଙ୍କୁ କେବଳ ପ୍ରକୃତିର ଆକୃତିମୂଳକ କଳ୍ପନା, ଅଥ ତାହାଙ୍କୁ କେବଳ ଈଶ୍ୱରର ପରସ୍ପର ଚିନ୍ତାର ସମଷ୍ଟି ବୋଲି ବୁଝାଯାଇ ନପାରେ । ଯାହାକୁ ଆମେ ଆକୃତି-ମୂଳକ କଳ୍ପନା ବୋଲି କହୁଅଛି, ସେହିମାନେ ଅନ୍ୟ ଦୃଷ୍ଟିରେ ଦେଖିଲେ ଈଶ୍ୱ-ରର ବହୁ ସମଷ୍ଟି ସ୍ୱରୂପ ପ୍ରତିଭାତ ହୁଅନ୍ତି । ସରସ୍ୱତୀ କୂଳରେ ପ୍ରକୃତ ସୌନ୍ଦର୍ଯ୍ୟର ପ୍ରେରଣାର ସଦ୍ଭୂତଙ୍କୁ ଜ୍ଞାନ ଓ ଭକ୍ତିର ପରସ୍ପର ସ୍ପର୍ଶିତା ଚିନ୍ମୟୀ ମୂର୍ତ୍ତି ବୋଲି ବୁଝାଯାଇପାରେ ।

ଆର୍ଯ୍ୟମାନେ ଭାରତକୁ ଅତି ବହୁକାଳ ସରସ୍ୱତୀ କୂଳରେ ବାସ କରିଥିଲେ । ସେତେବେଳେ ଏହି ନଦୀର ଅବସ୍ଥା ଅନ୍ୟ ପ୍ରକାର ଥିଲା । ଏହାର ଦୀର୍ଘ ଗଣ୍ଡର କଳେବରର ଉଭୟ କୂଳରେ ଆର୍ଯ୍ୟମାନେ ପ୍ରଚୁର ଶସ୍ୟ ଉତ୍ପାଦନ କରୁଥିଲେ । ବହୁତ ବହୁତ ଆର୍ଯ୍ୟ ଋଷି ଏହିଠାରେ ଆଶ୍ରମ ସ୍ଥାପନ କରିଥିଲେ । ଏହିଠାରେ ଋଷି ସ୍ୱରରେ ବେଦାବଳୀଗଣ ଜ୍ଞାତହୋଇଥିଲା । ତଦାନୀନ୍ତନ ଆର୍ଯ୍ୟ ଋଷିମାନେ ସରସ୍ୱତୀଙ୍କୁ ଅମ୍ବିତମା, ଅନ୍ନବତେ, ନଦୀତମେ, ଦେବୀତମେ ଇତ୍ୟାଦି ଇତ୍ୟାଦି ସ୍ୱରରେ ସମ୍ବୋଧନ କରୁଥିଲେ । ସକୃତ ପ୍ରତି ଆର୍ଯ୍ୟର ଏହି କୃତଜ୍ଞତାର ପରିଚୟ ଋକ୍‌ବେଦରେ କଥିତ ହୋଇଅଛି ।

ଆର୍ଯ୍ୟବର୍ତ୍ତ କ୍ରମଶଃ ପୂର୍ବଆଡ଼କୁ ବିସ୍ତୃତ ହେଲା ପରେ ମଧ୍ୟ ସରସ୍ୱତୀଙ୍କର ଉପରୋକ୍ତ ପ୍ରତିଷ୍ଠା ଅକ୍ଷୁଣ୍ଣ ରହିଥିଲା । ସେତେବେଳେ ମଧ୍ୟ ସରସ୍ୱତୀ ନଦୀ ବ୍ରହ୍ମର୍ଷିର ଏକ ସୀମା ନିର୍ଦ୍ଦେଶ କରୁଥିଲା । ମହର୍ଷି ମନୁ କହିଅଛନ୍ତି :—

ସରସ୍ୱତୀ ଦୃଷଦ୍ୱତ୍ୟୋ ଦେବନଦ୍ୟୋର୍ଯଦନ୍ତରଂ,
ତଂ ଦେବ ନିର୍ମିତଂ ଦେଶଂ ବ୍ରହ୍ମାବର୍ତ୍ତଂ ପ୍ରଚକ୍ଷତେ ।”

(ମନୁସଂହିତା-୨ୟ ଅଧ୍ୟାୟ)

କେବଳ ମନୁଙ୍କ ସମୟରେ କାହିଁକି ଅଦ୍ୟାବଧି ମଧ୍ୟ ସରସ୍ୱତୀ ନଦୀର ମହିମା ପୁରାଣାଦିରେ ଧ୍ୱନିତ ହୁଏ । ସରସ୍ୱତୀ ହୋଇଛି ପୁଣ୍ୟତୀର୍ଥ; ସେଥିରେ ସ୍ନାନ କଲେ ସମସ୍ତ ପାପ କ୍ଷୟ ହୁଏ ଏବଂ ସ୍ନାନ ମୋକ୍ଷଲାଭ କରି ବୈକୁଣ୍ଠପୁରକୁ ଯାଏ । ବ୍ରହ୍ମବୈବର୍ତ୍ତ ପୁରାଣରେ କଥିତ ଅଛି, “ତପସ୍ୱିନାଂ ତପୋରୂପା ତପସ୍ୟାକାର ରୂପିଣୀ, କୃତ ପାପେଧଦାହାସ୍ୟ ଜ୍ୱଳଦଗ୍ନି ସ୍ୱରୂପିଣୀ । ଜ୍ଞାନେ ସରସ୍ୱତୀତୋୟେ ମୃତାଃ ବୈମାନବାର୍ତ୍ତିତ । ତେଷାଂ ସ୍ଥିତିଶ୍ଚ ବୈକୁଣ୍ଠେ ସୁଚିରଂ ହରି ସଂସଦ ।”

(ପ୍ରକୃତି ଖଣ୍ଡ—୬ଷ୍ଠ ଅଧ୍ୟାୟ)

Digitized by srujanika@gmail.com

ସଂକଳ୍ପ କଲାବେଳେ ବ୍ରାହ୍ମଣମାନେ ସର୍ବପ୍ରଥମେ ଏହି ପୁଣ୍ୟତୀର୍ଥର ଆବାହନ କରିଥାନ୍ତି । ଏହା ଦେବତୀର୍ଥ ମଧ୍ୟରେ ଏକତମ ଅଟେ । 'ଗଙ୍ଗେ ଚ ଯମୁନେ ଚୈବ, ଗୋଦାବରୀ ସରସ୍ୱତୀ, ନର୍ମଦେ ସିନ୍ଧୁ କାବେରୀ ଜଳେଽସ୍ମିନ୍ ସନ୍ନିଧିଂ କୁରୁ ।'' ସରସ୍ୱତୀର ଜଳ ପବିତ୍ର; ସେଥିପାଇଁ ସଂକଳ୍ପକାରୀ ସରସ୍ୱତୀଙ୍କର ଆବାହନ କରି ମନ୍ତ୍ରସିକ୍ତ ଜଳକୁ ପବିତ୍ର କରେ ।

ତେବେ ବୈଦିକ ଯୁଗରୁ ଅଦ୍ୟାବଧି ସରସ୍ୱତୀ ନଦୀର ପ୍ରତିଷ୍ଠାର ପ୍ରମାଣ ମିଳେ । କିନ୍ତୁ ଆମ୍ଭମାନଙ୍କର ଜ୍ଞାନାଧିଷ୍ଠାତ୍ରୀ ସରସ୍ୱତୀ ଦେବୀ ଏହି ନଦୀର ରୂପାନ୍ତର କି ନା, ଦେଖାଯାଉ । ଲକ୍ଷ୍ମୀ, ଗଙ୍ଗା ଓ ସରସ୍ୱତୀ ନାରାୟଣଙ୍କର ତିନି ପତ୍ନୀ ଥିଲେ । ଥରେ ନାରାୟଣ ଗଙ୍ଗାଙ୍କ ପ୍ରତି ବିଶେଷ ଅନୁରକ୍ତ ହେବାରୁ ସରସ୍ୱତୀ ଈର୍ଷାନ୍ୱିତା ହୋଇ ସ୍ୱାମୀଙ୍କୁ ତିରସ୍କାର କଲେ । ଗଙ୍ଗା ସେଥିରେ କ୍ରୁଦ୍ଧା ହୋଇ ସରସ୍ୱତୀଙ୍କୁ ନଦୀ ରୂପରେ ମର୍ତ୍ତ୍ୟରେ ଜନ୍ମଗ୍ରହଣ କରିବା ପାଇଁ ଶାପ ଦେଲେ । ସରସ୍ୱତୀ ମଧ୍ୟ ଗଙ୍ଗାଙ୍କୁ ନଦୀ ହେବାପାଇଁ ପ୍ରତିଶାପ ଦେଲେ । ଏହିପରି ଭାବରେ ଭାରତରେ ଗଙ୍ଗା ଓ ସରସ୍ୱତୀ ନଦୀ ଦୁଇଟିର ଆବିର୍ଭାବ ହେଲା ।

(ପ୍ରକୃତି ଖଣ୍ଡ—୬ଷ୍ଠ ଅଧ୍ୟାୟ)

ପୁରାଣର ଉପରୋକ୍ତ କାହାଣୀରୁ ଜଣାଯାଏ ଯେ ଆର୍ଯ୍ୟମାନେ ସରସ୍ୱତୀ ନଦୀକୁ ଦେବୀର ରୂପାନ୍ତର ମନେ କରୁଥିଲେ । ବୈଦିକ ଆର୍ଯ୍ୟମାନେ ମଧ୍ୟ ସରସ୍ୱତୀ ନଦୀକୁ ସ୍ତ୍ରୀ ଲିଙ୍ଗରେ ସମ୍ବୋଧନ କରିଅଛନ୍ତି । କିନ୍ତୁ 'ଶୁକ୍ଳବର୍ଣ୍ଣା ବୀଣା ପୁସ୍ତକ ଧାରିଣୀ' ସରସ୍ୱତୀଙ୍କର କଳ୍ପନା ହେଲା କେବେ ? ଏତାଦୃଶ ରୂପବର୍ଣ୍ଣନା ବୈଦିକ ଯୁଗରେ ଦେଖାଯାଏ ନାହିଁ । ବେଦରେ ଜ୍ଞାନର ଅଧିଷ୍ଠାତା ଓଁ ବ୍ରହ୍ମ । ବେଦ ପାଠ କଲାବେଳେ ସର୍ବପ୍ରଥମେ ଓଁ ଉଚ୍ଚାରିତ ହୁଏ । ରାମାୟଣ, ମହାଭାରତର ରଚୟିତା ମଧ୍ୟ ସରସ୍ୱତୀଙ୍କ ଆବାହନ କରିନାହାନ୍ତି । କଥିତ ଅଛି, ବ୍ୟାସଦେବ ମହାଭାରତ ରଚନା କଲାବେଳେ ଗଣେଶଙ୍କର ସାହାଯ୍ୟ ପ୍ରାର୍ଥନା କରିଥିଲେ । ଗଣେଶଙ୍କ ବ୍ୟତୀତ ସେ ଆଉ କାହାରିକି ଲେଖିବାପାଇଁ ଉପଯୁକ୍ତ ମନେ କରିନଥିଲେ । ସୁତରାଂ ମହାଭାରତ କାଳଯାଏ ବୋଧହୁଏ ଜ୍ଞାନାଧିଷ୍ଠାତ୍ରୀ ସରସ୍ୱତୀଙ୍କର କଳ୍ପନା ହୋଇ ନଥିଲା । ସେତେବେଳଯାଏ ସରସ୍ୱତୀ ନାମ କେବଳ ନଦୀପ୍ରତି ବ୍ୟବହୃତ ହେଉଥିଲା ।

ବ୍ରହ୍ମବୈବର୍ତ୍ତ ପୁରାଣରେ କିନ୍ତୁ ସରସ୍ୱତୀଙ୍କର ଉପରୋକ୍ତ ବର୍ଣ୍ଣନା ଅଛି—"ଆବିର୍ବଭୂବ କନ୍ୟୈକାଧିଷ୍ଠାତ୍ରୀ ବାମ ପାର୍ଶ୍ୱତଃ, ମୂର୍ତ୍ତି ମୂର୍ତ୍ତିମତୀ ସାକ୍ଷାତ୍ ଦ୍ୱିତୀୟା କମଳାଳୟା । ଆବିର୍ବଭୂବ ତତ୍ପଶ୍ଚାନ୍ମୁଖତଃ ପରମାତ୍ମନଃ ଏକା ଦେବୀ ଶୁକ୍ଳବର୍ଣ୍ଣା ବୀଣା ପୁସ୍ତକଧାରିଣୀ । କୋଟି ପୂର୍ଣ୍ଣେନ୍ଦୁ ଶୋଭାଢ୍ୟା ଶରତ୍ ପଙ୍କଜ ଲୋଚନା,

Digitized by srujanika@gmail.com

ଚନ୍ଦ୍ରେ ଶୁଭ୍ରାଂଶୁମାଂଶା ଧାତା ରତ୍ନାଭରଣ ଭୂଷିତା । ପୂଜିତା ମୁନିଭି ବାମା ମୁନୀନ୍ଦ୍ରାଣାଂଚ ମୁନିଭି, ଶ୍ରେଷ୍ଠା ଶ୍ରୁତୀନାଂ ଶାସ୍ତ୍ରାଣାଂ ବିଦୁଷାଂ ଜନନୀ ପରା । ବାଗଧିଷ୍ଠାତ୍ରୀ ଦେବୀ ଯା କବିନାମିଷ୍ଟ ଦେବତା, ଶୁଦ୍ଧସତ୍ତ୍ୱ ସ୍ୱରୂପା ଚ ଶାନ୍ତରୂପା ସରସ୍ୱତୀ ।"

( ବ୍ରହ୍ମଖଣ୍ଡ—ଚତୁର୍ଥ ଅଧ୍ୟାୟ )

ଏହି କେତୋଟି ଶ୍ଳୋକରୁ ଜଣାଯାଏ ଯେ ବ୍ରହ୍ମବୈବର୍ତ୍ତ ପୁରାଣ ଲିଖିତ ହେଲା ବେଳକୁ ଆମ୍ଭମାନଙ୍କର ବିଦ୍ୟାଧିଷ୍ଠାତ୍ରୀ ସରସ୍ୱତୀଙ୍କର ପୂଜା ପ୍ରତିଷ୍ଠାପିତ ହୋଇଥିଲା । କିନ୍ତୁ ବ୍ରହ୍ମବୈବର୍ତ୍ତ ପୁରାଣ ଅନ୍ତତଃ ଖ୍ରୀଷ୍ଟୀୟ ୧ମ ଶତକ ପରେ ଲିଖିତ ହୋଇଥିଲା । ତେବେ ପ୍ରଥମ ଶତାବ୍ଦୀ ପୂର୍ବରୁ ଡ'ଣ ସରସ୍ୱତୀ ବିଦ୍ୟାଧିଷ୍ଠାତ୍ରୀ ରୂପେ ପୂଜିତା ହେଉନଥିଲେ ?

କାଳିଦାସ ଖ୍ରୀଷ୍ଟୀୟ ୪ର୍ଥ ଶତାବ୍ଦୀର ଶେଷଭାଗରେ ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କର ସଭା ଅଲଙ୍କୃତ କରୁଥିଲେ । ଏହି ସମୟରେ ଗୁପ୍ତରାଜାମାନେ ଭାରତରେ ବ୍ରାହ୍ମଣ ଧର୍ମର ପୁନରୁତ୍ଥାନ କରୁଥିଲେ । ବୌଦ୍ଧଧର୍ମର ପ୍ରଭାବରେ ବ୍ରାହ୍ମଣଧର୍ମ ନଗଣ୍ୟ ଅବହେଳିତ ହେଉଥିଲା । ସେଥି ସଙ୍ଗେ ସଙ୍ଗେ ପାଲିଭାଷା ବ୍ରାହ୍ମଣର ସଂସ୍କୃତ ଭାଷାକୁ ପ୍ରାୟ ଗ୍ରାସ କରୁଥିଲା । ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର ପ୍ରଥମ ଭାଗରେ ଗୁପ୍ତରାଜାମାନେ ସିଂହାସନ ଆରୋହଣ କରନ୍ତେ ବ୍ରାହ୍ମଣ୍ୟଧର୍ମ ତଥା ସଂସ୍କୃତ ସାହିତ୍ୟର ପୁନରୁଦ୍ଧାର ସଂସାଧିତ ହୋଇଥିଲା । କାବ୍ୟ, ସ୍ମୃତି ଓ ଗଣିତ ଆଦି ସମସ୍ତ ବିଷୟରେ ଗୁପ୍ତକାଳ ଭାରତ ସଭ୍ୟତାର ଏକ ନୂତନ ଅଧ୍ୟାୟ ଘଟାଇଥିଲା । କଥିତ ଅଛି, କାଳିଦାସ ସରସ୍ୱତୀଙ୍କଠାରୁ ବରପ୍ରାପ୍ତ ହୋଇ ସର୍ବପ୍ରଥମେ ତାଙ୍କର ନାମରେ ଶ୍ଳୋକ ରଚନା କରିଥିଲେ । ସେ ଏହି ଶ୍ଳୋକରେ ସରସ୍ୱତୀଙ୍କୁ ବିଦ୍ୟାଧିଷ୍ଠାତ୍ରୀ ସ୍ୱରୂପ ଅବାହନ କରି ନମସ୍କାର କରିଅଛନ୍ତି—

"କଟ୍ଟୁଳ ଚୂର୍ଣ୍ଣିତ କୋଚନ ଧାରେ,
ସ୍ତନଯୁଗ ଶୋଭିତ ମୁକ୍ତା ହାରେ ।
ବୀଣା ପୁସ୍ତକ ରଞ୍ଜିତ ହସ୍ତେ,
ଭଗବତୀ ଭାରତୀ ଦେବୀ ନମସ୍ତେ ।"

ଏହି ଶ୍ଳୋକଟି ଅଦ୍ୟାବଧି ହିନ୍ଦୁର ଘରେ ଘରେ ଘୋଷିତ ହେଉଅଛି । କାଳିଦାସଙ୍କ ଜୀବନର ଏହି ଅଂଶ ଯଦି ସତ୍ୟ ହୁଏ; ତାହାହେଲେ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ସରସ୍ୱତୀ ବୀଣାପୁସ୍ତକଧାରିଣୀ ବିଦ୍ୟାଧିଷ୍ଠାତ୍ରୀ ସ୍ୱରୂପ ପୂଜା ହେଉଥିବାର ପ୍ରମାଣ ଆମ୍ଭେମାନେ ସ୍ପଷ୍ଟ ପାଉଅଛୁ—ଏହି ବିଷୟ ଭାରତରେ ଏତେ ସୁପରିଚିତ ଏବଂ କାଳିଦାସ ଓ ସରସ୍ୱତୀଙ୍କ ସମ୍ବନ୍ଧରେ ଏପରି କଥା ଶୁଣିବାକୁ ପାଉ ଯେ, ଜନଶ୍ରୁତି ଉପରୋକ୍ତ ଅଂଶଟିକୁ ଅବିଶ୍ୱାସ କରିବାର କୌଣସି କାରଣ

Digitized by srujanika@gmail.com

ଅମ୍ଭେମାନେ ପାଉନାହୁଁ । ଅଥଚ ମଧ୍ୟ ଏହି ସମୟରେ କାବ୍ୟର ଯେପରି ସମଧିକ ଚର୍ଚ୍ଚା ହେଉଥିଲା ତଦ୍ଦୃଷ୍ଟିରେ ସରସ୍ୱତୀଙ୍କର ଉପରୋକ୍ତ ରୂପ ଆଦୃତ ହେବା ସ୍ୱାଭାବିକ । ଜ୍ଞାନ ସଙ୍ଗେ ସରସ୍ୱତୀ ନାମ ଅତି ପ୍ରାଚୀନ କାଳରୁ ସଂଶ୍ଳିଷ୍ଟ ଥିଲା । ସରସ୍ୱତୀ କୂଳରେ ପଳ୍ଲବର ଶୋଭାରେ ଚମତ୍କୃତ ହେବାରୁ ଆର୍ଯ୍ୟ ଋଷିଙ୍କ ହୃଦୟରେ ବେଦ ସ୍ୱତଃ ଜାଗ୍ରତ ହେଉଥିଲା । ଏହାର କୂଳରେ ପ୍ରାଚୀନ ଭାରତର ଆର୍ଯ୍ୟମାନେ ନାନାବିଧ ଜ୍ଞାନ ଆଲୋଚନା କରୁଥିଲେ । ବେଦ ଓ ମହାଭାରତ କାଳରେ ବ୍ରହ୍ମା ଓ ଗଣେଶଙ୍କର ଆବାହନ ଦୃଷ୍ଟ ହେଲେହେଁ ସରସ୍ୱତୀ ନଦୀ ଆର୍ଯ୍ୟଙ୍କ ଜ୍ଞାନାଲୋଚନାରେ ଅଳ୍ପ ମାହାତ୍ମ୍ୟ ଲାଭ କରିନଥିଲା । ସୁତରାଂ ଚତୁର୍ଥ ଶତାବ୍ଦୀରେ କାବ୍ୟର ସମଧିକ ଚର୍ଚ୍ଚା ହେଲେ ଜ୍ଞାନର ଜନ୍ମଦାତ୍ରୀ ଏହି ସରସ୍ୱତୀ ନଦୀକୁ ଜ୍ଞାନାଧିଷ୍ଠାତ୍ରୀ ଦେବୀ ସ୍ୱରୂପ ଆବାହନ କରି ତାଙ୍କର କାବ୍ୟୋଚିତ ରୂପ କଳ୍ପନା କରିବା ସ୍ୱାଭାବିକ । ତେବେ ଅମ୍ଭମାନଙ୍କର 'ବୀଣା ପୁସ୍ତକହସ୍ତା' ସରସ୍ୱତୀ ଦେବୀ କ'ଣ ଏହି ସମୟରେ କଳ୍ପିତ ହୋଇଥିଲେ ?

ଗୁପ୍ତକାଳର ପୂର୍ବରୁ ଅର୍ଥାତ୍ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀଠାରୁ ଆରମ୍ଭ କରି ପ୍ରାୟ ଷଷ୍ଠଶତବର୍ଷ ପର୍ଯ୍ୟନ୍ତ ଗାନ୍ଧାରରେ ଏକ ପ୍ରକାର ଶିଳ୍ପର ପ୍ରଚଳନ ଥିଲା । ତାହା ତତ୍କାଳୀନ ଭାରତୀୟ ଶିଳ୍ପଠାରୁ ଅନେକାଂଶରେ ପୃଥକ୍ ଥିଲା । ଏହି ଗାନ୍ଧାରୀୟ ଶିଳ୍ପ ଗ୍ରୀସୀୟ ଶିଳ୍ପର ସମ୍ପୂର୍ଣ୍ଣ ଅନୁକରଣରେ ହେଲେ ହେଁ ଭାରତୀୟ ବୌଦ୍ଧ ମୂର୍ତ୍ତିମାନ ନିର୍ମାଣ କରିବା ପାଇଁ ପ୍ରଯୁକ୍ତ ହୋଇଥିଲା । ସେଥିପାଇଁ ଗାନ୍ଧାରରେ ଏହି ସମୟର ଯେଉଁ ମୂର୍ତ୍ତିମାନ ଦେଖାଯାଏ, ସେସବୁ ଭାରତୀୟ ମୂର୍ତ୍ତି, କିନ୍ତୁ ପାଶ୍ଚାତ୍ୟ ଆଦର୍ଶରେ ଗଠିତ । ଅତଏବ ଭାରତୀୟ ଦେବଦେବୀଙ୍କର ମୂର୍ତ୍ତି ଏହି ସମୟର ଗାନ୍ଧାର ଶିଳ୍ପ ମଧ୍ୟରେ ପରିଦୃଷ୍ଟ ହେବା କିଛି ଆଶ୍ଚର୍ଯ୍ୟର ବିଷୟ ନୁହେଁ । ଅମ୍ଭମାନଙ୍କର ସରସ୍ୱତୀ ମୂର୍ତ୍ତି ଏହି ସମୟର ଗାନ୍ଧାର ଶିଳ୍ପ ମଧ୍ୟରେ ଦେଖାଯାଏ । ବୌଦ୍ଧ ମନ୍ଦିରର ଦ୍ୱାରଦେଶରେ ଏହି ମୂର୍ତ୍ତି ଖୋଦିତ ହୋଇଥାଏ । ଗାନ୍ଧାରର ସରସ୍ୱତୀ କିନ୍ତୁ ସିଂହବାହନା ଏବଂ ହସ୍ତରେ କେବଳ ଗୋଟିଏ ବୀଣା ଧରିଥିବାର ଦେଖାଯାଏ । ଏହି ସମୟରେ ଭାରତୀୟ ବୌଦ୍ଧ ମନ୍ଦିରମାନଙ୍କରେ କୌଣସିଠାରେ ଏହି ମୂର୍ତ୍ତି ଦେଖାଯାଏ ନାହିଁ । ତତ୍ପରିବର୍ତ୍ତେରେ ଲକ୍ଷ୍ମୀଙ୍କର ମୂର୍ତ୍ତି ଦେଖାଯାଏ । ବୌଦ୍ଧମାନେ ଲକ୍ଷ୍ମୀଙ୍କୁ 'ଶ୍ରୀ' ବା 'ଶିରିମା' ଦେବତା କହନ୍ତି । ଚୀନ, ଜାପାନ ଓ ତିବ୍ବତର ବୌଦ୍ଧ ମନ୍ଦିରମାନଙ୍କରେ ମଧ୍ୟ ଅଦ୍ୟାବଧି ସରସ୍ୱତୀ ମୂର୍ତ୍ତି ଦେଖାଯାଏ । ସେସବୁ ନିଶ୍ଚୟ ଗାନ୍ଧାର ଶିଳ୍ପର ଅନୁକରଣ । ଗାନ୍ଧାର ଶିଳ୍ପରେ ଯେଉଁ ମୂର୍ତ୍ତିମାନ ଦେଖାଯାଏ, ସେସବୁ ଭାରତୀୟ ଦେବଦେବୀ ବା ନରନାରୀଙ୍କର । ଏହିମାତ୍ର ପାର୍ଥକ୍ୟ ଯେ ସେସବୁ ପାଶ୍ଚାତ୍ୟ ଅନୁକରଣରେ ଗଠିତ ହୋଇଥିଲେ । ତେବେ ଗାନ୍ଧାର ଶିଳ୍ପର ସରସ୍ୱତୀ ମୂର୍ତ୍ତି

Digitized by srujanika@gmail.com

ଅବଶ୍ୟ ଭାରତର ଅନୁକରଣ ହୋଇନଥିବ । ଗାନ୍ଧାର ଶିଳ୍ପୀ ପାଶ୍ଚାତ୍ୟ ଆଦର୍ଶରେ ଏହି ମୂର୍ତ୍ତି ଖୋଦନ କରିଥିଲେ ଏବଂ ଗୁପ୍ତ କାଳରେ ଭାରତୀୟ ଲେଖକମାନେ ସେହି ଅନୁକରଣରେ ସରସ୍ୱତୀ ଦେବୀଙ୍କୁ ଜ୍ଞାନାଧିଷ୍ଠାତ୍ରୀ ସ୍ୱରୂପ ଆବାହନ କରିଥିଲେ । ଏହି ଯୁକ୍ତି ଅସଙ୍ଗତ ବୋଧହୁଏ । ଗାନ୍ଧାର ଶିଳ୍ପୀ ଯଦି ଗ୍ରୀକ୍ ଅନୁକରଣରେ ଦେବୀ ଖୋଦନ କରିଥାନ୍ତି, ସେହି ଦେବୀଙ୍କୁ ସରସ୍ୱତୀ ନାମ ଦେଲେ କାହିଁକି ? ଆଉ ମଧ୍ୟ ଜ୍ଞାନାଲୋଚନା ପୂର୍ବରୁ ଦେବଦେବୀଙ୍କୁ ସ୍ମରଣ କରିବା ହିନ୍ଦୁ ଆର୍ଯ୍ୟର ଚିରନ୍ତନ ପ୍ରଥା । ବେଦର ଓଁ ଏହି ମତର ସାକ୍ଷାତ ପ୍ରମାଣ ।

ସରସ୍ୱତୀର ସ୍ୱଚ୍ଛ ସଲିଳ ଯେପରି ସୃଷ୍ଟି ପାଉଥିଲା, ତାହା କୂଳରେ ବେଦାଦି ଶାସ୍ତ୍ରମାନ ଋଷି କଣ୍ଠରେ ସେହିପରି ସୃଷ୍ଟି ପାଉଥିଲା । ସୁତରାଂ ସରସ୍ୱତୀ ନଦୀ ଜ୍ଞାନର ତଥା କବିତାର ଜନ୍ମଦାତ୍ରୀ ସ୍ୱରୂପ ଚିନ୍ତାଶୀଳ ଆର୍ଯ୍ୟର ହୃଦୟରେ ପ୍ରତିଭାତ ହେବା ସ୍ୱାଭାବିକ । କିନ୍ତୁ ବୌଦ୍ଧ ଧର୍ମର ଆବିର୍ଭାବ ନହେବା ଯାଏ ବୋଧହୁଏ ଏହି ଜନ୍ମଦାତ୍ରୀଙ୍କର ସ୍ୱତନ୍ତ୍ର ମୂର୍ତ୍ତି କଳ୍ପିତ ହୋଇନଥିଲା । ତଦବଧି ସେ କେବଳ ନଦୀ ରୂପରେ ପୂଜିତା ହେଉଥିଲେ । ପ୍ରତ୍ନତତ୍ତ୍ୱବିତ୍‌ଗଣ କହିଅଛନ୍ତି, ବୌଦ୍ଧଧର୍ମର ଆବିର୍ଭାବ ପରେ ଅନେକ ହିନ୍ଦୁ ଦେବଦେବୀଙ୍କର ମୂର୍ତ୍ତି କଳ୍ପିତ ହୋଇଥିଲା । ବୋଧହୁଏ ଏହି ସମୟରେ ଜ୍ଞାନର ଜନ୍ମଦାତ୍ରୀ ସରସ୍ୱତୀ ନଦୀ 'ବୀଣାପୁସ୍ତକହସ୍ତା ସରସ୍ୱତୀ' ଦେବୀ ରୂପେ କଳ୍ପିତ ହେଲେ । ସେଥିପାଇଁ ବୌଦ୍ଧଧର୍ମର ପୂର୍ବରୁ କୌଣସି ଗ୍ରନ୍ଥରେ ବୀଣା ପୁସ୍ତକ ହସ୍ତା ସରସ୍ୱତୀ ଦେବୀଙ୍କର ନାମ ଦେଖାଯାଏ ନାହିଁ । କେବଳ ସରସ୍ୱତୀ ନଦୀର ନାମ ପରିଦୃଷ୍ଟ ହୁଏ । ଭାରତର ନବାଗତା ଏହି ବୀଣାହସ୍ତା ସରସ୍ୱତୀ ଗାନ୍ଧାର ଶିଳ୍ପରେ ଖୋଦିତ ହୋଇଥିଲେ ! ଗୁପ୍ତକାଳରେ କାବ୍ୟର ସମଧିକ ଚର୍ଚ୍ଚା ସଙ୍ଗେ ସଙ୍ଗେ ଭାରତରେ ଏହି ବୀଣାପାଣି ଦେବୀଙ୍କର ଆଦର ବଢ଼ିଥିଲା ।

କିନ୍ତୁ ମାଘ ମାସ ଶୁକ୍ଳ ପଞ୍ଚମୀ ଦିନ ଦେବୀଙ୍କର ପୂଜା କାହିଁକି ହୁଏ ? ବ୍ରହ୍ମବୈବର୍ତ୍ତ ପୁରାଣ (ଗଣେଶ ଖଣ୍ଡ ୪୦ ଅଧ୍ୟାୟ)ରେ ବର୍ଣ୍ଣିତ ଅଛି ଯେ ସୃଷ୍ଟି କାଳରେ ପ୍ରଧାନ ଶକ୍ତି ପାଞ୍ଚ ଭାଗରେ ବିଭକ୍ତ ହୋଇଥିଲେ । ରାଧା, ପଦ୍ମା, ସାବିତ୍ରୀ, ଦୁର୍ଗା ଓ ସରସ୍ୱତୀ । ସରସ୍ୱତୀ ଉତ୍କଣ୍ଠିତା ହୋଇ ଶ୍ରୀକୃଷ୍ଣଙ୍କୁ କାମନା କରିବାରୁ ସେ ବର ଦେଲେ, "ମାଘସ୍ୟ ଶୁକ୍ଳ ପଞ୍ଚମ୍ୟା ବିଦ୍ୟାରମ୍ଭେ ଚ ସୁନ୍ଦରି ! ମାନବା ଦାନବା ଦେବା ମୁନୀନ୍ଦ୍ରାଶ୍ଚ ମୁମୁକ୍ଷବଃ ।" ସେହିଦିନୁ ସରସ୍ୱତୀ ଶ୍ରୀପଞ୍ଚମୀ (ମାଘମାସ ଶୁକ୍ଳ ପଞ୍ଚମୀ) ଦିନ ପୂଜିତା ହେଉଅଛନ୍ତି । ଅତଏବ ଉକ୍ତ ପୁରାଣ କହନ୍ତି—"ଆଦୌ ସରସ୍ୱତୀ ପୂଜା ଶ୍ରୀକୃଷ୍ଣେନ ବିନିର୍ମିତା, ଯତ୍ ପ୍ରସାଦାନ୍ମୁନିଶ୍ରେଷ୍ଠା ମୂର୍ଖୋ ଭବତି ପଣ୍ଡିତଃ ।" (ପ୍ରକୃତି ଖଣ୍ଡ-୪ର୍ଥ ଅଧ୍ୟାୟ) ଉପରୋକ୍ତ ପଂକ୍ତିରୁ ଜଣାଯାଏ ଯେ ବ୍ରହ୍ମବୈବର୍ତ୍ତ ପୁରାଣ ଲିଖିତ ହେବାବେଳେ ମଧ୍ୟ ଶ୍ରୀପଞ୍ଚମୀ ଦିନ ସରସ୍ୱତୀ ପୂଜା

Digitized by srujanika@gmail.com

ଗ୍ରନ୍ଥ ପ୍ରଣେତା ହୋଇଥିଲେ । ବୋଧହୁଏ ଏହି ଉନ କୌଣସି ଋଷି ଦେବୀଙ୍କର ରୂପ କଳ୍ପନା କରି ସମାରୋହରେ ପୂଜା ଆରମ୍ଭ କରିଥିଲେ । ସରସ୍ୱତୀ ଯେ ଅତି ପ୍ରାଚୀନ ଏଥିରେ ସନ୍ଦେହ ନାହିଁ । ଜ୍ଞାନଲିପ୍ସୁମାନେ ଅତି ପ୍ରାଚୀନକାଳରୁ ଏହାଙ୍କୁ ଜ୍ଞାନଦାୟିନୀ ସ୍ୱରୂପ ପୂଜା କରି ଆସୁଛନ୍ତି । ଛାତ୍ରମାନେ ଜ୍ଞାନଲିପ୍ସୁ । ସୁତରାଂ ପ୍ରତ୍ୟେକ ଛାତ୍ର ଶ୍ରୀପଞ୍ଚମୀଦିନ ସରସ୍ୱତୀ ପୂଜା କରିବାର ବିଧାନ ଅଛି । ଦେବୀଙ୍କର ଯେଉଁ ରୂପ ଶାସ୍ତ୍ରମାନଙ୍କରେ ବର୍ଣ୍ଣିତ ହୋଇଅଛି, ତାହା ଭାବିଲେ ହୃଦୟରେ ଏକ ଅପୂର୍ବ ଭାବ ଉଦ୍ଭାସିତ ହୁଏ । ଜ୍ଞାନାଲୋକ ପାଇଲେ ମନୁଷ୍ୟ ଦେହପର ଅପୂର୍ବଭାବ ଉପଲବ୍ଧି କରେ । ବାସ୍ତବରେ ଦେବୀଙ୍କର ମୂର୍ତ୍ତି ଜ୍ଞାନର ପ୍ରତୀକ ଓ ଭାବସ୍ୱରୂପ । ଭାରତୀୟ ଜ୍ଞାନଲିପ୍ସୁ । ଜ୍ଞାନଲିପ୍ସା ଭାରତର ଜାତୀୟ ଚରିତ୍ର କହିଲେ ଚଳେ । ଏହି ଜାତୀୟ ଚରିତ୍ରର ପ୍ରତୀକ ସ୍ୱରୂପ ସରସ୍ୱତୀ ପୂଜା ପ୍ରଚଳିତ ହୋଇଅଛି । ଅତଏବ ପ୍ରତ୍ୟେକ ଭାରତୀୟ ଜାତୀୟ ଭାବରେ ଅନୁପ୍ରାଣିତ ହୋଇ ଏହି ଜ୍ଞାନାଧିଷ୍ଠାତ୍ରୀ ଦେବୀଙ୍କର ଉତ୍ସବରେ ଯୋଗଦାନ କରିବା ବାଞ୍ଛନୀୟ ।



Digitized by srujanika@gmail.com

# ଜାତି ବିଚାର

ଶାସ୍ତ୍ର ଓ ଇତିହାସ କହନ୍ତି, ପୂର୍ବେ ହିନ୍ଦୁ ସମାଜରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏପରି ଚାରୋଟି ଜାତି ଥିଲେ । ଆଜି ମଧ୍ୟ ଆମ୍ଭେମାନେ ସବୁକାଳେ ଏହି ଚାରୋଟି ଜାତି ମାନି ନେଇ ନିଜକୁ ପ୍ରଥମ ତିନୋଟି ମଧ୍ୟରୁ କୌଣସି ଗୋଟିକର ଅନ୍ତର୍ଗତ ବୋଲି ଦାବି କରୁ, କେହି ନିଜକୁ ଶୂଦ୍ର ବୋଲି କହିବାକୁ ପ୍ରସ୍ତୁତ ନୋହୁଁ । ଅବଶ୍ୟ ଯେଉଁମାନେ ସମାଜର ନିମ୍ନତମ ଶ୍ରେଣୀରେ ଅଛନ୍ତି, ସେମାନେ ଏ ପ୍ରକାର ଦାବି କରିବାକୁ ସାହସ କରନାହାନ୍ତି ।

ଚାରୋଟି ସ୍ଥାନରେ ବର୍ତ୍ତମାନ ସମାଜରେ ଜାତିର ସଂଖ୍ୟା ଶତାଧିକ । ଏହି ଶତାଧିକ ଜାତି ମଧ୍ୟରୁ ଅଧିକାଂଶ ନିଜକୁ ବ୍ରାହ୍ମଣ ବା କ୍ଷତ୍ରିୟ ବା ବୈଶ୍ୟ ବୋଲି କହନ୍ତି । ଅଳ୍ପ କେତେକ ନିଜକୁ ଶୂଦ୍ର ବୋଲି କହନ୍ତି ।

ସମାଜର ଏଭଳି ପ୍ରଗତି ପ୍ରତି ଆମ୍ଭମାନଙ୍କର ଆଦୌ ଈର୍ଷା ନାହିଁ । ବରଂ ସମାଜର ପ୍ରତ୍ୟେକ ବ୍ୟକ୍ତି ନିଜକୁ ଉଚ୍ଚ ବଂଶଜ ବୋଲି ଦାବି କରିବା ଦ୍ୱାରା ଦେଶର ସମୂହ କଲ୍ୟାଣ ଫଳିବ ବୋଲି ଆମ୍ଭମାନଙ୍କର ବିଶ୍ୱାସ । କାରଣ ଯାହାର ଅଭିଳାଷ ଯେତେ ବଡ଼, ତାହାର ଅନୁରୂପ ଗୁଣ ବା ଯୋଗ୍ୟତା ଦେଖାଇବାର ଚେଷ୍ଟା ତେତେ ବେଶି ହେବା ସ୍ୱାଭାବିକ । ଫଳତଃ ପ୍ରତ୍ୟେକ ଦେଶବାସୀ ଯଦି ନିଜଠାରେ ଦାବିକୃତ ଉଚ୍ଚବଂଶର ଆଦର୍ଶମାନ ପ୍ରତିପାଦିତ କରାଇବା ଉଦ୍ଦେଶ୍ୟରେ ନିଜର ଚରିତ୍ର ନିୟନ୍ତ୍ରଣ କରନ୍ତି, ତାହାହେଲେ ଆମ୍ଭମାନଙ୍କର କଳୁଷିତ ସମାଜ ଯେ ଅଚିରେ ସଂସ୍କୃତ ହେବା ସଙ୍ଗେ ସଙ୍ଗେ ମହାଜାତୀୟ ମହୋନ୍ନତି ହେବ, ଏଥିରେ ସନ୍ଦେହ ନାହିଁ । ଦୃଷ୍ଟାନ୍ତ ସ୍ୱରୂପ, କେହି ଯଦି ନିଜକୁ କ୍ଷତ୍ରିୟ କହନ୍ତି, ତାହାହେଲେ ବୁଝିବାକୁ ହେବ ଯେ ସେ କ୍ଷାତ୍ର ଗୁଣର ଆଦର କରନ୍ତି । ସୁତରାଂ ଯେ ପ୍ରକାର ଚରିତ୍ର ଓ ବ୍ୟବହାର କ୍ଷତ୍ରିୟ ପକ୍ଷରେ ଅଶୋଭନୀୟ, ତାହା ପରିତ୍ୟାଗ କରି କ୍ଷାତ୍ର ଚରିତ୍ରର ଅନୁଶୀଳନ କରିବା ତାଙ୍କର ସ୍ୱାଭାବିକ କର୍ତ୍ତବ୍ୟ । ଆତ୍ମଗୌରବ ଦୃଷ୍ଟିରେ ଏଭଳି ଚରିତ୍ର ନିୟନ୍ତ୍ରଣ ଦ୍ୱାରା ସମାଜ ତଥା ଦେଶର ସମୂହ ମଙ୍ଗଳ ଅବଶ୍ୟମ୍ଭାବୀ ।

Digitized by srujanika@gmail.com

ଗତ କେତେକ ବର୍ଷ ହେଲା ବିଭିନ୍ନ ଜାତିର ଲୋକମାନେ ସଭା-ସମିତି କରି ଦଳଗତ ଭାବରେ ନିଜ ଜାତିର ଉନ୍ନତି କରିବାକୁ ଚେଷ୍ଟା କରୁଛନ୍ତି । କରଣ ଓ ଖଣ୍ଡାୟତମାନେ ନିଜ ନିଜକୁ କ୍ଷତ୍ରିୟ ବୋଲି କହି ଜାତିଗତ ସମିତିମାନ ଗଢ଼ିଛନ୍ତି । ଏପରିକି ସେମାନଙ୍କ ମଧ୍ୟରୁ କେହି କେହି ଆପଣାକୁ ଇତିହାସପ୍ରସିଦ୍ଧ ଚୌହାନ୍, ବାଘେଲ ଓ ରାଠୋର ବଂଶର ବଂଶଧର ବୋଲି ଦାବୀ କରନ୍ତି । ଗୋପାଳମାନେ ଦ୍ୱିଜାତି ବୈଶ୍ୟ ବୋଲି ପରିଚୟ ଦେଇ ଉପବୀତ ଦେବାକୁ ଆରମ୍ଭ କରିଛନ୍ତି । ବ୍ରାହ୍ମଣମାନେ ମଧ୍ୟ ସ୍ଥାନେ ସ୍ଥାନେ ଓ ସମୟେ ସମୟେ ନିଜ ଜାତିର ଉନ୍ନତି କଳ୍ପେ ଦଳଗତ ଉଦ୍ୟମ କରୁଥିବା ଦେଖାଯାଏ । ଯାଜପୁର ସବ୍‌ଡିଭିଜନରେ ବର୍ତ୍ତମାନ କରଣ ସଭା, ଖଣ୍ଡାୟତ କ୍ଷତ୍ରିୟ ସଭା, ଗୋପାଳ ସଭା ଏହି ତିନିଗୋଟି ଅନୁଷ୍ଠାନ ଯୌଥବଳରେ ଚାଲିଛି । ଖଣ୍ଡାୟତମାନେ ଏ ଦେଶର ରାଜା ଓ ଜମିଦାର ମାନଙ୍କୁ ସ୍ୱଜାତି ବୋଲି ମନେ କଲେହେଁ ଆତ୍ମାଭିମାନର ପ୍ରଶ୍ରୟ ଦେବା ଦ୍ୱାରା ସେମାନଙ୍କ ସାହାଯ୍ୟ ଓ ସହାନୁଭୂତି ଲାଭ କରିବା ଅଭିପ୍ରାୟରେ ସେମାନଙ୍କ ସଭାକୁ ବିସ୍ତୀର୍ଣ୍ଣ ପରିସ୍ଥିତି ସୂଚକ ଖଣ୍ଡାୟତ କ୍ଷତ୍ରିୟ ସଭା ନାମ ଦେଇଅଛନ୍ତି ।

ଜାତି-ସଭାମାନେ ଯଦି ପୂର୍ବୋକ୍ତ ଭାବରେ ଅନୁପ୍ରାଣିତ ହୋଇ କାର୍ଯ୍ୟ ନିୟନ୍ତ୍ରଣ କରନ୍ତି, ତାହାହେଲେ ସେମାନେ ଦୀର୍ଘଜୀବୀ ହୁଅନ୍ତୁ । ପକ୍ଷାନ୍ତରେ ଯଦି ବିଭିନ୍ନ ଜାତି ପରସ୍ପର ବିଦ୍ୱେଷାପନ୍ନ ହୁଅନ୍ତି, ତାହାହେଲେ ସମାଜର ତଥା ଦେଶର ଆଶୁ ଅଧଃପତନ ଏକମାତ୍ର ପରିଣାମ । ଦୁଃଖର କଥା ସ୍ଥାନେ ସ୍ଥାନେ ବ୍ରାହ୍ମଣ ଓ କରଣଙ୍କ ମଧ୍ୟରେ, କରଣ ଓ ଖଣ୍ଡାୟତଙ୍କ ମଧ୍ୟରେ, ଖଣ୍ଡାୟତ ଓ ଗୋପାଳଙ୍କ ମଧ୍ୟରେ ଜାତିଗତ ଘୃଣା ବା ବିଦ୍ୱେଷ ଦେଖାଯାଏ । ପ୍ରତ୍ୟେକ ନିଜକୁ ଉଚ୍ଚ ମନେକରିବା ସଙ୍ଗେ ସଙ୍ଗେ ଅନ୍ୟକୁ ନୀଚ ବୋଲି ଘୃଣା କରନ୍ତି, କେବଳ ସେତିକି ନୁହେଁ, ଅନ୍ୟର ଉଚ୍ଚ ଆକାଂକ୍ଷା ପ୍ରତି ବାଧା ଜାତ କରିବାକୁ ଚେଷ୍ଟିତ ହୁଅନ୍ତି । ଗୋପାଳମାନେ ବୈଶ୍ୟ ବୋଲି ପରିଚୟ ଦେଇ ଉପବୀତ ଗ୍ରହଣ କରିବାକୁ ଇଚ୍ଛା କରିବାର ଦେଖି ଖଣ୍ଡାୟତମାନେ ସେମାନଙ୍କ ସହିତ ମାରପିଟ ପର୍ଯ୍ୟନ୍ତ କରିବାକୁ ପ୍ରସ୍ତୁତ ହେଉଛନ୍ତି । ଏହାର ଏକମାତ୍ର କାରଣ ଯେଉଁମାନେ ଏପରି କରୁଛନ୍ତି ସେମାନେ ଜାତି ଜିନିଷଟା କ'ଣ ଆଦୌ ବୁଝିନାହାନ୍ତି । ସେମାନଙ୍କର ଅନ୍ଧ ବିଶ୍ୱାସ ଯେ, ଭଗବାନ ପ୍ରତ୍ୟେକ ଜାତିର ଆଦି ପୁରୁଷଙ୍କୁ ଜନ୍ମ ପୂର୍ବରୁ ଗୋଟିଏ ସ୍ୱତନ୍ତ୍ର ଜାତି ନାମଦେଇ ଜନ୍ମ ଦେଇଥିଲେ । ସେମାନେ ଏତିକି ମାତ୍ର ଭାବନ୍ତି ନାହିଁ ଯେ, ପୂର୍ବେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏହି ଚାରିଗୋଟି ଜାତି ଥିବା ସ୍ଥଳେ ଆଜି ଏତେଗୁଡ଼ିଏ ଜାତି ଆସିଲା କେଉଁଠାରୁ ? ଭଗବାନ ମଧ୍ୟେ ମଧ୍ୟେ ନୂଆ ନୂଆ ଜାତିର କଳ୍ପନା କରି ସେହି ନାମଧାରୀ ଜଣେ ଜଣେ ଆଦିପୁରୁଷ ଧାଡ଼ି ସେମାନଙ୍କୁ ପଠାଇ ଦେବା ଦ୍ୱାରା ଜାତିର ସଂଖ୍ୟା ବଢ଼ିଯାଇଛି କି ?

Digitized by srujanika@gmail.com

ତଥ୍ୟ କଥା, ସମାଜର ସୁଦୀର୍ଘ ବିବର୍ତ୍ତନକାଳ ମଧ୍ୟରେ ଆଜିକାଲିର ବହୁଜାତି ସ୍ୱାଭାବିକ ନିୟମରେ ଘଟଣାଚକ୍ରରେ ହୋଇ ଯାଇଛି । ପୂର୍ବେ ଆର୍ଯ୍ୟ ସମାଜରେ ଦେବପୂଜା, ଯୁଦ୍ଧ, କୃଷି, ବାଣିଜ୍ୟ ଓ ମନୁଷ୍ୟର ସୁଖ-ସ୍ୱଚ୍ଛନ୍ଦ୍ୟ ପାଇଁ ଲୋଡ଼ା ସେବାସଂକ୍ରାନ୍ତ ଅନ୍ୟାନ୍ୟ କାର୍ଯ୍ୟର ଆବଶ୍ୟକତା ଦେଖି ପୂର୍ବାଚାର୍ଯ୍ୟମାନେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏହିପରି ଚାରିଗୋଟି ଜାତି ନିର୍ଣ୍ଣୟ କରି ସେହିପରି କାର୍ଯ୍ୟର ସୁବନ୍ଦୋବସ୍ତ କଲେ । ଅର୍ଥାତ୍ ଭିନ୍ନ ଭିନ୍ନ କାର୍ଯ୍ୟକାରୀ ଲୋକମାନେ ଭିନ୍ନ ଭିନ୍ନ ଜାତି ବୋଲି ଚିହ୍ନିତ ହେଲେ । ଅବଶ୍ୟ ତତ୍କାଳୀନ ଅବସ୍ଥା ଦୃଷ୍ଟିରେ ସମାଜରେ ଏ ପ୍ରକାର ନିୟମର ଫଳ ଭଲ ହୋଇଥିଲା । କିନ୍ତୁ ସମାଜରେ ପରେ ଯେତେବେଳେ ଭିନ୍ନକାର୍ଯ୍ୟ ପାଇଁ ଭିନ୍ନ ଜାତି, ଏହି ନୀତି ଅନୁସୃତ ହେଲା, ରକ୍ଷଣଶୀଳ ହିନ୍ଦୁ ସମାଜ ନୀତିର ଅପବ୍ୟବହାର କରି ଗୋଟିଏ ଗୋଟିଏ ସଂକୀର୍ଣ୍ଣ ଜାତିର ସୃଷ୍ଟି କଲା । ଏହା ହିଁ ଆଜି ଆମ୍ଭମାନଙ୍କ ସମାଜରେ ବହୁ ଜାତିର ପ୍ରଧାନ କାରଣ ।

ପରସ୍ପର ବିଦ୍ୱେଷ ଭାବାପନ୍ନ ଜାତିଗୁଡ଼ିକ ମଧ୍ୟରେ ଯେ ମୌଳିକ ପାର୍ଥକ୍ୟ ନାହିଁ, ତାହା ଗୋଟିଏ ସାମାନ୍ୟ ଦୃଷ୍ଟାନ୍ତରୁ ଜଣାଯାଏ । ଆଜି ଲୋକେ ହାଣ୍ଡି ଗଢ଼ୁଛନ୍ତି, ପଥର କାଟୁଛନ୍ତି, ଲୁଗା ବୁଣୁଛନ୍ତି, ଅଳଙ୍କାର ଗଢ଼ୁଛନ୍ତି, ଇତ୍ୟାଦି । ଏସବୁ ସମାଜର ସେବା ସଂକ୍ରାନ୍ତ କାର୍ଯ୍ୟ । ପୂର୍ବେ ଯେତେବେଳେ କେବଳ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏହି ଚାରି ଜାତି ଥିଲେ, ସେତେବେଳେ ମଧ୍ୟ ଯେଉଁମାନେ ଏହି ସବୁ କାର୍ଯ୍ୟ କରୁଥିଲେ, ସେମାନେ କେବଳ ଶୂଦ୍ର ବୋଲି ଅଭିହିତ ହେଉଥିଲେ । ପରବର୍ତ୍ତୀ ସମାଜ ସେମାନଙ୍କୁ କୁମ୍ଭାର, ପଥୁରିଆ, ତନ୍ତୀ ଓ ବଣିଆ ଇତ୍ୟାଦି ଭିନ୍ନ ଭିନ୍ନ ଜାତି ନାମ ଦେଇ ପୃଥକ୍ ପୃଥକ୍ କରିଦେଇ ଦେଶରୁ ଐକ୍ୟଭାବ ଦୂର କରିଅଛି ।

କାଳକ୍ରମେ ସମାଜରେ ବହୁ ଜାତିର ଆବିର୍ଭାବ ହୋଇଥିଲେ ହେଁ ପ୍ରାୟ ଛଅ ଶତ ବା ସାତ ଶତ ବର୍ଷର ପ୍ରାକ୍କାଳ ଯାଏ ଏକ ଜାତିର ଲୋକେ ଅନ୍ୟ ଜାତିର ବ୍ୟବସାୟକୁ ଅବଲମ୍ବନ କରି ଧୀରେ ଅନ୍ୟ ଜାତିରେ ପରିଗଣିତ ହୋଇ ପାରୁଥିଲେ । ଆଉ ମଧ୍ୟ ଭିନ୍ନ ଭିନ୍ନ ଜାତିର ଲୋକମାନେ ସମାଜରେ ନଥିବା କିମ୍ବା ଅନ୍ୟ ଆକାରରେ ପ୍ରଚଳିତ ଥିବା କୌଣସି କାର୍ଯ୍ୟକୁ ବ୍ୟବସାୟ ସ୍ୱରୂପ ଗ୍ରହଣ କରି ନୂତନ ଜାତିର ସୃଷ୍ଟି କରୁଥିଲେ । ଆମ୍ଭ ଦେଶର କରଣ ଓ ଖଣ୍ଡାୟତ ଜାତି ଏହାର ଉଦାହରଣ । ଯଥା ସ୍ଥାନରେ ଏ ଦୁଇ ଜାତିର ସବିଶେଷ ଆଲୋଚନା କରାଯିବ । ତେଣୁ, ସମାଜର ସଂକୀର୍ଣ୍ଣତା ବୃଦ୍ଧି ପ୍ରାପ୍ତ ହେବା ସଙ୍ଗେ ସଙ୍ଗେ ନୀଚ ଜାତିର କୌଣସି ବ୍ୟକ୍ତି ଉଚ୍ଚ ଜାତିର ବର୍ତ୍ତିବା ଓ କାର୍ଯ୍ୟକୁ

Digitized by srujanika@gmail.com

ଅବଲମ୍ବନ କରି ସୁଦ୍ଧା ଉଚ୍ଚ ଉଚ୍ଚ ଜାତିରେ ଯେ ସମ୍ପୂର୍ଣ୍ଣ ମିଶି ପାରୁନଥିଲେ, ଏହା ମାନିବାକୁ ହେବ । ଆମ୍ଭ ଦେଶରେ କେତେକ ବଳରାମଗୋତ୍ରୀ ବ୍ରାହ୍ମଣ ଅଛନ୍ତି । ସମ୍ଭବତଃ ସେମାନେ ବୈଶ୍ୟଙ୍କ ପରି କୃଷିକାର୍ଯ୍ୟ କରୁଥିଲେ ଓ ବର୍ତ୍ତମାନ ମଧ୍ୟ ତାହା କରନ୍ତି । କିନ୍ତୁ ସେମାନେ ବ୍ରାହ୍ମଣ ଜାତିରେ ଅଦ୍ୟାବଧି ମିଶି ନପାରି ସେହି ଜାତି ମଧ୍ୟରେ ଏକ ନୀଚସ୍ଥାନ ପାଇଅଛନ୍ତି । ଅବଶ୍ୟ ସମାଜର ଏତାଦୃଶ ବ୍ୟବହାର ସାମାଜିକ ସଂକୀର୍ଣ୍ଣତା ବୃଦ୍ଧିପ୍ରାପ୍ତ ହେବାପରେ ସମ୍ଭବ ହୋଇଛି ।

ମୂଳତଃ ଜାତି କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ସ୍ୱତନ୍ତ୍ର ଜିନିଷ ନୁହେଁ । ତାହାର କୌଣସି ନିର୍ଦ୍ଦିଷ୍ଟ ଆଦି ବା କୌଣସି ନିର୍ଦ୍ଦିଷ୍ଟ ଅନ୍ତ ନାହିଁ । ସମସ୍ତ ଜାତିର ଲୋକେ ମୂଳରେ ଏକ । କେବଳ ବ୍ୟବସାୟର ପାର୍ଥକ୍ୟ ହେତୁ ସାମାଜିକ ନିୟମରେ ନିୟନ୍ତ୍ରିତ ହୋଇ ବିଭିନ୍ନ ଜାତି ବୋଲି ପରିଚିତ ହେଉଛନ୍ତି । ଜାତି ସମ୍ବନ୍ଧୀୟ ଆଦିମ ନୀତିର ଅପବ୍ୟବହାର ଫଳ ସମାଜ କାଳକ୍ରମେ ଚାରିଗୋଟି ଜାତି ସ୍ଥାନରେ ବହୁସଂଖ୍ୟକ ଜାତିର ସୃଷ୍ଟି କଲା । ତଥାପି ସମାଜର ନୀତି ଉଦାର ଥିବାଯାଏ ଏକ ଜାତିର ଲୋକେ ଅନ୍ୟ ଜାତିରେ ପରିଗଣିତ ହୋଇ ପାରୁଥିଲେ । କିନ୍ତୁ ସାମାଜିକମାନଙ୍କର ମୂଢ଼ତା ଯୋଗୁଁ ସମାଜର ନୀତି ସଂକୀର୍ଣ୍ଣ ହେବାପରେ ଆମ୍ଭେମାନେ ସମାଜ ପ୍ରଚଳିତ ଜାତିଗୁଡ଼ିକୁ ସ୍ୱତନ୍ତ୍ର ବିଧିସୃଷ୍ଟ ବୋଲି କଳ୍ପନା କରୁଅଛୁଁ । ଅବଶ୍ୟ ଆଜି ମଧ୍ୟ ନୂତନ କାର୍ଯ୍ୟର ଆବଶ୍ୟକତା ସଙ୍ଗେ ସଙ୍ଗେ ନୂତନ ଜାତିର ସୃଷ୍ଟି ହେଉଛି ଓ ବେଳେବେଳେ କୌଣସି କୌଣସି ଜାତିର ସତ୍ତା ଲୁପ୍ତ ଯାଉଛି । ଏସବୁ ବିଷୟ ଆଲୋଚନା କଲେ ବୋଧହୁଏ ଆମ୍ଭେମାନେ କୌଣସି ଜାତି ପ୍ରତି ତାଚ୍ଛଲ୍ୟଭାବ ପ୍ରକାଶ କରିବା ନିରର୍ଥକ, ଅହଂଭାବ ମାତ୍ର ।

ଆଜି ଆମ୍ଭମାନଙ୍କ ରକ୍ଷଣଶୀଳ ସମାଜ ଏକ ଜାତିର ଲୋକଙ୍କୁ ଅନ୍ୟ ଜାତିରେ ମିଶାଇବାର ସଂପୂର୍ଣ୍ଣ ବିରୋଧୀ । ସେମାନେ କହନ୍ତି, ସ୍ରଷ୍ଟା ବ୍ରହ୍ମାଙ୍କ ମୁଖ, ବାହୁ, ଊରୁ ଓ ପାଦରୁ ଯେଉଁମାନେ ଜାତ ହେଲେ, ସେମାନେ ପୂର୍ବାନୁକ୍ରମେ ଯଥାକ୍ରମେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ହେଲେ । ଏହି ଆପ୍ତବାକ୍ୟରୁ ମଧ୍ୟ ଜଣାଯାଏ ଯେ, କେହି ଜନ୍ମ ପୂର୍ବରୁ ବିଭିନ୍ନ ଜାତି କଳ୍ପିତ ହୋଇ ଜନ୍ମଗ୍ରହଣ କରି ନାହାନ୍ତି, କେବଳ ଜନ୍ମପରେ ସ୍ରଷ୍ଟାଙ୍କର ଅଙ୍ଗ ବିଶେଷ ଭେଦରେ ବିଭିନ୍ନ ଜାତିରେ ପରିଗଣିତ ହୋଇଛନ୍ତି । ଯଦି କାହାର ଅନ୍ଧବିଶ୍ୱାସ ହୁଏ ଯେ, କୌଣସି ସ୍ଥାନରେ କୌଣସି ସମୟରେ ବ୍ରହ୍ମା ବୋଲି ଜଣେ ଚତୁର୍ମୁଖ ପୁରୁଷ ବସି ଏକ ସମୟରେ ଚାରି ମୁହଁରେ ଚାରିପ୍ରକାର ବେଦ ପଢ଼ୁ ପଢ଼ୁ

Digitized by srujanika@gmail.com

ସ୍ୱଣ ମୂର୍ଦ୍ଧରୁ ସ୍ୱର ପ୍ରକାର ବେଦ ପଢ଼ି ପଢ଼ି ସ୍ୱରଜଣ ବ୍ରାହ୍ମଣ ବାହାରି ପଡ଼ିଲେ, ତାହା ହେଲେ ସେ ଭିନ୍ନ କଥା । ମାତ୍ର ତାହା ସମ୍ଭବ ନୁହେଁ କିମ୍ବା ଶାସ୍ତ୍ରବାକ୍ୟର ତଦ୍ରୂପ ଅର୍ଥ ହୋଇ ନପାରେ ।

ସମାଜର ପ୍ରଥମାବସ୍ଥାରେ ଲିଖନ ପ୍ରଣାଳୀ ପ୍ରଚଳିତ ନଥିବା ସମୟରେ ବେଦପାଠ ଆଦି ଧର୍ମକାର୍ଯ୍ୟ ମୁଖଦ୍ୱାରା ନିର୍ବାହିତ ହେଉଥିଲା ଓ ଯେଉଁମାନେ ଏହି ଧର୍ମକାର୍ଯ୍ୟମାନ କରୁଥିଲେ ସେମାନେ ସମାଜର ମୁଖ ସ୍ୱରୂପ ଥିଲେ । ତଥା ଯେଉଁମାନେ ବାହୁ ଶରୀରକୁ ରକ୍ଷା କଲାପରି ସମାଜକୁ ଶତ୍ରୁ ହସ୍ତରୁ ରକ୍ଷା କରୁଥିଲେ ସେମାନେ ସମାଜର ବାହୁ ସ୍ୱରୂପ, ଯେଉଁମାନେ ଜଙ୍ଘ ଶରୀରକୁ ଠିଆ କଲାପରି କୃଷି ଓ ବାଣିଜ୍ୟ ଦ୍ୱାରା ସମାଜକୁ ଠିଆ କରାଉଥିଲେ ସେମାନେ ସମାଜର ଉରୁ ବା ଜଙ୍ଘ ସ୍ୱରୂପ ଓ ଯେଉଁମାନେ ପାଦ ଶରୀରର ନିମ୍ନତମ ସ୍ଥାନରେ ରହି ନିମ୍ନତମ କାର୍ଯ୍ୟ କରି ସେବା କଲାପରି ସମାଜର ନୀଚ କାର୍ଯ୍ୟମାନ କରି ସମାଜକୁ ସେବା କରୁଥିଲେ, ସେମାନେ ସମାଜର ପାଦ ସ୍ୱରୂପ ହେଲେ । ତେଣୁ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରଙ୍କର ଅର୍ଥାତ୍ ସମାଜରେ ଦେବପୂଜା, ବେଦପାଠ, ଯୁଦ୍ଧ, କୃଷି, ବାଣିଜ୍ୟ ଓ ଅନ୍ୟାନ୍ୟ କାର୍ଯ୍ୟମାନ କରୁଥିବା ଲୋକଙ୍କର ଜନ୍ମସ୍ଥାନ ଯଥାକ୍ରମେ କଳ୍ପିତ ବିରାଟ ପୁରୁଷଙ୍କର ମୁଖ, ବାହୁ, ଉରୁ ଓ ପାଦ ବୋଲି କଳ୍ପିତ ହୋଇଅଛି ।

ଆଜି ନାନା ଜାତି ବିଶିଷ୍ଟ ସମାଜରେ ଲୋକେ ଜାତିର ପ୍ରକୃତ ମର୍ମ ନ ବୁଝି ଏହାକୁ ନିଜ ନିଜର ଜନ୍ମଗତ ଅଧିକାର ବୋଲି ମନେ କରନ୍ତି । ବାସ୍ତବିକ ଦେଖିବାକୁ ଗଲେ କ୍ୱଚିତ୍ ବ୍ୟକ୍ତିବିଶେଷଙ୍କ ବ୍ୟତୀତ ଆଜି କାହାରିକୁ କୌଣସି ଜାତି ବୋଲି କୁହାଯାଇ ନପାରେ; କାରଣ ବ୍ରାହ୍ମଣ ନାମଧାରୀ ବ୍ୟକ୍ତି ବାଣିଜ୍ୟ, କ୍ଷତ୍ରିୟ ନାମଧାରୀ ବ୍ୟକ୍ତି କୃଷି ଓ ବୈଶ୍ୟ ନାମଧାରୀ ବ୍ୟକ୍ତି ସେବାକାର୍ଯ୍ୟ କରୁଅଛନ୍ତି । ଆମ୍ଭେମାନେ କେବଳ ପୂର୍ବପୁରୁଷଙ୍କ ଉତବ୍ୟବହାର୍ଯ୍ୟ ନାମ ଧରି ଅମୂଳକ ଗର୍ବ କରୁଛୁଁ ମାତ୍ର ।

କୌଣସି ଜାତିର ଲୋକଙ୍କ ମଧ୍ୟରେ ଅନ୍ୟାନ୍ୟ ଜାତୀୟ ଲୋକଙ୍କ ଅପେକ୍ଷା ସେହି ଜାତିର ଗୁଣାବଳୀର ଉତ୍କର୍ଷ ଦେଖାଯାଏ । ତେଣୁ କେହି କେହି କହନ୍ତି, ଲୋକେ ଜନ୍ମ ପୂର୍ବରୁ ସେ ସେହି ଜାତି ବୋଲି କଳ୍ପିତ ହୋଇ ସୃଷ୍ଟି ହୁଅନ୍ତି । ମନୁଷ୍ୟ ସୃଷ୍ଟିର ଯଦି ଏହି ନୀତି ହୁଏ, ତାହାହେଲେ ଭଗବାନ କେବଳ ଭାରତ ବର୍ଷର ହିନ୍ଦୁ ସମାଜରେ ଏହି ନୀତି ପ୍ରୟୋଗ କଲେ କି ? ପୃଥିବୀର ଅନ୍ୟ କୌଣସି ଦେଶ ବା ସମାଜରେ ଏଭଳି ନୀତିର ପ୍ରୟୋଗ ଦେଖାଯାଏ ନାହିଁ । ଅବଶ୍ୟ କୌଣସି ଜାତିର ଅଧିକାଂଶ ଲୋକଙ୍କଠାରେ ସେ ତାଙ୍କ ଜାତୀୟ ଗୁଣର

Digitized by srujanika@gmail.com

ଉତ୍କର୍ଷ ଦେଖାଯାଏ, ତାହା ମାନିବାକୁ ହେବ । ସାଧାରଣତଃ ବଢ଼େଇର ପୁଅ ଭଲ କାରିଗର ହୁଏ, ତନ୍ତୀର ପୁଅ ଭଲ ତନ୍ତା ହୁଏ, ବ୍ରାହ୍ମଣର ପୁଅ ବ୍ରାହ୍ମଣ ଗୁଣ ଦେଖାଏ । କିନ୍ତୁ ଯେତେବେଳେ ଏକ ଜାତିର ଲୋକେ ଅନ୍ୟ ଜାତିରେ ପରିଣତ ହେବାର ସୁବିଧା ଥିଲା, ସେତେବେଳେ ମଧ୍ୟ କୌଣସି ଜାତି ସାରା ବଦଳି ପାରୁ ନଥିଲେ । ସ୍ଥଳ ବା ଘଟଣା ବିଶେଷରେ କୌଣସି କୌଣସି ପରିବାର ସେପରି କରୁଥିଲେ । ସୁତରାଂ କୌଣସି ଜାତିର ଲୋକେ ବହୁ ବର୍ଷାବଧି ପୁରୁଷାନୁକ୍ରମେ ସେହି ଜାତିର ଗୁଣ କାର୍ଯ୍ୟ ଅଳ୍ପବେଶି ଅନୁଶୀଳନ କରୁଥିବା କାରଣରୁ ଉକ୍ତବିଧ ଜାତିଗତ ଗୁଣୋତ୍କର୍ଷ ଦେଖାଯିବା ସ୍ୱାଭାବିକ ।

ଜାତି ସମ୍ବନ୍ଧେ କେତେକ ଭ୍ରାନ୍ତ ଧାରଣା ଆମ୍ଭମାନଙ୍କର ଅସ୍ଥିମଜ୍ଜାଗତ ହୋଇଅଛି । ଫଳରେ ଆମ୍ଭେମାନେ ପ୍ରକୃତ ମର୍ମ ବୁଝି ସୁଦ୍ଧା ନ ବୁଝିଲା ପରି କାର୍ଯ୍ୟ କରୁଅଛୁ । କିନ୍ତୁ ଏ ଭ୍ରାନ୍ତ ଭାବରୁ ମୁକ୍ତ ନ ହେବା ଯାଏ ଆମ୍ଭମାନଙ୍କ ସମାଜ ତଥା ଦେଶର ମଙ୍ଗଳ ଅସମ୍ଭବ । ଏଥିରୁ ମୁକ୍ତ ହେବା ପାଇଁ ଆମ୍ଭମାନଙ୍କର ସାହସ ଲୋଡ଼ା । ସମାଜନାୟକମାନେ ଦେଶର ମଙ୍ଗଳ ଦୃଷ୍ଟିରେ ସାହସର ପରିଚୟ ଦିଅନ୍ତୁ ।

ସାମାଜିକ ଯେ କୌଣସି ନିୟମର ମୂଳରେ କିଛି ନା କିଛି ଆବଶ୍ୟକତା ଥାଏ । ସେହି ଆବଶ୍ୟକତା ଦୂର କରିବା ପାଇଁ ଉପାୟ ବିଧାନ କରିବା ସାମାଜିକ-ମାନଙ୍କର କର୍ତ୍ତବ୍ୟ । କିନ୍ତୁ ଉପାୟ ବିଧାନ କରୁ କରୁ ଯଦି କୌଣସି ନିୟମ କାଳକ୍ରମେ ଅପବ୍ୟବହୃତ ହୋଇ ଅନିଷ୍ଟ ଫଳ ଜନ୍ମାଏ, ତାହାହେଲେ ସେଥିପାଇଁ ପ୍ରଥମ ଉପଦେଷ୍ଟାଙ୍କୁ ଦୋଷୀ କରାଯାଇ ନପାରେ । ଦେଶ ତଥା ସମାଜର ତତ୍କାଳୀନ ଅବସ୍ଥା ଓ ଆବଶ୍ୟକତା ଦୃଷ୍ଟିରେ ସମାଜର କାର୍ଯ୍ୟଗୁଡ଼ିକୁ ସମାଜର ଲୋକମାନଙ୍କ ମଧ୍ୟରେ ବାଣ୍ଟିଦେଇ ସାମାଜିକ ଶାନ୍ତି ସୁଖ, ସମାଜର ସୁଶୃଙ୍ଖଳ ପରିଚାଳନାର ଯେ ବନ୍ଦୋବସ୍ତ କରିଥିଲେ, ତାହା କେବଳ ସେତେବେଳେ ନୁହଁ ଅନେକବର୍ଷ ଯାଏ ଭଲ ଫଳ ଦେଖାଉଥିଲା । କିନ୍ତୁ ଯେତେବେଳେ ଲୋକେ ଜାତି ଅନୁଷ୍ଠାନର ମୂଳ କାରଣଟି ଭୁଲିଯିବା ସଙ୍ଗେ ସଙ୍ଗେ ସମାଜର ମୁଖ୍ୟ ବ୍ରାହ୍ମଣମାନେ ସ୍ୱାର୍ଥ ଲୋକପ୍ରୀତି ଶ୍ରଦ୍ଧା ପ୍ରାର୍ଥନା ଭାବରେ ଆତ୍ମଲାଭ ଓ ଆତ୍ମ ଗୌରବ ପାଇଁ ଚେଷ୍ଟିତ ହେଲେ, ସେତେବେଳେ ଆମ ସମାଜରେ ଜାତି ଅନୁଷ୍ଠାନର ଅପବ୍ୟବହାର ଆରମ୍ଭ ହେଲା ଓ ସକାଳୁ ଦାନ୍ତକାଠି ଭାଙ୍ଗିବାଠାରୁ ଆରମ୍ଭ କରି ରାତିରେ ବିଛଣା ଧରିବା ପର୍ଯ୍ୟନ୍ତ ଦୈନନ୍ଦିନ ପ୍ରତ୍ୟେକ କାର୍ଯ୍ୟ କରିବା ନିମନ୍ତେ ମୌଳିକ ବର୍ଣ୍ଣଜାତିର ଲୋକଙ୍କ ମଧ୍ୟରୁ ଗୋଟିଏ ଗୋଟିଏ ସ୍ପୃଶ୍ୟ ବା ଅସ୍ପୃଶ୍ୟ ସ୍ୱତନ୍ତ୍ର ସୀମାବଦ୍ଧ ଜାତି କଳ୍ପିତ ହେଲେ । ସମାଜର ନିସ୍ପୃହ ବ୍ରାହ୍ମଣମାନେ ମଧ୍ୟ ଜାତିଗୁଡ଼ିକୁ ସ୍ୱାତନ୍ତ୍ର୍ୟ ପ୍ରତିପନ୍ନ କରିବା ପାଇଁ ପ୍ରତ୍ୟେକ ଜାତିର ଉତ୍ପତ୍ତି ସମ୍ବନ୍ଧେ

Digitized by srujanika@gmail.com

ନାନାବିଧ କାଳ୍ପନିକ କାହାଣୀମାନ ଶାସ୍ତ୍ର ଓ ପୁରାଣ ଆଦିରେ ସଂକଳନ କଲେ । ଫଳରେ କାଳକ୍ରମେ ଅମ୍ଭମାନଙ୍କ ମଧ୍ୟରେ ଅବୈଧ ଭେଦନୀତି, ସଂକୀର୍ଣ୍ଣତା ବଦ୍ଧମୂଳ ହେଲା ।

ଅମ୍ଭମାନଙ୍କର ଅନେକେ ପରବର୍ତ୍ତୀ ଯୁଗର ଏତାଦୃଶ ସାମାଜିକ ଅବର୍ଜନା ସକାଶେ ବ୍ରାହ୍ମଣମାନଙ୍କୁ ଦାୟୀ କରିବାକୁ ଅମ୍ଭମାନଙ୍କର ଯଥେଷ୍ଟ କାରଣ ଅଛି । ହିନ୍ଦୁ ସମାଜର ପ୍ରଥମ ଦିନରୁ ବ୍ରାହ୍ମଣମାନେ ତାହାର ନିୟାମକ । ସମାଜର ମଙ୍ଗଳ କାମନାରେ ପ୍ରଥମେ ସେହିମାନେ ଜାତିନୀତିର ବିଧାନ କରିଥିଲେ । ଅନ୍ୟ ସବୁ ଜାତି ସମ୍ପୂର୍ଣ୍ଣତଃ ସେମାନଙ୍କର ମୁଖାପେକ୍ଷୀ ଥିଲେ । ସୁତରାଂ ଯେତେବେଳେ ମୌଳିକ ଜାତିନୀତି ବିସ୍ମୃତ ହୋଇ ସମାଜରେ ପରସ୍ପର ବିଦ୍ୱେଷ ଭାବାପନ୍ନ ଶତଶତ ସଂକୀର୍ଣ୍ଣ ଜାତିର ଉଦ୍ଭବ ହେବାକୁ ବସିଲା, ସେତେବେଳେ ବ୍ରାହ୍ମଣମାନେ ତହିଁର ତୀବ୍ର ପ୍ରତିବାଦ କରିବା ଉଚିତ ଥିଲା । ଅମ୍ଭମାନଙ୍କର ଦୃଢ଼ ବିଶ୍ୱାସ ବ୍ରାହ୍ମଣ ତାହା କରିଥିଲେ ଜାତି ବିଷୟ ସମାଜକୁ ଗ୍ରାସ କରି ପାରିନଥାନ୍ତା କିମ୍ବା ଆଜି ସମାଜ ଛିନ୍ନଭିନ୍ନ ହୋଇ ନଥାନ୍ତା । ମାତ୍ର ପ୍ରଥମ ଯୁଗର ଯେଉଁ ବ୍ରାହ୍ମଣ ସସାଗରା ମେଦିନୀକୁ ଅନ୍ୟାନ୍ୟ ଜାତିଙ୍କ ହସ୍ତରେ ଅର୍ପଣ କରି ନିଜେ କେବଳ ଧର୍ମ ଚର୍ଚ୍ଚାରେ ବ୍ୟାପୃତ ରହି ଦେଶ ତଥା ସମାଜର ମଙ୍ଗଳ କାମନା କରୁଥିଲେ, ପରବର୍ତ୍ତୀ ଯୁଗର ସେହି ବ୍ରାହ୍ମଣର ବଂଶଧର ଅର୍ଥାଧିକାର ଲିପ୍ସା ଓ ଭେଦନୀତିର ସହାୟକ ହୋଇ ଧର୍ମପ୍ରାଣ ଲୋକମାନଙ୍କ ମଧ୍ୟରେ ବିଭିନ୍ନ ଜାତିର ଉତ୍ପତ୍ତି ସମ୍ବନ୍ଧେ ଅଦ୍ଭୁତ କଳ୍ପନାମାନ ଧର୍ମଶାସ୍ତ୍ରରେ ଲିପିବଦ୍ଧ କଲେ ଏବଂ ଏକ ଜାତିର ଲୋକ ଅନ୍ୟ ଜାତିର ଉପଯୋଗୀ କୌଣସି କାର୍ଯ୍ୟ କଲେ ତନ୍ନିମିତ୍ତ ପ୍ରାୟଶ୍ଚିତ୍ତ ବିଧାନର ବ୍ୟବସ୍ଥା କଲେ । ଧର୍ମ ନାମରେ ଜାତି-ନୀତି ସମ୍ବନ୍ଧୀୟ ଯେଉଁ ଭ୍ରାନ୍ତ ଧାରଣା ସମାଜରେ ସବେଗ ପ୍ରକାରେ ପ୍ରବେଶ କଲା, ତାହା ଆଜି ସମସ୍ତଙ୍କର ଅସ୍ଥି ମଜ୍ଜାଗତ ହୋଇ ସମସ୍ତଙ୍କୁ ସଙ୍କୀର୍ଣ୍ଣ କରୁଅଛି । ଏବେ ବ୍ରାହ୍ମଣ ସେହି ବିଷୟରେ ମଧ୍ୟ ଜର୍ଜ୍ଜର । ବ୍ରାହ୍ମଣ ବା ବ୍ରାହ୍ମଣେତର ଯାହାଙ୍କୁ ଜାତିର ପ୍ରକୃତ ତତ୍ତ୍ୱ ବୁଝାଇଦେଲେ ସେ ଶାସ୍ତ୍ର ଓ ପୁରାଣର ପ୍ରକ୍ଷିପ୍ତବାକ୍ୟ ଉଦ୍ଧାର କରେ । ବେଦର ବାକ୍ୟର ଯାହା ସରଳ ଅର୍ଥ, ତାହା କଦାପି ସତ୍ୟ ହୋଇ ନପାରେ ବୋଲି ପ୍ରମାଣ କରାଇ ଦେଲେ ମଧ୍ୟ ଧର୍ମ ନାମରେ ତନ୍ତ୍ରପ୍ରତି ଅତିବିଶ୍ୱାସ କରିବା ପାଇଁ ଦାବି କରେ ଓ ବେଦବେଦାଙ୍ଗ ବାକ୍ୟର ପ୍ରକୃତ ତାତ୍ପର୍ଯ୍ୟାର୍ଥ ବୁଝାଇ ଦେଲେ ସେ ତାହା ବୁଝି ମଧ୍ୟ ତଦନୁସାରେ କାର୍ଯ୍ୟକାରୀ ହେଲେ ଧର୍ମନାଶ ହେବ ବୋଲି ଭୟ କରେ । 'ବ୍ରହ୍ମାଙ୍କର ବିଭିନ୍ନ ଅଙ୍ଗରୁ ବିଭିନ୍ନ ଜାତି ଜାତ ହୋଇଥିଲେ' ଏ କଥାର ତାତ୍ପର୍ଯ୍ୟାର୍ଥ ଶୁଣି ଅନେକ ଉଚ୍ଚଶିକ୍ଷିତ ବ୍ୟକ୍ତି ମଧ୍ୟ ଯୁକ୍ତି ଦିଅନ୍ତି ଯେ ଧର୍ମଶାସ୍ତ୍ରରେ ଯାହା ଲେଖା ଅଛି, ତାହାକୁ ଅକ୍ଷରେ ଅକ୍ଷରେ ଅନ୍ଧଭାବରେ ବିଶ୍ୱାସ କରିବାକୁ ହିଁ ହେବ । ଜାତିମାନଙ୍କ ମଧ୍ୟରେ ବିଦ୍ୱେଷ

ମୂଳକ ସ୍ୱାତନ୍ତ୍ର୍ୟ ଭାବ ପ୍ରଥମେ ପ୍ରବେଶ କଲାବେଳେ ଅବଶ୍ୟ ବ୍ରାହ୍ମଣମାନେ ଏ ଭେଦଭାବ ଅସ୍ୱାଭାବିକ ବୋଲି ଜାଣିଥିଲେ । କିନ୍ତୁ ଆଜି ତତ୍ତ୍ୱ ସମ୍ବନ୍ଧେ ବ୍ରାହ୍ମଣ ଜାତି ଅନ୍ୟ ଜାତିମାନଙ୍କ ସଙ୍ଗେ ସମ ଅଧିକାରରେ ରହି କେବଳ ଚନ୍ଦନ ଓ ଉପବୀତ ଧାରଣ କରି ଅନ୍ୟ ଜାତିଙ୍କ ଗୃହରେ ପୌରୋହିତ୍ୟାଦି କରିବାଦ୍ୱାରା ଅର୍ଥ ଉପାର୍ଜନ କରି ଧର୍ମାଚରଣ କରୁଅଛନ୍ତି । ଜାତିର ଅର୍ଥ ପ୍ରକୃତରେ ଯାହା, ତାହା ବୁଝାଇଦେଲେ ସେମାନେ କି ଧର୍ମ ନାମରେ ବେଶୀ ପ୍ରତିବାଦ କରୁଅଛନ୍ତି ।

ବ୍ରାହ୍ମଣ ଜାତିକୁ ତିରସ୍କାର କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହେଁ । ଆଜି ଯେଉଁ ଜାତିବିଷ ହିନ୍ଦୁ ସମାଜର ରକ୍ତପାନ କରୁଛି ତାହାର ଅବସ୍ଥିତି ପାଇଁ କିଏ କେତେ ପରିମାଣରେ ଦାୟୀ, ସେ ବିଷୟ ଆଲୋଚନା କରିବାକୁ ଯାଇ ଆମ୍ଭେମାନେ ପରବର୍ତ୍ତୀ ଯୁଗର ବ୍ରାହ୍ମଣ ଜାତି ସମ୍ବନ୍ଧେ କେତେକ କଟୁକଥା କହିବାକୁ ବାଧ୍ୟ ହେଉଅଛୁ । ତାହି ସଙ୍ଗେ ସଙ୍ଗେ ଆମ୍ଭମାନେ ଏକଥା ମଧ୍ୟ ସ୍ୱୀକାର କରୁଅଛୁ ଯେ, ଯେଉଁ ଗୌରବ ଯୋଗୁଁ ଆଜି ହିନ୍ଦୁ ଭାରତ ସାରା ପୃଥିବୀରେ ସମ୍ମାନିତ ହେଉଅଛି, ସେ ସବୁରେ ଅଧିକାଂଶ ବ୍ରାହ୍ମଣ ଜାତିର ସାଧନାର ଫଳ । ଆଦି ଯୁଗର ମଙ୍ଗଳକାମୀ ବ୍ରାହ୍ମଣ ସଦାସର୍ବଦା ଦେଶ ତଥା ସମାଜର ମଙ୍ଗଳ ଚିନ୍ତା କରି ସରଳ ପ୍ରାଣରେ ଯେଉଁ କାର୍ଯ୍ୟମାନ କରିଥିଲେ, ତନ୍ମଧ୍ୟରେ କର୍ତ୍ତବ୍ୟ ବଣ୍ଟନ ଅର୍ଥାତ୍ ଜାତି ବିଭାଗ ଗୋଟିଏ । ଯେଉଁ କର୍ତ୍ତବ୍ୟ ବଣ୍ଟନ ବା ଜାତି ବିଭାଗ ପ୍ରଥମାବସ୍ଥାରେ ସମାଜର ମଙ୍ଗଳ ସାଧନ କରିଥିଲା ଓ ଯେଉଁ ନୀତି ଯଥାର୍ଥ ଭାବରେ ବ୍ୟବହୃତ ହେଲେ ସର୍ବଯୁଗରେ ସମସ୍ତ ଦେଶରେ କଲ୍ୟାଣକର ଅନୁଷ୍ଠାନ ହୁଅନ୍ତା, ପରବର୍ତ୍ତୀ ଯୁଗର ବ୍ରାହ୍ମଣ କେବଳ ଅଜ୍ଞାନତାବଶତଃ ତାହାର ଅପବ୍ୟବହାରରେ ସହାୟତା କରିଛି ବୋଲି ଆମ୍ଭେମାନେ ସମାଜରେ ମୁଖ୍ୟ ବ୍ରାହ୍ମଣ ଜାତିର ଆଦ୍ୟୋପାନ୍ତ ସମସ୍ତ କାର୍ଯ୍ୟର ନିନ୍ଦା କରି ନପାରୁ । ମହତ ଉଦ୍ଦେଶ୍ୟରେ କଳ୍ପିତ ହୋଇଥିବା କୌଣସି ଗୋଟିଏ କାର୍ଯ୍ୟର ପରବର୍ତ୍ତୀ ଯୁଗରେ ଅପବ୍ୟବହାର ଦେଖି ଆମ୍ଭେମାନେ ମୂଳ କର୍ତ୍ତାଙ୍କ ପ୍ରତି ଦୋଷାରୋପ କରିବା ଅନୁଚିତ । ପ୍ରକୃତଃ କେବଳ କର୍ତ୍ତବ୍ୟ ବଣ୍ଟନ ଅର୍ଥରେ ଜାତି ବିଭାଗ ସମାଜରେ ରହିବା କଲ୍ୟାଣକର; କିନ୍ତୁ ସମସ୍ତ ଜାତିସ୍ଥ ଲୋକଙ୍କ ହୃଦୟରେ ଏହି ଭାବ ସଦାସର୍ବଦା ଜାଗ୍ରତ ରହିବା ଉଚିତ ଯେ, ସମସ୍ତଙ୍କର ଉତ୍ପତ୍ତି ଏକ ଓ ଆବଶ୍ୟକ ଅନୁସାରେ ସମସ୍ତେ ସମାଜର ଶୁଭକାର୍ଯ୍ୟ କରିପାରନ୍ତି । ଆମ ସମାଜର ଜାତିଗୁଡ଼ିକ ଏହିଭାବ ଭୁଲି ବର୍ତ୍ତମାନ ପରସ୍ପରକୁ ଅସ୍ପୃଶ୍ୟ ମନେକରି ପରସ୍ପରର ନିନ୍ଦା କରୁଅଛନ୍ତି ।

କର୍ତ୍ତବ୍ୟ-ବଣ୍ଟନ ଦ୍ୱାରା ସମାଜର ପରିଚାଳନା ସୁଶୃଙ୍ଖଳ ହେବାର କଥା । ଏହି କର୍ତ୍ତବ୍ୟ ବଣ୍ଟନ ହେତୁ ପଲ୍ଲୀପ୍ରଧାନ ଭାରତରେ ପଲ୍ଲୀଗୁଡ଼ିକ ଆବହମାନକାଳରୁ

Digitized by srujanika@gmail.com

ଅବ୍ୟବସ୍ଥିତ ଭାବରେ ଚଳି ଆସୁଅଛି । ସଂସାରରେ ଚଳିବାପାଇଁ ଯେତେଗୁଡ଼ିଏ କାର୍ଯ୍ୟ ଆବଶ୍ୟକ, ସେହି କାର୍ଯ୍ୟମାନ କରିବା ପାଇଁ ପ୍ରତ୍ୟେକ ପଲ୍ଲୀରେ ପୃଥକ୍ ପୃଥକ୍ ବ୍ୟକ୍ତି ଥାନ୍ତି । ସେମାନେ ସମସ୍ତେ ସମସ୍ତଙ୍କୁ ନିଜ ନିଜର କର୍ତ୍ତବ୍ୟ, କାର୍ଯ୍ୟ ଦ୍ୱାରା ସାହାଯ୍ୟ କରନ୍ତି । କେହି ଜଣେ କେବଳ ନିଜ ଜାତିର କର୍ତ୍ତବ୍ୟ କାର୍ଯ୍ୟ କରି ଚଳିପାରେ ନାହିଁ । କିନ୍ତୁ ସଂକୀର୍ଣ୍ଣ ଭାବାତ୍ମକ ଜାତିଭେଦ ଆଜି ଆମ୍ଭମାନଙ୍କର ପଲ୍ଲୀକୁ ନଷ୍ଟ କରିଅଛି । ଯଦି ପଲ୍ଲୀବାସୀ ସମସ୍ତେ ପ୍ରକୃତରେ ଏକ ଓ କେବଳ କର୍ତ୍ତବ୍ୟାନୁରୋଧରେ ପୃଥକ୍ ପୃଥକ୍ ଜାତିନାମ ଗ୍ରହଣ କରିଛନ୍ତି ବୋଲି ବୁଝନ୍ତେ, ତାହାହେଲେ ଆମ୍ଭମାନଙ୍କ ପଲ୍ଲୀ ସବୁ ସ୍ୱର୍ଗତୁଲ୍ୟ ହୋଇଥାନ୍ତା । ଭଗବାନ ସତେ କି ଛିନ୍ନ ହିନ୍ଦୁ ସମାଜରେ ସାମ୍ୟ ଭାବ ଆଣିବେ, ଏହା ସହଜରେ ବିଶ୍ୱାସ ହେଉନାହିଁ ।

ଯଦି ସମାଜର ପ୍ରତ୍ୟେକ ବ୍ୟକ୍ତିଙ୍କୁ ସମସ୍ତ କାର୍ଯ୍ୟ କରିବାକୁ ପଡ଼େ, ତାହାହେଲେ କେହି କୌଣସି କାର୍ଯ୍ୟରେ ସିଦ୍ଧହସ୍ତ ହୋଇପାରେ ନାହିଁ । ସେଇଥିପାଇଁ ଭାରତରେ ଜାତି ନୀତିର ସୃଷ୍ଟି । ତାହାର ଫଳରେ ହିନ୍ଦୁମାନେ ପ୍ରତ୍ୟେକ ବିଷୟରେ ପାରଦର୍ଶିତା ଲାଭ କରିଥିଲେ । କାରଣ କେହି ପୁରୁଷାନୁକ୍ରମେ କୌଣସି କାର୍ଯ୍ୟ କରିବା ଦ୍ୱାରା ଦକ୍ଷତା ଲାଭ କରିବା ସ୍ୱାଭାବିକ । କିନ୍ତୁ ପୁରୁଷାନୁକ୍ରମେ ଏକ କାର୍ଯ୍ୟ କରୁଥିବା ବଂଶର କାହାର ଯଦି ଅନ୍ୟ କାର୍ଯ୍ୟ କରିବା ପାଇଁ ଦୈବଦତ୍ତ ଶକ୍ତି ଥାଏ, ତାହାହେଲେ ସେ ସେହି କାର୍ଯ୍ୟ କରିବା ଉଚିତ୍ । ବିଶେଷତଃ ଆଧୁନିକ ବ୍ୟବସାୟ ଯୁଗରେ କାହାରିକୁ କୌଣସି କାର୍ଯ୍ୟ କରିବାକୁ ବର୍ଜିତ କରିବା ଉଚିତ ବା ସମ୍ଭବପର ନୁହେଁ । କିନ୍ତୁ ଆମ ସମାଜର ଜାତିନୀତି ପରବର୍ତ୍ତୀ କାଳରେ ଏତେ-ଦୂର ସଂକୀର୍ଣ୍ଣ ହୋଇ ପଡ଼ିଲା ଯେ, ସେ ଲୋକମାନଙ୍କ ସ୍ୱାଭାବିକ ମନୋବୃତ୍ତିର ପ୍ରଧାନ ଅନ୍ତରାୟ ହୋଇ ଠିଆ ହେଲା । ଅର୍ଥନୀତି ହିସାବରେ ମଧ୍ୟ ଏଭଳି ସାମାଜିକ କୁସଂସ୍କାର ଭଲ ନୁହେଁ ବୋଲି ବୋଧହୁଏ ।

ଆଶା କରୁ, ଜାତି ଜିନିଷଟା କ'ଣ ଓ ତାହାକୁ କି ଅର୍ଥରେ ସମାଜ ଗ୍ରହଣ କରିବା ଉଚିତ, ତାହା ଆମ୍ଭେମାନେ ବୁଝାଇ ଦେବାକୁ ସମର୍ଥ ହୋଇଅଛୁଁ । ଆଜିକାଲି ଲୋକେ ଯେଉଁ ଅର୍ଥରେ 'ଜାତି' କଥାଟାକୁ ବୁଝନ୍ତି, ତାହା କେତେଦୂର ଠିକ୍ ଓ ଯୁକ୍ତିକର ବା ଅଯୁକ୍ତିକର, ତାହା ସମସ୍ତଙ୍କର ଭାବିବା ଉଚିତ । ଇତର ଜୀବଜନ୍ତୁମାନେ ଭିନ୍ନ ଭିନ୍ନ ଆକାର ପ୍ରକାର ଓ ଆଚାର ବ୍ୟବହାର ଘେନି ଜନ୍ମ ହେଲା ପରି ହିନ୍ଦୁ ସମାଜର ଲୋକେ ମିଥ୍ୟା ଧର୍ମ ନାମରେ ପରସ୍ପରକୁ ଇତର ବିଶେଷ ମନେ କରିବା ସମ୍ପୂର୍ଣ୍ଣ ନିନ୍ଦିତ ଓ ଅଯୌକ୍ତିକ । ରକ୍ଷଣଶୀଳ ବ୍ୟକ୍ତିମାନେ କହନ୍ତି, ହିନ୍ଦୁ ସମାଜରେ ଜାତି ବିଚାର ଏକ ସନାତନ ନୀତି । ଆମ୍ଭେମାନେ ମଧ୍ୟ ଏହା ସ୍ୱୀକାର କରୁଁ । ହିନ୍ଦୁ ସମାଜର ଆଦି ଯୁଗରୁ ଏହା ପ୍ରଚଳିତ ଅଛି ଓ ସମାଜ

Digitized by srujanika@gmail.com

ଜୀବିତ ଥିବାଯାଏ ଏହା ପ୍ରଚଳିତ ଥିବ । ଏହି ଭାବରେ ଏହା ନିଶ୍ଚୟ ସନାତନ । କିନ୍ତୁ ଏହାର ପୂର୍ଣ୍ଣ ସନାତନତ୍ୱ ବର୍ତ୍ତମାନ ନାହିଁ । ସମାଜର ଆଦି ଦିବସରେ ଯେଉଁ ଭାବରେ ଏହା ଉଦ୍ଭୂତ ହୋଇଥିଲା, ସେହି ଭାବରେ ଯଦି ଏହା ଆଜି ଓ ଭବିଷ୍ୟତରେ ପ୍ରଚଳିତ ହୁଏ, ତାହା ହେଲେ ଏହା ଯଥାର୍ଥରେ ସନାତନ ହେବ । ଆମ୍ଭେମାନେ ଜାତିନୀତିକୁ ଯଥାର୍ଥରେ ସନାତନ କରିବାକୁ ଚାହୁଁ । ଯେଉଁମାନେ ପ୍ରତିବାଦ କରନ୍ତି, ସେମାନେ ପ୍ରକୃତରେ ସନାତନୀ ନୁହନ୍ତି ବା 'ସନାତନ' ଶବ୍ଦର ଅର୍ଥ ବୁଝିନାହାନ୍ତି ।

ମନୁଷ୍ୟମାନଙ୍କ ପକ୍ଷରେ 'ଜାତି' ଏହି ଶବ୍ଦ ବ୍ୟବହାର କଲେ ପୁରୁଷ ଓ ସ୍ତ୍ରୀ ଦୁଇଜାତି ବୁଝାଏ । ପ୍ରାଣୀ ଜଗତ ପକ୍ଷରେ ଏହି ଶବ୍ଦ ବ୍ୟବହାର କଲେ ମନୁଷ୍ୟ ଜାତି, ପଶୁ ଜାତି ଏହିପରି ବୁଝାଏ; ଅର୍ଥାତ୍ ଜନ୍ମଗତ ପାର୍ଥକ୍ୟ ଥିବା ସ୍ଥଳରେ ଜାତି ଶବ୍ଦ ବ୍ୟବହୃତ ହେବାର କଥା । ଏହି ନିୟମ ମଧ୍ୟ ଜାତି ଶବ୍ଦର ବ୍ୟୁତ୍ପତ୍ତ୍ୟର୍ଥ ଦ୍ୱାରା ଅନୁମୋଦିତ । କିନ୍ତୁ ସାଧାରଣତଃ ଆମ୍ଭେମାନେ ଭାରତବର୍ଷର ଲୋକଙ୍କୁ ଭାରତୀୟ ଜାତି, ଇଂଲଣ୍ଡର ଲୋକଙ୍କୁ ଇଂରେଜ ଜାତି ଓ ଆମେରିକାର ଲୋକଙ୍କୁ ଆମେରିକାନ୍ ଜାତି ଏହିପରି କହୁଁ । ଆହୁରି କ୍ଷୁଦ୍ର ପରିସର ମଧ୍ୟକୁ ଗଲେ ଯେଉଁମାନେ ବଙ୍ଗ ଦେଶରେ ବାସ କରନ୍ତି ସେମାନଙ୍କୁ ବଙ୍ଗାଳି ଜାତି, ଯେଉଁମାନେ ଓଡ଼ିଶାରେ ବାସ କରନ୍ତି ସେମାନଙ୍କୁ ଓଡ଼ିଆ ଜାତି ଓ ଯେଉଁମାନେ ବିହାରରେ ବାସ କରନ୍ତି ସେମାନଙ୍କୁ ବିହାରୀ ଜାତି ଏହିପରି ବୁଝାଯାଏ । ଅର୍ଥାତ୍ ଯେଉଁମାନେ ଏକଭାଷା ବ୍ୟବହାର କରନ୍ତି ଓ ଏକ ପ୍ରକାର ଆଚାର ବ୍ୟବହାର କରନ୍ତି, ସେମାନଙ୍କୁ ପୃଥକ୍ ପୃଥକ୍ ଗୋଟିଏ ଗୋଟିଏ ଜାତି ବୁଝାଯାଇଥାଏ । ଏହି ପ୍ରକାରେ ଭାରତୀୟ ଜାତି ମଧ୍ୟରେ ଯେଉଁମାନେ ସମାଜରେ ଏକ ପ୍ରକାର କାର୍ଯ୍ୟ କରନ୍ତି, ସେମାନଙ୍କୁ ପୂର୍ବରୁ ଗୋଟିଏ ଗୋଟିଏ ପୃଥକ୍ ଜାତି ବୋଲି ବୁଝାଯାଇଛି । ସ୍ଥୂଳତଃ କହିବାକୁ ଗଲେ ଯେଉଁମାନେ ଏକ ଆକୃତି ବିଶିଷ୍ଟ କିନ୍ତୁ ଏକ ଦେଶ ଜନ୍ମା ଏକ ଭାଷା ଓ ବ୍ୟବହାରର ଅବଲମ୍ବୀ କିମ୍ବା ସମାଜ ନିୟମରେ ଏକ ପ୍ରକାର କର୍ତ୍ତବ୍ୟର ଅଧିକାରୀ, ସେମାନଙ୍କୁ ଗୋଟିଏ ଗୋଟିଏ ପୃଥକ୍ ଜାତି ବୁଝାଯାଇଅଛି । ସୁତରାଂ ଆମ ସମାଜରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର କହିଲେ କୌଣସି ଜନ୍ମଗତ ପାର୍ଥକ୍ୟ ବୁଝାଏ ନାହିଁ—ତାହା କେବଳ ମନୁଷ୍ୟ ଜାତି ମଧ୍ୟରୁ ଭାରତୀୟ ହିନ୍ଦୁ ଜାତି ମଧ୍ୟରେ ସାମାଜିକ କର୍ତ୍ତବ୍ୟାଧିକାରମୂଳକ ଏକ ଶ୍ରେଣୀ ବିଭାଗ ମାତ୍ର ।

ସନାତନ ଜାତିନୀତିର ଅପବ୍ୟବହାର ଅନ୍ୟତମ ନିଦର୍ଶନ, ବିଭିନ୍ନ ଜାତିର ଅନ୍ୟ[illegible]ରେ ଉଚ୍ଚନୀଚ ଭାବ । ଦୁଇଜଣ ବ୍ରାହ୍ମଣଙ୍କ ମଧ୍ୟରେ ଜଣେ ଅନ୍ୟ

ଜଣେକୁ ଖାଟ ମନେକରି ତାହା ସଙ୍ଗେ ସମ୍ବନ୍ଧ କରିବାକୁ କୁଣ୍ଠିତ । ପୁଣି ଏହି ଓଡ଼ିଶାରେ ଦୁଇ ଶ୍ରେଣୀର ବ୍ରାହ୍ମଣ ଅଛନ୍ତି । ଯଥା—ଯାଜପୁରୀ, ଦକ୍ଷିଣୀ । ସେମାନେ ପରସ୍ପରଠାରୁ ନିଜକୁ ପୃଥକ ମନେ କରନ୍ତି । କରଣ କରଣ ମଧ୍ୟରେ, ଖଣ୍ଡାଏତ ଖଣ୍ଡାଏତ ମଧ୍ୟରେ ଓ ଏହିପରି ସମସ୍ତ ଜାତି ମଧ୍ୟରେ ଉଚ୍ଚନୀଚ ଭାବ ଯୋଗୁଁ ତୁମୂଳ ବିବାଦ । ସ୍ଥୂଳତଃ, କୌଣସି ଜାତିର ପାଞ୍ଚଜଣ ଲୋକ ଏକତ୍ର ରହିଲେ ପାଞ୍ଚଟି ହାଣ୍ଡି କରନ୍ତି । କେଉଁ ଜାତି ବା ସମାଜ ଏଭଳି ଭେଦଭାବ ଯୋଗୁଁ କି କାର୍ଯ୍ୟ କରିପାରେ ?

ବର୍ତ୍ତମାନ ଉକ୍ତ ଆଭ୍ୟନ୍ତରୀଣ ପାର୍ଥକ୍ୟର ମୂଳ ଦେଖାଯାଉ । ଯେଉଁମାନେ ବ୍ରହ୍ମାଙ୍କ ମୁଖରୁ ବାହାରିଥିଲେ ସେମାନେ ବ୍ରାହ୍ମଣ; କିନ୍ତୁ ବିଭିନ୍ନ ଶ୍ରେଣୀର ବ୍ରାହ୍ମଣ ଆସିଲେ କେଉଁଠାରୁ ? ବ୍ରାହ୍ମଣେତର ସମସ୍ତ ଜାତିଙ୍କ ପକ୍ଷରେ ମଧ୍ୟ ସ୍ୱତଃ ଏହି ପ୍ରଶ୍ନ ଉଠେ । କାଳ ଗତିରେ ଆଚାର ଓ ବ୍ୟବହାରର ତାରତମ୍ୟ ବଶତଃ ଏଭଳି ଆଭ୍ୟନ୍ତରୀଣ ପାର୍ଥକ୍ୟ ଦେଖାଯାଏ । କୌଣସି ଜାତିର କେହି ଜଣେ ସ୍ୱଜାତିର କର୍ତ୍ତବ୍ୟରୁ ଯତ୍କିଞ୍ଚିତ୍ ଚ୍ୟୁତ ହେଲେ ସେହି ଜାତିର ଅନ୍ୟାନ୍ୟମାନେ ତାହାକୁ ନୀଚଦୃଷ୍ଟିରେ ଦେଖିବା ସ୍ୱାଭାବିକ । ଓଡ଼ିଶାରେ ଯାଜପୁର ବ୍ରାହ୍ମଣମାନଙ୍କର ପ୍ରଥମ ବସତି । ଏହିଠାରୁ ବ୍ରାହ୍ମଣମାନେ ସବୁଆଡ଼କୁ ଖେଳି ଯାଇଥିଲେ । ଯାଜପୁରୀ ଓ ଦକ୍ଷିଣୀ ବ୍ରାହ୍ମଣମାନେ ମୂଳରେ ଏକ । ତଥାପି ଦକ୍ଷିଣାଞ୍ଚଳର ବ୍ରାହ୍ମଣମାନେ ଯାଜପୁରୀ ବ୍ରାହ୍ମଣମାନଙ୍କୁ ନୀଚ ଦୃଷ୍ଟିରେ ଦେଖନ୍ତି କାହିଁକି ? କଥିତ ଅଛି, ଯାଜପୁରର ବୈତରଣୀ କୂଳରେ ସର୍ବପ୍ରଥମେ ଓଡ଼ିଶାର ସମସ୍ତ ବ୍ରାହ୍ମଣମାନେ ଏକତ୍ର ବାସ କରୁଥିଲେ । କାଳକ୍ରମେ ଅଭିଶାପ ଫଳରେ ବୈତରଣୀରେ ସୁରା ପ୍ରବାହିତ ହେଲା । ଫଳରେ ଯେଉଁମାନେ ସୁରାର ସଂସର୍ଗରେ ବାସ କରିବାକୁ ଘୃଣା କଲେ, ସେମାନେ ଦକ୍ଷିଣାଞ୍ଚଳକୁ ଚାଲିଗଲେ । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ, କେବଳ ଆଚାର ଓ ବ୍ୟବହାରର ପାର୍ଥକ୍ୟ ହେତୁ ଓଡ଼ିଶାରେ ବ୍ରାହ୍ମଣମାନଙ୍କ ମଧ୍ୟରେ ଦକ୍ଷିଣୀ ଓ ଯାଜପୁରୀ ଦୁଇଟି ପନ୍ଥାର ସୃଷ୍ଟି ଓ ଉକ୍ତ ଦୁଇପନ୍ଥୀ ପରସ୍ପରକୁ ପୃଥକ ମନେକରନ୍ତି ।

ଓଡ଼ିଶାରେ ପଣ୍ଡା ସଂଜ୍ଞାଧାରୀ କେତେକ ବ୍ରାହ୍ମଣ ଅଛନ୍ତି । ଦକ୍ଷିଣାଞ୍ଚଳୀୟ ବ୍ରାହ୍ମଣଙ୍କ ମଧ୍ୟରେ ସେମାନଙ୍କ ସ୍ଥାନ ଟିକେ ତଳେ । ସେମାନେ କେବଳ ଦେବସେବା ଆଦି କରନ୍ତି । କିନ୍ତୁ ଯାଜପୁର ଅଞ୍ଚଳରେ ସେମାନେ କୁଳୀନ ବ୍ରାହ୍ମଣ ବୋଲି ଗଣ୍ୟ ହୁଅନ୍ତି । 'ପଣ୍ଡା' ସଂଜ୍ଞାଧାରୀ ବ୍ରାହ୍ମଣମାନେ ସମାଜରେ ଏକ ଅଞ୍ଚଳରେ ଉଚ୍ଚ ଓ ଅନ୍ୟ ଅଞ୍ଚଳରେ ନୀଚ ବୋଲି ପରିଗଣିତ ହେବାର ମୂଳରେ ଦେଶଗତ ବ୍ୟବସ୍ଥାର ପାର୍ଥକ୍ୟ ବ୍ୟତୀତ ଅନ୍ୟ କିଛି ନାହିଁ । ପଣ୍ଡା ସଂଜ୍ଞାଧାରୀ

Digitized by srujanika@gmail.com

ବ୍ରାହ୍ମଣ ଓ କୁଳୀନ ବ୍ରାହ୍ମଣ ଦୁହେଁ ଏକ ବେଦ ଓ ଗୋତ୍ରର ଅନ୍ତର୍ଗତ । ଦୁହିଁଙ୍କ ପାଇଁ ଶାସ୍ତ୍ରୀୟ ବିଧାନମାନ ସମାନ । ଏପରି ସ୍ଥଳେ ସମସ୍ତ ପ୍ରେକ୍ଷିତ ବ୍ୟବହାର ପାର୍ଥକ୍ୟ ଛଡ଼ା ଏ ଦୁହିଁଙ୍କ ମଧ୍ୟରେ ଭେଦାଭେଦର ଅନ୍ୟ କି କାରଣ ଥାଇପାରେ ?

ଏ ସମ୍ପର୍କରେ ବହୁ ବେଶୀ ଦୃଷ୍ଟାନ୍ତ ଦିଆଯାଇପାରେ । ସେ ସବୁର ପୁନରାବୃତ୍ତି ଅନାବଶ୍ୟକ । ଯେଉଁମାନେ ନାନା ବାଧ୍ୟବାଧକତାର ବଶବର୍ତ୍ତୀ ହୋଇ ସ୍ୱଜାତିର ଆଜ୍ଞାବହ ରୂପେ କୌଣସି କାର୍ଯ୍ୟ କରନ୍ତି କିମ୍ବା ଜାତି ବ୍ୟବସ୍ଥାକୁ କଷ୍ଟର୍ ସ୍ୱୀକୃତ ହୁଅନ୍ତି ସେମାନେ ଓ ସେମାନଙ୍କ ବଂଶଧରମାନେ ଜାତି ମଧ୍ୟରେ ସମ୍ମାନସ୍ଥାନର ଅଧିକାରୀ ହୁଅନ୍ତି । ପକ୍ଷାନ୍ତରେ ଯେଉଁମାନେ ଅବସ୍ଥାର ସ୍ୱଚ୍ଛଳତା ହେତୁ ସଂପୂର୍ଣ୍ଣ ଭାବରେ ସ୍ୱାଧୀନ ଭାବରେ ରହିପାରି ଅଛନ୍ତି ଓ ସ୍ୱକୀୟ ଅନ୍ୟମାନଙ୍କ ଉପରେ କେବଳ ପ୍ରାଧାନ୍ୟ ସ୍ଥାପନ କରି ପାରିଥାନ୍ତି, ସେମାନେ କୁଳୀନ । ସମାଜରେ ପୂର୍ବ ପ୍ରାଧାନ୍ୟ ବା ଅହେତୁକ ଆତ୍ମଗୌରବ ମଧ୍ୟ ଭେଦାଭେଦର ଅନ୍ୟତମ କାରଣ । ଖଣ୍ଡାୟତଙ୍କ ମଧ୍ୟରେ ଯେଉଁମାନେ ଆଜି ଚୌଧୁରୀ ବା ମହାନାୟକ, କାଲି ଅବସ୍ଥାନ୍ତର ଘଟିଲେ ସେମାନେ ସାଧାରଣ ଖଣ୍ଡାୟତରେ ପରିଗଣିତ ହେବେ । ତଥା ଯେଉଁମାନେ ଶ୍ରୀକରଣ ବୋଲି ପରିଚିତ ସେମାନେ ସେହି ସାଧାରଣ କରଣ । 'ଶ୍ରୀ' କେବଳ ଅବସ୍ଥା ସଙ୍ଗେ ସଙ୍ଗେ କେବଳ ଗତାନୁଗତ ହୋଇଥାଏ । ମୋଟାମୋଟି ଦେଖିଲେ ବିଭିନ୍ନ ଜାତି ମଧ୍ୟରେ ଯେଉଁ ଉଚ୍ଚ ନୀଚସୂଚକ ସୋପାନ ଦେଖାଯାଏ, ତାହା କେବଳ କାଳୋପଯୋଗୀ ନାନା ପରିବର୍ତ୍ତନର ଫଳ ମାତ୍ର ।

ଅନେକ କହନ୍ତି, ଭେଦ ବହୁଳ ହିନ୍ଦୁ ସମାଜରେ ଐକ୍ୟଭାବ ଆସିବା ଅସମ୍ଭବ । କିନ୍ତୁ ଏହା ଅସମ୍ଭବ ବୋଲି ବୋଧହୁଏ ନାହିଁ । ଯଦି ସମାଜର ଅଧିକାଂଶ, ଅନ୍ତତଃ ଶିକ୍ଷିତ ବ୍ୟକ୍ତି, ପ୍ରତ୍ୟେକ ଜାତି ଗଠନର ମୂଳ ସମ୍ବନ୍ଧରେ ନିରପେକ୍ଷ ଭାବରେ ସାମାନ୍ୟ ଆଲୋଚନା କରନ୍ତି, ତାହାହେଲେ ସେମାନେ ଉପଯୁକ୍ତ ସିଦ୍ଧାନ୍ତରେ ଉପନୀତ ହୋଇ ସଙ୍ଗେ ସଙ୍ଗେ ସେମାନଙ୍କ ପ୍ରେରଣାର ଫଳରେ ସମାଜ–କୁସଂସ୍କାର ବର୍ଜିତ ହେବ । ସୌଭାଗ୍ୟକ୍ରମେ ସେହି ଶୁଭମୁହୂର୍ତ୍ତ କ୍ରମେ ଆସୁଛି ।

ଜାତିର ପ୍ରକୃତ ଅର୍ଥ ଦୃଷ୍ଟିରେ ବ୍ରାହ୍ମଣ, କରଣ, ଖଣ୍ଡାୟତ ଓ ଗୋପାଳ ପ୍ରଭୃତିଙ୍କ ମଧ୍ୟରେ ଆଦୌ ଜନ୍ମଗତ ପ୍ରଭେଦ ନାହିଁ । କେବଳ ଆଚାର ବ୍ୟବହାର ଓ କର୍ତ୍ତବ୍ୟର ଶ୍ରେଷ୍ଠତା ନିବନ୍ଧନ ଜଣେ ଅନ୍ୟ ଜଣଙ୍କର ନମସ୍ୟ । କିନ୍ତୁ ନିତାନ୍ତ ପରିତାପର କଥା, ଆଜି ଜାତ୍ୟାଭିମାନରେ ଜଣେ ଜଣକର ବର୍ଜ୍ୟ ହେଉଛି । ଏଭଳି ଭେଦଜ୍ଞାନର କାରଣ କେହି ସ୍ପଷ୍ଟ ବ୍ୟକ୍ତ କରନ୍ତି ନାହିଁ, ମଧ୍ୟ ବଂଶ ହେଲେହେଲା

Digitized by srujanika@gmail.com

କୌଣସି କାରଣ ନାହିଁ । କେବଳ ଅଜ୍ଞାନତାମୂଳକ କୁସଂସ୍କାର ବ୍ୟତୀତ ଏପ୍ରକାର ବିଦ୍ୱେଷର ଆଉ କିଛି କାରଣ ନାହିଁ ।

ବର୍ତ୍ତମାନ ପ୍ରଥମେ କରଣ ଜାତିର ମୂଳ ଆଲୋଚନା କରାଯାଉ । ଲୌକିକ ପ୍ରବାଦର ମତରେ କରଣମାନେ ଚିତ୍ରଗୁପ୍ତଙ୍କର ବଂଶଧର । ସେ ସେହି ପୁରାଣ ପ୍ରସିଦ୍ଧ ଯମଦୂତ । ପୁରାଣରେ ଦ୍ୱିତୀୟ ଚିତ୍ରଗୁପ୍ତ ନାହାନ୍ତି । ମନୁଷ୍ୟ ଜୀବନରେ ଯେଉଁ ପାପ ବା ପୁଣ୍ୟ କରେ ସେସବୁ ଲେଖି ରଖି ଧର୍ମରାଜ ଯମଙ୍କ ଆଗରେ ବିଚାର ପାଇଁ ଆଗତ କରିବା ଚିତ୍ରଗୁପ୍ତଙ୍କର କର୍ତ୍ତବ୍ୟ । ଚିତ୍ରଗୁପ୍ତ ଦୋଷଗୁଣ ଲେଖିବା ବିଷୟରେ କାହାର ନୁହନ୍ତି । କାରଣ ପକ୍ଷାପକ୍ଷ ହେବ ଧର୍ମରାଜ୍ୟ ସଂକ୍ରାନ୍ତ କାଗଜପତ୍ର ଲେଖିବା ଦ୍ୱାରା ଶାସନ କାର୍ଯ୍ୟ ବିଶୃଙ୍ଖଳ ହେବ ।

ଏ ସମ୍ପର୍କରେ ଆଧୁନିକ ହିନ୍ଦୁସମାଜର ଅବସ୍ଥା ପ୍ରତି ଦୃଷ୍ଟିପାତ ନ କଲେ ଆଲୋଚନା ଠିକ୍ ହେବ ନାହିଁ । କାରଣ ଆଜିକାଲି କୌଣସି ଜାତି ସ୍ୱବ୍ୟବସାୟରେ ସୀମାବଦ୍ଧ ନାହିଁ । ଦେଶର ପ୍ରତ୍ୟେକ ବ୍ୟକ୍ତି ପ୍ରତ୍ୟେକ କାର୍ଯ୍ୟ କରିପାରୁଛନ୍ତି ବା କରୁଛନ୍ତି । ସର୍ବପ୍ରଥମେ ଯେତେବେଳେ କରଣ ଜାତିର ସୃଷ୍ଟି ହେଲା, ସେତେବେଳର ସାମାଜିକ ଅବସ୍ଥା ପ୍ରତି ଦୃଷ୍ଟି ଦେଲେ ଏ ଜାତିର ମୂଳ ସହଜରେ ଜଣାଯିବ ।

ଓଡ଼ିଶାରେ କରଣମାନେ ପ୍ରଧାନତଃ ରାଜା ବା ଜମିଦାରଙ୍କ ନିକଟରେ ଅଥବା କଚେରୀ ପ୍ରଭୃତିରେ ଲେଖାପଢ଼ା କରନ୍ତି । ପୁରୁଷାନୁକ୍ରମେ ସେମାନେ ଏହି କାର୍ଯ୍ୟ କରୁଥିବା ହେତୁ ଏଦିଗରେ ସେମାନଙ୍କ ବିଶେଷ ପାଟବ ଦେଖାଯାଏ । ଓଡ଼ିଶାର ସମାଜରେ କରଣ ଜାତି କହିଲେ ସାଧାରଣତଃ ଲେଖା-ପଢ଼ି ବ୍ୟବସାୟଧାରୀ ଜାତିକୁ ବୁଝାଏ । ଓଡ଼ିଆ ଅକ୍ଷରର ଆକାର ଦୃଷ୍ଟିରେ ତାହାକୁ ଲେଖିବାକୁ ହେଲେ ଟିକିଏ ବେଶୀ ସମୟ ଲାଗେ । ସେଥିପାଇଁ କରଣମାନେ ଅଳ୍ପ ସମୟରେ ବେଶୀ ଲେଖି ପାରିବା ପାଇଁ ଏକ ପ୍ରକାରଛଟା ଅକ୍ଷରର ସୃଷ୍ଟି କରିଥିଲେ । ତାହାର ନାମ କରଣୀ । ଆଜିକାଲି ଅବଶ୍ୟ ସମସ୍ତ ଜାତିର ଲୋକେ ସମ୍ପୂର୍ଣ୍ଣ ଭାବରେ ଲେଖାପଢ଼ିର ଚର୍ଚ୍ଚା କଲେଣି । କିନ୍ତୁ ଏ ସମୟର ପୂର୍ବରୁ ଓ ଅଧିକାଂଶ ସ୍ଥଳରେ ଆଜି ମଧ୍ୟ ରାଜା ଜମିଦାରମାନେ କରଣମାନଙ୍କ ଲେଖାପଢ଼ିର ସାହାଯ୍ୟରେ ରାଜ୍ୟ ବା ଜମିଦାରୀ ଚଳାଉଥିବାର ଦେଖାଯାଏ । ସେମାନେ ଶାସନ କାର୍ଯ୍ୟର ନିମିତ୍ତ ସ୍ୱରୂପ ଲେଖାପଢ଼ି ସମ୍ପର୍କୀୟ କାର୍ଯ୍ୟମାନ କରୁଥିବା ହେତୁ ଯଥାର୍ଥରେ ସେମାନଙ୍କୁ କରଣ ନାମ ଦିଆଯାଇଅଛି । ଭାଷାର ବ୍ୟାକରଣରେ ଯାହାଦ୍ୱାରା କିଛି କାର୍ଯ୍ୟ କରାଯାଏ, ତାହାକୁ 'କରଣ କାରକ' ବୁଝାଯାଏ । 'କରଣ' ଭଳି ଶବ୍ଦ ସଂସ୍କୃତ 'କୃ' ଧାତୁରୁ ଉଦ୍ଭୂତ । ଆମ ଭାଷାରେ ମଧ୍ୟ ଲେଖା

Digitized by srujanika@gmail.com

ଲେଖୁ କରଣ, ଗ୍ରାମୁକରଣ ଅର୍ଥାତ୍ ପେଷ୍କାର, କୋଠକରଣ ଇତ୍ୟାଦ ଉକ୍ତ ଓ ଶବ୍ଦମାନ ପ୍ରଚଳିତ ଅଛି । ସୁତରାଂ କରଣ ଜାତିର କର୍ତ୍ତବ୍ୟ ବ୍ୟବସାୟ ସମ୍ବନ୍ଧରେ କୌଣସି ସନ୍ଦେହ କରାଯାଇ ନପାରେ ।

ଅବଶ୍ୟ କରଣ ସମାଜରେ ଦୁଇଟି ଶ୍ରେଣୀ ବିଭାଗ ଅଛି—ଶ୍ରେଷ୍ଠ କରଣ ଓ ସାଧାରଣ କରଣ । ପ୍ରଥମ ଶ୍ରେଣୀର କରଣମାନଙ୍କ ମଧ୍ୟରେ ଉପନୟନ ପ୍ରଥା ପ୍ରଚଳିତ ଅଛି । କିନ୍ତୁ ତାହା ବୋଲି ସେମାନଙ୍କୁ ଭିନ୍ନ ଜାତୀୟ କୁହାଯାଇ ନପାରେ । ଶେଷୋକ୍ତ ଶ୍ରେଣୀର କରଣମାନେ ଅର୍ଥାତ୍ ଉପନୀତ ହୋଇ ନଥିବା କରଣମାନେ, ଉପନୀତ ହେବା ପକ୍ଷେ କୌଣସି ବାଧା ନାହିଁ । କେବଳ ଯେଉଁମାନେ ନିଜ ବଂଶରେ ପୂର୍ବରୁ ଉପନୟନ ପ୍ରଥା ଚଳାଇ ରଖି ପାରିଛନ୍ତି, ସେମାନେ ସମସ୍ତ କରଣମାନଙ୍କ ସମଜାତି ହେଲେହେଁ ନିଜକୁ ଉପନୟନ ଆଶ୍ରିତ ହେତୁ ଅନ୍ୟ କରଣମାନଙ୍କ ଅପେକ୍ଷା ବେଶୀ ପ୍ରତିଷ୍ଠାବାନ୍ ମନେ କରନ୍ତି ।

'କରଣ' ଏହି ଜାତି ନାମ ସୃଷ୍ଟି ହେବା ପୂର୍ବରୁ ତ ପୁଣି ସମାଜରେ ଲେଖାପଢ଼ି କାର୍ଯ୍ୟ ହେଉଥିଲା । ରାଜାମାନେ ତ ରାଜ୍ୟ ଶାସନ କରୁଥିଲେ, ତାହା ହେଲେ ସେତେବେଳେ କେଉଁମାନେ ଲେଖାପଢ଼ି କାର୍ଯ୍ୟ କରୁଥିଲେ ? ଆମ୍ଭେମାନେ କହୁଁ, ସେତେବେଳେ ସମାଜରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଓ ଅପରାପର ଯେଉଁ ଜାତି ଥିଲେ ସେହି ଜାତିମାନଙ୍କ ମଧ୍ୟରୁ କେହି କେହି ରାଜ୍ୟ ଓ ସମାଜର ଲେଖାପଢ଼ି କାର୍ଯ୍ୟ ଚଳାଉଥିଲେ । ଯେଉଁମାନେ ଏହି କାର୍ଯ୍ୟ କରୁଥିଲେ, ସେମାନେ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଜାତିର ଲୋକ ବୋଲି କୁହାଯାଇ ନ ପାରେ । ବରଂ କେଶରୀବଂଶୀୟ ଓ ଅନ୍ୟାନ୍ୟ ରାଜବଂଶୀୟ କୌଣସି କୌଣସି ତାମ୍ରଶାସନରୁ ଅନୁମିତ ହୁଏ ଯେ, ବିଭିନ୍ନ ଜାତିର ସଂଖ୍ୟାଧିକ ବ୍ୟକ୍ତିମାନେ ଲେଖାପଢ଼ି କାର୍ଯ୍ୟ କରୁଥିଲେ । ଏପରି ସ୍ଥଳେ କରଣମାନଙ୍କୁ କେବଳ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ବା ଅନ୍ୟ କୌଣସି ନିର୍ଦ୍ଦିଷ୍ଟ ଜାତିର ବଂଶଧର ବୋଲି କହିବା ସମୀଚୀନ ନୁହେଁ । ସମସ୍ତ ଜାତିମାନଙ୍କ ମଧ୍ୟରୁ ଯେଉଁମାନେ ବ୍ୟବସାୟଗତ ଭାବରେ ପୁରୁଷାନୁକ୍ରମେ ଦେଶ ଓ ସମାଜର ଲେଖାପଢ଼ି କାର୍ଯ୍ୟ କରିଥିଲେ, ସେହିମାନେ ସମାଜରେ ଜାତିଗତର କଠୋରତା ପଡ଼ିଥିବା ପରେ ସ୍ୱତନ୍ତ୍ରଶ୍ରୀମାନଙ୍କ ଜାତି ରୂପେ ପରିଣତ ହେଲେ । ସେମାନେ ଆଦିମ ଚତୁର୍ଜାତି-ସମ୍ଭୂତ ଲେଖକ କିମ୍ବା ତତ୍ପର କରଣ ସଂଖ୍ୟାଧିକ ଏକ ନୂତନ ଜାତି ମାତ୍ର । ସମାଜରେ ଅନ୍ତର୍ଜାତୀୟ ସମ୍ମିଶ୍ରଣ ଅଜଣାଲି ପରି ନିଷିଦ୍ଧ ନଥିବା ସମୟରେ ଏ ଜାତିର ଅସ୍ତିତ୍ୱ ବିଦ୍ୟମାନ ଥିଲେହେଁ, ଦେଶରେ ଲେଖାପଢ଼ି କାର୍ଯ୍ୟର ଆବଶ୍ୟକତା ବୃଦ୍ଧି ପ୍ରାପ୍ତ ହେବା ଓ ଓଡ଼ିଆ ଭାଷାର ପୁଷ୍ଟି ବିକାଶ ହେବା ସଙ୍ଗେ ସଙ୍ଗେ ଆଜକୁ ଛଅ ଶତ ବା ସାତ ଶତ ବର୍ଷ ହେବ ଏ ଜାତିର ସ୍ୱତନ୍ତ୍ରତା ବଢ଼ିଅଛି ।

Digitized by srujanika@gmail.com

ସାମାଜିକମାନେ ଜାତିଗଣରେ କଠୋରତା ସ୍ଥାପନ କରିବାକୁ ଯାଇ କରଣ ଜାତିର ଉତ୍ପତ୍ତି ସମ୍ବନ୍ଧରେ ଯେ ଧର୍ମୀୟ କୌଶଳପୂର୍ଣ୍ଣ ତଥ୍ୟ ସମାଜକୁ ଦେଇଅଛନ୍ତି ତାହା ବର୍ତ୍ତମାନ ଦେଖାଯାଉ । ସେମାନେ ଚିତ୍ରଗୁପ୍ତଙ୍କୁ କରଣ ଜାତିର ପୂର୍ବପୁରୁଷ ବୋଲି ନିର୍ଦ୍ଦେଶ କରିଅଛନ୍ତି । ପ୍ରକୃତରେ ଚିତ୍ରଗୁପ୍ତ ବୋଲି କେହି ଜଣେ ଥିଲେ କି ? 'ଚିତ୍ରଗୁପ୍ତ' ଧର୍ମର ଅନ୍ୟନାମ । ଧର୍ମର ରୂପ ଗୁପ୍ତ ଓ ଗତି ବିଚିତ୍ର । ଧର୍ମ ମନୁଷ୍ୟର ପୂର୍ବ ଜନ୍ମକୃତ ପାପପୁଣ୍ୟ ବା ଦୋଷଗୁଣ ଦ୍ୱାରା ଇହ-ଜୀବନ ନିୟନ୍ତ୍ରଣ କରେ ଓ ଇହଜନ୍ମର ଦୋଷାଦୋଷ ଦ୍ୱାରା ପରଜନ୍ମ ପାଇଁ ବିଧାନ କରେ । ଆମ୍ଭେମାନେ ପାପ କି ପୁଣ୍ୟ କରୁ ତାହା ସ୍ଥିର କରିବାର ଅଧିକାର ଆମ୍ଭମାନଙ୍କର ନାହିଁ । ହୁଏତ ଆମ ଦୃଷ୍ଟିରେ ଯାହା ପୁଣ୍ୟ ତାହା ଧର୍ମତଃ ପାପ । ଧର୍ମ ଆମ୍ଭମାନଙ୍କର କେଉଁ କାର୍ଯ୍ୟକୁ କି ଦୃଷ୍ଟିରେ ଗ୍ରହଣ କରେ ତାହା ତାଙ୍କୁହିଁ ଜଣା । ସେ ସୁଗୁପ୍ତ ଭାବରେ ମନୁଷ୍ୟର ଦୋଷଗୁଣ ବା ପାପପୁଣ୍ୟର ଚିତ୍ରଣ କରେ । ସୁତରାଂ ଧର୍ମର ନାମାନ୍ତର ଚିତ୍ରଗୁପ୍ତ ହେବାର କଥା । ସାମାଜିକ ସମାଜ ଆଗରେ କରଣ ଜାତିର ମୌଳିକତା ସମ୍ବନ୍ଧରେ ଏକ ତଥ୍ୟ ରଖିବାକୁ ଯାଇ ଚିତ୍ରଗୁପ୍ତଙ୍କୁ ଏ ଜାତିର ପୂର୍ବପୁରୁଷ କହିବାର ଏକମାତ୍ର କାରଣ ଚିତ୍ରଗୁପ୍ତଙ୍କର ପୁରାଣ ଆରୋପିତ ଲିଖନ କାର୍ଯ୍ୟ ଏବଂ କରଣ ଜାତିର ବ୍ୟବସାୟର ସାମଞ୍ଜସ୍ୟ ।

ପୂର୍ବେ କୁହାଯାଇଅଛି, କରଣମାନେ ସମାଜର ଅନ୍ୟ ଜାତିଙ୍କଠାରୁ ପୃଥକ୍ ନୁହନ୍ତି । ସେମାନେ ଅନ୍ୟ ଜାତିଙ୍କର ଅନ୍ତର୍ଗତ ଏକ ସ୍ୱତନ୍ତ୍ର ବ୍ୟବସାୟୀଧାରା ମାତ୍ର । ତଥାପି ପରବର୍ତ୍ତୀ ଯୁଗର ସାମାଜିକମାନଙ୍କର ଅହେତୁକ ଭ୍ରାନ୍ତ ଦୃଷ୍ଟିରେ ପଡ଼ି ଅନ୍ୟ ଜାତିମାନେ କରଣମାନଙ୍କୁ ଓ କରଣମାନେ ଅନ୍ୟ ଜାତିମାନଙ୍କୁ ଆହାର ବ୍ୟବହାର ଓ ବ୍ୟବସାୟ ବ୍ୟତୀତ ଜନ୍ମଗତ ଭାବରେ ବିଭିନ୍ନ ମନେ କରିବା ଆଦୌ ଉଚିତ ନୁହେଁ । କରଣମାନେ ଯଦି ଚିତ୍ରଗୁପ୍ତ ନାମଧାରୀ ଧର୍ମ ବା ଭଗବାନଙ୍କର ପୁତ୍ର, ତାହାହେଲେ ବ୍ରାହ୍ମଣ କ୍ଷତ୍ରିୟାଦି ଅନ୍ୟାନ୍ୟ ଜନସ୍ରୋତ ସେହି ଭଗବାନଙ୍କର ପୁତ୍ର । ଏପରିସ୍ଥଳେ କେହି କାହାରିଠାରୁ ପୃଥକ୍ ହୋଇ ନ ପାରନ୍ତି ।

ଖଣ୍ଡାୟତ ଓଡ଼ିଶାର ଅନ୍ୟତମ ପ୍ରଧାନ ଜାତି । ପ୍ରକୃତରେ ଏ ଜାତିର ବୀରତ୍ୱ ଯୋଗୁ ଓଡ଼ିଶାର ଅତୀତ ଇତିହାସ ଗୌରବମୟ । ଏପରିକି ଡକ୍ଟର୍ ମହତାବଙ୍କ ରାଜପୁତନାର ଇତିହାସ ପରି ଓଡ଼ିଶା ସମ୍ପର୍କରେ ଖଣ୍ଡିଏ ଗ୍ରନ୍ଥ ଲିଖିତ ହେଲେ ତହିଁର ଅଧିକାଂଶ ପୃଷ୍ଠା ଏ ଜାତିର ପୂର୍ବ କୀର୍ତ୍ତି ଗାଥା ଦ୍ୱାରା ଅଳଙ୍କୃତ ହେବ । କିନ୍ତୁ ଏ ଜାତିର ପୂର୍ବ ପୁରୁଷ ରାଜ୍ୟ ଓ ରାଜା ପାଇଁ ଯୁଦ୍ଧକ୍ଷେତ୍ରେ ପ୍ରାଣବଳି ଦେଇ ଅଥବା ବୀରତ୍ୱମୂଳକ ପଦବୀ ଅର୍ଜନ କରି ମର୍ଯ୍ୟାଦାବାନ୍ ହୋଇଥିଲେ ସିନା ! ଆଜି କାଳଚକ୍ରର ଆବର୍ତ୍ତନାଧୀନରେ ଜାତିଗତ ଘୃଣାର୍ଥରେ 'ଚଷା' ବୋଲି ଆଖ୍ୟା ହେତୁ ହୋଇଛନ୍ତି ।

Digitized by srujanika@gmail.com

ପୂର୍ବେ କୁହାଯାଇଛି ଯେ ଯେଉଁମାନେ ଅନ୍ୟାନ୍ୟ ଜାତିକୁ ଘୃଣା କରନ୍ତି ସେମାନେ ଜାତି ନିୟମର ମର୍ମ ବୁଝି ନାହାନ୍ତି । ଖଣ୍ଡାୟତ ଜାତିର ମୂଳ ସମ୍ବନ୍ଧରେ ଆଲୋଚନା କଲେ ଆମ୍ଭମାନଙ୍କର ପୂର୍ବ ଉକ୍ତି ସ୍ପଷ୍ଟତର ହେବ । ରାଜ୍ୟଶାସନ ପାଇଁ ରାଜାଙ୍କର ଅନେକ ଗୁଡ଼ିଏ ଆବଶ୍ୟକତା ଥାଏ । ରାଜ୍ୟକୁ ଅନ୍ତଃଶତ୍ରୁ ଓ ବହିଃଶତ୍ରୁ ହସ୍ତରୁ ରକ୍ଷା କରିବା, ଶାସନର ବିଧି ପ୍ରଣୟନ କରିବା ଓ ଶାସନ କାର୍ଯ୍ୟ ପରିଚାଳନା କରିବା ଏହି ତିନିଗୋଟି କର୍ତ୍ତବ୍ୟ ତନ୍ମଧ୍ୟରେ ପ୍ରଧାନ । ପ୍ରାଚୀନ ହିନ୍ଦୁଶାସନ ପଦ୍ଧତି ଅନୁସାରେ ଏହି ତିନିଗୋଟି କାର୍ଯ୍ୟ ସମାଜର ସ୍ତମ୍ଭ । ଅନ୍ୟାନ୍ୟ ସ୍ୱାଧୀନ ରାଜ୍ୟ ପରି ଓଡ଼ିଶା ସାମ୍ରାଜ୍ୟରେ ମଧ୍ୟ ଏହି ତିନୋଟି କାର୍ଯ୍ୟ ପାଇଁ ବହୁତ ବିଧାନ ଥିଲା । ମନେହୁଏ, ଓଡ଼ିଶାରେ ବ୍ରାହ୍ମଣମାନେ ଶାସନର ବିଧି ପ୍ରଣୟନ କରିବା କାର୍ଯ୍ୟରେ ରାଜାଙ୍କର ସହାୟତା କରୁଥିଲେ । ଯେଉଁମାନେ 'କରଣ' ଆଖ୍ୟାଧାରୀ ସେମାନେ ରାଜା ଦେଶରେ ଶାସନ କାର୍ଯ୍ୟ ପରିଚାଳନା କରୁଥିଲେ ଓ ଯେଉଁମାନେ ଖାଣ୍ଡାୟତ ବୋଲି ପରିଚିତ ସେମାନେ ରାଜ୍ୟର ରକ୍ଷା କାର୍ଯ୍ୟରେ ନିୟୋଜିତ ହୋଇଥିଲେ । ସ୍ଥୂଳତଃ ପୂର୍ବେ ଆର୍ଯ୍ୟାବର୍ତ୍ତରେ କ୍ଷତ୍ରିୟମାନଙ୍କର କର୍ତ୍ତବ୍ୟ ଯାହାଥିଲା, ପରବର୍ତ୍ତୀ ଯୁଗର ସ୍ୱାଧୀନ ଓଡ଼ିଶାରେ ଖଣ୍ଡାୟତମାନଙ୍କର ଠିକ୍ ସେହି କର୍ତ୍ତବ୍ୟ ହେଲା । ଆଜି ଖଣ୍ଡାୟତ୍ ଜାତକୁ କ୍ଷତ୍ରିୟ ବୋଲି କହିଲେ ଅନ୍ୟ ଜାତୀୟ କେହି କେହି ପରିହାସ କରନ୍ତି । କିନ୍ତୁ ତଦ୍ରୂପ ପରିହାସ ଅସଙ୍ଗତ । ଆଜିକାଲି ଖଣ୍ଡାୟତଙ୍କ ପିତୃ ପିତା-ମହମାନେ କର୍ତ୍ତବ୍ୟ ଦୃଷ୍ଟିରେ ନିଶ୍ଚୟ କ୍ଷତ୍ରିୟ । ଆଜି ଖଣ୍ଡାୟତଙ୍କୁ ସେହି କ୍ଷତ୍ରିୟଙ୍କ ବଂଶଧର କହିଲେ କ୍ଷତି କ'ଣ ?

ଇତିହାସରେ 'କ୍ଷତ୍ରିୟ' ଗୋଟିଏ ଗୌରବାନ୍ୱିତ ଶବ୍ଦ । କ୍ଷତ୍ରିୟ ଜାତିର କାର୍ଯ୍ୟକଳାପ ଯୋଗେ ଏ ଶବ୍ଦଟି ମହାଗୌରବ ସୂଚକ ହୋଇଛି । ଯେଉଁମାନେ ଖଣ୍ଡାୟତଙ୍କୁ କ୍ଷତ୍ରିୟ କହିଲେ ପରିହାସ କରନ୍ତି, ସେମାନେ ଅଳ୍ପ ବୃତ୍ତୋପଜୀବୀ କେତେଗୁଡ଼ିଏ ଲୋକଙ୍କୁ ଏତେ ବଡ଼ ଗୌରବମୟ ନାମଟିଏ ଦେବାକୁ କୁଣ୍ଠିତ । କାରଣ ସେମାନେ ନିଜେ ମଧ୍ୟ ପୂର୍ବ ଜାତି-କର୍ତ୍ତବ୍ୟରେ ନିଯୁକ୍ତ ଥାଇ ପୂର୍ବ ଗୌରବରେ ମଣ୍ଡିତ ଥିଲେ ଖଣ୍ଡାୟତଙ୍କୁ କ୍ଷତ୍ରିୟ କହିବାକୁ ପାଶ୍ଚାତ୍ପଦ ହୁଅନ୍ତେ ନାହିଁ । କିନ୍ତୁ ନିଜେ ପୂର୍ବଗୌରବରେ ନଥିଲେ ପୂର୍ବ ଗୌରବଭ୍ରଷ୍ଟ ଅନ୍ୟକୁ ପୂର୍ବର ଗୌରବମୟ ନାମରେ ସ୍ୱାଧୀନ କରିବାକୁ ଇଚ୍ଛୁକ ନହେବା ମନୁଷ୍ୟର ପ୍ରକୃତି । ଆମ୍ଭେମାନେ କହୁଁ, ଆଧୁନିକ ଯୁଗର କର୍ତ୍ତବ୍ୟ ଦୃଷ୍ଟିରେ ଦେଶ ପ୍ରଚଳିତ ପ୍ରତ୍ୟେକ ଜାତିର ଲୋକଙ୍କୁ ପ୍ରତ୍ୟେକ ଜାତିରେ ସ୍ଥାନ ଦିଆଯାଇପାରେ, ମଧ୍ୟ ସମସ୍ତଙ୍କୁ କୃଷୀ ବା 'ଚଷା' କହିଲେ କୌଣସି ଅସଙ୍ଗତ ହେବ ନାହିଁ । ମାତ୍ର ପୂର୍ବ ଯୁଗର ଜାତି-କର୍ତ୍ତବ୍ୟକୁ ମାନଦଣ୍ଡ କରି ଆଲୋଚନା କଲେ ଆମ୍ଭେମାନେ ଖଣ୍ଡାୟତଙ୍କୁ କ୍ଷତ୍ରିୟ ବୋଲି କହିବାକୁ ବାଧ୍ୟ ।

Digitized by srujanika@gmail.com

ଖଣ୍ଡାୟତଙ୍କୁ କୃଷୀ ବା ଚଷା କହିଲେ ସେ ମଧ୍ୟ ଦୁଃଖ କରିବାର କୌଣସି କାରଣ ନାହିଁ । କୃଷି ଲୋକଙ୍କୁ ପାଳନକରେ ଓ ଖଣ୍ଡା ସେମାନଙ୍କୁ ରକ୍ଷା କରେ । ପେଟକୁ ଖାଇବାକୁ ନଥିଲେ ରକ୍ଷାକାରୀର କି ପ୍ରୟୋଜନ ? ରକ୍ଷାକାରୀ ନଥିଲେ, ଖାଇବାକୁ ଥାଇ ବାରମ୍ବାର ଦସ୍ୟୁଦ୍ୱାରା ଅପହୃତ ଓ ସର୍ବସ୍ୱାନ୍ତ ହେବାର କି ଫଳ ? ରାଜ୍ୟ ଓ ସମାଜ ପକ୍ଷରେ କୃଷି ଓ ଖଣ୍ଡା ଉଭୟ ସମାନ ଲୋଡ଼ା । ଖଣ୍ଡାଧାରୀ ରକ୍ଷଣକାରୀ ହେଲେ ଲଙ୍ଗଳଧାରୀ ପାଳନକାରୀ । ରକ୍ଷଣକାରୀର ପ୍ରୟୋଜନୀୟତା ନାହିଁ; ଯେହେତୁ ଏ ଦେଶ ପରହସ୍ତଗତ ହୋଇଅଛି । ଦେଶରେ ଯେଉଁମାନେ ଆମ୍ଭମାନଙ୍କ ପରି ଶିକ୍ଷିତ ସେମାନେ ସଦାବେଳେ ବାକ୍ୟବୀର । ବାକ୍ୟବୀରଙ୍କର ଆବଶ୍ୟକତା କେବେ କିଛି ନଥାଏ, ସେମାନେ କେବଳ ଉପରୋକ୍ତ ପାଳନକାରୀଙ୍କର ଗୋଟିଏ ଗୋଟିଏ ଅଜାଗଳସ୍ତନ । ସୁତରାଂ ଖଣ୍ଡାଧରା ନଥିବା ସମୟରେ ଖଣ୍ଡାୟତ୍ ଚଷା ନାମରେ ଗର୍ବ ନକରି ଦୁଃଖ କରିବା ଭୁଲ । ଖଣ୍ଡାୟତ୍ ଯଦି ନିଜ ଇଚ୍ଛାରେ ଖଣ୍ଡା ଛାଡ଼ି ଆଜି କେବଳ ଲଙ୍ଗଳର ଆଶ୍ରୟ ନେଇଥାନ୍ତା, ତାହାହେଲେ ତାହାର ପରିତାପର କାରଣ ଥାଆନ୍ତା । କିନ୍ତୁ ଦେଶର ଅବସ୍ଥା ପରିବର୍ତ୍ତନ ସଙ୍ଗେ ଆଜି ସମସ୍ତେ ବାଧ୍ୟ ହୋଇ ଲଙ୍ଗଳାଶ୍ରୟୀ ହୋଇଥିବା ସ୍ଥଳେ କୌଣସି ଜାତିର ଅଭିମାନର ମୂଳରେ କିଛି ନାହିଁ । କର୍ତ୍ତବ୍ୟ ଦୃଷ୍ଟିରେ ବ୍ରାହ୍ମଣ, କରଣ ଓ ଖଣ୍ଡାୟତ ସମସ୍ତେ ଯଥାକ୍ରମେ ପୂର୍ବେ ବ୍ରାହ୍ମଣ, କାୟସ୍ଥ ବା ରାଜକର୍ମଚାରୀ ଓ କ୍ଷତ୍ରିୟ ଥିଲେ । ଆଜି ସମସ୍ତେ କୃଷୀ ବା ଚଷା । ମିଶ୍ର, ଶର୍ମା, ବର୍ମା, ଛତା ଓ ପଇତା ଏସବୁ ସମ୍ପୂର୍ଣ୍ଣ ନିରର୍ଥକ ।

ଖଣ୍ଡାୟତ କିଏ ? ଆଜିକାଲି କେହି କେହି ଖଣ୍ଡାୟତ ଶବ୍ଦର ମୂଳ ଶବ୍ଦ 'ଖଣ୍ଡାୟୁଧ' କହନ୍ତି । କିନ୍ତୁ ପ୍ରକୃତରେ ଶବ୍ଦଟି ସଂସ୍କୃତଜ ନୁହେଁ । ଏହା ପଞ୍ଚାୟତ୍ ବା ସେବାୟତ୍ ପ୍ରଭୃତି ଶବ୍ଦ ପରି ମୁସଲମାନ ରାଜତ୍ୱ ସମୟରେ ପାରସ୍ୟ ଭାଷାର ସାହାଯ୍ୟରେ ଗଠିତ ଗୋଟିଏ ଲୌକିକ ଶବ୍ଦ । ପାରସ୍ୟ ଭାଷାରେ 'ୟତ୍' ଶବ୍ଦ ସମ୍ବନ୍ଧାର୍ଥ ସୂଚକ । ସୁତରାଂ ବୋଧହୁଏ ଯେଉଁମାନେ ଖଣ୍ଡାକୁ ବ୍ୟବସାୟ ସ୍ୱରୂପ ଗ୍ରହଣ କରିଥିଲେ, ସେହିମାନଙ୍କୁ ସମ୍ବନ୍ଧାର୍ଥରେ ଖଣ୍ଡାୟତ୍ ନାମ ଦିଆଯାଇଥିଲା ।

'ଖଣ୍ଡାୟତ' ଶବ୍ଦର ସୃଷ୍ଟି ପୂର୍ବରୁ ଖଣ୍ଡା ବ୍ୟବସାୟର ପ୍ରଚଳନ ନିଶ୍ଚୟ ଥିଲା । କାରଣ ସବୁ ଯୁଗରେ ଏ ବ୍ୟବସାୟର ଆବଶ୍ୟକତା ଥିଲା । ମୁସଲମାନ ରାଜତ୍ୱର ପୂର୍ବେ ଓ ପରେ ଯେଉଁମାନେ ଖଣ୍ଡା ବ୍ୟବସାୟ କରୁଥିଲେ ସେମାନେ କ'ଣ ଆଦିମ ଯୁଗରୁ ପୁରୁଷାନୁକ୍ରମେ ସେହି ବ୍ୟବସାୟ କରୁଥିଲେ କି ? ଏକ ଜାତିରେ ଜନ୍ମ ଗ୍ରହଣ କରି ଅନ୍ୟ ଜାତିର ବ୍ୟବସାୟ ଅବଲମ୍ବନ କରିବା ଯଦି ପରଶୁରାମଙ୍କ ପକ୍ଷେ ସମ୍ଭବ, ତାହାହେଲେ ଅନ୍ୟାନ୍ୟ ଜାତିର ଲୋକ ଖଣ୍ଡାକୁ

Digitized by srujanika@gmail.com

ସମ୍ମୁଖ କର ଖଣ୍ଡାୟତ ହୋଇ ନଥିବେ, ଏକଥା କିପରି କହିବା ? ମଧ୍ୟ ଇତିହାସରେ ଦେଖାଯାଏ, ଯୁଦ୍ଧ ସମୟରେ ଓ ଯୁଦ୍ଧ ପୂର୍ବରୁ ସୈନିକର କାର୍ଯ୍ୟ କରୁନଥିବା ଅନେକ ଲୋକ ଧନ ଆଶାରେ ସୈନିକ ହୁଅନ୍ତି । ମୋଗଲ ବାଦଶାହଙ୍କ ଅମଳରେ ଏହି ଭିନ୍ନ ଧର୍ମାବଲମ୍ବୀ ଭିନ୍ନ ଭାଷାବଲମ୍ବୀ ଭିନ୍ନ ଅଞ୍ଚଳବାସୀ ଅନେକ ଲୋକ ସୈନ୍ୟ ଶ୍ରେଣୀଭୁକ୍ତ ହୋଇଥିଲେ । ପୁଣି ଓଡ଼ିଶାର ସ୍ୱାଧୀନ ରାଜାମାନେ ଆବଶ୍ୟକ ମତେ ଯଥେଷ୍ଟ ସୈନିକ ପାଇପାରିବା ଉଦ୍ଦେଶ୍ୟରେ ଜାତି ଧର୍ମ ନିର୍ବିଶେଷରେ ଦେଶବାସୀ ସମସ୍ତେ ଯୁଦ୍ଧବିଦ୍ୟା ଶିକ୍ଷା କରିବା ପାଇଁ ଉପଦେଶ ଦେଉଥିଲେ । ଏପରି ସ୍ଥଳେ ଦେଶରେ ଯେଉଁମାନେ ଖଣ୍ଡାୟତ ଥିଲେ ଅର୍ଥାତ୍ ଯେଉଁମାନେ ଯୁଦ୍ଧକୁ ବ୍ୟବସାୟ କରିଥିଲେ, ସେମାନେ ଯେ କୌଣସି ଗୋଟିଏ ଜାତିର ଲୋକ ଥିଲେ, ଏହା କୁହାଯାଇ ନପାରେ । ମନେହୁଏ, ଖଣ୍ଡାୟତ୍ ବିଭିନ୍ନ ଜାତିର ଲୋକଙ୍କୁ ଘେନି ଗୋଟିଏ ଯୁଦ୍ଧ ବ୍ୟବସାୟୀ ଜାତି । ଏ ଜାତିର ମୌଳିକ ନାମ କ୍ଷତ୍ରିୟ । ଯେଉଁମାନେ ଖଣ୍ଡାୟତ ନୁହନ୍ତି, ସେମାନେ ନିଜନିଜ ଜାତିର କେତେକ ଏ ଜାତିରେ ମିଶିଛନ୍ତି ବୋଲି ବିଶ୍ୱାସ କରିବା ଉଚିତ ।

ଓଡ଼ିଶା ଇତିହାସରୁ ଗୋଟିଏ କଥା ଦ୍ୱାରା ଆମ୍ଭମାନଙ୍କ ମତ ସ୍ପଷ୍ଟ ହୁଏ । ଓଡ଼ିଶାର ବାଲେଶ୍ୱର ଓ ମେଦିନୀପୁର ଅଞ୍ଚଳରେ କରଣଙ୍କ ସଂଖ୍ୟା ଅପେକ୍ଷାକୃତ ବେଶି । ତଦ୍ରୂପ କଟକ ଓ ପୁରୀ ଜିଲ୍ଲାରେ ଖଣ୍ଡାୟତଙ୍କ ସଂଖ୍ୟା ବେଶୀ । ବୋଧହୁଏ ବାଲେଶ୍ୱର ଓ ମେଦିନୀପୁର ବହୁବର୍ଷ ବଙ୍ଗ ନବାବଙ୍କ ଶାସନାଧୀନରେ ରହିବା ଫଳରେ ଶାସନ ସଂପୃକ୍ତ ସୁଶୃଙ୍ଖଳ ଲେଖାପଢ଼ିର ଆବଶ୍ୟକତା ବଢ଼ିଥିବାରୁ ସେହି ସବୁ ଅଞ୍ଚଳରେ ପ୍ରୟୋଜନ ହେତୁ କରଣଙ୍କ ସଂଖ୍ୟା ବହୁଳ ହୋଇଥିଲା । ପକ୍ଷାନ୍ତରରେ କଟକ ଓ ପୁରୀ ୧୮୦୩ ଖ୍ରୀ : ଅ : ପର୍ଯ୍ୟନ୍ତ ସ୍ୱାଧୀନ ରହି ପ୍ରାୟ ସଦା ସର୍ବଦା ଯୁଦ୍ଧରେ ବ୍ୟାପୃତ ହେଉଥିବା ହେତୁ ସେହି ସ୍ଥାନମାନଙ୍କର ଖଣ୍ଡାୟତମାନଙ୍କ ସଂଖ୍ୟା ବହୁତ ବେଶୀ ଦେଖାଯାଏ ।

ଆଜିକାଲି ଓଡ଼ିଶାର କେତେକ ଅଞ୍ଚଳରେ ଏକ ସାମାଜିକ ଆନ୍ଦୋଳନ ଚାଲିଛି । ଗଉଡ଼ମାନେ ଉପବୀତ ଧାରଣ କରିବାରୁ ଖଣ୍ଡାୟତମାନେ ତୀବ୍ର ପ୍ରତିବାଦ କରୁଛନ୍ତି । ସ୍ଥାନେ ସ୍ଥାନେ ମାରପିଟ ଓ ମାଲିମକଦ୍ଦମା ହୋଇ ଉଭୟ ପକ୍ଷ ସର୍ବସ୍ୱାନ୍ତ ହେଉଛନ୍ତି । ଦେଶର ଶିକ୍ଷିତ ଲୋକେ ଏଥିପ୍ରତି ଦୃଷ୍ଟି ନ ଦେବା ଦୁଃଖର କଥା ଉଭୟ ଜାତିର ଅନ୍ତର୍ଗତ ଶିକ୍ଷିତ କେହି କେହି ପ୍ରଚ୍ଛନ୍ନ ଭାବରେ ଏ କାର୍ଯ୍ୟରେ ଆହୁତି ଦେବା ଆହୁରି ଲଜ୍ଜାର କଥା ।

ଖଣ୍ଡାୟତମାନେ ପଇତା ଗ୍ରହଣ କରି [illegible] ବା ସମାଜ ଭାଙ୍ଗିବାକୁ କ୍ଷୁଣ୍ଣବୋଧ କରୁଛନ୍ତି । ଫଳତଃ ସାମାଜିକ ପରମ୍ପରାରେ କେତେକ ଅସୁବିଧା [illegible] ଓ ଘଟିବା ସ୍ୱାଭାବିକ । [illegible] ଆମନ୍ତ୍ରିତ ପ୍ରଧାନ କାରଣ ।

Digitized by srujanika@gmail.com

ସମାଜର କେହି ଯଦି ତାହାର ଉଚ୍ଚସ୍ତରର କାର୍ଯ୍ୟ ନକରେ କିମ୍ବା ଉଚ୍ଚତରର କାର୍ଯ୍ୟ କରିବାକୁ ଅଯୋଗ୍ୟ ହୁଏ, ତାହାହେଲେ ତାକୁ ବାଧ କରାଯାଇ ପାରେ କି ? ବାଧ କରିବା ମଧ୍ୟ ଅନୁଚିତ । କାରଣ ତଦ୍ୱାରା ସମାଜର ମଙ୍ଗଳ ହେବନାହିଁ । ଜବରଦସ୍ତ ଜଣକର କାନ୍ଧରେ ଭାର ଦେବା ଯେପରି ଅନୁଚିତ, ସେହିପରି ମଧ୍ୟ ସ୍ୱାଧୀନ ବିକାଶର ପ୍ରତିରୋଧକ ।

ସମାଜରେ ଯଦି ଭାର କାନ୍ଧେଇବା ଓ ସବାର ବହିବା ପାଇଁ କେହି ନଥାନ୍ତେ, ତାହାହେଲେ ସମାଜ ଅଚଳ ହୋଇଯାନ୍ତା କି ? ଅବଶ୍ୟ ଅନ୍ୟ କୌଣସି ଉପାୟରେ ଏ କାର୍ଯ୍ୟମାନ ସମ୍ପନ୍ନ ହେଉଥାନ୍ତା, କିମ୍ବା ଭାର ବା ସବାରର ପ୍ରଚଳନ ନଥାଇ ଲୋକେ ଅନ୍ୟ ଉପାୟରେ ଗତାୟତ କରୁଥାନ୍ତେ ବା ଜିନିଷ-ପତ୍ର ନେବା ଆଣିବା କରୁଥାନ୍ତେ । ଆଜି ଗଉଡ଼ମାନେ ଏ କାର୍ଯ୍ୟସବୁ ନକଲେ ସମାଜ ଆବଶ୍ୟକତା ଦୃଷ୍ଟିରେ ଅବଶ୍ୟ ଅନ୍ୟମାର୍ଗ ନେବ । ତାହାର ଇଚ୍ଛା ବିରୁଦ୍ଧରେ ତାହାଦ୍ୱାରା କୌଣସି କାର୍ଯ୍ୟ କରାଇବା ଅସମ୍ଭବ ଓ ଅନୁଚିତ ଥିବା ସ୍ଥଳେ ବୃଥା ଗୃହବିବାଦରେ ମାତି ସର୍ବସ୍ୱାନ୍ତ ହେବା ନିଷ୍ପ୍ରୟୋଜନ ।

ଏ ସମ୍ପର୍କରେ ମନୁଷ୍ୟ ସ୍ୱଭାବକୁ ବିଚାରକୁ ନେବା ବିଧେୟ । ଜଣେ ଅନ୍ୟର ପ୍ରତିକୂଳାଚରଣ କଲେ ଦୁହିଁଙ୍କର ସଙ୍ଘର୍ଷ ହେବା ସ୍ୱାଭାବିକ । ଖଣ୍ଡାଏତ ଯଦି ଗଉଡ଼କୁ ଭାର ବହିବାକୁ ବାଧ କରିବାକୁ ବସେ ତାହାହେଲେ ଗଉଡ଼ ତାହା ନିଶ୍ଚୟ ନ କରିବାକୁ ଜିଦ୍ ଧରିବ । କେହି କୌଣସି କାର୍ଯ୍ୟ କରିବା ତାହାର ରୁଚି ଉପରେ ନିର୍ଭର କରେ । ବସ୍ତୁତଃ ପ୍ରାଚୀନ ଜାତି ନୀତି ଏହି ରୁଚି ଉପରେ ପ୍ରତିଷ୍ଠିତ ଥିଲା । ନଚେତ୍ ଜାତି ସୃଷ୍ଟି ପୂର୍ବରୁ ସମସ୍ତେ ସମସ୍ତ କାର୍ଯ୍ୟ କରିବାକୁ ଇଚ୍ଛୁକ ହୋଇଥିଲେ ସମାଜରେ ଜାତି ସୃଷ୍ଟି ଆଦୌ ହୋଇ ନଥାନ୍ତା । ଯେଉଁମାନେ ଗଉଡ଼ ଜାତିର କର୍ତ୍ତବ୍ୟ କାର୍ଯ୍ୟମାନ ଆଜିଯାଏ କରି ଆସୁଥିଲେ ସେମାନେ ଯଦି ଆଜି ସେ କାର୍ଯ୍ୟ କରିବାକୁ କୁଣ୍ଠିତ ହୁଅନ୍ତି, ସେମାନଙ୍କୁ ଛାଡ଼ି ଦିଆଯାଉ, ଦେଖାଯିବ କାଲି ସେହିମାନେ ଆବଶ୍ୟକତା ଅନୁଯାୟୀ ସେହି କାର୍ଯ୍ୟମାନ କରିବାକୁ ପ୍ରାର୍ଥୀ ହେବେ; କିମ୍ବା ସେହି କାର୍ଯ୍ୟମାନ କରିବାକୁ ଅନ୍ୟ ଜାତିର କେହି କେହି ଅଗ୍ରସର ହେବେ ।

ଆମ୍ଭ ଦେଶର ଗଉଡ଼ମାନେ ସାଧାରଣତଃ ବୁଦ୍ଧିହୀନ । ତାହା ବୋଲି ସେମାନଙ୍କ ଆଭିଜାତ୍ୟ ଆମ୍ଭମାନଙ୍କଠାରୁ ପୃଥକ୍ ବୋଲି ମନେ କରିବା ଭୁଲ । ସେମାନଙ୍କ ଜାତି କର୍ତ୍ତବ୍ୟରେ ବୁଦ୍ଧିର ଚାଳନା ନଥାଏ । ସେମାନେ ଖରାବର୍ଷା ସହି' ପଶୁ ଠେଙ୍ଗାଧରି ପଶୁ ପଛ ବୁଲନ୍ତି । ଫଳରେ ସେମାନଙ୍କ ବୁଦ୍ଧି ଶକ୍ତିର ବିକାଶ ବାଧାପ୍ରାପ୍ତ ହୋଇଥାଏ ।

Digitized by srujanika@gmail.com

ସମାଜରେ ଆବଶ୍ୟକତା ଦୃଷ୍ଟିରେ ଗଉଡ଼ ଜାତିର କର୍ତ୍ତବ୍ୟ ତୁଚ୍ଛ ନୁହେଁ । ହିନ୍ଦୁ ଯେଉଁ ଗୋମାତାର ପୂଜାକରେ, ଗଉଡ଼ ତା'ର ରକ୍ଷକ । ମହାରାଜ ଦିଲୀପ ଗଉଡ଼ର ଅନୁକରଣରେ ଗୋରକ୍ଷା କରି ପୁତ୍ରପ୍ରାପ୍ତ ହୋଇଥିଲେ । କୃଷି ଭାରତବର୍ଷର ମୌଳିକ ଅବଲମ୍ବନ । କୃଷିକର୍ମ ପାଇଁ ଗୋଜାତି ଏକାନ୍ତ ପ୍ରୟୋଜନୀୟ । ଦୁଗ୍ଧ ମନୁଷ୍ୟର ଜୀବନୀ ଶକ୍ତି । ସେଥିପାଇଁ ହିନ୍ଦୁମାନେ ଭଗବାନଙ୍କୁ ଗୋଜାତି ସହ ସଂଶ୍ଳିଷ୍ଟ କରିଅଛନ୍ତି । ହିନ୍ଦୁର କଳ୍ପନାରେ ଭଗବାନଙ୍କର ଏକ ଅଂଶ ବଳରାମ ଜଣେ ଆଦର୍ଶ କୃଷକ । ସେ କୃଷୋପଯୋଗୀ ବଳଦର ରକ୍ଷକ ଓ ଲଙ୍ଗଳ ତାଙ୍କର ଆୟୁଧ । ସେ ଲଙ୍ଗଳ ସାହାଯ୍ୟରେ ଶତ୍ରୁର ସଂହାର କରନ୍ତି; ଅର୍ଥାତ୍ କୃଷି ଦ୍ୱାରା ଜନତା ଓ ଦେଶର ଅଭାବ ରୂପ ଶତ୍ରୁକୁ ନଷ୍ଟ କରି ରାଜ୍ୟ ରକ୍ଷା କରନ୍ତି । ଭଗବାନଙ୍କର ଅନ୍ୟ ଏକ ଅଂଶ ଶ୍ରୀକୃଷ୍ଣ ଗାଈ ଚରାନ୍ତି । ସମାଜରେ ଗାଈ ଓ ବଳଦ ଉଭୟ ସମାନ ଲୋଡ଼ା ଓ ଗୋଟିକର ଅଭାବରେ ଅନ୍ୟଟିର ଅସ୍ତିତ୍ୱ ଅସମ୍ଭବ । ସୁତରାଂ କୃଷ୍ଣ ଓ ବଳରାମ ଦୁଇ ଭାଇ ବୋଲି କଳ୍ପିତ ହୋଇଛନ୍ତି । ସ୍ୱୟଂ ଭଗବାନଙ୍କଠାରେ ଯେଉଁ କର୍ମ ଆରୋପିତ ହୋଇଅଛି, ସେହି କର୍ମ ଯେଉଁ ଜାତିର ଜାତି-କର୍ତ୍ତବ୍ୟ, ତାହାକୁ ତୁଚ୍ଛ କରିବା କିମ୍ବା ଆର୍ଯ୍ୟ ଶ୍ରେଣୀର ବହିର୍ଭୂତ ବୋଲି ମନେ କରିବା ସମ୍ପୂର୍ଣ୍ଣ ଭ୍ରମ । ବୃଥାଭିମାନୀ ଜାତିର ଲୋକେ ଆଜି ଗଉଡ଼ଠାରେ ବୁଦ୍ଧିର ବିଚକ୍ଷଣତା ବା ବ୍ୟବହାରର ସର୍ବାଙ୍ଗୀନତା ନଦେଖି 'ଗଉଡ଼'ଟା ବୋଲି କହୁଥିଲେ ହେଁ ଜାତି-ସୃଷ୍ଟି ବେଳେ ସମସ୍ତ-ପ୍ରକାର କାର୍ଯ୍ୟ ପ୍ରତି ସମସ୍ତଙ୍କର ସମାନ ସ୍ନେହ ଥିଲା । ସୁତରାଂ ତଦାନୀନ୍ତନ ଆର୍ଯ୍ୟସମାଜ ଅନ୍ତର୍ଗତ କେତେକ ଲୋକ ସ୍ୱୟଂ ଭଗବାନଙ୍କ ପ୍ରତି ଆରୋପିତ ହୋଇଥିବା ଗୋ-ରକ୍ଷା କର୍ମକୁ ଗୌରବାବହ ମନେକରି କର୍ତ୍ତବ୍ୟ ସ୍ୱରୂପ ଗ୍ରହଣ କଲେ । ଗୋ+ଉଢ଼, ଅର୍ଥାତ୍ ଗୋରୁକୁ ବହନ କରିବା ହେତୁ 'ଗବୂଢ଼' ନାମର ଉତ୍ପତ୍ତି ହୋଇ କାଳକ୍ରମେ ଲୋକମୁଖରେ 'ଗଉଡ଼' ଏହି ଜାତି ନାମର ସୃଷ୍ଟି ହୋଇଅଛି ।

ଶ୍ରୀକୃଷ୍ଣ କ୍ଷତ୍ରିୟ ବସୁଦେବଙ୍କ ଗୃହରେ ଜନ୍ମଲାଭ କରି, ଗଉଡ଼ ନନ୍ଦଙ୍କ ଘରେ ପାଳିତ ହୋଇ, ଗଉଡ଼ର କର୍ତ୍ତବ୍ୟ ଗୋରକ୍ଷା କରି, କେତେକାଳ ଗଉଡ଼ ବୋଲି ପରିଚିତ ହୋଇ, ପରିଶେଷରେ କ୍ଷତ୍ରିୟୋଚିତ କାର୍ଯ୍ୟମାନ କରି 'କ୍ଷତ୍ରିୟ' ଆଖ୍ୟା ଗ୍ରହଣ କଲେ । ଏଥିରୁ ସ୍ପଷ୍ଟ ଜଣାଯାଏ, ଜାତି ଭାଗ ସମ୍ପର୍କରେ ସାମାଜିକ କଠୋରତାର ଆରମ୍ଭ ପୂର୍ବରୁ କ୍ଷତ୍ରିୟ, ଗଉଡ଼ ଓ ଗଉଡ଼, କ୍ଷତ୍ରିୟ ହୋଇ ପାରୁଥିଲା । କର୍ମ କେବଳ ପରିମାପକ ଥିଲା । ଆଜି ଯେଉଁମାନେ ଗଉଡ଼, ସେମାନଙ୍କ ମଧ୍ୟରୁ କାହାରି ପୂର୍ବପୁରୁଷ କେବେ ଅଭିଜାତସ୍ତ ନଥିଲେ ବୋଲି କେହି କହିପାରିବେ କି ?

Digitized by srujanika@gmail.com

ଗଉଡ଼ମାନେ ପ୍ରକୃତରେ ଆର୍ଯ୍ୟ ଶ୍ରେଣୀର ଅନ୍ତର୍ଗତ । ସେମାନେ କେବଳ ପଇତା ପକାଇଲେ ବ୍ରାହ୍ମଣ ବା କ୍ଷତ୍ରିୟ ହୋଇଯିବେ ନାହିଁ । ମାତ୍ର ସେମାନଙ୍କ ମଧ୍ୟରୁ କେହି କେହି ବ୍ରାହ୍ମଣତ୍ୱ ଦେଖାଇ ପାରନ୍ତି, ଆମ୍ଭେମାନେ ତାହାଙ୍କୁ ବ୍ରାହ୍ମଣ ବୋଲି କହିବାକୁ ବାଧ୍ୟ । କେବଳ ଟୋପା ବା ପଇତାରେ ବ୍ରାହ୍ମଣତ୍ୱ ବା କ୍ଷତ୍ରିୟତ୍ୱ ନଥାଏ । ପଇତା ପକାଇଲେ ପବିତ୍ରତା ବଢ଼ିଯିବ ବୋଲି ଗଉଡ଼ଙ୍କର ଯଦି ବିଶ୍ୱାସ ଥାଏ, ତାହାହେଲେ ସେମାନେ ପକାନ୍ତୁ—ତାହାର ବାଧା ଦେବା ଅନୁଚିତ ।

ଆଜି ସମାଜରେ ଯେଉଁ ଜାତିବିଦ୍ୱେଷ ଭାରତକୁ ଛିନ୍ନଭିନ୍ନ କରୁଅଛି, ତାହାର ମୂଳ ଆମ୍ଭମାନଙ୍କର ଅବିବେକତା । ଆମ୍ଭମାନଙ୍କ ଶାସ୍ତ୍ର ଓ ପୁରାଣ ସବୁ ସତ୍ୟ; କିନ୍ତୁ ଆମ୍ଭେମାନେ ସେଗୁଡ଼ିକର ପ୍ରକୃତ ଅର୍ଥ ନବୁଝି ଅଛୁ । ଯେଉଁମାନେ ଶାସ୍ତ୍ର ଓ ପୁରାଣର ଦୋହାଇ ଦେଇ ବୃଥାଭିମାନରେ ପରସ୍ପରକୁ ଘୃଣା କରନ୍ତି, ସେମାନେ ସେହି ପୁରାଣ ଶାସ୍ତ୍ର ଆଦିକୁ ସ୍ୱତନ୍ତ୍ର ଭାବରେ ବୁଝନ୍ତୁ, ଦେଖିବେ ଆମ ସମାଜର ସବୁ ଜାତିର ଲୋକେ ଏକ ଜାତିର ଅନ୍ତର୍ଗତ ଓ ପ୍ରକୃତତଃ ଭେଦଭାବ ଶୂନ୍ୟ । ଈଶ୍ୱର କରନ୍ତୁ, ଶୀଘ୍ର ଆମ୍ଭମାନଙ୍କର ସେହି ସୁଚିନ୍ତା ଆସୁ ।

—*—

Digitized by srujanika@gmail.com

# କେଶରୀ ବଂଶ

(ଗତ ୧୯୨୧ ମସିହାରେ ମୁଁ "ଉତ୍କଳରେ ବୌଦ୍ଧ ଯୁଗର ଇତିହାସ" ଶୀର୍ଷକ ଗୋଟିଏ ପ୍ରବନ୍ଧ ଲେଖିଥିଲି । ପ୍ରବନ୍ଧଟି "ଉତ୍କଳ-ସାହିତ୍ୟ" ପତ୍ରିକାରେ ପ୍ରକାଶିତ ହୋଇଥିଲା । ପ୍ରବନ୍ଧୋକ୍ତ ବିଷୟର ଆଲୋଚନା ପ୍ରସଙ୍ଗରେ ମନେ ହେଲା ଯେ ଉତ୍କଳର ଧର୍ମ-ଇତିହାସରେ ଶୈବ ବା ଶାକ୍ତ ଧର୍ମ ବୌଦ୍ଧ ଧର୍ମର ଠିକ୍ ପରବର୍ତ୍ତୀ । ସୁତରାଂ ବୌଦ୍ଧଯୁଗର ଇତିହାସ ଲେଖିସାରି ଶୈବ ଧର୍ମର ପୋଷକ ଓ ପ୍ରତିଷ୍ଠାତା କେଶରୀ ବଂଶର ଇତିବୃତ୍ତ ଜାଣିବା ପାଇଁ ମନସ୍ଥ କଲି । କେଶରୀ ବଂଶର ଇତିହାସ ସମ୍ବନ୍ଧରେ ମୋହର ଆଲୋଚନାର ଅତି ଅଳ୍ପ ଅଂଶ ତତ୍କାଳୀନ "ସତ୍ୟବାଦୀ" ପତ୍ରିକାରେ ପ୍ରକାଶିତ ହୋଇଥିଲା । ମାତ୍ର ହଠାତ୍ ମୋର କର୍ମକ୍ଷେତ୍ର ପରିବର୍ତ୍ତିତ ଓ ଶେଷୋକ୍ତ ପତ୍ରିକାର ପ୍ରକାଶ ବାଧାପ୍ରାପ୍ତ ହେବାରୁ ମୋହର ଆଲୋଚନା ସମ୍ପୂର୍ଣ୍ଣ ହୋଇପାରି ନଥିଲା ।

ଜଗଦୀଶ୍ୱରଙ୍କର କରୁଣାବଳରେ ଆଜି ପୁଣି ଏହି ଇତିହାସପ୍ରସିଦ୍ଧ ରାଜବଂଶର ପ୍ରସଙ୍ଗ କିଞ୍ଚିତ୍ ଆଲୋଚନା କରିବା ପାଇଁ ପ୍ରବୃତ୍ତ ହୋଇଅଛି । ପୂର୍ବୋକ୍ତ "ସତ୍ୟବାଦୀ" ପତ୍ରିକା କଦାଚିତ୍ ସମସ୍ତ ପାଠକ-ପାଠିକାଙ୍କର ହସ୍ତଗତ ହୋଇନଥିବ । ହୋଇଥିଲେହେଁ ତତ୍ପ୍ରକାଶିତ ମୋହର କେଶରୀ ବଂଶ ସମ୍ବନ୍ଧୀୟ ଅତ୍ୟଳ୍ପ ଆଲୋଚନା ଅବଶ୍ୟ ବିସ୍ମୃତ ହୋଇ ଯାଇଥିବ । ଏହି ହେତୁରୁ ମାର୍ଜିତ ଆକାରରେ "କେଶରୀ ବଂଶ" ଶୀର୍ଷକ ପ୍ରବନ୍ଧର ନୂତନ ଆରମ୍ଭ କଲି । ପାଠକ ପାଠିକା ପୁନରାବୃତ୍ତି ଦୋଷ ମାର୍ଜନା କରିବେ ।

ସର୍ବାଦୌ ପ୍ରବନ୍ଧର ପ୍ରଥମ ଅଧ୍ୟାୟରେ କେଶରୀବଂଶୀୟ ରାଜାମାନଙ୍କ ପ୍ରଦତ୍ତ କେତେକ ତାମ୍ରଶାସନ ପ୍ରାଥମିକ ପାଠକମାନଙ୍କ ମତାମତ ସହ ଉଦ୍ଧାର କରିବି । ଆଲୋଚନାର ସୁବିଧା ସକାଶେ ଶାସନଗୁଡ଼ିକୁ ଗୋଟିଏ ଗୋଟିଏ ବର୍ଣ୍ଣଦ୍ୱାରା ଚିହ୍ନିତ କରିବି । ଅଳ୍ପଶିକ୍ଷିତ ଖୋଦନକାରୀମାନଙ୍କ ଦ୍ୱାରା ଶାସନ ସବୁ ଖୋଦିତ ହୋଇଥିବା ଯୋଗୁଁ ତହିଁରେ କେତେକ ଭାଷାଗତ ଅଶୁଦ୍ଧି ପରିଲକ୍ଷିତ ହୁଏ । ତଥାପି ସେ ସବୁର ସାରାଂଶ ନିଃସନ୍ଦେହ ରୂପେ ଜଣାପଡ଼େ । )

Digitized by srujanika@gmail.com

# ପ୍ରଥମ ଅଧ୍ୟାୟ

## ( ୧ )

### * ପଥମ ମହାଭବ ଗୁପ୍ତଙ୍କ ବକଟେଜ୍ଜ ଶାସନ ।

ଓଁ ସ୍ୱସ୍ତି । ସୁବର୍ଣ୍ଣପୁର ସମାବାସିତଃ ଶ୍ରୀମତ ବିଜୟସ୍କନ୍ଧ ବାରାତ୍ ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ଶ୍ରୀ ଶିବଗୁପ୍ତ ଦେବ ପାଦାନୁଧ୍ୟାତ ପରମମାହେଶ୍ୱର ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ସୋମକୁଳତିଳକ ତ୍ରିକଳିଙ୍ଗାଧିପ ଶ୍ରୀ ମହାଭବଗୁପ୍ତ ରାଜଦେବଃ କୁଶଳୀ ଲୁପତ୍ତନ ଖଣ୍ଡୀୟ ବକଟେଜ୍ଜଲୀ ଗ୍ରାମେ ବ୍ରାହ୍ମଣାନ୍ ସମ୍ପୂଜ୍ୟ ତତ୍ପ୍ରଧାନବାସିକୁଟୁମ୍ବିନସ୍ତଦ୍ବିଷୟୀୟ ଯଥା କାଳାଧ୍ୟାସିନଃ ସମାହର୍ତ୍ତୃ ସନ୍ନିଧାତୃ ଦାଣ୍ଡପାଶି ପିଶୁନବେତ୍ରିକାବରୋଧଜନ ରାଜବଲ୍ଲଭାଦ ଅନ୍ୟାଂଶ୍ଚ ଚାଟଭଟଜାତୀୟାନ୍ ସମାଜ୍ଞାପୟତି ବିଦିତମସ୍ତୁ ଭବତାଂ ଯଥାସ୍ମାଭିରୟଂ ପ୍ରତୀତଚତୁର୍ଧିଃ ସେ ପନିଧିଃ ସର୍ବବାଧାବିବର୍ଜିତଃ ସଗର୍ତ୍ତୋଷରଃ ସାମ୍ରମଧୂକଃ ସଜଲସ୍ଥଳଃ ସର୍ବୋପରି କରଦାନସହିତଃ ପ୍ରତିଷିଦ୍ଧଚରଣାୟ ରଢ଼ାପ୍ରମୁକ୍ତି କନ୍ଦବବନର୍ଗତାୟ ମେରଣ୍ଡବାପ୍ରବ୍ୟାୟ ଭଟ୍ଟପୁତ୍ରକାଣ୍ଡରୂପନାମ୍ନେ ଭଟ୍ଟପୁତ୍ର ଶ୍ରୀବତ୍ସସୂନବେ ହଲ୍ଲନଧାରାପୁରଃସରଂ ଆଚନ୍ଦ୍ରତାରକାର୍କକ୍ଷିତିସମକାଳୋପଭୋଗାର୍ଥଂ ମାତାପିତ୍ରୋରାତ୍ମନଶ୍ଚ ପୁଣ୍ୟଯଶୋଭିବୃଦ୍ଧୟେ ବିଶୁଦ୍ଧ ସଂହାତ୍ୟାଂ ତାମ୍ରଶାସନେନା-କରୀକୃତ୍ୟ ପ୍ରତିପାଦିତ ଇତ୍ୟବଗତ୍ୟ ସମୁଚିତଭୋଗଭାଗକରହିରଣ୍ୟାଦିକ ମୁପନୟଦ୍ଭି-ର୍ଭବଦ୍ଭିଃ ସୁଖେନ ପ୍ରତିବସ୍ତବ୍ୟମିତି । ଭାବିଭିଶ୍ଚ ନୃପତିଭିର୍ଦତ୍ତିରିୟମସ୍ମଦୀୟଧର୍ମ-ଗୌରବାଦସ୍ମଦନୁରୋଧାଚ୍ଚ ସ୍ୱଦତ୍ତିରିବାନୁପାଲନୀୟା । ତଥାଚୋକ୍ତଂ ଧର୍ମଶାସ୍ତ୍ରେ । ବହୁଭିର୍ବସୁଧା ଦତ୍ତା ରାଜଭିଃ ସଗରାଦିଭିଃ । ଯସ୍ୟ ଯସ୍ୟ ଯଦାଭୂମିସ୍ତସ୍ୟ ତସ୍ୟ ତଦା ଫଳଂ । ମାଭୂଦଫଳଶଙ୍କା ବଃ ପରଦତ୍ତେତି ପାର୍ଥିବାଃ । ସ୍ୱଦାନାତ୍ଫଳମାନନ୍ତ୍ୟଂ ପରଦତ୍ତାନୁପାଲନେ । ଷଷ୍ଟିଂବର୍ଷ ସହସ୍ରାଣି ସ୍ୱର୍ଗେ ମୋଦତିଭୂମିଦଃ । ଆକ୍ଷେପ୍ତା ଚାନୁମନ୍ତା ଚ ତାନ୍ୟେବ ନରକେ ବସେତ୍ । ଅଗ୍ନେରପତ୍ୟଂ ପ୍ରଥମଂ ସୁବର୍ଣ୍ଣ ଭୂର୍ବୈଷ୍ଣବୀ ସୂର୍ଯ୍ୟାତ୍ମଜଶ୍ଚ ଗାବଃ । ଯଃ କାଞ୍ଚନଂ ଗାଂଚ ମହୀଞ୍ଚ ଦଦ୍ୟାଦତ୍ତାସ୍ତ୍ରୟସ୍ତେନ ଭବନ୍ତି ଲୋକାଃ । ଆସ୍ଫୋଟୟନ୍ତି ପିତରଃ ପ୍ରବଲ୍ଗୟନ୍ତି ପିତାମହାଃ । ଭୂମିଦାତା କୁଲେ ଜାତଃ ସନସ୍ତ୍ରାତା ଭବିଷ୍ୟତି । ଭୂମିଂ ଯଃ ପ୍ରତିଗୃହ୍ଣାତି ଯଶ୍ଚ ଭୂମିଂ ପ୍ରୟଚ୍ଛତି । ଉଭୌ ତୌ ପୁଣ୍ୟକର୍ମାଣୌ ନିୟତଂ ସ୍ୱର୍ଗଗାମିନୌ । ତଡ଼ାଗାନାଂ ସହସ୍ରାଣି ବାଜପେୟଶତାନିଚ । ଗବାଂ କୋଟି ପ୍ରଦାନେନ ଭୂମିହର୍ତ୍ତା ନ ଶୁଧ୍ୟତି । ହରତେ ହାରୟତେ ଯସ୍ତୁ ମନ୍ଦବୁଦ୍ଧିସ୍ତମୋବୃତଃ । ସ ବଦ୍ଧୋ ବାରୁଣୈଃ ପାଶୈସ୍ତିର୍ଯ୍ୟଗ୍ୟୋନିଂ ଚ ଗଚ୍ଛତି । ସ୍ୱଦତ୍ତାଂ ପରଦତ୍ତାଂ ବା ଯୋହରେତ ବସୁନ୍ଧରାଂ । ସବିଷ୍ଠାୟାଂ କୃମିର୍ଭୂତ୍ୱା ପଚ୍ୟତେ ପିତୃଭିଃ ସହ । ଆଦିତ୍ୟୋ ବରୁଣୋ ବିଷ୍ଣୁ ର୍ବ୍ରହ୍ମା ସୋମୋ

Digitized by srujanika@gmail.com

ହୁତାଶନଃ । ଶୂଳପାଣିସ୍ତୁ ଭଗବାଃ (ଭଗବାନ) ଅଭିନନ୍ଦନ୍ତ ଭୂମିଦଂ । ସାମାନ୍ୟୋଽୟଂ ଧର୍ମସେତୁ ର୍ନୃପାଣାଂ କାଳେ କାଳେ ପାଳନୀୟୋ ଭବଦ୍ଭିଃ । ସର୍ବାନେତାନ୍ ଭାବିନୋ ଭୂପତୀନ୍ଦ୍ରାନ୍ ଭୂୟୋ ଭୂୟୋ ଯାଚତେଂ ରାମଚନ୍ଦ୍ରଃ ଇତିକମଳଦଳାମ୍ବୁବିନ୍ଦୁଲୋଳାଂ ଶ୍ରିୟମନୁଚିନ୍ତ୍ୟ ମନୁଷ୍ୟ ଜୀବିତାନ୍ଚ । ସକଳମିଦ-ମୁଦାହୃତାନ୍ଚ ବୁଦ୍ଧାନହି ପୁରୁଷୈଃ ପରକୀର୍ତ୍ତୟୋ ବିଲୋପ୍ୟାଃ । ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ଶ୍ରୀଜନମେଜୟଦେବସ୍ୟ ବିଜୟରାଜ୍ୟେ ସମ୍ବତ୍ସରେ ତୃତୀୟେ ଶ୍ରାବଣ ମାସ ସିତପକ୍ଷପଞ୍ଚମ୍ୟାଂ ଯଥାଙ୍କତୋ–ସମ୍ବତ୍ ୩ ଶ୍ରାବଣଶୁ-ଦି ୫ । ଲିଖିତମିଦଂ ଶାସନଂ ମହାସାନ୍ଧିବିଗ୍ରହି ପ୍ରତିବଦ୍ଧକାୟସ୍ଥ-ତୋଇଘୋଷେଣ ବଲ୍ଲଘୋଷ-ସୁତେନ ସଂଗ୍ରାମେନ ଉତ୍କୀର୍ଣ୍ଣଂ ଶାସନମତଃ ରସ୍ୟ ଓଝାସୁତେନ । ମଙ୍ଗଳଂ ମହାଶ୍ରୀଃ ।

ଏହିଶାସନ ସମ୍ବନ୍ଧରେ ଶ୍ରୀଯୁକ୍ତ ବିଜୟଚନ୍ଦ୍ର ମଜୁମଦାର ବି. ଏ.,ବି. ଏଲ୍. ମହାଶୟ ନିମ୍ନୋକ୍ତ ମତାମତ ଲେଖିଅଛନ୍ତି ।

ଏହି ଶାସନ ସମ୍ବଲପୁର ଜିଲ୍ଲା ଅନ୍ତଃପାତୀ ସୋନପୁର ରାଜ୍ୟରେ ଆବିଷ୍କୃତ ହୋଇଥିଲା । ଏଥିରେ ତିନି ଖଣ୍ଡି ତାମ୍ରପତ୍ର ଥିଲା । ପତ୍ରଗୁଡ଼ିକର ଉଭୟ ପ୍ରାନ୍ତ ମଧ୍ୟ-ଭାଗଠାରୁ ଅପେକ୍ଷାକୃତ ସଂକୀର୍ଣ୍ଣ ଥିଲା । ସେଥିରେ ବାମ ପ୍ରାନ୍ତ ଅଡ଼କୁ ଗୋଟିଏ ରନ୍ଧ୍ର ଥିଲା । ଏହି ରନ୍ଧ୍ର ମଧ୍ୟରେ ଏକ ତମ୍ବାମୁଦିଆ ପ୍ରବେଶ କରାଇ ପତ୍ରଗୁଡ଼ିକ ଗୁନ୍ଥା ଯାଇଥିଲା । ମୁଦିଆର ଯୋଡ଼ସ୍ଥାନରେ ଏକ ମୋହର ଥିଲା । ମୋହରର କେନ୍ଦ୍ରଭାଗରେ ତମ୍ବା କଣ୍ଟାଟିଏ ମାରି ତାହାକୁ ମୁଦିଆ ସହିତ ସଂଲଗ୍ନ କରାଯାଇଥିଲା । ମୋହରରେ ଗୋଟିଏ 'ଗଜଲକ୍ଷ୍ମୀ' ମୂର୍ତ୍ତି ଥିଲା । ମୂର୍ତ୍ତିର ବାମପାର୍ଶ୍ୱସ୍ଥ ହାତୀ ଓ ଚନ୍ଦ୍ରସନ୍ନିହିତ ଲିଜେଣ୍ଡ୍ ଉଭୟେ ଲିଭିଯାଇଥିଲେ । ତଥାପି ଲିଜେଣ୍ଡର ସ୍ଥାନରେ ଯେଉଁ ଚିହ୍ନମାତ୍ର ଅବଶିଷ୍ଟ ଥିଲା, ସେଥିରୁ ଅନୁମିତ ହୁଏ ଯେ, ସେଠାରେ "ଜନମେଜୟରାଜସ୍ୟ" ଏହି କଥା ଖୋଦିତ ହୋଇଥିବ ।

ଏହି ଶାସନଟି ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ଶ୍ରୀଶିବଗୁପ୍ତ ଦେବପାଦାନୁଧ୍ୟାତ ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ସୋମକୁଳତିଳକ ତ୍ରିକଳିଙ୍ଗାଧିପତି ଶ୍ରୀ ମହାଭବଗୁପ୍ତ ଦେବଙ୍କର ଅଟେ । ଏହା ଶ୍ରୀ ଜନମେଜୟଦେବଙ୍କ ବିଜୟ ରାଜତ୍ୱର ତୃତୀୟ ବର୍ଷରେ ଶ୍ରାବଣ ଶୁକ୍ଳପକ୍ଷ ପଞ୍ଚମୀ ଦିନ ପ୍ରସ୍ତୁତ ହୋଇଥିଲା । ଏଥିରେ ମେବଣ୍ଡା ଅଧିବାସୀ ଭଟ୍ଟପୁତ୍ର ଜାତରୂପଙ୍କ ଲୁପତ୍ତିଖଣ୍ଡ ଅନ୍ତଃପାତୀ ବକ ଚେଲ୍ଲଲୀ ଗ୍ରାମ ପ୍ରଦତ୍ତ ହୋଇଥିଲା । ଜାତରୂପ ରାଢ଼ାପଂବଲ୍ଲି ଭଦର ନାମକ ସ୍ଥାନରୁ ଆସିଥିଲେ । ସେ କୌଣ୍ଡିନ୍ୟଗୋତ୍ରୀ ଥିଲେ ।

Digitized by srujanika@gmail.com

ବଲ୍ଲଘୋଷଙ୍କ ପୁତ୍ର କୋଇଘୋଷ ଶାସନ ରଚନ କରିଥିଲେ । କୋଇଘୋଷ ମହାରାଜାଙ୍କର ସାନ୍ଧିବିଗ୍ରହିକ ଅର୍ଥାତ୍ ଶାନ୍ତିମୁକ୍ତ ସଚିବ ଥିଲେ । ଏହି କୋଇଘୋଷ ଜନମେଜୟଙ୍କ ରାଜତ୍ୱର ଷଷ୍ଠବର୍ଷର ଶାସନ ରଚନ କରିଥିଲେ । ରଯ୍ୟଣା ଓଝାଙ୍କ ପୁତ୍ର ସଗ୍ରାମ ଏହି ଶାସନ ଖୋଦନ କରିଥିଲେ । ଜନମେଜୟ ସୁବର୍ଣ୍ଣପୁରଠାରୁ (ଆଧୁନିକ ସୋନପୁର, ଏହି ଶାସନ ଘୋଷଣା କରିଥିଲେ ।

( ଖ )

* ପ୍ରଥମ ମହାଭବଗୁପ୍ତଙ୍କ ବକବେଦ ଶାସନ ।

ଓଁ ସ୍ୱସ୍ତି ମୁରସ୍ତିମ ସମାବାସିତ ଶ୍ରୀମତୋ ବିଜୟକଟକାତ୍ ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ଶ୍ରୀ ଶିବଗୁପ୍ତଦେବପାଦାନୁଧ୍ୟାତ ପରମମାହେଶ୍ୱର ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ସୋମକୁଳତିଳକ ତ୍ରିକଳିଙ୍ଗାଧିପତି ଶ୍ରୀ ମହାଭବଗୁପ୍ତ ରାଜଦେବଃ କୁଶଲୀ । ଲୁଙ୍ଗାତଟବିଷୟପ୍ରତିବଦ୍ଧ ବକଦେବ ଗ୍ରାମେ ତତ୍ପ୍ରତିବାସି କୁଟୁମ୍ବିଜନପଦାନ୍ତଦ୍‌ବିଷୟୀୟ ଯଥା-କାଲାଧ୍ୟାସିନଃ ସମାହର୍ତ୍ତୃ ସନ୍ନିଧାତୃ ଚାଟଭଟପିଶୁନବେତ୍ରିକାବରୋଧଜନରାଜ-ବଲ୍ଲଭାଦୀନ ସର୍ବାନ୍ ରାଜପାଦୋପଜୀବିନଃ ସମାଜ୍ଞାପୟତି ବିଦିତମସ୍ତୁ ଭବତାଂ । ଯଥାସ୍ମାଭିରୟଂ ଗ୍ରାମଃ ସନିଧିଃ ସୋପନିଧିଃ ସର୍ବବାଧାବିବର୍ଜ୍ଜିତଃ । ସର୍ବୋପରି କରକରଦାନସହିତଃ ସାମ୍ର ମଧୂକଃ ସଗର୍ତ୍ତୋଷରଃ । ପ୍ରସିଦ୍ଧ ଚତୁଃସୀମାବଚ୍ଛିନ୍ନଃ ପ୍ରତିନିଷିଦ୍ଧଚାଟଭଟପ୍ରବେଶଃ ନାନାଗୋତ୍ରପ୍ରବରବିନିର୍ଗତବାସ୍ତବ୍ୟେଭ୍ୟୋ ଦ୍ୱିଜାତି-ବରେଭ୍ୟଃ ଏକକୌତ୍ସଗୋତ୍ରଃ ଅଙ୍ଗିରସବାର୍ହସ୍ପତ୍ୟ ଯୌବନାଶ୍ୱପ୍ରବରଃ ଯୁବନଶ୍ୱଦମ୍ବର-ଷଦଙ୍ଗିର ଅନୁପ୍ରବରଃ ସାମବେଦେ କୌଥୁମଶାଖାଧ୍ୟାୟୀ ପମ୍ପାସରସି ବିନିର୍ଗତ ଲେତ୍ତଶୃଙ୍ଗାବାସ୍ତବ୍ୟ ଭଟ୍ଟପୁତ୍ର ଦାମାକଃ ଔପ୍ରଲସୁତଃ ଦ୍ୱିତୀୟୋ ଗୌତମଗୋତ୍ରଃ ଅଙ୍ଗିରସପ୍ରବରଃ ବାର୍ହସ୍ପତ୍ୟାନୁପ୍ରବରଃ ଯଜୁର୍ବେଦେ କାଣ୍ୱଶାଖ୍ୟ ଉପଶୃଙ୍ଗବିନିର୍ଗତ-ଖଣ୍ଡକ୍ଷେତ୍ରବାସ୍ତବ୍ୟ ଭଟ୍ଟପୁତ୍ରେନୋରପଗଣ୍ଡସୁତ ତୃତୀୟସ୍ତୁ କଶ୍ୟପେୟଗୋତ୍ରଃ ଅର୍ଚନାନଶ୍ୱପ୍ରବରଃ ଶ୍ୟାବୋଶ୍ୱନ ଅନୁପ୍ରବର ଯଜୁର୍ବେଦକାଣ୍ୱଶାଖାଧ୍ୟାୟୀ × ଲତ୍ତବିନିର୍ଗତ ଲେପରୁଙ୍ଗାବାସ୍ତବ୍ୟ ଭଟ୍ଟବାସୁଦେବଃ ଶଶିକେଶସୁତଃ ଚତୁର୍ଥ ଅଗସ୍ତିଗୋତ୍ରଃ । ଇଦ୍ଧ୍ମବାହବପ୍ରବରଃ ଚ୍ୟବନ ପ୍ରବରଃ । ଚ ଯଜୁର୍ବେଦକାଣ୍ୱଶା-ଖାଧ୍ୟାୟୀ ସକଲତ ବିନିର୍ଗତ ପମ୍ପାସରସିବାସ୍ତବ୍ୟଃ କୋଣ୍ଡଦେବ × ଗ୍ରାମଶର୍ମ୍ମ-ସୁତଶ୍ଚେଭ୍ୟୋ ଦ୍ୱିଜାତିବରେଭ୍ୟଃ ସଲିଲ ଧାରାପୁରଃସର ମା ଚନ୍ଦ୍ରତାରକାର୍କକ୍ଷିତି × କାଲୋପଭୋଗାର୍ଥ ପ୍ରତିବର୍ଷ ଦାତବ୍ୟ ରୁପ୍ୟକାନ ପଲକରଦାନ ବିନିଶ୍ଚିତ୍ୟ

---

J. A. S. R. XI, VI. Part I. 1877

Digitized by srujanika@gmail.com

ମାତାପିତ୍ରୋରାତ୍ମନା ପଣ୍ୟଯଶୋଽଭିବୃଦ୍ଧୟେ ତାମ୍ରଶାସନେନାକ X ପ୍ରତିପାଦିତ ଇତ୍ୟବଗତ୍ୟ ସମୁଚିତଭୋଗାର୍ଥ ମାତାପିତ୍ରୋରାତ୍ମନଶ୍ଚ ପଣ୍ୟଯଶୋଽଭିବୃଦ୍ଧୟେ ତାମ୍ରଶାସନେନାକରୀକୃତ୍ୟ ପ୍ରତିପାଦ୍ୟ ଇତ୍ୟବଗତ ସମୁଚିତଭୋଗଭାଗକର ହିରଣ୍ୟାଦିକମୁପ ନ X ର୍ଭବଦ୍ଭିଃ ସୁଖେନ ପ୍ରତିବସ୍ତବ୍ୟମିତି । ଭାବ × ଭୂପତିଭି ର୍ଦ୍ଦତ୍ତିରସ୍ମମସ୍ମଦୀୟଧର୍ମ୍ମଗୌରବ ଦସ୍ମଦନୁରୋଧାଚ ସ୍ଵଦତ୍ତିରିବାନୁପାଳନୀୟ ତଥାଚୋକ୍ତଂ ଧର୍ମ୍ମଶାସ୍ତ୍ରେ । ବହୁଭିର୍ବସୁଧା X ରାଜଭିଃ ସଗରାଦିଭିଃ । ଯସ୍ୟ ଯସ୍ୟ ଯଦା ଭୂମିସ୍ତସ୍ୟ ତସ୍ୟ ତଦା ଫଳଂ । ମା ଭୂଦ ଫଳଶଙ୍କା × ପରଦତ୍ତେତି ପାର୍ଥିବାଃ । ସ୍ଵଦାନାତ୍ ଫଳମାନାନ୍ତ୍ୟ ପରଦେତ୍ତାନୁପାଳନେ । ଷଷ୍ଟିଂ ବର୍ଷସହସ୍ରାଣି ସ୍ଵ × ମୋଦତି ଭୂମିଦଃ । ଆକ୍ଷେପ୍ତା ଚାନୁମନ୍ତା × ତାନ୍ୟେବ ନରକେ ବସେତ୍ । ଅଗ୍ନେରପତ୍ୟଂ ପ୍ରଥମଂ ସୁବର୍ଣ୍ଣଂ ଭୂର୍ବୈଷ୍ଣବୀ ସୂର୍ଯ୍ୟସୁତଶ୍ଚ ଗାବଃ । ଯ କାଞ୍ଚନଂ ଗାଂ ଚ ମହୀଞ୍ଚ ଦଦ୍ୟାଦତ୍ତାସ୍ତସ୍ତ୍ରେମ- ଭବନ୍ତି ଲୋକାଃ । ଆସ୍ଫୋଟୟନ୍ତି ପିତରଃ ପ୍ରବଳ X ପିତାମହାଃ । ଭୂମିଦାତା କୁଳେ ଜାତଃ X ନସ୍ତ୍ରାତା ଭବିଷ୍ୟତି । ଭୂମିଂ ଯଃ ପ୍ରତିଗୃହ୍ଣାତି ତେ ଭୂମିଂ ପ୍ରଯଚ୍ଛତି ଉଭୌ ତୌ ପୁଣ୍ୟକର୍ମ୍ମାଣୌ ସ୍ଵେତଂସ୍ଵର୍ଗଗାମିନୌ । ତଡ଼ାଗାନାଂ ସହସ୍ରାଣି ବାଜପେୟଶତାନି ଚ । ଗବାଂ କୋଟି ପ୍ରଦାନେନ × ନ ଶୁଧ୍ୟତି । ହରତେ ହାରୟତେ ଯସ୍ତୁ X ବୁଦ୍ଧିସ୍ତମୋବୃତଃ । ସ ବଦ୍ଧୋ ବାରୁଣୈଃ ରୌଦ୍ରି ର୍ଯ୍ୟକ୍ୟୋନି ଚ ଗଚ୍ଛତି । ସ୍ଵଦତ୍ତାଂ ପରଦତ୍ତାଂ ବା ଯୋ ହରେତ ବସୁନ୍ଧରାଂ । ସ ବିଷ୍ଠାୟାଂ × ପଚ୍ୟତେ ପିତୃଭିଃ ସହ । ଅଦତ୍ତ୍ୟୋ ବରୁଣୋବିଷ୍ଣୁ ବ୍ରହ୍ମାସୋମୋ ହୁତାଶନଃ । × ଭଗବାଃ ( ? ଭଗବାନ ) ଅଭିନନ୍ଦନ୍ତି × । ଧାମାନ୍ୟୋଽସ୍ମଂ ଧର୍ମ୍ମସେତୁର୍ନୃପାଣାଂ X ପାଳନୀୟୋ ଭବଦ୍ଭିଃ । ସର୍ବାନେତାନ୍ X ଭୂପତୀନ୍ଦ୍ରାନ୍ ଭୂୟୋ ଭୂୟୋ ଯାଚତେ ରାମଚନ୍ଦ୍ରଃ । ଇତି କମଳଦଳାମ୍ବୁବିନ୍ଦୁଲୋଳାଂ ଯେ ମନୁଚନ୍ତ୍ୟ ମନୁଷ୍ୟଜୀବିତଞ୍ଚ । ସକଳମିଦମୁଦା × ବୁଦ୍ଧ୍ୱା ନ ହି ପୁରୁଷୈଃ ପରକୀର୍ତ୍ତୟୋ × । ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ଵର ଶ୍ରୀଜନମେଜୟଦେବସ୍ୟ ବିଜୟରାଜ୍ୟେ ସମ୍ବତ୍ସରେ ଷଷ୍ଠେ ଆଷାଢ଼- ମାସେ ସିତ ପକ୍ଷେ ତିଥାବ ମ୍ୟାଂ ଯତ୍ରାଙ୍କତୋଽପି ସମ୍ବତ୍ ୬ ଆଷାଢ଼ ଶୁଦ୍ଧ । ଲିଖିତମିଦଂ ଶାସନଂ ମହାସାନ୍ଧି ବିଗ୍ରହି ଶ୍ରୀମଲ୍ଲଧରଦତ୍ତସୁତ ପ୍ରତିବଦ୍ଧ କାୟସ୍ଥ କୋଇ ଦୋଷେଣ ବଲ୍ଲଭଘୋଷ ସୁତେନେତି × କ୍ଷୌଣୀଶ୍ଵରାଣା ମମଳମଣିମଣି- ଚ୍ଛଟ୍ଟମନ୍ଦ୍ୟଃ କ୍ରୌଷ୍ଟୁଭଭଃ ଶୌର୍ଯ୍ୟତ୍ୟାଗାମ୍ବୁରାଶିଃ ବରଚିତ ଦାନ ଶୁଭ୍ରୀକୃତାଭଃ ଶ୍ରୀମାନ୍ ଜନମେଜୟୋ ଦେଶପତିସମଃ କୃଚ୍ଛଗାଂ ଭେତ୍ତୃକାମଃ ପ୍ରଖ୍ୟାତ ବର୍ଷ ପ୍ରବଦାଳନପଟୁ ଭୂପତିଃ ସୋମବଂଶୀ ।

ଏହି ଶାସନରେ ଅପେକ୍ଷାକୃତ ବେଶି ଖୋଦନଗତ ଅଶୁଦ୍ଧି ପରିଲକ୍ଷିତ ହୁଏ । ଏହି ତାମ୍ରଶାସନ ସମ୍ବଲପୁର ଜିଲ୍ଲା ଅନ୍ତଃପାତୀ ପାଟଣାରାଜ୍ୟରେ

Digitized by srujanika@gmail.com

ଆବଦ୍ଧ ହୋଇଥିଲା । ଏଥିରେ ଚନ୍ଦ୍ରଖଣ୍ଡି ପଦ୍ମ ଥିଲା । ପଦ୍ମଗୁଡ଼ିକ ଏକ ତମ୍ବା ମୁଦ୍‌ଆରେ ବନ୍ଧା ହୋଇଥିଲା । ମୁଦ୍‌ଆର ଶେଷଭାଗରେ ଗୋଟିଏ ମୋହର ଥିଲା । ଏହି ମୋହରର ବୃତ୍ତଭାଗରେ ଧାରକୁ ଲାଗି ଏକ ଓସାରିଆ ସ୍ଥାନ ଥିଲା । ଏହି ସ୍ଥାନରେ ଯାହା ଲେଖାଥାଏ, ଇଂରାଜୀରେ ତାହାକୁ ଲିଜେଣ୍ଡ (Legend) କହନ୍ତି । ଲିଜେଣ୍ଡଟି ଅସ୍ପଷ୍ଟ ହୋଇ ଯାଇଥିଲା । ତଥାପି ଅନୁମାନ ଯେ, ଏଥିରେ ପଦ୍ମପୃଷ୍ଠରେ ଆସୀନ ରାମଚନ୍ଦ୍ରଙ୍କର ଏକ ମୂର୍ତ୍ତି ଖୋଦିତ ହୋଇଥିଲା । ରାମଚନ୍ଦ୍ରଙ୍କ ପଦତଳେ ଏକ ହନୁମାନ ଥିଲା । ହନୁମାନର ଲାଙ୍ଗୁଳଟିଏ ଥିଲା । ଏହି ଶାସନର ଅଙ୍କ ଓ ଅକ୍ଷର ଅଧିକାଂଶ ପ୍ରାଚୀନ କୁଟିଳାକ୍ଷରରେ ଲିଖିତ ।

ଜନମେଜୟଙ୍କ ରାଜତ୍ୱର ଷଷ୍ଠବର୍ଷରେ ଆଷାଢ଼ ଶୁକ୍ଳପକ୍ଷ ଅଷ୍ଟମୀଦିନ ପ୍ରଥମ ମହାଭବ ଗୁପ୍ତଦେବ ଏହି ଶାସନ ଘୋଷଣା କରିଥିଲେ । ଶାସନରୁ ଜଣାଯାଏ ଯେ, ମହାଭବ ଗୁପ୍ତ ତ୍ରିକଳିଙ୍ଗାଧିପତି ଶିବଗୁପ୍ତଙ୍କର ପୁତ୍ର ବା ବଂଶଧର ଥିଲେ । ଏହି ଶାସନରେ ମହାଭବଗୁପ୍ତ ଚାରିଜଣ ବ୍ରାହ୍ମଣଙ୍କୁ ବକଦେବ (୧) ନାମକ ଗ୍ରାମ ଦେଇଥିଲେ । ବ୍ରାହ୍ମଣମାନଙ୍କୁ ବାର୍ଷିକ ଆଠପଲ (୨) ରୁପା କର ଦେବାକୁ ହେଉଥିଲା । ପ୍ରଥମ ଗ୍ରହୀତାଙ୍କ ନାମ ଦାମାକ (ପମ୍ପାସର ବିନିର୍ଗତ ଲେଡ଼ଶୃଙ୍ଗ ବାସ୍ତବ୍ୟ ଭଟ୍ଟପୁତ୍ର ଦାମାକ) । ସେ ପମ୍ପାସରୋବରର ଉପତ୍ୟକାସ୍ଥ ଲେଡ଼ଶୃଙ୍ଗଠାରୁ ଆସିଥିଲେ । ତାହାଙ୍କର କୌତ୍ସସ ଗୋତ୍ର ଓ ଅଙ୍ଗିରସ ବାର୍ହ୍ସ ଯୌବନାଶ୍ୱ ପ୍ରବର ଥିଲା । ସେ କୌଥମଶାଖାବଲମ୍ବୀ ସାମବେଦୀ ବ୍ରାହ୍ମଣ ଥିଲେ । ଯୁବନାଶ୍ୱ ଓ ଅଙ୍ଗିରା ପ୍ରଭୃତି ତାହାଙ୍କର ସଗୋତ୍ର । ଦ୍ୱିତୀୟ ଗ୍ରହୀତା ଉପଶୃଙ୍ଗରୁ ଆସିଥିଲେ (ଉପଶୃଙ୍ଗ ବିନିର୍ଗତ ଖଣ୍ଡକ୍ଷେତ୍ର ବାସ୍ତବ୍ୟ ତପୋରାଣପୁତ୍ର) । ସେ ଗୌତମଗୋତ୍ରୀ ବ୍ରାହ୍ମଣ ଥିଲେ । ତୃତୀୟ ଗ୍ରହୀତା କଣ୍ୱାଦେୟଗୋତ୍ରୀ ହୃଷୀକେଶଙ୍କର ପୁତ୍ର ବାସୁଦେବ ଥିଲେ (କୋଷ୍ଠଲଡ଼ ବିନିର୍ଗତ ଲେଫରୁଙ୍ଗ ବାସ୍ତବ୍ୟ ବାସୁଦେବ) । ଚତୁର୍ଥ ଗ୍ରହୀତା ଅଗସ୍ତିଗୋତ୍ରୀ ଥିଲେ (ସକଳଙ୍ଗ ବିନିର୍ଗତ ସମ୍ପାସରସି ବାସ୍ତବ୍ୟ ହୃଷୀକେଶ) । ତାହାଙ୍କ ପିତାଙ୍କ ନାମ ରାମ ଶର୍ମା ଓ ନିଜର ନାମ ନନ୍ଦଦେବ ଥିଲା । ଖୁବ୍ ସମ୍ଭବ ଏମାନେ ସମସ୍ତେ ପାଶ୍ଚାତ୍ୟ ବୈଦିକ ବ୍ରାହ୍ମଣ ଥିଲେ । ଏମାନେ ବ୍ୟବସାୟରେ ଭାଟ (୩) ଥିଲେ । ରାଜମନ୍ତ୍ରୀ ମଲ୍ଲଧର ଦତ୍ତଙ୍କ ପୁତ୍ର ଘୋଷ ବଂଶୀୟ ଏକ କାୟସ୍ଥଙ୍କୁ

(୧) ବକଦେବ 'ରୁଙ୍ଗ' ଉପତ୍ୟକାରେ ଅବସ୍ଥିତ । J.A S.B. 1869.P 21.

(୩) କୌଟିଲ୍ୟଙ୍କ ମତରେ ଭାଟମାନେ ଶୂଦ୍ର ଅଟନ୍ତି । (R. Sarma Sastry-Translation of Arthasastra. p. 7.

ଅଦ୍ୟାବଧି ଓଡ଼ିଶାର ଅନେକ ସ୍ଥାନରେ ଭାଟ ଅଛନ୍ତି । ସେମାନେ ଶୂଦ୍ର । କୌଣସି X X ତାଙ୍କ ଗୃହରେ ଅନ୍ନ ଗ୍ରହଣ କରନ୍ତି ନାହିଁ ।

Digitized by srujanika@gmail.com

ଏହି ଶାସନ ଖୋଦନକାରୀ ନିଯୁକ୍ତ କରିଥିଲେ । ଏ ଶାସନରେ ଜନମେଜୟ "ମହାରାଜାଧିରାଜ ପ୍ରଭୃତି ଉପାଧି ସହିତ ଉଲ୍ଲିଖିତ ହୋଇଅଛନ୍ତି ଶେଷଭାଗରେ ରଚୟିତା ଜନମେଜୟଙ୍କ ଏକ ବନ୍ଦନାଦ୍ୱାରା ଶାସନର ଉପସଂହାର କରି ଅଛନ୍ତି ।

( ଗ )

✱ ପ୍ରଥମ ମହାଭବ ଗୁପ୍ତଙ୍କ ନାଗପୁର ଯାଦୁଘର ଶାସନ ।

"ଓଁ ସ୍ୱସ୍ତ୍ୟନେକବର-ବିଲାସିନୀ ଚରଣ-ନୂପୁର-ରବୋଦ୍ଭ୍ରାନ୍ତ ମତ୍ତ ପାରାବତକୁଳାତ୍ ସକଳ ଦିଗନ୍ତରାଗତବନ୍ଦିଜନ ବସ୍ତ୍ରାଶିତକାନ୍ତିଃ ଶ୍ରୀମତୋ ମୁରସୀମ୍ନଃ । ଅସ୍ତି କ୍ଷୋଣୀଶ୍ୱରାଣା ମମଳମଣିରୁଚ ମନ୍ୱୟାତ୍ କୌସ୍ତୁଭାଭଃ ଶୌର୍ଯ୍ୟାତ୍ୟାଗାମୃତାଣି ବିରଚିତ ବଧୁ ବଦାନ୍ୟା ଶୁଭ୍ରୀ-କୃତାଭ୍ରଃ । ଶ୍ରୀମାନ୍ ଜନ୍ମେଜୟାଖ୍ୟ ସ୍ଥି ଦଶପତିସମଃ X ଭୋକ୍ତୁଂ କାମଃ ପ୍ରଖ୍ୟାତ ଦ୍ୱେଷି ବଂଶ ପ୍ରବ ସନ୍ତୁଭୂପତିଃ ସୋମବଂଶେ । ସୋଽୟଂ ପରମ ମହାରାଜାଧିରାଜ ପରମେଶ୍ୱର ଶ୍ରୀ ମହାଶିବ × ରାଜଦେବ ପାଦାନୁଧ୍ୟାତ ପରମଭଟ୍ଟାରକ × ରାଜାଧିରାଜ ପରମେଶ୍ୱର ସୋମକୁଳତିଳକ ତ୍ରିକଳିଙ୍ଗାଧିପତି ଶ୍ରୀ ମହାଭବ ଗୁପ୍ତ-ରାଜ X କୁଶଳୀ । କଣ ଲେଡା ବିଷୟପ୍ରତିବଦ୍ଧ × ଗ୍ରାମେ ବ୍ରାହ୍ମଣାନ୍ ସମ୍ପୂଜ୍ୟ ତତ୍ପ୍ରତନବାସି ଜନପଦାନ୍ ତଦ୍ଭିଷୟୀୟ ଯଥା କାଳାଧ୍ୟାସିନଃ ସମାହର୍ତ୍ତୃ ସନ୍ନିଧାତୃ ନୃଟଭଟପିଶୁନ ବେତ୍ରି କାବରୋଧଜନ ରାଜବଲ୍ଲଭାଦୀନ୍ ସର୍ବାନ୍ ରାଜପାଦୋପଜୀବିନଃ ସମାଜ୍ଞାପୟତି । ବିଦିତମସ୍ତୁ ଭବତାଂ ମଥା ଭରୟଂ ଗ୍ରାମଃ ସନିଧିଃ ସୋପନିଧିଃ ସର୍ବବାଧା ବିବର୍ଜିତଃ ସର୍ବୋପରି କାରଦାନ-ସହିତଃ ସାମ୍ରମଧୁକଃ ସଗର୍ତ୍ତୋଷରଃ ପ୍ରତନସିଦ୍ଧ ଚାଟଭଟ ପ୍ରବେଶଃ ଚତୁଃସୀମା-ବଚ୍ଛିନ୍ନ ଗୌତମଗୋତ୍ରାୟ ଗୌତମାଙ୍ଗିର ଯୌତଥ୍ୟସ୍ୟାର୍ଷେୟ ପ୍ରବରାୟ × ସନେୟୀ ମାଧ୍ୟନ୍ଦିନ ଶାଖାଧ୍ୟାୟିନେ ଓଡ୍ର ଦେଶେ ଯୁବୁଗମଣ୍ଡପଗ୍ରାମ ବିନି-ର୍ଗତାୟ ମୁରୁକୁଂ ଗଗ୍ରାମ ବାସ୍ତ ବ୍ୟାୟ ଭଟପୁତ୍ର ଶ୍ରୀ ସାନ୍ତୁକରନାମ୍ନେ ଧୃତକର-ସୂତ୍ରାୟ ସଲିଳ ଧାରାପୁରସ୍ସର ଆଚନ୍ଦ୍ର ତାରକାର୍କ କ୍ଷିତି ସମକାଲୋପ ଭୋଗାର୍ଥଂ ମାତାପିତ୍ରୋରାତ୍ମନଶ୍ଚ X ଯଶୋଭିବୃଦ୍ଧୟେ ତାମ୍ରଶାସନେ-ନାକରୀକୃତ୍ୟ ପ୍ରତିପାଦିତ ଇତ୍ୟବଗତ୍ୟ ସମୁଚିତ ଭୋଗଭାଗକର ହିରଣ୍ୟାଦିକ ମୁପନୟଦ୍ଭିର୍ଭବଦ୍ଭିଃ ସୁଖେନ ପ୍ରତିବସ୍ତ X । ଭାବିଭିଶ୍ଚ ଭୂପତିଭିର୍ଦତ୍ତିରସ୍ୟ ମସ୍ମଦୀୟ X ଗୌର-ବାଦସ୍ମଦନୁରୋଧାଚ୍ଚ ସ୍ୱଦତ୍ତି ରିବାନୁପାଲନୀୟା । ତଥାଚୋକ୍ତଂ ଧର୍ମଶାସ୍ତ୍ରେ । ବହୁଭି-ର୍ବସୁଧା ଦତ୍ତା ରାଜଭିଃ ସଗରାଦିଭିଃ । ଯସ୍ୟ ଯସ୍ୟ ଯଦା ଭୂମିସ୍ତସ୍ୟ ତସ୍ୟ ତଦା ଫଳଂ । ମାଭୂଦଫଳଶଙ୍କା ବଃ ପରଦତ୍ତେତି ପାର୍ଥିବାଃ । ସ୍ୱଦାନାତ୍ ଫଳମାନନ୍ତ୍ୟଂ

Digitized by srujanika@gmail.com

ପରଦତ୍ତାନ୍ ପାଲନେ । ଷଷ୍ଟିଂ ବର୍ଷ ସହସ୍ରାଣି ସ୍ୱର୍ଗେ ମୋଦତି ଭୂମିଦଃ । ଆକ୍ଷେପ୍ତା X ଚ ତାନ୍ୟେବ ନରକେବସେତ୍ । X ପତ୍ୟଂ ପ୍ରଥମଂ ସୁବର୍ଣ୍ଣଂ ଭୂର୍ବୈଷ୍ଣବୀ ସୂର୍ଯ୍ୟ ସୁତଶ୍ଚ ଗାବଃ । ଯଃ କାଞ୍ଚନଂ ଗାଂ ଚ ମହୀଞ୍ଚ × ଦତ୍ତାସ୍ତସ୍ତ୍ରେନ ଭବନ୍ତି ଲୋକାଃ । ଅସ୍ଫୋଟୟନ୍ତି ପିତରଃ ପ୍ରଗଲ୍ଗୟନ୍ତି ପିତାମହାଃ । ଭୂମିଦାତା କୁଲେ ଜାତଃ ସ. ନ ସ୍ତ୍ରାତା ଭବିଷ୍ୟତି । ଭୂମିଂ ଯଃ ପ୍ରତିଗୃହ୍ଣାତି ଯଶ୍ଚଭୂମିଂ ପ୍ରଯଚ୍ଛତି । ତ୍ୱରୌ ତୌ ପୁଣ୍ୟକର୍ମାଣୌ ନିୟତଂ ସ୍ୱର୍ଗ- × X × ଗାମିନ ଚ । ଗବାଂ କୋଟି ପ୍ରଦାନେନ ଭୂମହର୍ତ୍ତା ନ ଶୁଦ୍ଧ୍ୟତି । ସ୍ୱଦତ୍ତାଂ ପରଦତ୍ତାଂ ବା ଯୋ ହରେତ ବସୁନ୍ଧରାଂ । ସ ବିଷ୍ଠାୟାଂ କ୍ରିମିର୍ଭୂତ୍ୱା ପଚ୍ୟତେ ପିତୃଭିଃ ସହ । ଆଦିତ୍ୟୋ ବରୁଣୋ ବିଷ୍ଣୁ ବ୍ରହ୍ମା ସୋମୋ ହୁତାଶନଃ । ଶୂଲପାଣିସ୍ତୁ ଭଗବାନ୍ ଅଭିନନ୍ଦନ୍ତି ଭୂମିଦଂ । ସାମାନ୍ୟୋଽୟଂ ଧର୍ମସେତୁ ନୃପାଣାଂ କାଲେ କାଲେ ପାଲନୀୟୋ ଭବଦ୍ଭିଃ । ସର୍ବାନେତାନ୍ ଭାବିନୋ ଭୂପତିନ୍ଦ୍ରାନ୍ ଭୂୟୋ ଭୂୟୋ ଯାଚତେ ରାମଚନ୍ଦ୍ରଃ । ଇତି କମଲଦଳାମ୍ବୁ ବିନ୍ଦୁଲୋଲାଂ ଶ୍ରିୟମନୁ ଚିନ୍ତ୍ୟ ମନୁଷ୍ୟ ଜୀବିତଞ୍ଚ । ସକଲମିଦ ମୁଦା ହୃତଞ୍ଚ ବୁଦ୍ଧ୍ୱା ନହି ପୁରୁଷୈଃ ପରକୀର୍ତ୍ତିୟୋ ବିଲୋପ୍ୟାଃ । ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ସୋମକୁଳ ତିଳକ ତ୍ରିକଳିଙ୍ଗାଧିପତି ଶ୍ରୀ ଜନମେଜୟ ଦେବସ୍ୟ ବିଜୟ ରାଜ୍ୟେସମ୍ବତ୍ସରେ ଅଷ୍ଟମେ କାର୍ତ୍ତିକମାସ ଦ୍ୱିତୀୟ ପକ୍ଷେ ତିଥୌ ଦ୍ୱାଦଶ୍ୟାଂ ଯତ୍ରାଙ୍କତୋପି ସମ୍ବତ୍ ୮ କାର୍ତ୍ତିକ ଶୁଦି ୧୨ । ଦୂତକଶ୍ଚ ମହାମହତ୍ତମ ଭଟ୍ଟ ଶ୍ରୀ ସାଧାରଣଃ ଶୋଭନ ସୁତଃ । ଲିଖିତ ମିଦଂ ଶାସନଂ ମହା ସାନ୍ଧିବିଗ୍ରହି ରାଣକ ଶ୍ରୀ ମଲ୍ଲଦତ୍ତ ଧାରଦତ୍ତ ସୁତ ପ୍ରତି ବଦ୍ଧେନ କାୟସ୍ଥ ଆଲ୍ଲବେନ କୈ(ବୋ)ଲାସ ସୁତେନ ଉତ୍କୀର୍ଣ୍ଣଂ ସଂଗ୍ରାମେଣ ଉଯ୍ୟଣା ଓଙ୍ଖା ସୁତେନ ।"

ମିଷ୍ଟର ଭେଙ୍କୟା ଏହି ଶାସନର ଗୋଟିଏ ପ୍ରତିଲିପି ଅଧ୍ୟାପକ ହୁଲ୍‌ଜ୍‌ଙ୍କୁ ଦେଇଥିଲେ । ସେଥି ସଙ୍ଗେ ସେ ନିମ୍ନୋକ୍ତ ବିବରଣ ମଧ୍ୟ ଲେଖି ପଠାଇଥିଲେ । ନାଗପୁର ଯାଦୁଘରର ତତ୍ତ୍ୱାବଧାରକ କହନ୍ତି ଯେ, ଏହି ଶାସନଟି ବର୍ତ୍ତମାନ ତାଙ୍କ ଅଧୀନରେ ଅଛି । କିନ୍ତୁ ଏହା କେଉଁଠାରେ ଆବିଷ୍କୃତ ହୋଇଥିଲା, ତାହାର କୌଣସି ପ୍ରମାଣ ନାହିଁ । ଏଥିରେ ତିନିଖଣ୍ଡି ପତ୍ର ଅଛି । ଦ୍ୱିତୀୟ ଖଣ୍ଡିକର ଉଭୟ ପାର୍ଶ୍ୱ ଖୋଦିତ ହୋଇଅଛି । ପତ୍ରଗୁଡ଼ିକର ମଧ୍ୟଭାଗ ଅପେକ୍ଷାକୃତ ପ୍ରଶସ୍ତ । ସେଗୁଡ଼ିକ ଗୋଟିଏ ତମ୍ବା ମୁନ୍ଦିଆରେ ଗ୍ରଥିତ ହୋଇଅଛି । ମୁନ୍ଦିଆର ଉପରସ୍ଥ ମୋହରରେ ଏକ ଗଜଲକ୍ଷ୍ମୀ ମୂର୍ତ୍ତି ଅଛି । ଖଣ୍ଡେ ତମ୍ବା କଣ୍ଟା ମୋହରକୁ ମୁନ୍ଦିଆ ସହିତ ସଂଲଗ୍ନ କରିଅଛି ।

Digitized by srujanika@gmail.com

ହୁଲ୍ ଭେଙ୍କସ୍ୱାମୀଙ୍କ ପ୍ରେରିତ ପ୍ରତିଲିପି ପାଠ କରି ନିମ୍ନୋକ୍ତ ମନ୍ତବ୍ୟ ପ୍ରକାଶ କରିଥିଲେ । ପ୍ରଥମ ମହାଭବଗୁପ୍ତ ବା ଜନମେଜୟଙ୍କ ରାଜତ୍ୱର ଅଷ୍ଟମ ବର୍ଷରେ କାର୍ତ୍ତିକ ଶୁକ୍ଳପକ୍ଷ ଦ୍ୱାଦଶୀ ଦିନ ମୁରସିମାଠାରେ ଏହି ଶାସନ ଘୋଷିତ ହୋଇଥିଲା । ପରମ ମାହେଶ୍ୱର ମହାରାଜାଧିରାଜ ପରମେଶ୍ୱର ସୋମକୁଳତିଳକ ତ୍ରିକଳିଙ୍ଗାଧିପତି ମହାଶିବ ଗୁପ୍ତରାଜଦେବ ପାଦାନୁଧ୍ୟାତ ମହାଭବ ଗୁପ୍ତରାଜଦେବ 'ସତଲମା' ଗ୍ରାମର ବ୍ରାହ୍ମଣମାନଙ୍କ ପ୍ରତି ଯଥୋଚିତ ସମ୍ମାନ ସହ ସେହି ଗ୍ରାମଟିଏ ଭଟ୍ଟପୁତ୍ର ସାନ୍ଧୁକରଙ୍କୁ ପ୍ରଦାନ କରିଥିଲେ । ସାନ୍ଧୁକରଙ୍କ ପିତାଙ୍କ ନାମ ଧୃତିକର ଥିଲା ଏବଂ ସେ ଗୌତମଗୋତ୍ରୀ ଥିଲେ । ଧୃତିକର ଉତ୍ତରଦେଶସ୍ଥ ପୁରୁଷମଣ୍ଡପରୁ ଆସି ମୁରୁଲୁଙ୍ଗ ଗ୍ରାମରେ ବାସ କରୁଥିଲେ । ସତଲମା ଗ୍ରାମ 'କସାଲେଡ଼ା' ଜିଲ୍ଲାରେ (ବିଷୟରେ) ଅବସ୍ଥିତ ଥିଲା ।

ଶୋଭନଙ୍କ ପୁତ୍ର ମହାମହତ୍ତମ ଭଟ୍ଟ ଶ୍ରୀ ସାଧାରଣ ଏହି ଶାସନରେ ଦୂତକ ବୋଲି ବର୍ଣ୍ଣିତ ହୋଇଅଛନ୍ତି । ସାଧାରଣ ବୋଧହୁଏ ରାଜାଙ୍କର ପ୍ରଧାନମନ୍ତ୍ରୀ ଥିଲେ । ବୋଧହୁଏ ଏହି ସାଧାରଣଙ୍କୁ ଜନମେଜୟ ରାଜତ୍ୱର ଏକତ୍ରିଂଶ ବର୍ଷରେ ତିନୋଟି ଗ୍ରାମ ପ୍ରଦାନ କରିଥିଲେ । କିନ୍ତୁ ଏକତ୍ରିଂଶ ବର୍ଷର ଶାସନ ସବୁରେ 'ଭଟ୍ଟ ଶ୍ରୀ ସାଧାରଣ,' 'ଭଟ୍ଟମହାସାଧାରଣ' ନାମରେ ବର୍ଣ୍ଣିତ ହୋଇଅଛନ୍ତି ।

କୈଳାସଙ୍କ ପୁତ୍ର କାୟସ୍ଥ ଆଳାଭ ଏ ଶାସନ ରଚନା କରିଥିଲେ । କୈଳାସ ମହାସାନ୍ଧିବିଗ୍ରହୀ ରାଣକ (ଯୁଦ୍ଧ ଓ ସନ୍ଧି-ସଚିବ) ମଲ୍ଲଦତ୍ତଙ୍କ ବନ୍ଧୁ ଥିଲେ । ରାଣକ-ମଲ୍ଲଦତ୍ତଙ୍କ ନାମ ଜନମେଜୟଙ୍କ ଅନ୍ୟାନ୍ୟ ଶାସନରେ ମଧ୍ୟ ଦେଖାଯାଏ । ଷଷ୍ଠ ବର୍ଷର ଶାସନରେ ଅଛି 'ମଲ୍ଲଧରଦତ୍ତସୁତ' ଏକତ୍ରିଂଶ ବର୍ଷର ଶାସନରେ ଅଛି 'ରାଣକ-ମଲ୍ଲଦତ୍ତ ପ୍ରତିବଦ୍ଧ କାୟସ୍ଥ ଶ୍ରୀ ମାହୁକେନ' । ଉପସ୍ଥିତ ଶାସନରେ ଅଛି - 'ଶ୍ରୀ ମଲ୍ଲଦତ୍ତ ଧାରଦତ୍ତ ସୁତେନ' । ଏହି ତିନି ଶ୍ରେଣୀର ଶାସନକୁ ଏକାଠି କଲେ ଅନୁମିତ ହୁଏ ଯେ, ରାଣକ-ମଲ୍ଲଦତ୍ତ ଧାରଦତ୍ତଙ୍କ ପୁତ୍ର ଥିଲେ । ସମ୍ଭବତଃ ଓଝାଙ୍କ ପୁତ୍ର ସଂଗ୍ରାମ ଏହି ଶାସନ ଖୋଦନ କରିଥିଲେ ।

ଶାସନରେ ଅଛି, 'ମୁରସିମା ସମାବାସିତା ଶ୍ରୀମତ୍ ବିଜୟ କଟକାତ୍' । 'କଟକ' ଶବ୍ଦକୁ ଯଦି ଆଧୁନିକ 'କଟକ ସହର' ଅର୍ଥରେ ଗ୍ରହଣ କରାଯାଏ, ତାହାହେଲେ ଏହି ପଂକ୍ତିଟିର ଅର୍ଥ ହେବ—ରାଜା ମୁରସିମାଠାରେ ବାସ କରୁଥିଲେ; କିନ୍ତୁ ତେତିକବେଳେ କଟକଠାରେ ଏହି ଶାସନ ପ୍ରସ୍ତୁତ କରିଥିଲେ । ସମ୍ବଲପୁର ଅନ୍ତର୍ଗତ ମୁରସିମାଠାରେ ବାସ କରି କଟକଠାରେ ଠିକ୍ ସେହି

Digitized by srujanika@gmail.com

ସମୟରେ ଶାସନ ପ୍ରସ୍ତୁତ କରିବା ଅସମ୍ଭବ । ସୁତରାଂ 'କଟକ'କୁ 'ଶିବିର' ଅର୍ଥରେ ଗ୍ରହଣ କରିବାକୁ ହେବ । ବୋଧହୁଏ ରାଜା 'ମୁରସିମା ବିଜୟ ଶିବିର'ରେ ଏହି ଶାସନ ପ୍ରସ୍ତୁତ କରିଥିଲେ ।

( ଘ )

* ପ୍ରଥମ ମହାଭବ ଗୁପ୍ତଙ୍କ କପିଳେଶ୍ୱର ଶାସନ ।

"ସ୍ୱସ୍ତି ଶ୍ରୀ ମହାରାଜସମାବାସିନଃ ଶ୍ରୀମତୋ ବିଜୟକଟକାତ୍ । ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ଶ୍ରୀ ଶିବଗୁପ୍ତଦେବପାଦାନୁଧ୍ୟାତ ପରମମାହେଶ୍ୱର ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ସୋମକୁଳତିଲକ ତ୍ରିକଳିଙ୍ଗାଧିପତି ମହାରାଜାଧିରାଜ ଶ୍ରୀ ମହାଭବଗୁପ୍ତଦେବଃ କୁଶଳୀ । କୋଶଳଦେଶେ ଯୋଧାବିଷୟୀ ଦାଣ୍ଡାଗ୍ରାମେ ତଥା ଖଲାଣ୍ଡଲଗ୍ରାମେ । ବ୍ରାହ୍ମଣାନ୍ ସମ୍ପୂଜ୍ୟ ତଦ୍‌ବିଷୟୀୟାନ୍ ଯଥାକାଲାଧ୍ୟାସିନଃ ସମାହୂତ ସନ୍ନିହିତ ନିଯୁକ୍ତକାଧି-କାରିକ ଦାଣ୍ଡପାଶିକ ଚାଟଭଟ୍ଟପିଶୁନବେତ୍ରିକାବରୋଧଜନରାଣକ ରାଜବଲ୍ଲଭାଦୀନ୍ ସର୍ବାନ୍ ସମାଜ୍ଞାପୟତି । ବିଦିତମସ୍ତୁ ଭବତାଂ ଯଥାସ୍ମାଭିରୟଂ ଗ୍ରାମସ୍ସନିଧିସ୍ସୋପନି ଧିଶ୍ଚୌରଦ୍ରୋହୋପରାଧସ୍ସର୍ବବାଧାବିବର୍ଜିତସ୍ସର୍ବୋପରି କରାଦାନସହିତଶ୍ଚତୁଃ ସୀମାପର୍ଯ୍ୟନ୍ତସ୍ସାମ୍ରମଧୁକସ୍ସଗର୍ତ୍ତୋଷରଜଳସ୍ଥଳ ସହିତଃ ପ୍ରତିଷିଦ୍ଧଚାଟଭଟ୍ଟପ୍ରବେଶଃ ଚଙ୍କାରାବିକନର୍ଗତାୟ । କୋଶଳେ ଉଙ୍ଗରିବାସ୍ତବ୍ୟାୟ । ଭରଦ୍ୱାଜଗୋତ୍ରାୟ । ବାର୍ହସ୍ପତ୍ୟାଙ୍ଗିରସପ୍ରବରାୟ ବାଜ-ସନେୟଶାଖାଧ୍ୟାୟିନେ ଭଟ୍ଟ ଶ୍ରୀମହନ୍ତମସାଧାରଣାୟ ଭଟ୍ଟ ଶ୍ରୀଶୋଭନସୁତାୟ । ସଲିଲଧାରାପୁରସ୍ସରମାଚନ୍ଦ୍ରତାରକାର୍କକ୍ଷ୍ୟୋତିଃ ସମକାଲୋପଭୋଗାର୍ଥଂ ମାତାପିତ୍ରୋରାତ୍ମନଶ୍ଚ ପୁଣ୍ୟଯଶୋଽଭିବୃଦ୍ଧୟେ ତାମ୍ରଶାସନେନାକରୀକୃତ୍ୟ ପ୍ରତିପାଦିତ ମିତ୍ୟବଗତ୍ୟ ସମୁଚିତଭୋଗଭାଗକର ହିରଣ୍ୟାଦିପ୍ରତ୍ୟାୟ ମୁପନୟଦ୍ଭି-ର୍ଭବଦ୍ଭିସ୍ସୁଖେନ ପ୍ରତିବସ୍ତବ୍ୟମିତି ଭାବିଭିଶ୍ଚ ନୃପତିଭିର୍ଦତ୍ତିରସ୍ୟମସ୍ମଦୀୟ ଧର୍ମ-ଗୌରବ ଦସ୍ମଦନୁରୋଧାଚ୍ଚ ସ୍ୱଦତ୍ତିରିବାନୁପାଲନୀୟା । ତଥାଚୋକ୍ତଂ ଧର୍ମଶାସ୍ତ୍ରେ ବହୁଭିର୍ବସୁଧା ଦତ୍ତାରାଜଭିଃ ସଗରାଦିଭିଃ । ଯସ୍ୟ ଯସ୍ୟ ଯଦା ଭୂମିସ୍ତସ୍ୟ ତସ୍ୟ ତଦାଫଳଂ । ମାଭୂଦଫଳଶଙ୍କା ବଃ ପର ଦତ୍ତେତି ପାର୍ଥିବାଃ । ସ୍ୱଦତ୍ତାତ୍ ଫଳମାନନ୍ତ୍ୟଂ ପରଦତ୍ତାନୁପାଳନେ । ଷଷ୍ଟିବର୍ଷସହସ୍ରାଣି ସ୍ୱର୍ଗେ ମୋଦତି ଭୂମିଦଃ । କ୍ଷିତ (୧) X X X X ପାତାନ୍ନହର୍ତ୍ତାର ଦ୍ୱିତୟଂ ନରକଂ ବ୍ରଜେତ୍ ।

* Indian Antiquary Vol. V. 1876

(୧) ଶାସନର ଏହି ସ୍ଥାନରେ ଅକ୍ଷରଗୁଡ଼ିଏ ନଷ୍ଟ ଯାଇଅଛି । "କ୍ଷିତ" ଶବ୍ଦଟି X ।

Digitized by srujanika@gmail.com

ଅଗ୍ନେରପତ୍ୟଂ ପ୍ରଥମଂ ସୁବର୍ଣ୍ଣଂ ଭୂର୍ଗୌଷ୍ଣ ସୂର୍ଯ୍ୟସୁତାଶ୍ଚଗାବଃ । ଯଃ କାଞ୍ଚନଂ ଗାଂ ଚ ମହୀଂ ପ୍ରଦଦ୍ୟାତ୍ ଦତ୍ତାସ୍ତ୍ରୟସ୍ତେନ ଭବନ୍ତି ଲୋକେ ଆସ୍ଫୋଟୟନ୍ତି ପିତରୋ ବଲ୍‌ଗୟନ୍ତି ପିତାମହାଃ । ଭୂମି ଦାତା କୁଲେଜାତଃ ସ ନସ୍ତ୍ରାତା ଭବିଷ୍ୟତ । ଯଃ ପ୍ରତିଗୃହ୍ଣାତି ଯସ୍ତୁ ଭୂମିଂ ପ୍ରଯଚ୍ଛତି । ଉଭୌତୌ ପୁଣ୍ୟକର୍ମାଣୌ ନିୟତଂ ସ୍ୱର୍ଗଗାମିନୌ । ତଡ଼ାଗାନାଂ ସହସ୍ରାଣି ବାଜପେୟଶତାନି ଚ ଗବାଂ କୋଟିପ୍ରଦାନେ ଚ ଭୂମିହର୍ତ୍ତା ନ X ହରତେ ହାରୟେଦ୍ୟସ୍ତୁ ମନ୍ଦବୁଦ୍ଧିସ୍ତ ମୋହ୍ବତଃ ସବଂଶୋ ବାରୁଣୈଃ ପାଶୈସ୍ତିର୍ଯ୍ୟଗ୍‌ଯୋନିଂ ଗଚ୍ଛତି । ସୁବର୍ଣ୍ଣମେକାଂ ଗାମେକାଂ ଭୂମେରପ୍ୟ X ମଙ୍ଗୁଲଂ । ହରନ୍ନରକମାପ୍ନୋତି ଯାବା ଦାଭୂତସଂପ୍ଲବ ସ୍ୱଦତ୍ତାମ୍‌ପରଦତ୍ତାମ୍ବା ଯୋ ହରେତ ବସୁନ୍ଧରାଂ । ବିଷ୍ଠାୟାଂ କୃମିର୍ଭୂତ୍ୱା ପିତୃଭିଃ ସହ ପଚ୍ୟତେ । ଆଦିତ୍ୟୋ ବରୁଣୋବିଷ୍ଣୁର୍ବ୍ରହ୍ମା ସୋମୋ ହୁତ ଶନଃ । ଶୂଲପାଣିସ୍ତୁ ଭଗବାନଭିନନ୍ଦନ୍ତି ଭୂମିଦଂ । ସାମାନ୍ୟୋଽୟନ୍ଧର୍ମସେତୁର୍ନୃ-ପାଣାଂ କାଲେ କାଲେ ପାଲନୀୟୋ ଭବଦ୍ଭିଃ । ସର୍ବାନେତାନ୍ ଭାବିନଃ ପାର୍ଥି-ବେନ୍ଦ୍ରାନ୍ ଭୂୟୋଭୂୟୋ ଯାଚତେ ରାମଭଦ୍ରଃ । ଇତି କମଳାଦଳାମ୍ବୁବିନ୍ଦୁ-ଲୋଲାଂ ଶ୍ରିୟ୍ ମନୁଚିନ୍ତ୍ୟ ମନୁଷ୍ୟଜୀବିତଂ ଚ । ସକଲମିଦମୁଦାହୃତଂ ଚ X ନ ହି ପୁରୁଷୈଃ ପରକୀର୍ତ୍ତୟୋ ବିଲୋପ୍ୟାଃ । ସକଲଭୂପାଲମୌଳିମାଲାବିଲଗ୍ନ-ମାଣିକ୍ୟମୟୂଖପାଳି ଭିରଙ୍ଘ୍ରି ବିମୁକ୍ତମୁକ୍ତାଫଳପ୍ରସାଧିତାଶେଷବଳଂ ମହୀମଣ୍ଡଳଂ । ଅସାଧାରଣନାମ୍ନି ମାର୍ତ୍ତଣ୍ଡଲକେ ବଳସ୍ୟ ସର୍ବାଗମଂ ଶୌର୍ଯ୍ୟୋଦଣ୍ଡ ଖତ୍ର-ତେଜସି × ରାଷ୍ଟ୍ରସ୍ୟ ବପ୍ରୋଦ୍ଭମେ । ନାନାଖ୍ୟାନକକାବ୍ୟସୁଧାମୃତରସାସ୍ୱାଦାଦ-ମର୍ତ୍ତ୍ୟେଷୂତ୍ତ ସନ୍ତୋଷାତ୍ ସୁଖମନ୍ୱଭୂଦବରତଂ ପୃଥ୍ୱୀଶଚୂଡ଼ାମଣିଃ । ଜ୍ଞାତା-ଶେଷାର୍ଥଶାସ୍ତ୍ରସ୍ତ୍ୱବମଲଧିୟା ବେଦବେଦାଙ୍ଗ ବିଦ୍ୟାଶିକ୍ଷାକଲ୍ପୋଡ଼ହାସପ୍ରକଣ୍ଠ ସୁରସବାକ୍‌ପ୍ରାପ୍ତଭୂସ୍ଥିଷ୍ଟଧାମ୍ନ । ନାମ୍ନା ସାଧାରଣେନ ଦ୍ୱିଜବର X ମନ୍ତ୍ରିଣା ଯସ୍ୟ ରାଜ୍ୟେ ନିଷ୍ଠାଟମ୍ଭୀରମୂର୍ତ୍ତି ଗତି ବଦତୋ ଧର୍ମ କନ୍ଦର୍ପଦେବଃ । ପରମ-ମହେଶ୍ୱର ପରମଭଟ୍ଟାରକ ମହାରାଜାଧିରାଜ ପରେମଶ୍ୱର ସୋମକୁଳତିଲକ ତ୍ରିକଳିଙ୍ଗାଧିପତି ମହାଭବଗୁପ୍ତଦେବପାଦପଦ୍ମପ୍ରବର୍ଦ୍ଧମାନ ବିଜୟ ରାଜ୍ୟେ । ଏକତ୍ରିଂଶତ୍ତମେ ସାମ୍ବତ୍ସରେ ମାର୍ଗସୁଦି × ତ୍ରୟୋଦଶ୍ୟାଂ ଯତ୍ରାଙ୍କେନାପି ସମ୍ବତ୍ ୩୦ X ୩ ଲିଖିତମିଦଂ ନିଂଫଲତାମ୍ରଶାସନଂ X ରାଣକ ଶ୍ରୀମଲ୍ଲଦତ୍ତପ୍ରତିବଦ୍ଧ କାୟସ୍ଥ ମହଟ୍ଟକେନ ଇମ୍ମଦ୍‌ବର୍ଣ୍ଣାଙ୍କିତଂ ସ୍ୱେନେତି । ପ୍ରଣିତଂ କୋଶଲେନ୍ଦ୍ରେଣ । ପ୍ରତିବୋଧମହତ୍ତମ । ଶ୍ରୀଦତ୍ତ × ଶାସନଂ ତାମ୍ର ନିର୍ମ୍ମିତଂ । × ମାଧବେନ ବା ସୃଷ୍ଟଂ ତେନେତି ।"

ବାବୁ ରଙ୍ଗଲାଲ ବାନୁର୍ଯ୍ୟା ଏହି ଶାସନ ଆବଦ୍ଧରେ ନିମ୍ନୋକ୍ତ ମତାମତ ଲେଖି ଯାଇଅଛନ୍ତି ।

Digitized by srujanika@gmail.com

ଚୌଦ୍ୱାରଠାରେ ୧୮୭୪ ଖ୍ରୀଷ୍ଟାବ୍ଦରେ ଆବିଷ୍କୃତ ହୋଇଥିଲା । "ଶ୍ରୀ ଶିବଗୁପ୍ତଦେବପାଦାନୁଧ୍ୟାତ ପରମମାହେଶ୍ୱର ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ସୋମକୁଳତିଳକ ତ୍ରିକଳିଙ୍ଗାଧିପତି ମହାରାଜାଧିରାଜ ଶ୍ରୀମହାଭବ-ଗୁପ୍ତଦେବ" ଶ୍ରୀମହୋତ୍ତମ ସାଧାରଣ ଭଟ୍ଟଙ୍କୁ ଦାରଣ୍ଡ ଓ ଖଲାଣ୍ଡଲ ନାମକ ଦୁଇଟି ଗ୍ରାମ ଦେଇଥିଲେ । ଗ୍ରାମ ଦୁଇଟି କୋଶଳ ଦେଶସ୍ଥ ଯୋଧଖଣ୍ଡରେ ଅବସ୍ଥିତ ଥିଲା । ମହୋତ୍ତମ ସାଧାରଣ ଶ୍ରୀ ଶୋଭନ ସାଧାରଣ ଭଟ୍ଟଙ୍କର ପୁତ୍ର ଥିଲେ । ଏହି ଶୋଭନ ସାଧାରଣ ଟଙ୍କାରି ଦେଶରୁ ଆସି କୋଶଳ ଦେଶସ୍ଥ ଉଙ୍ଗର ଗ୍ରାମରେ ବାସ କରୁଥିଲେ । ରାଜା ପ୍ରଧାନମନ୍ତ୍ରୀ ସାଧାରଣଙ୍କ ଉପରେ ରାଜ୍ୟର ସମସ୍ତ ଭାର ଅର୍ପଣ କରିଥିଲେ । ଶ୍ରୀମହାଭବଗୁପ୍ତଦେବ ରାଜତ୍ୱର ଏକତ୍ରିଂଶ ବର୍ଷରେ ମାର୍ଗ (ମାର୍ଗଶିର) ଶୁକ୍ଳପକ୍ଷ ତ୍ରୟୋଦଶୀ ଦିନ ଏହି ଶାସନ ଘୋଷଣା କରିଥିଲେ । ସାନ୍ଧିବିଗ୍ରହିକ ସଚିବ (**Minister of peace and war**) ମଲ୍ଲଦତ୍ତ ଏବଂ ସେଙ୍କେଟାରି କାୟସ୍ଥ ମାହୁକ ଏହି ଶାସନର ସାକ୍ଷୀ ଥିଲେ । ମାଧବ ଏହାର ରଚୟିତା ଏବଂ ପୁଣ୍ଡ୍ରଗ୍ରାମକ୍ଷ ଦତ୍ତ ଏହାକୁ ଖୋଦନ କରିଥିଲେ ।

ଚୌଦ୍ୱାର ଏକ ସମୟରେ ଓଡ଼ିଶାର ରାଜଧାନୀ ଥିଲା । ବର୍ତ୍ତମାନ ଏଠାରେ ଏକ ଗ୍ରାମ ଓ ଏକ ସାମାନ୍ୟ ବଜାର ଦୃଷ୍ଟିଗୋଚର ହୁଏ । ଜ୍ୟୋତିର୍ବିମାନଙ୍କ ମତରେ ଜନମେଜୟ ରାଜା ସର୍ପଯଜ୍ଞ ପରେ ଏହାକୁ ସ୍ଥାପନ କରିଥିଲେ । ଏହା ଓଡ଼ିଶାର ପ୍ରାଚୀନତମ ରାଜଧାନୀସ୍ୱରୂପ ପରିଗଣିତ । ଯାଜପୁର, ସାରଙ୍ଗଗଡ଼, କଟକ ଓ ବଡ଼ାବାଟି ପ୍ରଭୃତି ଦୁର୍ଗମାନ ଚୌଦ୍ୱାରର ବହୁବର୍ଷ ପରେ ନିର୍ମିତ ହୋଇଅଛି । ଚୌଦ୍ୱାରଠାରୁ ଅଳ୍ପଦୂରରେ 'କପାଳେଶ୍ୱର' ନାମକ ଆଉ ଗୋଟିଏ ସୁଦୃଢ଼ ଦୁର୍ଗ ଥିଲା । କେତେକ ବର୍ଷ ଇଣ୍ଡିଆ ଇରିଗେସନ କମ୍ପାନୀକୁ ଦାନ କରିବାରୁ କମ୍ପାନୀ ଏହାର ପଥର ସବୁ ବିରୂପା ଆନିକଟ୍ ନିର୍ମାଣରେ ବ୍ୟବହାର କରିଥିଲେ । ରାଜଧାନୀ ସ୍ଥାନାନ୍ତରିତ ହେଲା ପରେ ମଧ୍ୟ ବହୁକାଳ ଚୌଦ୍ୱାରର ଗୌରବ ରକ୍ଷିତ ହୋଇଥିଲା । ଭୈରଙ୍ଗଙ୍କ ସମୟରେ (୧୧୩୨-୫୨ ଖ୍ରୀ: ଅ:) ଏହି ଦୁର୍ଗ ମଧ୍ୟରେ ଏକ ପୁଷ୍କରଣୀ ଖୋଦିତ ହୋଇଥିଲା । ଅଦ୍ୟାବଧି ମଧ୍ୟ ଏହି ପୁଷ୍କରଣୀ ଭୈରଙ୍ଗଙ୍କ ନାମାନୁସାରେ ଅଭିହିତ ହେଉ-ଅଛି । ମାଦଳାପାଞ୍ଜିରୁ ଜଣାଯାଏ ଯେ, କଟକରେ ପଥରବନ୍ଧ (୧୦୦୬ ଖ୍ରୀ: ଅ:) ନିର୍ମିତ ହେବା ପରେ ସୈନ୍ୟମାନଙ୍କର ଛାଉଣି ପୁଲ୍ଲାଠାରୁ ଚୌଦ୍ୱାରକୁ ପ୍ରେରିତ ହୋଇଥିଲା ।

କିନ୍ତୁ ଗୁପ୍ତ-ବଂଶର ତାମ୍ରଶାସନ ଓଡ଼ିଶାକୁ କିପରି ଆସିଲା ? କୋଶଳ ଦେଶରେ ଏହି ଶାସନ ପ୍ରଦତ୍ତ ହୋଇଥିଲା । ଅଯୋଧ୍ୟାର ଅନ୍ୟତମ ନାମ

Digitized by srujanika@gmail.com

କୋଶଳ । କାନପୁରର ଚତୁର୍ଦ୍ଦିଗସ୍ଥ ଭୂଭାଗକୁ କେହି କେହି "ଦକ୍ଷିଣ କୋଶଳ" କହନ୍ତି । କିନ୍ତୁ ଉପରୋକ୍ତ ଉଭୟ କୋଶଳ ମଧ୍ୟରୁ କୌଣସିଟି ଶାସନୋକ୍ତ କୋଶଳ ନୁହେଁ । କାରଣ, ସେମାନଙ୍କ ନାମର ଶେଷରେ 'ଆକାର' ଥିବାର ଦେଖାଯାଏ । ଆଉ ମଧ୍ୟ ରାଜାଙ୍କର ଏକ ଉପାଧି 'ତ୍ରିକଳିଙ୍ଗାଧିପତି'; ପୁଣି ସେ କଟକଠାରେ ଶାସନ ଘୋଷଣା କରିଥିଲେ । ସୁବର୍ଣ୍ଣରେଖାଠାରୁ ମାନ୍ଦ୍ରାଜ ପର୍ଯ୍ୟନ୍ତ ସମସ୍ତ ଭୂଭାଗର ପ୍ରାଚୀନତମ ନାମ କଳିଙ୍ଗ । ଏହା ତିନିଭାଗରେ ବିଭକ୍ତ :—ଉତ୍କଳିଙ୍ଗ, ମଧ୍ୟକଳିଙ୍ଗ ଓ ଦକ୍ଷିଣ କଳିଙ୍ଗ । ଆମ୍ଭମାନଙ୍କର ଉତ୍କଳ ଶବ୍ଦ ବୋଧହୁଏ ଉତ୍କଳିଙ୍ଗର ସଙ୍କୀର୍ଣ୍ଣ ନାମାନ୍ତର ମାତ୍ର । 'ଉତ୍କଳ' ନାମ ପରବର୍ତ୍ତୀ ପୁସ୍ତକମାନଙ୍କରେ ଲକ୍ଷିତ ହୁଏ ।

କୋଶଳ ଶବ୍ଦ ଅଦ୍ୟାବଧି ଓଡ଼ିଶାର କୌଣସି କୌଣସି ଅଞ୍ଚଳରେ ସୁପରିଚିତ ଥିବାର ଦେଖାଯାଏ । ପୁରୀ ଓ ଅନୁଗୁଳର କୌଣସି କୌଣସି ଅଞ୍ଚଳକୁ ଆଜିକାଲି ମଧ୍ୟ କୋଶଳ କୁହାଯାଉଅଛି । ଓଡ଼ିଶାର ଏକପ୍ରକାର ଶାଗର ପ୍ରଚଳନ ଅଛି । ଏହାକୁ କୋଶଳାଶାଗ (କୋଶଳ ଦେଶର ଶାଗ) କହନ୍ତି । ଆଉ ମଧ୍ୟ ଦଉଟି ନଦୀର ମଧ୍ୟବର୍ତ୍ତୀ ଦେଶକୁ ବା କୋଣାକୃତି କୌଣସି ଭୂଖଣ୍ଡକୁ 'କୋଶଳ' କହାଯାଇପାରେ । ଏହି ଦୃଷ୍ଟିରେ ଦେଖିଲେ ନିମ୍ନଲିଖିତ ଭୂଖଣ୍ଡ-ଗୁଡ଼ିକ ଦୁଇ ନଦୀର ମଧ୍ୟରେ ଥିବା ଯୋଗୁଁ 'କୋଶଳ' ବୋଲି କୁହାଯାଇ ପାରେ :—ବୈତରଣୀ ଓ ଖରସୁଆର ମଧ୍ୟବର୍ତ୍ତୀ ଭୂଭାଗ, ଖରସୁଆ ଓ ବ୍ରାହ୍ମଣୀର ମଧ୍ୟବର୍ତ୍ତୀ ଭୂଭାଗ ; ବ୍ରାହ୍ମଣୀ ଓ ବିରୂପାର ମଧ୍ୟବର୍ତ୍ତୀ ଭୂଖଣ୍ଡ; ବିରୂପା ଓ ମହାନଦୀର ମଧ୍ୟବର୍ତ୍ତୀ ଭୂଖଣ୍ଡ ଏବଂ ମହାନଦୀ ଓ କାଠଯୋଡ଼ିର ମଧ୍ୟବର୍ତ୍ତୀ ଭୂଖଣ୍ଡ । ଆମ୍ଭମାନଙ୍କ ଆଲୋଚିତ ଶାସନ ଓ ଅନ୍ୟାନ୍ୟ କେତେକ ଉପରୋକ୍ତ ଭୂଭାଗମାନଙ୍କରେ ଆବିଷ୍କୃତ ହୋଇଅଛି ଏବଂ ସେସବୁରେ କୋଶଳ ଦେଶର ଉଲ୍ଲେଖ ଦେଖାଯାଏ । ଗୁପ୍ତମାନେ ଦୋଆବରେ ସର୍ବପ୍ରଥମେ ରାଜଧାନୀ ସ୍ଥାପନ କରିଥିଲେ । ବୋଧହୁଏ ସେମାନଙ୍କର ଏକ ଶାଖା ତ୍ରିକଳିଙ୍ଗ ଅଧିକାର କରିଥିଲେ । ଗଙ୍ଗା ଓ ସରଯୂର ମଧ୍ୟରେ ଥିବାରୁ ଦୋଆବ୍‌କୁ (Doab) କୋଶଳ କୁହାଯାଉଥିଲା । ଉପରୋକ୍ତ ଗୁପ୍ତ ଶାଖା ଦୋଆବ୍‌କୁ ଆସିଥିବାରୁ ବୋଧହୁଏ ସେମାନଙ୍କର ପରିଚିତ 'କୋଶଳ' ନାମକୁ ତ୍ରିକଳିଙ୍ଗ ପ୍ରତି ପ୍ରୟୋଗ କରିଥିଲେ ।

କିନ୍ତୁ ମାଦଳାପାଞ୍ଜି ଓ ବଂଶାବଳୀରେ ଗୁପ୍ତମାନଙ୍କର ନାମୋଲ୍ଲେଖ ନାହିଁ କାହିଁକି ? ବଂଶାବଳୀରେ ଯଯାତିଙ୍କର ନାମ ଅଛି । ଷ୍ଟର୍ଲିଂଙ୍କ ମତରେ ଯଯାତି ୪୭୩ ଖ୍ରୀଷ୍ଟାବ୍ଦରୁ ୫୨୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ।

Digitized by srujanika@gmail.com

ଅନ୍ୟ ଗୋଟିଏ ଶାସନରୁ * (ପରବର୍ତ୍ତୀ 'ଛ' ଶାସନ୍) ଜଣାଯାଏ ଯେ, ଭବଗୁପ୍ତଙ୍କ X ଶିବଗୁପ୍ତଙ୍କ ରାଜତ୍ୱ ସମୟରେ ଯଜାତ ଓଡ଼ିଶା ଶାସନ କରୁଥିଲେ । ଆଲୋଚିତ ଶାସନରୁ ମଧ୍ୟ ଜଣାଯାଏ ଯେ, ଭବଗୁପ୍ତଙ୍କ ପିତାଙ୍କ ନାମ ଶିବଗୁପ୍ତ ଥିଲା । ସୁତରାଂ ଅନୁମିତ ହୁଏ ଯେ, ଭବଗୁପ୍ତଙ୍କ ପିତା ଓ ପୁତ୍ର ଉଭୟଙ୍କର ଏକ ନାମ ଥିଲା ଏବଂ ଓଡ଼ିଶାର ରାଜାମାନେ ଗୁପ୍ତମାନଙ୍କର ଅଧୀନତା ସ୍ୱୀକାର କରୁଥିଲେ ।

ଶାସନଟି କୁଟିଳାକ୍ଷରରେ ଲିଖିତ । ଏହା ଓଡ଼ିଶାର ପ୍ରାଚୀନ ରାଜଧାନୀରେ ଆବିଷ୍କୃତ ହୋଇଥିଲା ଏବଂ କଟକ—ଚୌଦ୍ୱାରଠାରୁ ଘୋଷିତ ହୋଇଥିଲା ।

ଏହି ଶାସନ ସମ୍ବନ୍ଧରେ ଜନ୍ ବିମସ୍ ନିମ୍ନୋକ୍ତ ମନ୍ତବ୍ୟ ପ୍ରକାଶ କରିଅଛନ୍ତି । ଶାସନର ପତ୍ରଗୁଡ଼ିକ ଖଣ୍ଡେ ମୋଟା ତମ୍ବା ମୁଦଆରେ ବନ୍ଧା ଥିଲା । ମୁଦଆ ଉପରେ ବୋଧହୁଏ ରାଜାଙ୍କର ଏକ ମୋହର ଥିଲା । କିନ୍ତୁ ଯେ ସବୁ ଆଲୋଚନା ବେଳକୁ ନଷ୍ଟ ଯାଇଥିଲା । ଗୁପ୍ତମାନେ କପରି କଳିଙ୍ଗ ଅଧିକାର କରିଥିଲେ ଓ 'କଳିଙ୍ଗ' ନାମ କପରି 'ଓଡ଼ିଶା'ରେ ପରିଣତ ହେଲା, ଏହାର କୌଣସି କାରଣ ବିମ୍ସ୍ ସାହେବ ସ୍ଥିର କରି ପାରି ନାହାନ୍ତି । ଦାରଣ୍ଡ ଓ ଟଳାଣ୍ଡଲ ଗ୍ରାମ ଦୁଇଟି କେଉଁଠାରେ ଅବସ୍ଥିତ ଥିଲା ବା ସେମାନଙ୍କର ଆଧୁନିକ ନାମ କ'ଣ, ଏହା ସେ ସ୍ଥିର କରି ପାରିନାହାନ୍ତି । କିନ୍ତୁ କଟକର କେତେକ ମାଇଲ ଉତ୍ତରରେ 'ଯୋଧ' ନାମକ ଯେଉଁ ପ୍ରଗଣା ଅଛି, ସେଥିରୁ ଶାସନୋକ୍ତ ଯୋଧର ପରିଚୟ ମିଳୁଅଛି ।

( ଙ )

* ପ୍ରଥମ ମହାଭବଗୁପ୍ତଙ୍କ ଚୌଦ୍ୱାର ଶାସନ ।

"ସ୍ୱସ୍ତି ଶ୍ରୀମଦାମସମାବାସିନଃ ଶ୍ରୀମତୋ ବିଜୟକଟକାତ । ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ଶ୍ରୀ ଶିବଗୁପ୍ତଦେବପାଦାନୁଧ୍ୟାତ ପରମମାହେଶ୍ୱର ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ସୋମକୁଳତିଳକ ତ୍ରିକଳିଙ୍ଗାଧିପତି ମହାରାଜାଧିରାଜ ଶ୍ରୀମହାଭବଗୁପ୍ତ ଦେବଃ କୁଶଳୀ । କୋଶଳଦେଶେ

---

* Proceedings of The As. Soc. Bengal, 1882.

Digitized by srujanika@gmail.com

ସମ୍ଭାମୀ✱ ବଣ (ଷ ସ୍ମୀ ଯଲ୍ଲଲେନ୍ତୁ✱ ଗ୍ରାମେ । ବ୍ରାହ୍ମଣାନ୍ ସମ୍ପୁଜ୍ଯ + ଶ+ ସ୍ଥାନ୍ ଯଥାକାଳାଧ୍ୟାସିନଃ ସ ମା + + ସନ୍ନିଧାତୃବପ୍ର + + ଧିକାରକ ଦାଣ୍ଡପାଶିକ ଗୃହଭଟ + ନଧ୍ୟର୍ଫିକାଧସ୍ତ୍ରାଧିଜନସ୍ତ୍ରଣକସ୍ତ୍ରଜପୁତ୍ର ବଲ୍ଲଭଦନ୍ ସବ୍ବାନ୍ ସମାଜ୍ଞାପୟତ । ବଦତମ ଭବତାଂ ଯଥାସ୍ମାଭିରୟଂ ଗ୍ରାମଃ ସନଧିଃ ସୋପନଧିଃ ସଦଶାପରାଧଃ ସର୍ବବାଧାବବର୍ଜ୍ଜିତଃ ସର୍ବୋପଧିକ X ବାନସନ୍ତତଷ୍ଟରୁଃ ସି (ସୀ) ମାପର୍ଯ୍ୟନ୍ତଃ ସାମ୍ରମଧୂକଃ ସଗର୍ତ୍ତୋଷରଃ ସଜଲଃ ସ୍ଥଲସହିତଃ ପ୍ରତନଚିଦ୍ଧ ଗୃହଭଟପ୍ରବେଶଃ ଚାକରବନର୍ଗଭାସ୍ଥ କୋଶଲେ ସର୍ବବାଧାଶୂନ୍ୟାସ୍ତ ଭରଦ୍ୱାଜ- ଗୋତ୍ରସ୍ୟ ବାର୍ହସ୍ପତ୍ୟାଙ୍ଗିରସପ୍ରବରସ୍ୟ ବାଜସେନଶାଖାଧ୍ୟାସ୍ତିନେ ଭଟ୍ଟଶ୍ରୀମହତ୍ତମ- ସାଧାରଣାସ୍ତ ଭଟ୍ଟଶ୍ରୀଖଗଦେବସୁତାୟ ସଲ୍ଲଧାସ୍ତପୁରସ୍ନରମାଚନ୍ଦ୍ରତାରକାର୍କସ୍ତିତ- ସମ୍ପକାଳୀୟୁଭ୍ରୋଗସ୍ୟ ମାତାପିତ୍ରୋରାତ୍ମନଶ୍ଚ ପୁଣ୍ୟ ଯଶୋଽଭିବୃଦ୍ଧୟେ ତାମ୍ରଶାସ- ନେନାକରୀକୃତ ପ୍ରତିପାଦିତମିତ୍ୟବଗତ୍ୟ ସମ୍ୟଗ୍‌ବର୍ଦ୍ଧ ଭୋଗଭାଗ କରହିରଣ୍ୟା- ଦିପ୍ରତ୍ୟାୟମୂପନୟଦ୍ଭିର୍ଭ ବର୍ତ୍ତିଷ୍ଟୁଖେନ ପ୍ରତିବସ୍ତବ୍ୟମିତି ଭାବିଭିଶ୍ଚ ନୃପତିଭିର୍ଦ୍ଦ- ତଶ୍ଚୟମସ୍ମଦୀୟା ଧର୍ମ୍ମଗୌରବାଦସ୍ମଦନୁରୋଧାଚ୍ଚ ସ୍ୱଦତ୍ତିରିବାନୁପାଲନୀୟା । ତଥା ଚୋକ୍ତଂ ଧର୍ମଶାସ୍ତ୍ରେ ବହୁଭିର୍ବସୁଧାଦତ୍ତା ରାଜଭିଃ ସଗରାଦିଭିଃ । ଯସ୍ୟ ଯସ୍ୟ ଯଦା ଭୂମିସ୍ତସ୍ୟ ତସ୍ୟ ତଦାଫଲଂ । ମାଭୂଦଫଲଶଙ୍କା ବଃ ପରଦତ୍ତେତି ପାର୍ଥିବାଃ । ସ୍ୱଦତ୍ତାତ୍ ଫଲମାନନ୍ତ୍ୟଂ ପରଦତ୍ତାନୁପାଲନେ । ଷଷ୍ଟିବର୍ଷସହସ୍ରାଣି ସ୍ୱର୍ଗେ ମୋଦତି ଭୂମିଦଃ । ଆକ୍ଷେପ୍ତା ଚାନୁମନ୍ତା ଚ ତାନ୍ୟେବ ନରକଂ ବ୍ରଜେତ୍ । ଅଗ୍ନେରପତ୍ୟଂ ପ୍ରଥମଂ ସୁବର୍ଣ୍ଣଂ ଭୂର୍ବୈଷ୍ଣବୀ ସୂର୍ଯ୍ୟସୁତାଶ୍ଚ ଗାବଃ । ଯଃ କାଞ୍ଚନଞ୍ଚ ମହୀଂ ଚ ଦଦ୍ୟାତ୍ ଦତ୍ତାସ୍ତ୍ରୟସ୍ତେନ ଭବନ୍ତି ଲୋକେ । ଅସ୍ଫୋଟୟନ୍ତି ପିତରୋ ବଲ୍‌ଗୟନ୍ତି ପିତାମହାଃ । ଭୂମିଦାତା କୁଲେ ଜାତଃ ସ ନସ୍ତାତା ଭବିଷ୍ୟତି । ଭୂମିଂ ଯଃ ପ୍ରତିଗୃହ୍ଣାତି ଯଶ୍ଚ ଭୂମିଂ ପ୍ରୟଚ୍ଛତି । ଉଭୌ ତୌ ପୁଣ୍ୟକର୍ମାଣୌ ନିୟତଂ ସ୍ୱର୍ଗଗାମିନୌ । ତଡ଼ାଗାନାଂ ସହସ୍ରାଣି ବାଜପେୟଶ- ତାନି ଚ । ଗବାଂ କୋଟିପ୍ରଦାନେ ଚ ଭୂମିହର୍ତ୍ତା ନ ଶୁଧ୍ୟତି । ହରତେ ହାରୟେଦ୍ୟସ୍ତୁ ମନ୍ଦବୁଦ୍ଧିସ୍ତମୋବୃତଃ । ସ ବଦ୍ଧୋ ବାରୁଣୈଃ ପାଶୈସ୍ତିର୍ଯ୍ୟଗ୍‌ଯୋନିଂ ସ ଗଚ୍ଛତି । ସୁବର୍ଣ୍ଣମେକାଂ Xମେକାଂ ଭୂମେରପ୍ୟର୍ଦ୍ଧ ମଙ୍ଗୁଲଂ । ହରନ୍ନରକଂ ଯାତି ଯାବଦାଭୂତସମ୍ପ୍ଳବଂ । ସ୍ୱଦତ୍ତାଂ ପରଦତ୍ତାଂ ବା ଯୋ ହରେତ ବସୁନ୍ଧରାଂ । ସ ବିଷ୍ଠାୟାଂ କୃମିର୍ଭୂତ୍ୱା × ସହ ପଚ୍ୟତେ । ଆଦିତ୍ୟୋ ବରୁଣୋ ବିଷ୍ଣୁର୍ବ୍ରହ୍ମା ସୋମୋ ହୁତାଶନଃ । ଶୂଲପାଣିଶ୍ଚ ଭଗବାନଭିନନ୍ଦନ୍ତି ଭୂମିଦଂ । ସାମାନ୍ୟୋଽ- ୟଂଧର୍ମସେତୁର୍ନୃପାଣାଂ କାଲେ କାଲେ ପାଲନୀୟୋ X । ସର୍ବାନେତାନ୍ ଭାବିନଃ ପାର୍ଥିବେନ୍ଦ୍ରାନ୍ X ଭୂୟୋ ଯାଚତେ ରାମଭଦ୍ରଃ । ଇତି କମଲଦ

✱ 'ସମ୍ଭାନ' ଓ 'ଯଲ୍ଲଲେନ୍ତୁ' ସ୍ଥାନରେ ଡାକ୍ତର ଫ୍ଳିଟ୍ 'ସଦାନ' ଓ 'ରୁଲେଣ୍ଡା' ବା 'ତୁଲେଣ୍ଡା' ପାଠ କରିଅଛନ୍ତି । Epigraphia Indica Vol. III.

Digitized by srujanika@gmail.com

ଜାମ୍ବୂବନ୍ଦୁଲୋଲାଂ ଶ୍ରିୟମନୁଚନ୍ତ୍ୟ ମନୁଷ୍ୟଜୀବିତଂ ଚ । ସକଲମିଦମୁଦାହୃତଂ ଚ X ନ ହି ପୁରୁଷୈଃ ପରକୀର୍ତ୍ତୟୋ ବିଲୋପ୍ୟାଃ । ସକଲଭୂପାଳମୌଳିମାଳା-ଲଳପନ୍ନାଣିକ୍ୟ ମୟୂଖବ୍ରତାଭି ମଣ୍ଡିତାଙ୍ଘ୍ରିକମଳଯୁଗଳଃ ପ୍ରଚଣ୍ଡଦୋର୍ଦ୍ଦଣ୍ଡ-ମଣ୍ଡଳାଗ୍ରଖଣ୍ଡିତାରାତିମତ୍ତମାତଙ୍ଗବିକୁମ୍ଭରକ୍ତଫଳପ୍ରସାଧିତାଶେଷରଣ ମହୀମଣ୍ଡଳଃ । ସମ୍‌ସାଧାରଣନାମ୍ନି ମହିତଳକେ ବିନସ୍ୟ ସନ୍ତାଗାମଂ ଧେଯୈ୍ୟାଦନ୍ତ ଗାତ୍ର ତେଜସି ଧରାରାଜ୍ୟସ୍ୟ ବିପ୍ରେଭ୍ୟମେX । ନାନାସ୍ଥାନକବସ୍ତୁର ମୃତରସାସ୍ୱାଦାହ୍ଲାମନ୍ଦଂ ସ୍ଫୁରନ୍ ସନ୍ତୋଷାନ୍ ସୁଖମନ୍ୱଭୂଦବିରତଂ ପୃଥ୍ୱୀଶଚୂଡ଼ାମଣିଃ । କ୍ଳେଶାଶେଷାର୍ଥ ଶାସ୍ତ୍ର ସ୍ମୃତ ବିମଳଧିୟ୍ୟାବେଦବେଦାଙ୍ଗବିଦ୍ୟାଂ ଶିକ୍ଷାଂ କଳ୍ପଂ ଛନ୍ଦାସ୍ତ୍ରଃ ପ୍ରକଟ ସୁଚିଗୁରୁଃ ପ୍ରାପ୍ତଭୂମିସ୍ୱଧାମ୍ନା । ସାମ୍ନା ସାଧାରଣେନ ଦ୍ୱିଜବରବିଧିନା ମନ୍ତ୍ରିଣା ଯସ୍ୟ ରାଜ୍ୟଂ ନିତ୍ୟାଦଂ ସୋମ୍ୟମୁଦ୍ଧୃତ୍ୱିଜଗତି ବିଦିତୋ ବର୍ମ୍ମକନ୍ଦର୍ପଦେବଃ । ପରମମାହେଶ୍ୱର ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ସୋମକୁଳତିଳକ ତ୍ରିକଳିଙ୍ଗାଧିପତି ଶ୍ରୀ ମହାଦେବଗୁପ୍ତଦେବ ପାଦପଦ୍ମପ୍ରବର୍ଦ୍ଧମାନବିଜୟରାଜ୍ୟେ ଏକତ୍ରିଂଶତ୍ତମସଂବତ୍ସରେ । ମାର୍ଗଶୁଦ୍ଧ ତିଥୌ ତ୍ରୟୋଦଶ୍ୟାଂ ଅଷ୍ଟାଙ୍କେନାପି ସଂବତ୍ ୩୧ ମାର୍ଗଶୁଦ୍ଧ ୧୩ । ଲିଖିତମିଦଂ ତ୍ରିଫଳୀତାମ୍ରଶାସନଂ ମହାସାନ୍ଧିବି-ଗ୍ରହୀରାଣକ ଶ୍ରୀମଲ୍ଲଦତ୍ତ ପ୍ରବନ୍ଧକାକାୟସ୍ଥ ଶ୍ରୀମା + କଳ ପ୍ରିୟକର୍ମରାଦିତ୍ୟ ସୁତେ-ନେତି ॥ ପ୍ରଣୀତଂ କୋଶକେନ୍ଦ୍ରେଣ ପ୍ରତିବୋଧମହତ୍ତମଂ । ଅଦତ୍ତ ପୁଣ୍ଡ୍ରସାକାଷ୍ଟଃ ଶାସନଂ ତାମ୍ରନିର୍ମିତଂ ॥ ଉତ୍କୀ (କା) ର୍ଣ୍ଣ (ଶ୍ରୀ) ତଂ ମାଧବେନ ବାସପ୍ରତି + + ।”

ଏହି ଶାସନ ୮ ୭୯ ଖ୍ରୀ: ଅ: ରେ ଚୌଦ୍ୱାରଠାରେ ଆବିଷ୍କୃତ ହୋଇଥିଲା । ମିଷ୍ଟର୍ ଜେ. ଉଇଣ୍ଟର ଷ୍ଟେଲ କହନ୍ତି, ପ୍ରାୟ ୧୭୦୦ ଖ୍ରୀଷ୍ଟାବ୍ଦରେ ଚୌଦ୍ୱାର ମରହଟ୍ଟାମାନଙ୍କର ଏକ ସୁଦୃଢ଼ ସେନାନିବେଶ ଥିଲା । ଶାସନଟି ଭୂପୃଷ୍ଠର ପ୍ରାୟ ତିନ ଫୁଟ ତଳେ ଥିଲା । ଆବିଷ୍କାର ସମୟରେ ଏହାର ମୋହରଟି ନଷ୍ଟ ହୋଇଯାଇଥିଲା । ପତ୍ରଗୁଡ଼ିକ ଏକ ମୋଟା ତମ୍ବା ମୁଦଆରେ ବନ୍ଧା ଥିଲା । ମୁଦଆର ଯୋଡ଼ ସ୍ଥାନରେ ଥିବା ମୋହରଟି ହଜିଯାଇଥିଲା । ପ୍ରଥମ ଓ ତୃତୀୟ ପତ୍ର କେବଳ ଭିତର ପାଖରେ ଖୋଦିତ ହୋଇଥିଲା । ଏହି ଶାସନ କୁଟିଳାକ୍ଷରରେ ଲିଖିତ ହୋଇଥିଲା । ଲିପି ସ୍ପଷ୍ଟ ଓ ଅକ୍ଷରଗୁଡ଼ିକ ଆଦୌ ନଷ୍ଟ ହୋଇ ନ ଥିଲା ।

ଏହି ଶାସନରେ ଶିବଗୁପ୍ତଙ୍କ ପୁତ୍ର ମହାରାଜ ମହାଦେବ ଗୁପ୍ତଙ୍କ ରାଜତ୍ୱ ସମୟରେ କନ୍ଦର୍ପ ଦେବ ଟାକରବିନଗର୍ତ୍ତ ଯଜୁର୍ବେଦୀ ବ୍ରାହ୍ମଣ ଉତ୍ତମ ସାଧାରଣଙ୍କୁ ସତ୍ତଲେନ୍ତୁ ଗ୍ରାମ ପ୍ରଦାନ କରିଥିଲେ । ଏହି ଗ୍ରାମ କୋଶଳଦେଶସ୍ଥ ସମ୍ବାନଜଲ୍ଲାର

Digitized by srujanika@gmail.com

ଅନ୍ତଃପାତୀ । କନ୍ଦର୍ପଦେବ ମହାଦେବ ଗୁପ୍ତଙ୍କର ଅଧୀନସ୍ଥ ଥିଲେ । ସୁତରାଂ ସ୍ମୃତିଶାସ୍ତ୍ରମତେ ତାହାଙ୍କର ଭୁକ୍ତବଧ ଦାନ କରିବାର ଅଧିକାର ନ ଥିଲା । ସେଥିପାଇଁ ସେ ରାଜାଧିରାଜ ମହାଦେବ ଗୁପ୍ତଙ୍କ ନାମରେ ଉପରୋକ୍ତ ଦାନ ଦେଇଥିଲେ ※ । ମହାଦେବ ଗୁପ୍ତଙ୍କ ରାଜତ୍ୱର ଏକବିଂଶ ବର୍ଷରେ ମାର୍ଗଶିର ଶୁକ୍ଳ ତ୍ରୟୋଦଶୀ ଦିନ ଏହି ଶାସନ ଘୋଷିତ ହୋଇଥିଲା । ମହୁକ (ଦତ୍ତ) ଏହାର ରଚୟିତା ଏବଂ ମାଧବ ଏହାକୁ ଖୋଦନ କରିଥିଲେ ।

ଏହି ଶାସନରେ ଥିବା ମହାରାଜାଧିରାଜମାନଙ୍କ ନାମ 'ଖ' ଚିହ୍ନିତ ପ୍ରଥମ ମହାଭବଗୁପ୍ତଙ୍କ ବଲାଦେବ ଶାସନରେ ମଧ୍ୟ ପରିଦୃଷ୍ଟ ହୁଏ । ମାଧବ ଉଭୟ ଶାସନ ଖୋଦନ କରିଥିଲେ ମଧ୍ୟ ଉଭୟରେ ଅକ୍ଷରର ଆକୃତି ଏକପ୍ରକାର । ଏଥିରୁ ଅନୁମିତ ହୁଏ ଯେ, ଉଭୟେ ଏକ ମହାରାଜାଙ୍କ ସମୟରେ ଘୋଷିତ ହୋଇଥିଲେ । ଆମ୍ଭେମାନେ ଏହି ସାଦୃଶ୍ୟ ଉପରେ ନିର୍ଭର କରି ନିମ୍ନୋକ୍ତ ରାଜାମାନଙ୍କ ନାମ ପାଉଅଛୁଁ ।

୧ । ଭବଗୁପ୍ତ, ୨ । ଶିବଗୁପ୍ତ, ୩ । ମହାଦେବଗୁପ୍ତ ।

ଭବଗୁପ୍ତ ଓ ଶିବଗୁପ୍ତ ପରବର୍ତ୍ତୀ ଗୁପ୍ତମାନଙ୍କର (Later Gutptas) ସବଂଶଜ ଥିଲେ । ଯଯାତି ଶିବଗୁପ୍ତଙ୍କ ଅଧୀନରେ ଜଣେ କର୍ମଗ୍ରାହୀ ଥିଲେ । ବାବୁ ରଙ୍ଗଲାଲ ବାନୁର୍ଯ୍ୟା ଏହି କଥା ଅନୁମାନ କରିଅଛନ୍ତି । ଏପରି ନ ହୋଇଥିଲେ ଅସାଧାରଣ କ୍ଷମତାଶାଳୀ ଯଯାତି କାହିଁକି ଶିବଗୁପ୍ତଙ୍କ

---

※ ଡାକ୍ତର ରାଜେନ୍ଦ୍ରଲାଲ ଏହି ଶାସନରେ "ଧର୍ମ୍ମକନ୍ଦର୍ପ ଦେବ" ସ୍ଥାନରେ "ବର୍ମ୍ମ କନ୍ଦର୍ପ ଦେବ" ପାଠ କରି କନ୍ଦର୍ପଦେବ ନାମରେ ମହାଦେବ-ଗୁପ୍ତଙ୍କ ଅଧୀନରେ ଜଣେ ସାମନ୍ତ ରାଜା ଥିଲେ ବୋଲି କଳନା କରିଅଛନ୍ତି । ପଶ୍ଚାତ୍ତରେ ଡାକ୍ତର ଫ୍ଲିଟ୍ ଓ ବାବୁ ରଙ୍ଗଲାଲ ବାନୁର୍ଯ୍ୟା ଶାସନର ଆଲୋଚିତ ସ୍ଥାନରେ "ଧର୍ମ୍ମକନ୍ଦର୍ପଦେବ" ବୋଲି ପାଠ କରିଅଛନ୍ତି । ସମସାମୟିକ ଅନ୍ୟତମ ଶାସନ ଦୃଷ୍ଟିରେ ଡାକ୍ତର ରାଜେନ୍ଦ୍ରଲାଲ ବାସ୍ତବିକ ଭ୍ରାନ୍ତ ହୋଇଥିବା ବୋଧହୁଏ । "ଧର୍ମ୍ମକନ୍ଦର୍ପଦେବ" ଉପସ୍ଥିତ ଶାସନରେ ମହାଦେବଗୁପ୍ତଙ୍କର ବିଶେଷଣ ଓ ଅର୍ଥାନୁସାରେ 'ମହାଦେବଗୁପ୍ତ' ମହାଭବ-ଗୁପ୍ତଙ୍କର ନାମାନ୍ତର । ଆଉ ମଧ୍ୟ ଫ୍ଲିଟ୍ ସାହେବ ରାଜେନ୍ଦ୍ର ଲାଲଙ୍କ 'ମହାଦେବଗୁପ୍ତ' ସ୍ଥାନରେ 'ମହାଭବଗୁପ୍ତ' ପାଠ କରିଅଛନ୍ତି । ଏ ବିଷୟ ପରବର୍ତ୍ତୀ ଅଧ୍ୟାୟରେ ସ୍ପଷ୍ଟତଃ ଆଲୋଚିତ ହେବ ।

Digitized by srujanika@gmail.com

'ମହାରାଜାଧିରାଜ' ବୋଲି ସମ୍ବୋଧନ କରିଅଛନ୍ତି ? ଆଉ ମଧ୍ୟ ବିହାରରେ ବହୁକାଳଯାଏ ଏକ ଗୁପ୍ତବଂଶ ଥିବା କଥା 'ଅପ୍‌ସର' ଅନୁଶାସନରୁ ଜଣାଯାଏ । ଏମାନେ ନିଜକୁ 'ତ୍ରିକଳିଙ୍ଗାଧିପତି' କହୁଥିଲେ । ଦକ୍ଷିଣ ବା ପଶ୍ଚିମରେ ଏଭଳି ଅନ୍ୟ କୌଣସି ଗୁପ୍ତରାଜବଂଶ ନ ଥିଲେ, ଯେଉଁମାନଙ୍କର ଓଡ଼ିଶାରେ ଅଧିକାର ଥିଲା । ଯଯାତି ଉତ୍ତରାଞ୍ଚଳରୁ ଆସିଥିଲେ । ସେ ପ୍ରଥମେ ଯାଜପୁର ଅଧିକାର କଲେ । ତତ୍‌ପରେ କ୍ରମାନ୍ୱୟରେ ଭୁବନେଶ୍ୱର ଓ ପୁରୀ ତାହାଙ୍କର ହସ୍ତଗତ ହୋଇଥିଲା । ଅତଏବ ଉତ୍ତରାଞ୍ଚଳରେ ତଥା ବିହାରରେ ତାହାଙ୍କର ଅଧିରାଜ ଥିବା ସ୍ୱାଭାବିକ । ଯଯାତି ୪୭୦ ଖ୍ରୀ. ଅ. ରୁ ୫୨୬ ଖ୍ରୀ. ଅ. ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଉପସ୍ଥିତ ଶାସନର ସମୟ ପର୍ଯ୍ୟନ୍ତ ସେ ଯଦି ବଞ୍ଚିଥାନ୍ତେ ତାହାହେଲେ ତାହାଙ୍କ ନାମ ଅବଶ୍ୟ ଏହାର ଅନ୍ତର୍ଭୁକ୍ତ ହୋଇଥାନ୍ତା । ଅତଏବ ଅନୁମିତ ହୁଏ ଯେ ଯଯାତିଙ୍କ ରାଜତ୍ୱ ପରେ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀର ମଧ୍ୟଭାଗରେ ଏହି ଶାସନ ହୋଇଥିଲା ।

ଏହି ଶାସନମାନଙ୍କର କୁଟିଳାକ୍ଷରକୁ ଅନେକେ ଦଶମଶତାବ୍ଦୀୟ ବୋଲି ମନେକରନ୍ତି । କିନ୍ତୁ ଏହି କୁଟିଳାକ୍ଷର କେବଳ ଦଶମ ଶତାବ୍ଦୀରେ ଲିଖିତ ହୋଇ ନ ଥିଲା । ଆହୁରି ଅନେକକାଳ ପୂର୍ବରୁ ଏହାର ବ୍ୟବହାରର ସୂତ୍ରପାତ ହୋଇଥିଲା । ଆଉ ମଧ୍ୟ ଓଡ଼ିଶା ଇତିହାସରେ ଅନ୍ୟ କୌଣସି ଯଯାତିଙ୍କର ନାମ ପରିଲକ୍ଷିତ ହୁଏ ନାହିଁ । ତାହାହେଲେ ଆଲୋଚିତ ଶାସନ-ମାନଙ୍କର ଯଯାତି ଯେ କେଶରୀବଂଶର ସ୍ଥାପୟିତା, ଏଥିରେ କୌଣସି ସନ୍ଦେହ କରାଯାଇ ନ ପାରେ ।

(ଚ)

* ପ୍ରଥମ ମହାଭବଗୁପ୍ତଙ୍କ କଟକ ଶାସନ ।

ଏହି ଶାସନର ଭାଷା ଓ ପ୍ରଣାଳୀ ପୂର୍ବବର୍ତ୍ତୀ 'ଘ' ଓ 'ଙ' ଶାସନ ସଦୃଶ । କେବଳ ଖୋଦନକାରୀଙ୍କ ଭ୍ରମବଶତଃ ସ୍ଥାନେ ସ୍ଥାନେ ସାମାନ୍ୟ ପାର୍ଥକ୍ୟ ଦେଖାଯାଏ । ଏତଦ୍ୱାରା ମହାଭବଗୁପ୍ତ ରାଜତ୍ୱର ଏକତ୍ରିଂଶ ବର୍ଷରେ ବ୍ରାହ୍ମଣସାଧାରଣଙ୍କୁ ଗୁଲୁଭଖଣ୍ଡ ଅନ୍ତର୍ଗତ ଆର୍କିଗ୍ରାମ ପ୍ରଦାନ କରିଥିଲେ ।

ଏହାର ପତ୍ରଗୁଡ଼ିକ ଯେଉଁ ତମ୍ବା ମୁଦଆରେ ବନ୍ଧା ଥିଲା, ତାହାର ଉପରିସ୍ଥ ମୋହରରେ ଲକ୍ଷ୍ମୀଙ୍କର ଗୋଟିଏ ମୂର୍ତ୍ତି ଥିଲା । ଲକ୍ଷ୍ମୀ ଆସୀନା

---

* Epigraphia Indica Vol. III (1891-95)

'ଘ', 'ଙ' ଓ 'ଚ' ଚିହ୍ନିତ ଶାସନ ତିନିଗୋଟି ଏକତ୍ର 'ତ୍ରିଫଳି ତାମ୍ରଶାସନ' ନାମରେ ଅଭିହିତ ।

Digitized by srujanika@gmail.com

ଓ ତାହାଙ୍କ ଉଭୟପାର୍ଶ୍ୱରେ ଦୁଇଟି ହାତୀ ଥିଲେ । ହାତୀ ଦୁହେଁ ଲକ୍ଷ୍ମୀଙ୍କ ମସ୍ତକ ଉପରେ ଶୁଣ୍ଢ ଉତ୍ତୋଳନ କରିଥିଲେ । * ମୋହରର ଲେଜେଣ୍ଡରେ ଶ୍ରୀ ମହାଭବଗୁପ୍ତ ରାଜଦେବଙ୍କ ନାମ ଖୋଦିତ ହୋଇଥିଲା ଏହି ଶାସନ ଅନ୍ୟାନ୍ୟ-ମାନଙ୍କ ପରି କୁଟିଳାକ୍ଷରରେ ଲିଖିତ ଥିଲା ।

## (ଛ)

* ମହାଶିବଗୁପ୍ତଙ୍କ କଟକ ଶାସନ ।

"ଓଁ ସ୍ୱସ୍ତି ପ୍ରେମନିରୁଦ୍ଧମୁଗ୍ଧମନସୋଃ ସ୍ଥାଣୁଭବଚ୍ଛମ୍ଭୁସୋର୍ଗୈ ନୋର୍ଯ୍ୟତ
ବଚନ ନିର୍ଭରରତକ୍ରୀଡ଼ାକ୍ରମଂ ତନ୍ୱତୋଃ । ବର୍ତ୍ତିନ୍ୟୋଽପି କୃତାତମାନ ପୁଲକୈ-
ରାବିର୍ଭବଦ୍ଭିର୍ଦ୍ଧୃଢୈରାଶ୍ଲେଷୈର୍କ୍ଲିପିତକ୍ଲମୈଃ ସ୍ମରରସଃ କାମଂ ମୁହୁଃ ସ୍ଥାପ୍ୟତେ ॥
ଯନ୍ନାଶେଷ ବିଶେଷରୂପମହିମା ଯାସ୍ତ୍ୱପ୍ରସରଃ କାନ୍ତିଭିର୍ଭର୍ତ୍ତ୍ୟାତୈର୍ଷୀକଳଙ୍କେହ୍ୟାପି
ଶର୍ଯ୍ୟିନଃ କର୍ଣ୍ଣୌପୂରକୈସ୍ତ୍ରାଢ଼ତାଃ । ଜାୟନ୍ତେ ପ୍ରବିଶର୍ଦ୍ଧିତସ୍ମରଶର ପ୍ରୋତ୍ସର୍ପି-
ତାନ୍ତର୍ବ୍ୟଥା (ଥାଃ)ପାଦନ୍ ସ୍ୱେଦଜଳାବସେଚନବଶାର୍ଦ୍ଧିର୍ଯ୍ୟାତ ରୋମାଙ୍କୁରାଃ । ୧ ।
ଅଙ୍ଗ୍ରୁଭୁଙ୍ଗନଖାନ୍ଦ ଦନ୍ତମୂଷଲୈଃ ପ୍ରୋଦ୍ଭାସିରୋଚଚ୍ଛସ୍ନୈର୍ବିର୍ଦ୍ଧ୍ୱାନ୍ତ ସନ ନିଷ୍ଫଳୀ-
କୃତଶରଚ୍ଚନ୍ଦ୍ରୋଦୟୈଃ ସର୍ବଦା । ଯନ୍ନାସୀଦସତୋଜନସ୍ୟ ବିଶଦଂ ମୁକ୍ତାମୟଂ
ମଣ୍ଡନଂ ସଙ୍କେତାସ୍ପଦ ମପ୍ୟଶୀବଧବଳଂ ପ୍ରାସାଦ ଶୃଙ୍ଗାଗ୍ରତଃ । ୨ । ମହାନଦୀ-
ତୁଙ୍ଗତରଙ୍ଗଭଙ୍ଗାସ୍ଥାବେଷ୍ଟ ( ଛ ) ଲକ୍ଷ୍ମୀକରବର୍ଦ୍ଧିରାଜ । ଯସ୍ମିନ୍ ରତାସକ୍ତ
ମଦଙ୍ଗନାନାଂ ଶ୍ରୀମାପନୋଦଃ କ୍ରିୟତେ ମରୁଦ୍ଭିଃ । ୩ । ତସ୍ମାତ୍ ଶ୍ରୀବିନୀତ-
ପୁରାତ୍ । ଲେକନସ୍ତୁପ୍ରଥିତଶୁଭ୍ରଯଶୋବିତାନବ୍ୟାପ୍ତାଷ୍ଟ ଦିକ୍ ପ୍ରସଭନିର୍ଜିତ-
ବୈରିବର୍ଗଃ । ରାଜା ବଭୂବ ଭୁବି ଭାବିତଭବ୍ୟମୂର୍ତ୍ତିଃ ଶ୍ରୀମାନ୍ ସରୋଜବଦନୋ
ଜନମେଜୟାଖ୍ୟଃ । ୪ । ଯଃ ଶୃଙ୍ଗାରବିଦାରଣଦ୍ୱିପଘଟଃ କୁମ୍ଭସ୍ଥଳୀଦୁଲ୍ଲସନ୍-
କ୍ତାଜାଲବିଭୂଷିତଂ ପ୍ରତିରଣଂ ପୃଥ୍ୱୀବଧୂରଃସ୍ଥଳଂ । ଚକ୍ରେ ଗୁରୁତର ମରାର୍ଦ୍ଧପର୍ଣ୍ଣ-
ବୈରହାରଜାଳାମାଳା ଯୂଥାଦ୍ୟମୂଜରଣବିଃ ସମତସ୍ଥା ତଦ୍ରଙ୍ଗୁଲକ୍ଷ୍ମୀବିଧଃ । ୫ ।
ନର୍ଦ୍ଦାରିତାକାରକୁମ୍ଭସମୁଦ୍ରମୁକ୍ତାମୁକ୍ତାଫଳପ୍ରକରଯୁକ୍ତନଖାଗ୍ରାଧାରଃ । ତସ୍ମାଦ-
ଜାୟତ ଜଗଜ୍ଜୟଗୀତକୀର୍ତ୍ତି ହେଳାବିନିର୍ଜିତରିପୁର୍ନୃପତିର୍ଯ୍ୟଜାତିଃ । ୬ । ପରମ-
ମାହେଶ୍ୱର ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ସୋମକୁଳତିଳକ
ତ୍ରିକଳିଙ୍ଗାଧିପତି ଶ୍ରୀମହାଭବଗୁପ୍ତରାଜଦେବପାଦାନୁଧ୍ୟାତ ପରମମାହେଶ୍ୱର

---

* ଏହିଭଳି ମୂର୍ତ୍ତିକୁ ଓଡ଼ିଶାର ଶିଳ୍ପୀମାନେ 'ଗଜଲକ୍ଷ୍ମୀ' ନାମ ଦେଇ-ଅଛନ୍ତି । ଓଡ଼ିଶାର ପ୍ରାଚୀନ ମନ୍ଦିରମାନଙ୍କର ପ୍ରବେଶଦ୍ୱାରରେ ଏହି ମୂର୍ତ୍ତି ଥିବାର ଦେଖାଯାଏ ।

Digitized by srujanika@gmail.com

ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ସୋମକୁଳତିଳକ ତ୍ରିକଳିଙ୍ଗା-ଧିପତି ଶ୍ରୀମହାଶିବ ଗୁପ୍ତଦେବଃ କୁଶଳୀ ॥ ଦକ୍ଷିଣକୋଶଳାୟା ମରଡ଼ବିଷୟୀୟ ଚନ୍ଦ୍ରଗ୍ରାମେ । ତଦ୍‌ବିଷୟୀ ସ୍ୱବ୍ରାହ୍ମଣାନାଂ ପୂଜ୍ୟଯଥାକାଳାଧ୍ୟାସିନଃ ସମାହର୍ତୃ-ସନ୍ନିଧାତୃବର୍ଣ୍ଣାହୃତସୋମବାସ୍ତିକ ନିୟୁକ୍ତକାଧିକାରିକଦାଣ୍ଡପାଶିକ ପିଶୁ-ନବଧିକାର (ବେତ୍ରିକାବ) ରୋଧଜନନରଣକ, ରାଜପୁତ୍ରରାଜବଲ୍ଲଭାଦନ୍ୟବାନ୍ ସମାଜ୍ଞାପୟତିବଦିତମସ୍ତୁଭବତାଂ ଯଥାଽସ୍ମାଭିରୟଂ ଗ୍ରାମଃ ସନିଧିଃ ସୋପନିଧିଃ ସର୍ବବାଧାବିବର୍ଜିତଃ ସର୍ବୋପରିକରଦାନସହିତ ସ୍ତାଳାଦିତରୁଫପୁତଃ ସଗର୍ତ୍ତୋଷ-ରସଜଳସ୍ଥଳଛରୂଃ ସୀମାବଛିନ୍ନଃ ମଧ୍ୟ ଦେଶୀୟ ଶ୍ରୀବଲ୍ଲ ଗ୍ରାମବିନିର୍ଗତାୟ ଓଡ଼ଦେଶେ ଶ୍ରୀଶିଳାଭଞ୍ଜପାଟୀବାସ୍ତବ୍ୟାୟ । ଟଙ୍କାରପୂର୍ବଭରଦ୍ୱାଜ ଗୋତ୍ରାୟ । ଆଙ୍ଗିରସ ବାର୍ହସ୍ପତ୍ୟଭରଦ୍ୱାଜପ୍ରବରାୟ କୌଥୁମିଶାଖାଧ୍ୟାୟିନେ ଭଟ୍ଟପୁତ୍ରାନନ୍ତନପ୍ତ୍ରେ (ପ୍ତ୍ରେ) ଶ୍ରୀଗଙ୍ଗାପାଣିନାମ୍ନେ ଦିବାକରପୁତ୍ରାୟ । ଆଜାଖ୍ୟାନେନ ଯତ୍ନୂ ପୁରସ୍ତାତ୍ ସଲିଳଧାରା ପୁରଃସର ମାଚନ୍ଦ୍ରତାରକାର୍କଜ୍ୟୋତଃ (କ୍ଷିତି) ସମକାଳୋପ-ଭୋଗାର୍ଥଂ ମାତାପିତ୍ରୋରାତ୍ମନଶ୍ଚ ପୁଣ୍ୟଯଶୋଽଭିବୃଦ୍ଧୟେ ତାମ୍ରଶାସନେନାକରୀ-କୃତ୍ୟ ପ୍ରତିପାଦିତଂ ଇତ୍ୟବଗତ୍ୟ ଯଥାସୁଦୀୟ ମୁଣକରଭର ହିରଣ୍ୟ ଭୋଗ-ଭାଗାଦିକ (କଂ) ଦଦଭିଃ [ଭବଭିଃ] ସୁଖେନ ପ୍ରତିବସ୍ତବ୍ୟମିତି । ଭାବିଭିଶ୍ଚ ଭୂପତିଭିର୍ଦତ୍ତିରସ୍ୟ ମସ୍ମଦୀୟା ଧର୍ମଗୌରବାଦସ୍ମଦନୁରୋଧାତ୍ ସ୍ୱଦତ୍ତିରିବାନ ପାଳନୀୟା । ତଥାଚୋକ୍ତଂ ଧର୍ମଶାସ୍ତ୍ରେ ବହୁଭିର୍ବସୁଧା ଦତ୍ତା ରାଜଭିଃ ସଗରାଦିଭିଃ । ଯସ୍ୟ ଯସ୍ୟ ଯଦା ଭୂମିସ୍ତସ୍ୟ ତସ୍ୟ ତଦା ଫଳଂ । ମାଭୂଦଫଳ ଶଙ୍କା ବଃ ପରଦତ୍ତେତି ପାର୍ଥିବାଃ । ସ୍ୱଦତ୍ତାତ୍ ଫଳମାନନ୍ତ୍ୟଂ ପରଦତ୍ତାନୁପାଳନେ । ଆସ୍ଫୋ-ଟୟନ୍ତି ପିତରୋ ଜଲ୍ଗୟନ୍ତି ପିତାମହାଃ । ଭୂମିଦାତା କୁଳେ ଜାତଃ ସ ନ ସ୍ତାତା ଭବିଷ୍ୟତି । ଭୂମିଂ ଯଃ ପ୍ରତିଗୃହ୍ଣାତି ଯସ୍ତୁ ଭୂମିଂ ପ୍ରୟଚ୍ଛତି । ଉଭୌ ତୌ ପୁଣ୍ୟ-କର୍ମାଣୌ ନିୟତଂ ସ୍ୱର୍ଗଗାମିନୌ । ତଡ଼ାଗାନାଂ ସହସ୍ରାଣି ବାଜପେୟଶତାନି ଚ । ଗବାଂ କୋଟି ପ୍ରଦାନେ ଚ ଭୂମିହର୍ତ୍ତା ନ ଶୁଧ୍ୟତି । ହରତେ ହାରୟେଦ୍ୟସ୍ତୁ ମନ୍ଦ ବୁଦ୍ଧିସ୍ତମୋବୃତଃ । ସବଦ୍ଧୋ ବାରୁଣୈଃ ପାଶୈସ୍ତିର୍ଯ୍ୟକ୍ ଯୋନିଂ ସ ଗଚ୍ଛତି । ସୁବର୍ଣ୍ଣମେକାଂ ଗାମେକାଂ ଭୂମେରପ୍ୟର୍ଦ୍ଧମଙ୍ଗୁଳଂ । ହରନ୍ନରକ ମାପ୍ନୋତି ଯାବାଦାଭୂତସଂପ୍ଳବ । ସ୍ୱଦତ୍ତାଂପରଦତ୍ତାମ୍ବା ଯୋ ହରେତ ବସୁନ୍ଧରାଂ ସ ବିଷ୍ଠାୟାଂ କୃମିର୍ଭୂତ୍ୱା ପିତୃଭିଃ ସହ ପଚ୍ୟତେ ॥ ଆଦିତ୍ୟୋ ବରୁଣୋ ବିଷ୍ଣୁର୍ବ୍ରହ୍ମା ସୋମୋ ହୁତାଶନଃ । ଶୂଳପାଣିସ୍ତୁ ଭଗବାନଭିନନ୍ଦନ୍ତି ଭୂମିଦଂ । ସାମାନ୍ୟୋ-ଽୟଂ ଧର୍ମସେତୁର୍ନୃପାଣାଂ କାଳେ କାଳେ ପାଳନୀୟୋ ଭବଦ୍ଭିଃ । ସର୍ବାନେତାନ୍ ଭାବିନଃ ପାର୍ଥିବେନ୍ଦ୍ରାନ୍ ଭୂୟୋ ଭୂୟୋ ଯାଚତେ ରାମଭଦ୍ରଃ । ଇତି କମଳ-ଦଳାମ୍ବୁବିନ୍ଦୁଲୋଳାଂ ଶ୍ରିୟମନୁଚିନ୍ତ୍ୟ ମନୁଷ୍ୟଜୀବିତଂ ଚ । ସକଳମିଦ ମୁଦାହୃତଂ ଚବୁଦ୍ଧ୍ୱା ନ ହି ପୁରୁଷୈଃ ପରକୀର୍ତ୍ତୟୋ ବିଲୋପ୍ୟାଃ । ସ୍ରଷ୍ଟା ଯତ୍ର ଗୁଣାମୃନସ୍ତୃଦଧେଃ

Digitized by srujanika@gmail.com

(ଏହିଠାରେ ତିନୋଟି ଶବ୍ଦ ମିଳୁ ନାହିଁ) । ଯେନାତ୍ୟନ୍ତଯୁଗଯୁଗଧପଗୁରୁଃ ପ୍ରଜ୍ଞାଭର୍ମନୈକିତୋ ବ୍ରହ୍ମା ବେପିତବ୍ରାଜ୍ୟଭରମତୁଲଂ ଯଷ୍ଟାବହୀଳୟା । ମନ୍ୟାମୀ- ନ୍ନୃପ୍ରବନ୍ଧମଦ୍ଵସ୍ତମପି ପ୍ରେସ୍ବାନ୍ ସଂ ସର୍ବଦା । ନଃ ଖ୍ୟାତୋ ଧୃତମାଣ୍ଡବଗ୍ରନ୍ଥ- ପଦଃ ଶ୍ରୀଚ୍ଛିଙ୍ଗଟେଶ୍ଵମଣି । ପରମମାହେଶ୍ଵର ପରମ ଭଟ୍ଟାରକ ମହାରାଜ ପରମେ- ଶ୍ଵର ସୋମକୁଳତିଳକ ତ୍ରିକଳିଙ୍ଗାଧିପତି ଶ୍ରୀ ଯଯାତିରାଜଦେବ ପ୍ରବର୍ଦ୍ଧମାନ ବିଜୟ ରାଜ୍ୟେ ନବମେ ସମ୍ବତ୍ସରେ [ସମ୍ବତ୍ସରେ] ଜ୍ୟେଷ୍ଠଶିତ ତ୍ରୟୋଦଶ୍ୟାଂ ଉତ୍କୀର୍ଣ୍ଣ ବଜ୍ଞାଣ ମାଧବେନେତି । ଓଁ ଓଁ ।"

ଏହି ଶାସନ କଟକ କଲେକ୍ଟରୀ କଚେରୀରେ ଏକ ପୁରାତନ ବାକ୍ସରେ ଥିଲା । ଏଥି ସଙ୍ଗରେ ଅନ୍ୟ କେତେକ ଶାସନ ମଧ୍ୟ ଥିଲା । ୧୮୧୦ ଖ୍ରୀଷ୍ଟାବ୍ଦରେ କଟକ ଜିଲ୍ଲାର ସର୍ବପ୍ରଥମ ବନ୍ଦୋବସ୍ତବେଳେ ଲୋକେ କଲେକ୍ଟର ନିକଟରେ କାରଙ୍ଗ ନକଟରେ ସେ ସବୁ ଦାଖଲ କରିଥିଲେ । ତେତେବେଳେ ସେଗୁଡ଼ିକ ସମ୍ବନ୍ଧରେ କୌଣସି ଟିପା ରକ୍ଷିତ ହୋଇ ନ ଥିଲା । ସୁତରାଂ ଅଲୋଚତ ଶାସନ କେଉଁଠାରୁ ଆସିଥିଲା ଜଣାଯାଏ ନାହିଁ ।

ଏହି ଶାସନରେ ତିନୋଟି ପତ୍ର ଥିଲା । ପତ୍ରର ମଧ୍ୟଭାଗରେ ଥିବା ରନ୍ଧ୍ର- ଦ୍ଵାରା ସେଗୁଡ଼ିକୁ ଗୁନ୍ଥିତ କରାଯାଇଥିଲା । ଏହା ପ୍ରାଚୀନ କୁଟିଳାକ୍ଷର ଲିଖିତ ।

ଏତଦ୍ଵାରା ଶିବଗୁପ୍ତ ଗଙ୍ଗାପାଣି ନାମକ ଜଣେ ବ୍ରାହ୍ମଣଙ୍କୁ ଦକ୍ଷିଣ କୋଶଳସ୍ଥ* ମରଡ଼ ଅନ୍ତଃପାତୀ ଚନ୍ଦ୍ରଗ୍ରାମ ଦାନ କରିଥିଲେ ।

ଏହି ଶାସନରୁ ଦୁଇଟି ତଥ୍ୟ ମିଳେ । ପ୍ରଥମତଃ, ଓଡ଼ିଶା ବା ତାହାର କୌଣସି ଅଂଶ ଗୁପ୍ତମାନଙ୍କ ରାଜତ୍ଵ ସମୟରେ ସେମାନଙ୍କ ଜନ୍ମସ୍ଥାନ କୋଶଳ ନାମରେ ଅଭିହିତ ହେଉଥିଲା । ଦ୍ଵିତୀୟତଃ, ଓଡ଼ିଶାର କେଶରୀବଂଶୀୟ ରାଜା- ମାନେ ଗୁପ୍ତମାନଙ୍କର ଅଧୀନତା ସ୍ଵୀକାର କରୁଥିଲେ ।

ଶାସନରେ ଦକ୍ଷିଣ-କୋଶଳ ସମ୍ପର୍କରେ ମରଡ଼ ଓ ଚନ୍ଦ୍ର ନାମର ଉଲ୍ଲେଖ ଦେଖାଯାଏ । ଅଦ୍ୟାବଧି କଟକ ଜିଲ୍ଲାରେ ମରଡ଼ ହରିହରପୁର ନାମକ

---

* ଶାସନର 'ଦକ୍ଷିଣ କୋଶଳାୟାଂ' ସ୍ଥାନରେ ଫ୍ଲିଟ୍ 'ଦକ୍ଷିଣ ତୋଷଳାୟାଂ' ପାଠ କରି କହନ୍ତି ଯେ 'ଦକ୍ଷିଣ ତୋଷଳାୟାଂ' ଖୋଦନକାରୀର ଭ୍ରମର ଫଳ ।

Digitized by srujanika@gmail.com

ଗୋଟିଏ ପ୍ରଗଣା ଅଛି । ଏହି ପ୍ରଗଣାରେ ଚନ୍ଦ୍ର ନାମରେ ଏକ ପ୍ରଧାନ ବ୍ରାହ୍ମଣ-ଗ୍ରାମ ଅଛି । ଆଜିକାଲି ଲୋକେ ଏହି ଗ୍ରାମକୁ 'ଚନ୍ଦ୍ରା', ବୋଲି କହନ୍ତି । ଅତଏବ ଅନୁମିତ ହୁଏ ଯେ ମରଡ଼ ହରହର ପୁରର ଚତୁଃପାର୍ଶ୍ୱସ୍ଥ ଭୂଖଣ୍ଡକୁ ପୂର୍ବେ ଦକ୍ଷିଣ-କୋଶଳ କୁହାଯାଉଥିଲା ।

ରାଜା ଜନମେଜୟଙ୍କ ପୁତ୍ର ମହାରାଜ ଯଯାତିଙ୍କ ରାଜତ୍ୱର ନବମ ବର୍ଷରେ ଜ୍ୟୈଷ୍ଠ ଶୁକ୍ଳ ତ୍ରୟୋଦଶୀ ଦିନ ଏହି ଶାସନ ମହାରାଜାଧିରାଜ ଶିବଗୁପ୍ତଙ୍କ ନାମରେ ଘୋଷିତ ହୋଇଥିଲା । ଏଥିରେ ଗୁପ୍ତମାନଙ୍କୁ ମହାରାଜାଧିରାଜ, ଯଯାତିଙ୍କୁ ମହାରାଜା ଓ ତାହାଙ୍କ ପିତା ଜନମେଜୟଙ୍କୁ କେବଳ ରାଜା ବୋଲି କୁହାଯାଇଅଛି । ଶାସ୍ତ୍ରକାର କହନ୍ତି, ଭୂମିଦାନରେ ଅଧିକାର କେବଳ ମହାରାଜାଧିରାଜମାନଙ୍କ ବ୍ୟତୀତ ଅନ୍ୟ କାହାରି ନାହିଁ । ଅଧୀନସ୍ଥ ରାଜା କେବଳ ମହାରାଜାଧିରାଜଙ୍କ ଅନୁମତିକ୍ରମେ ଭୂମିଦାନ କରି ପାରନ୍ତି । ସୁତରାଂ ଯଯାତିଙ୍କର କେବଳ 'ମହାରାଜ' ଉପାଧି ଓ ଶାସ୍ତ୍ରର ଉକ୍ତବିଧ ବିଧାନ ଦୃଷ୍ଟିରେ କେଶରୀବଂଶୀୟ ରାଜାମାନେ ଗୁପ୍ତମାନଙ୍କ ଅଧୀନସ୍ଥ ବୋଲି ଅନୁମିତ ହୋଇଅଛି ।

ମାଦଳାପାଞ୍ଜି ଓ ବଂଶାବଳୀରୁ ଜଣାଯାଏ ଯେ, ଇନ୍ଦ୍ରଦେବ ବା ଚନ୍ଦ୍ରଦେବ ୩୨୩ ବା ୩୨୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ରାଜତ୍ୱ କରିଥିଲେ । ତାହାଙ୍କ ରାଜତ୍ୱର ଦୁଇ ତିନି ବର୍ଷ ପୂର୍ବେ ଯବନମାନେ ଓଡ଼ିଶା ଅଧିକାର କରିଥିଲେ । ଓଡ଼ିଶା ୧୪୬ ବର୍ଷ କାଳ ଯବନମାନଙ୍କ ହସ୍ତରେ ରହିଥିଲା । ତତ୍ପରେ ଯଯାତିକେଶରୀ ସେମାନଙ୍କୁ X X କରିଥିଲେ । ଯଯାତି ୫୨ ବର୍ଷ କାଳ ରାଜତ୍ୱ କରିଥିବାର କଥିତ ଅଛି । ସେ ତାଙ୍କ ଶାସନକାଳ ମଧ୍ୟରେ ଭୁବନେଶ୍ୱରର ମନ୍ଦିର-ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ । କିନ୍ତୁ ସେ କାହାର ପୁତ୍ର ବା କେଉଁଠାରୁ ଆସିଥିଲେ, ସେ ବିଷୟରେ ମାଦଳାପାଞ୍ଜି ବା ବଂଶାବଳୀ କିଛି ଉଲ୍ଲେଖ କରି ନାହାନ୍ତି ।

ମାତ୍ର ଆମ୍ଭମାନଙ୍କ ଆଲୋଚିତ ଶାସନରୁ ଯଯାତିଙ୍କ ପିତା ଜନମେଜୟ ଥିବା ସ୍ପଷ୍ଟ ପ୍ରତୀୟମାନ ହୁଏ । ଜନମେଜୟ ମହାନଦୀ ତୀରରେ ଅର୍ଥାତ୍ କଟକ-ଚୌଦ୍ୱାରଠାରେ ରାଜତ୍ୱ କରୁଥିଲେ ।

ବଂଶାବଳୀ ଓ ମାଦଳାପାଞ୍ଜିରେ ନିମ୍ନପ୍ରକାର ଉଲ୍ଲେଖ ଦେଖାଯାଏ ।

ଖ୍ରୀ: ଅ: ୧୫୩–୧୯୪ ହଟକେଶ୍ୱର ଦେବ ।

ଖ୍ରୀ: ଅ: ୧୯୪–୨୫୭ ବୀରଭୁବନ ବା ତ୍ରିଭୁବନଦେବ ।

Digitized by srujanika@gmail.com

ଖ୍ରୀ: ଅ: ୨୩୭-୨୮୨ ନିର୍ମଳ ଦେବ ।

ଖ୍ରୀ. ଅ: ୨୮୨-୩୧୯ ଶ୍ରୀମ ଦେବ ।

କିନ୍ତୁ ହଟ୍ଟକେଶ୍ୱର ଦେବଙ୍କ ପୂର୍ବପୁରୁଷମାନଙ୍କ ସମ୍ବନ୍ଧରେ ଉପରୋକ୍ତ ଗ୍ରନ୍ଥରେ କୌଣସି ଉଲ୍ଲେଖ ନାହିଁ । ସାଇବର ପ୍ରଗଣାର ପୂରଣ ନାମକ ସ୍ଥାନରେ ଯେଉଁ ତାମ୍ରପତ୍ର ମିଳିଥିଲା, ତହିଁରୁ ଜଣାଯାଏ ଯେ, ଶ୍ରୀମଦେବ ଜନମେଜୟଙ୍କ ବଂଶରେ ଜନ୍ମଗ୍ରହଣ କରିଥିଲେ । ଏହି ଜନମେଜୟ ତେବେ କିଏ ? ଅବଶ୍ୟ ସେ ଆଲୋଚିତ ଶାସନର ଜନମେଜୟ ନୁହନ୍ତି । ବୋଧହୁଏ, ସେ ଅନ୍ୟ ଜଣେ ଜନମେଜୟ ଥିଲେ ଓ ଉତ୍ତର-ପଶ୍ଚିମ ଅଞ୍ଚଳରୁ ଆସି ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ପ୍ରଥମ ଭାଗରେ ଚୌଦ୍ୱାର ସ୍ଥାପନ କରିଥିଲେ । ଜ୍ୟୋତିଷିମାନେ ମଧ୍ୟ କହନ୍ତି ଯେ, ଚୌଦ୍ୱାର ମହାଭାରତୋକ୍ତ ଅର୍ଜ୍ଜୁନଙ୍କ ନପ୍ତା ଜନମେଜୟଙ୍କ ଦ୍ୱାରା ନିର୍ମିତ ହୋଇଥିଲା ।

ଆଲୋଚିତ ଶାସନଦ୍ୱାରା ଦକ୍ଷିଣ-କୋଶଳ XXX Chandra in the fiscal division of Marada) ଗଙ୍ଗାପାଣିଙ୍କୁ ଦିଆଯାଇଥିଲା । ଗଙ୍ଗାପାଣି ମଧ୍ୟଦେଶରୁ ଆସି ଉଡ୍ରଦେଶସ୍ଥ ଶିଲାଭଞ୍ଜପତି ନାମକ ଗ୍ରାମରେ ବାସ କରୁଥିଲେ । ପୂର୍ବେ କେବଳ ଖୋର୍ଦ୍ଧା ସବ୍‌ଡିଭିଜନକୁ * ଉଡ୍ରଦେଶ କୁହାଯାଉଥିଲା । କାଳକ୍ରମେ କଳିଙ୍ଗ, କୋଶଳ ଓ ଉତ୍କଳ ପ୍ରଭୃତି ସମସ୍ତ ଦେଶ ଏହି ନାମରେ ଅଭିହିତ ହୋଇଥିଲା ।

ହଣ୍ଟର କହନ୍ତି ଯେ, ସର୍ବପ୍ରଥମେ ଯଯାତିକେଶରୀ ଅଯୋଧ୍ୟାରୁ ଓଡ଼ିଶାକୁ ବ୍ରାହ୍ମଣ ଅଣାଇଥିଲେ । କିନ୍ତୁ ଯଯାତି ଯେଉଁ ବ୍ରାହ୍ମଣମାନଙ୍କୁ ଭୂମିଦାନ ଦେଇ-ଅଛନ୍ତି, ସେମାନଙ୍କ ମଧ୍ୟରୁ କାହାରି କାହାରି ପିତା ଓ ପିତାମହ ମଧ୍ୟ ଓଡ଼ିଶାରେ ବାସ କରୁଥିବା ବିଷୟ ଆଲୋଚିତ ଶାସନମାନଙ୍କରୁ ଅନୁମିତ ହୁଏ । ଆଜି ମଧ୍ୟ

---

* ସ୍ୱର୍ଗୀୟ ପ୍ୟାରୀମୋହନ ଆଚାର୍ଯ୍ୟ ତାହାଙ୍କ ଓଡ଼ିଶା-ଇତିହାସରେ ଲେଖିଅଛନ୍ତି ଯେ, ପୂର୍ବେ ଏହି ଅଞ୍ଚଳରେ ଓଡ୍ରମାନେ ଏକ ସ୍ୱାଧୀନ ରାଜ୍ୟ ସ୍ଥାପନ କରିଥିଲେ । ସେମାନଙ୍କ ନାମାନୁସାରେ ଏହି ଅଞ୍ଚଳର ନାମ ଓଡ୍ରଦେଶ ହୋଇଥିଲା । ଅଦ୍ୟାବଧି ମଧ୍ୟ ଓଡ଼ିଚଷାମାନଙ୍କ ସଂଖ୍ୟା ଏହି ଅଞ୍ଚଳରେ ଅପେକ୍ଷା-କୃତ ଅଧିକ ଥିବାର ଦେଖାଯାଏ । ଏମାନଙ୍କ ରୀତି ନୀତି ଅନ୍ୟାନ୍ୟମାନଙ୍କଠାରୁ କେତେକାଂଶରେ ପୃଥକ୍ । ଆଧୁନିକ ଓଡ଼ିଶା ଓ ଓଡ଼ିଆ ଶବ୍ଦ ଏହି ଓଡ୍ରଦେଶର ନାମାନ୍ତର ମାତ୍ର ।

Digitized by srujanika@gmail.com

ବ୍ରାହ୍ମଣମାନେ କେବଳ ଅଯୋଧ୍ୟାରୁ ଆସି ନ ଥିଲେ, ଉପସ୍ଥିତ ଶାସନୋକ୍ତ ଗଙ୍ଗାପାଣି ମଧ୍ୟଦେଶରୁ ଆସିଥିଲେ । ମଧ୍ୟଦେଶ ତ ଅଯୋଧ୍ୟା ବା ତାହା ଅନ୍ତଃପାତୀ କୌଣସି ସ୍ଥାନ ନୁହେଁ । ମନୁ କହୁଅଛନ୍ତି :—

"ହିମାଦ୍ରି ବିନ୍ଧ୍ୟୟୋର୍ମଧ୍ୟଂ ଯତ୍ପ୍ରାକ୍
ବିନଶନାଦପି ।
ପ୍ରତ୍ୟଗେବ ପ୍ରୟାଗାଚ୍ଚ ମଧ୍ୟଦେଶଃ
ପ୍ରକୀର୍ତ୍ତିତଃ ।"

ପୁନଶ୍ଚ ବ୍ରାହ୍ମଣମାନେ କେବଳ ଯାଜପୁର ୧ ଓ ତତ୍ସନ୍ନିହିତ ସ୍ଥାନମାନଙ୍କରେ ନ ରହି କଟକ, ଚୌଦ୍ୱାର, ମରଡ଼ ହରିହରପୁର, ଶିଳାଭଞ୍ଜପଟି ପ୍ରଭୃତି ସ୍ଥାନମାନଙ୍କରେ ରହୁଥିବା ବିଷୟ ଉପସ୍ଥିତ ଶାସନମାନଙ୍କରୁ ଜଣାଯାଏ । ଶିଳାଭଞ୍ଜପଟି ବୋଧହୁଏ ଖୋର୍ଦ୍ଧା ଅନ୍ତଃପାତୀ କୌଣସି ସ୍ଥାନର ନାମ ଅଟେ ।

ଗଙ୍ଗବଂଶ ଓ କେଶରୀବଂଶର ରାଜାମାନେ ଯଥାକ୍ରମେ ଦକ୍ଷିଣ ଓ ଉତ୍ତର ପ୍ରଦେଶରୁ ଓଡ଼ିଶାକୁ ବ୍ରାହ୍ମଣ ଅଣାଇଥିଲେ ।

( ଛ )

ମହାଶିବ ଗୁପ୍ତଙ୍କ 'ନବର୍ଣ୍ଣା' ଶାସନ ।

"ଓଁ ସ୍ୱସ୍ତି" ଶ୍ରୀ ଚୋ ବିନୀତପୁରାତ୍ ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ମହାଭବଗୁପ୍ତରାଜ ଦେବ ପାଦାନୁଧ୍ୟାତ ପରମମାହେଶ୍ୱର ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ସୋମକୁଳତିଳକ ତ୍ରିକଳିଙ୍ଗାଧିପତି ଶ୍ରୀମହାଶିବଗୁପ୍ତ ରାଜଦେବ କୁଶଳୀ କୋଶଳ ଦେଶ ପ୍ରତିବଦ୍ଧ "ଗନ୍ତୁତ ପାଟମଣ୍ଡଳେ" ୨ ଗ୍ରେଧରପଲୀୟ ନବର୍ଣ୍ଣାଗ୍ରାମେ ବ୍ରାହ୍ମଣାନ୍ ସମ୍ପୂଜ୍ୟ ତଦ୍

---

୧ । ଯଯାତି ଆନୀତ ବ୍ରାହ୍ମଣମାନେ ଯାଜପୁରରେ ରହୁଥିଲେ ବୋଲି ହଣ୍ଟର ସାହେବ କହନ୍ତି ।

୨ । ସୋନପୁରରେ ଏହି ନାମରେ ଆଜିକାଲି କୌଣସି ସ୍ଥାନ ନାହିଁ । କେବଳ ଅଦୂରବର୍ତ୍ତୀ ଘଣ୍ଟାପାର ଆମ୍ଭମାନଙ୍କ ଶାସନୋକ୍ତ ନାମର ରୂପାନ୍ତର ହୋଇପାରେ ।

Digitized by srujanika@gmail.com

ବମସ୍ତିସ୍ଥାନ୍ ଯଥା କାଳାଧାସିନଃ ସମାହର୍ତ୍ତୃ ସନ୍ନିଧାତୃ ଯୁକ୍ତାଧିକାରିକଦଣ୍ଡପାଶିକ ଚୃଟଭଟ ପିଶୁନ ବେତ୍ରିକା ବରୋଧଜନରାଣକ ରାଜପୁତ୍ର ରାଜ୍ଞୀ . ରାଜବଲ୍ଲଭାଦୀନ. ସର୍ବାନ୍ ରାଜପାଦୋପଜୀବନଃ ସମାଜ୍ଞାପୟତି । ବିଦିତ ମସ୍ତୁ ଭବତାଂ ଯଥାସ୍ମାଭିରୟଂ ଗ୍ରାମଃ ସନିଧିଃ ସୋପନିଧିଃ ସର୍ବବାଧାବିବର୍ଜ୍ଜିତଃ ସର୍ବୋପର କରଦାନ ସହିତଶ୍ଚତୁଃ ସୀମାପର୍ଯ୍ୟନ୍ତଃ ତାମ୍ରମଧୁକଃ ସର୍ବତୋଷ୍ଠରଃ ସକଳ ସ୍ଥଳୈଃ ପ୍ରତି ନିଷିଦ୍ଧ ଚାଟଭଟ ପ୍ରବେଶ ଭରଦ୍ୱାଜ ଗୋତ୍ରାୟ ଆଙ୍ଗିରସ ବାର୍ହସ୍ପତ୍ୟ ଭାରଦ୍ୱାଜ ପ୍ରବରାୟ ଭଲସ ଶର୍ମ୍ମଣଃ ପୌତ୍ରାୟ ନାରାୟଣ ଶର୍ମ୍ମଣଃ ପୁତ୍ରାୟ ଭଟ ପରୋଲୀ ବିନିର୍ଗତାୟ କୋଶଲୀୟ ମରମେଣ୍ଡା ଗ୍ରାମବାସ୍ତବ୍ୟାୟ ଶ୍ରୀପୁଣ୍ଡରୀକ ଶର୍ମ୍ମଣେ ଦାର୍ଣ୍ଣିଡାୟ ଗନୁତ ପାଟମଣ୍ଡଳେ ଉତ୍ତର, ପଲ୍ଲିକାୟା ନବନ୍ନାଗ୍ରାମଃ ସଲିଲ ଧାରାପୁରସ୍ସରମା ଚନ୍ଦ୍ରତାରକାର୍କ କ୍ଷିତି ସମକାଳୋପଭୋଗାର୍ଥଂ ମାତାପିତ୍ରୋରାତ୍ମନଶ୍ଚ ପୁଣ୍ୟ ଯଶୋଭିବୃଦ୍ଧୟେ ତାମ୍ରଶାସନେ ନାକଲ୍ପ କୃତ୍ୟଂ ପ୍ରତିପାଦିତ ଇତ୍ୟବଗମ୍ୟ ସମୁଚିତ ଭୋଗଭାଗକର ହିରଣ୍ୟାଦି ପ୍ରତ୍ୟୟମୁପନୟ-ଦ୍ଭିର୍ଭବଦ୍ଭିଃ ସୁଖେନ ପ୍ରତିବସ୍ତବ୍ୟମିତି । ଭାବିଭିଶ୍ଚ ଭୂପତିଭିର୍ଦତ୍ତିରସ୍ୟ ମସ୍ମଦୀୟ ଧର୍ମ ଗୌରବାଦସ୍ମ ଦନୁ ରୋଧାଚ୍ଚ ସ୍ୱଦତ୍ତିରିବାନୁ ପାଳନୀୟା । ତଥାଚୋକ୍ତଂ ଧର୍ମଶାସ୍ତ୍ରେ । ବହୁଭିର୍ବସୁଧାଦତ୍ତା ରାଜଭିଃ ସଗରାଦିଭିଃ । ଯସ୍ୟ ଯସ୍ୟ ଯଦାଭୂମିସ୍ତସ୍ୟ ତସ୍ୟ ତଦାଫଳଂ । ମା ଭୂଦଫଳ ଶଙ୍କାବଃ ପରଦତ୍ତେତି ପାର୍ଥିବାଃ । ସ୍ୱଦାନାତ୍ ଫଳ ମାନନ୍ତ୍ୟଂ ପରଦତ୍ତାନୁପାଳନେ । ଷଷ୍ଟିଂ ବର୍ଷ ସହସ୍ରାଣି ସ୍ୱର୍ଗେ ମୋଦତି ଭୂମିଦଃ । ଆକ୍ଷେପ୍ତାଚାନୁମନ୍ତାଚ ଦ୍ୱାବେତୌ ନରକ ଗାମିନୌ । ଆଗ୍ନେର ପତ୍ୟଂ ପ୍ରଥମଂ ସୁବର୍ଣ୍ଣଂ ଭୂର୍ବୈଷ୍ଣବୀ ସୂର୍ଯ୍ୟସୁତାଶ୍ଚ ଗାବଃ । ଯଃ କାଞ୍ଚନଂ ଗାଂ ଚ ମହୀଞ୍ଚ ଦଦ୍ୟାଦତ୍ତାସ୍ତ୍ରୟସ୍ତେନ ଭବନ୍ତି ଲୋକାଃ । ଅସ୍ଫୋଟୟନ୍ତି ପିତରଃ ପ୍ରବଲ୍ଗୟନ୍ତି ପିତାମହାଃ । ଭୂମିଦାତା କୁଳେ ଜାତଃ ସନସ୍ତ୍ରାତା ଭବିଷ୍ୟତି । ଭୂମିଂ ଯଃ ପ୍ରତିଗୃହ୍ଣାତି ଯଶ୍ଚ ଭୂମିଂ ପ୍ରଯଚ୍ଛତି । ଉଭୌ ତୌ ପୁଣ୍ୟ କର୍ମ୍ମାଣୌ ନିୟତଂ ସ୍ୱର୍ଗଂ ଗାମିନୌ । ତଡ଼ାଗାନାଂ ସହସ୍ରେଣ ବାଜପେୟ ଶତେନ ଚ । ଗବାଂ କୋଟି ପ୍ରଦାନେନ ଭୂମିହର୍ତ୍ତା ନ ଶୁଧ୍ୟତି । ହରତେ ହାରୟତେ ଯସ୍ତୁ ମନ୍ଦବୁଦ୍ଧି ସ୍ତମୋବୃତଃ । ସ ବଦ୍ଧୋ ବାରୁଣୈଃ ପାଶୈସ୍ତିର୍ଯ୍ୟକ୍ ଯୋନିଂ ଚ ଗଚ୍ଛତି । ସୁବର୍ଣ୍ଣମେକଂ ଗାମେକାଂ ଭୂମେରପ୍ୟର୍ଦ୍ଧ ମଙ୍ଗୁଳଂ । ହରନ୍ନରକ ମାପ୍ନୋତି ଯାବଦାହୂତ ସମ୍ପ୍ଳବଃ । ସ୍ୱଦତ୍ତାଂ ପରଦତ୍ତାଂ ବା ଯୋ ହରେତ ବସୁନ୍ଧରାଂ । ସବିଷ୍ଠାୟାଂ କୃମିର୍ଭୂତ୍ୱା ପଚ୍ୟତେ ପିତୃଭିଃ ସହ । ଆଦିତ୍ୟୋ ବରୁଣୋବିଷ୍ଣୁ ର୍ବ୍ରହ୍ମା ସୋମୋହୁତାଶନଃ । ଶୂଳପାଣିଶ୍ଚ ଭଗବାନଭିନନ୍ଦନ୍ତି ଭୂମିଦଂ । ସାମାନ୍ୟୋଽୟଂ ଧର୍ମ୍ମସେତୁ ର୍ନୃପାଣାଂ କାଳେ କାଳେ ପାଳନୀୟୋ ଭବଦ୍ଭିଃ । ସର୍ବାନେତାନ୍ ଭାବିନୋ ଭୂପତୀନ୍ଦ୍ରାନ୍ ଭୂୟୋଭୂୟୋ ଯାଚତେ ରାମଭଦ୍ରଃ । ଇତି କମଳ-

Digitized by srujanika@gmail.com

ଦଳାମ୍ବୁବନ୍ଦୁ ଲୋଳାଂଶ୍ରିୟ୍ମ ମନୁଶନ୍ୟ ମନସ୍ୟ ଜୀବତାନ୍ତ । ସକଳ ମିଦ ମୁଦାହୃତାନ୍ ଚ ବୁଦ୍ଧା ନହି ପୁରୁଷୈଃ ପରକୀର୍ତ୍ତୟୋ ବଲୋପ୍ୟାଃ । ଇତି ପରମ ମାହେଶ୍ୱର ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ସୋମକୁଳତିଳକ ତ୍ରିକଳିଙ୍ଗାଧିପତି ଶ୍ରୀମତ୍ ଯଯାତି ରାଜଦେବସ୍ୟ ପାଦାନୁ ପ୍ରବର୍ଦ୍ଧମାନ ବିଜୟରାଜ୍ୟେ ପଞ୍ଚଦଶ ସମ୍ବତ୍ସରେ ମାର୍ଗଶିର ମାସେ ଶୁକ୍ଳପକ୍ଷେ ତ୍ରୟୋଦଶ୍ୟାଂ ତିଥୌ ସମ୍ବତ୍ ୧ ମାର୍ଗସୁଦ ୧୩ । ଲିଖିତମିଦଂ ଶାସନଂ ମହାସାନ୍ଧିବିଗ୍ରହ କାରଣୀକ ଶ୍ରୀଗୁରୁଦର୍ତ୍ତସ୍ୟା ବଗଡେନ ମହାକ୍ଷପଟଳିକ ଶ୍ରୀ ଉଚ୍ଛବ ନାଗେନ ଆଲିକିନା ଗସୁଡେନୋଜ୍କୀର୍ଣ୍ଣଂ ତ୍ଵଙ୍ଗର ସନାକେନେତି । ସମଦୋ ଜଳଦପୂର୍ଣ୍ଣ ଜଳଭା ଜଳିତ ମରଣ ସନ୍ଧ୍ୟାତି ସନ୍ତଂ ଭେଦବୃତ୍ତିର ଚରାସ୍ତ ବଲୋକ୍ୟଃ କୀର୍ତ୍ତୟୋ ନୃପତିଭିର୍ନ ଲୋପ୍ୟା । ଇତି ।"

ଏହି ଶାସନର ପତ୍ରଗୁଡ଼ିକ ବଙ୍ଗ ତେଲ୍ଲୀ ଶାସନର ପତ୍ର ପରି ପ୍ରାନ୍ତ ଅଡ଼କୁ ଉଚ୍ଚ ଏକାନ୍ତ । ସେଗୁଡ଼ିକ ଗୋଟିଏ ତମ୍ବା ମୁଦଆ ଦ୍ୱାରା ଗ୍ରଥିତ ହୋଇ-ଅଛି । ବଙ୍ଗତେଲ୍ଲୀ ଶାସନପରି ଏଥିରେ ମଧ୍ୟ ଗୋଟିଏ ମୋହର ଅଛି । ମୋହରସ୍ଥ ଉପଲକ୍ଷ୍ମୀ ଲିପି ବର୍ତ୍ତମାନ ଅସ୍ପଷ୍ଟ ହୋଇଯାଇଅଛି । ଆଜିକାଲି ଏହା ଉପରେ କେବଳ ଏହି ଅସ୍ପଷ୍ଟ ମୂର୍ତ୍ତିର କିୟଦଂଶ ପରିଦୃଷ୍ଟ ହୁଏ ।

ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ମହାଭବଗୁପ୍ତରାଜ ଦେବ ପାଦାନୁଧ୍ୟାତ ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ଶ୍ରୀ ମହାଶିବଗୁପ୍ତ ରାଜଦେବଙ୍କ ରାଜତ୍ୱ ସମୟରେ ଏହି ଶାସନ ପ୍ରସ୍ତୁତ ହୋଇଥିଲା । ଏହି ରାଜା ଜଣେ ପରମ ଶୈବ ଥିଲେ । ତାଙ୍କର 'ତ୍ରିକଳିଙ୍ଗାଧିପତି' ଓ 'ସୋମକୁଳତିଳକ' ନାମରେ ଦୁଇଟି ଉପାଧି ଥିଲା । ଯଯାତିପୁରଠାରୁ ଏହି ଶାସନ ଘୋଷିତ ହୋଇଥିଲା । ଯଯାତିପୁର ମହାନଦୀକୂଳରେ ଅବସ୍ଥିତ । ଏହାର ଛଅବର୍ଷପୂର୍ବେ ଏହିରାଜା ଏହି ନଗରୀଠାରୁ ଛଅଶାସନ ପ୍ରଚାର କରିଥିଲେ । ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ଶ୍ରୀମାନ୍ ଯଯାତି ରାଜଦେବଙ୍କ ବିଜୟ ରାଜତ୍ୱର ପଞ୍ଚଦଶ ବର୍ଷରେ ମାର୍ଗଶୀର ଶୁକ୍ଳପକ୍ଷ ତ୍ରୟୋଦଶୀ ଦିନ ଏହି ଶାସନ ଘୋଷିତ ହୋଇଥିଲା ।

ଏହି ଶାସନରେ କୋଶଳ ଅନ୍ତଃପାତୀ ତର୍ଦ୍ଦିଣ୍ଡ ବା ତଦନ୍ଧା ଗ୍ରାମ ଦୀକ୍ଷିତ ପୁଣ୍ଡରୀକଶର୍ମାଙ୍କୁ ପ୍ରଦତ୍ତ ହୋଇଥିଲା । ପୁଣ୍ଡରୀକ କୋଶଳ ଦେଶସ୍ଥ 'ମଉମେଣ୍ଡ' ଗ୍ରାମର ଅଧିବାସୀ ଥିଲେ । ସେ ଉତ୍ତରପ୍ରୋଲି ନାମକ ସ୍ଥାନରୁ ଆସିଥିଲେ ।

Digitized by srujanika@gmail.com

ତାହାଙ୍କ ପିତା ଓ ପିତାମହଙ୍କ ନାମ ଯଥାକ୍ରମେ ନାରାୟଣ ଶର୍ମା ଓ ଉଲ୍ଲାସ ଶର୍ମା ଥିଲା । ସେ ଭରଦ୍ୱାଜ ଗୋତ୍ରୀ ଥିଲେ ।

ଅଲ୍ଲବ ନାଗଙ୍କ ପୁତ୍ର 'ମହାକ୍ଷପଟଳିକ' ଶ୍ରୀ ଉଚ୍ଛବ ନାଗ ଏହି ଶାସନର ରଚୟିତା । ସେ ମହାସନ୍ଧିବିଗ୍ରହିକ—ରାଣକ ଶ୍ରୀସ୍ତରୁ * ଦତ୍ତଙ୍କର ପରିଚିତ ଥିଲେ । 'ହ୍ୱକୁର ପନ୍ନାକ' ଏହି ଶାସନ ଖୋଦନ କରିଥିଲେ ।

( ୨ )

ଦ୍ୱିତୀୟ ମହାଭବଗୁପ୍ତଙ୍କ ଯଯାତି ନଗର ଶାସନ :—

"ଓଁ ସ୍ୱସ୍ତି ପ୍ରେମନିରୁଦ୍ଧମୁଗ୍ଧମନସୋଃ ଷ୍ଟାସ୍ମିଭବଚ୍ଛୟୁଷ୍ଟୋର୍ଯ୍ୟନୋର୍ଷ୍ଟନ ବିଚିନ୍ନ ନିର୍ଭରରତ କ୍ରୀଡ଼ାକ୍ରମଂ ତନ୍ୱତୋଃ । ବଚ୍ଛିନ୍ନୋପି କୃତାନ୍ତମାନ ପୁଳ, କୈବାବର୍ଭବତୀ ଲ୍କୃଚ୍ଛୈବଶେଲ୍ଲକ୍ଷୈର୍ଣ୍ଣପିତ କୁମ୍ଭୈଃ ସୁରରସଃ କାମଂ ମୂର୍ଦ୍ଧ୍ନଃ ସ୍ୱାଦ୍ୟତେ । ଯଥା ଶେଷ ବିଶେଷ ରୂପ ମହିମାଯାସ୍ତ୍ୟୁପ୍ପରଃ କାନ୍ତିଭିର୍ଲ୍ୟାତେର୍ଷ୍ଟା କଳହେଷ୍ୱପି ପ୍ରଣୟିନଃ । କଣ୍ଠୋପଲୈ ସ୍ତାଡ଼ିତାଃ । ନାସ୍ତିନ୍ତେ ପ୍ରବିଶଙ୍କିତ ସୁରଣିର ପ୍ରୋତ୍‌ଥାପିତାନ୍ତ ବ୍ୟଥଃ । ପାଦ୍‌ ପ୍ରେଦଜଳାବସେଚନ ବଶାନ୍ନିର୍ବାତ-ରୋମାଞ୍ଚିତାଃ ।

ଅରୁଣ୍ଡୂଙ୍ଗକାଗ୍ରନ୍ଦ ଦନ୍ତ ମୁଷଲୈଃ ପ୍ରୋତ୍ସପିବେଚଛନ୍ଦ୍ୟୈର୍ଦ୍ଧ୍ୟାନ୍ତଧ୍ୱଂସନ ନିଷ୍ଫଳୀକୃତ ଶରଚ୍ଚନ୍ଦ୍ରା ଜଟ୍ୟୈଃ ସଦା । ଯଦାସୀଦସତୀ ଜନସ୍ୟ ବିଶଦଂ ମୁକ୍ତାମୟଂ ମଣ୍ଡଳଂ ସତଙ୍କଦାସ୍ପଦମପ୍ୟତୀ ବଧବଳଂ ପ୍ରସାଦଶୃଙ୍ଗାଗ୍ରତଃ । (୨)

ମହାନଦୀ ତୁଙ୍ଗ ତରଙ୍ଗ ଭଙ୍ଗସ୍ପାତରାସ୍ରଚ୍ଛ ଲକ୍ଷ୍ମୀକରବର୍ତ୍ତିର୍ବ୍ରଜ୍ । ଯସ୍ମିନ୍ନ ରତା ସର୍ବମଦଙ୍ଗନାନାଂ ଶ୍ରମା ପାନଦ୍ୟଃ କିଂସ୍ୟତେ ମରୁଦ୍ଭିଃ । (୩)

ତସ୍ମାତ ଶ୍ରୀ ଯଜାତିନଗରାତ୍ ଲୋକସ୍ୟ ପ୍ରଥିତ ଶୁଭ୍ର ଯଶୋବିତାନବ୍ୟାପ୍ତାସ୍ତ୍ରଦିକ୍ ପ୍ରସଭ ନିର୍ଜ୍ଜିତ ବୈରିବର୍ଗଃ । ରାଜା ଭବୁବ ଭୁବି ଭାବିତଦିବ୍ୟ ମୂର୍ତ୍ତିଃ ଶ୍ରୀମାନ ସରୋଜ ବଦନୋ ଜନମେଜୟାଖ୍ୟଃ ।

ନିର୍ଦ୍ଦାରିତାରିକରିକୁମ୍ଭ ସମୁଦ୍ରମୁକ୍ତାଫଳ ପ୍ରକରଦନ୍ତୁରଥାଙ୍ଗଧାରଃ ତସ୍ମାଦଜାୟତ ଜଗତ୍ ଯଗୀତ କୀର୍ତ୍ତିର୍ହେଲା ବିନିର୍ଜ୍ଜିତଶ ପଥ ଯଜାତିଃ ।

---

* ବୋଧହୁଏ ଖୋଦନକାରୀ ଭ୍ରମବଶତଃ 'ଧାରଦତ୍ତ' ସ୍ଥଳରେ 'ସ୍ତରୁଦତ୍ତ' ଲେଖିଅଛନ୍ତି ।

Digitized by srujanika@gmail.com

ଯତ୍ର ଖଡ଼ଗାଗ୍ରବ ପାଟିତ ଦ୍ୱିପଘଟାକୁମ୍ଭସ୍ଥଳା ଦୁଲ୍ଲସନ ମୁକ୍ତା ଜାଲ ବଭୂଷିତଂ ପ୍ରଘରଙ୍ଗ ପୃଥ୍ୱୀଦଧୂରଃସ୍ଥଳଂ ଶଶ୍ୱତ୍ ଦ୍ୱାରନମନ୍ ସର୍ବଧପଣିବୈରନ୍ତାଂ ଶୁଜାଲାମଳା ଯତ୍ର ପାଦାମ୍ବୁଜ ଚରଣ ବଃ ସମସ୍ତା ତଦ୍‌ରଶ୍ମିଲକ୍ଷ୍ମୀଂ ଦଧୁଃ । ମାଦ୍ୟଲ୍ଲୋଲାଳି ମାଳା କୁଳକରଟ ସୂଟାସ୍ୟନ୍ଧଦାନ ପ୍ରବାବାନ୍ ସିନ୍ଦୁରାରକ୍ତକୁମ୍ଭୋତ ସିତ ପୃଥୁଳରଜାନ୍ କାମଦେବାଦ ସଜ୍ଞାନ୍ । ଜିତ୍ୱା ଜାବଲମାନୈ, ପଦ୍ଧତସୁର ବଧୂ ବସ୍ତ୍ରସ୍ତସୂରବକ୍ତ୍ରଃ ଖଡ଼ଗୀ ନିଂଶତ୍ କଶନ୍ଦ୍ରାନ ଶର ନକର ହୃତାରହ୍ୱକା ନର୍ଗ୍ରିହ୍ୱଦ୍ୟଃ । ପୂବସ୍ତସ୍ୟ ବଭୂବ ଧର୍ମ୍ମନିଧାନଃ ଶ୍ରୀ ଭୀମ ପୃତର୍ଦ୍ଦବଧ ଖ୍ୟାତଃ କ୍ଷାପନସେବ୍ୟମାତାଚରଣଶ୍ଚୂଡ଼ାମଣିର୍ଭୂଭୁଜାଂ ଯୋଽସୌ ଶୌଚମାହ୍ୱାଧନପି ସମରେ ଲକ୍ଷ୍ମୀ ପରେଷାଂ ବଲାତ୍ ଜଗ୍ରାହ ଷଡବୈରିବର୍ଗବିଭବଃ ସୌନ୍ଦର୍ଯ୍ୟ ଶୋଭାସ୍ପଦଂ ।

ପରମମାହେଶ୍ୱର ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ସୋମକୁଳତିଳକ ତ୍ରିକଳିଙ୍ଗାଧିପତି ଶ୍ରୀ ମହାଶିବ ଗୁପ୍ତରାଜଦେବ ପଦାନୁଧ୍ୟାତ ପରମମାହେଶ୍ୱର ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ସୋମକୁଳ ତିଳକ ତ୍ରିକଳିଙ୍ଗାଧିପତି ଶ୍ରୀମହାଭବଗୁପ୍ତରାଜଦେବଃ କୁଶଳୀ । କୋଶଳ ସାଙ୍ଗ ଦ୍ୟନ୍ତାବଷ୍ଟମ୍ଭୀୟ ଗୌଡ଼ସିମିପିଲ୍ଲୀ ଗ୍ରାମେ ତଦ୍‌ବଷ୍ଟମ୍ଭୀୟ ବ୍ରାହ୍ମଣାନ୍ ସମ୍ପୂଜ୍ୟ ସମାହର୍ତ୍ତୃ ସନ୍ନିଯୁକ୍ତାଧିକାରକ ଦାଣ୍ଡ ପାଶିକପିଶୁନବେତ୍ରି କାବରୋଧଜନରାଜ୍ଞୀ ରାଣକରାଜପୁତ୍ର ରାଜବଲ୍ଲଭାଦୀନ୍ ସମଜ୍ଞାପୟତି । ବିଦିତମସ୍ତୁ ଭବତାଂ ଯଥା ସ୍ମାଭିରୟଂ ଗ୍ରାମଃ ସନିଧିଃ ସୋପନିଧିଃ ସର୍ବବାଧାବିବର୍ଜ୍ଜିତଃ, ସର୍ବୋପରିକରଦାନ ସହିତଃ ଚନ୍ଦ୍ରା ମାମ୍ରମଧୁକଃ ସଗର୍ତ୍ତୋଷରଃ ସଜଳ ସ୍ଥଳଃ ଶ୍ରୀବସ୍ତୀମଣ୍ଡଳେ କାଶୀଲ୍ଲିଭଟ୍ଟ ଗ୍ରାମ ବିନିର୍ଗତାୟ କୋସଳେ ଦେବାଭୋଗବଷ୍ଟମ୍ଭୀୟ ସାଟେଣାଥା ଗ୍ରାମବାସ୍ତବ୍ୟାୟ କୌଶିକ ଗୋତ୍ରାୟ ବିଶ୍ୱାମିତ୍ର ଦେବରାତ୍ ଔଦଳ୍ୟପ୍ରବରାୟ କୌଥୁମ ଚରଣାୟ ଛାନ୍ଦଗଶାଖାଧ୍ୟାୟିନେ ଭଟ୍ଟପରମେଶ୍ୱର ପୌତ୍ରାୟ ଭଟ୍ଟବଶିଷ୍ଠ ସୁତାୟ ରାଣକ ଶ୍ରୀରାଙ୍ଗୋନାମ୍ନେ ସୂର୍ଯ୍ୟ ଗ୍ରହଣେ ସଲିଳଧାରା ପୁରଃସରମାଚନ୍ଦ୍ର ତାରକାର୍କକ୍ଷିତି ସମକାଲୋପଭୋଗାର୍ଥଂ । ମାତା ପିତ୍ରୋରାତ୍ମନଶ୍ଚ ପୁଣ୍ୟ ଯଶୋଽଭିବୃଦ୍ଧୟେ ତାମ୍ରଶାସନେନାକାରୀକୃତ୍ୟ ପ୍ରତିପାଦିତଂ ଇତ୍ୟ ବଗତ୍ୟ ସମୁଚିତ କରନକରଭୋଗଭାଗାଦିକମୁପନୟଦ୍ଭିଂ ସୁଖେନେ ପ୍ରତିବସ୍ତବ୍ୟମିତି ଭାବିଭିଶ୍ଚ ଭୂପତିଭିର୍ଦ୍ଦତ୍ତିଶିରସ୍ମମନୁମାନ୍ୟ ଧର୍ମ୍ମଗୌରବାଦ ସ୍ମଦନୁରୋଧାଚ୍ଚ । ସ୍ୱଦତ୍ତିରିବାନୁପାଳନୀୟା । ତଥାଚୋକ୍ତଂ ଧର୍ମଶାସ୍ତ୍ରେ ବହୁଭିର୍ବସୁଧା ଦତ୍ତା ରାଜଭିଃ ସଗରାଦିଭିଃ ଯସ୍ୟ ଯସ୍ୟ ଯଦା ଭୂମିସ୍ତସ୍ୟ ତସ୍ୟ ତଦା ଫଳଂ । ମା ଭୂଦଫଳ ଶଙ୍କାବଃ ପରଦତ୍ତେତି ପାର୍ଥିବାଃ ସ୍ୱଦତ୍ତାତ୍ ଫଲମାନନ୍ତ୍ୟଂ ପରଦତ୍ତାନୁପାଳନେ । ଷଷ୍ଟିବର୍ଷ ସହସ୍ରାଣି ସ୍ୱର୍ଗେ ମୋଦତି ଭୂମିଦଃ । ଆଛେତ୍ତା ଚାନୁମନ୍ତାଚ ଦ୍ୱାତବତୌ

Digitized by srujanika@gmail.com

ନରକଗାମିନୌ ଅଗ୍ନେରପତ୍ୟଂ ପ୍ରଥମଂ ସୁବର୍ଣ୍ଣଂ ଭୂର୍ବୈଷ୍ଣବୀ ସୂର୍ଯ୍ୟସୁତାଶ୍ଚ ଗାବଃ । ଯଃ କାଞ୍ଚନଂ ଗାଂ ଚ ମହୀଞ୍ଚ ଦଦ୍ୟାଦତ୍ତାସ୍ତସ୍ୟ ତ୍ରୟେନ ଭବନ୍ତି ଲୋକାଃ । ଆସ୍ଫୋଟୟନ୍ତି ପିତରଃ ପ୍ରବଲ୍‌ଗୟନ୍ତି ପିତାମହାଃ । ଭୂମିଦାତା କୁଲେ ଜାତଃ ସ ନସ୍ତାତା ଭବିଷ୍ୟତି । ଭୂମିଂ ଯଃ ପ୍ରତିଗୃହ୍ଣାତି ଯଶ୍ଚ ଭୂମିଂ ପ୍ରଯଚ୍ଛତି । ଉଭୌ ତୌ ପୁଣ୍ୟ କର୍ମାଣୌ ନିୟତଂ ସ୍ୱର୍ଗ ଗାମିନୌ । ତଡ଼ାଗାନାଂ ସହସ୍ରେଣ ବାଜପେୟଶତେନ ଚ । ଗବାଂ କୋଟିପ୍ରଦାନେନ ଭୂମିହର୍ତ୍ତା ନ ଶୁଦ୍ଧ୍ୟତି । ହରତେ ହାରୟତେ ଯସ୍ତୁ ମନ୍ଦବୁଦ୍ଧିସ୍ତମୋବୃତଃ । ସବଦ୍ଧୋ ବାରୁଣୈଃ ପାଶୈସ୍ତିର୍ଯ୍ୟଗ୍ୟୋନିଂ ଚ ଗଚ୍ଛତି । ସୁବର୍ଣ୍ଣମେକଂ ଗାମେକାଂ ଭୂମେରପ୍ୟର୍ଦ୍ଧ ମଙ୍ଗୁଲଂ । ହରନ୍ନରକ ମାପ୍ନୋତି ଯାବଦାହୂତସମ୍ପ୍ଲବଃ । ସ୍ୱଦତ୍ତାଂ ପରଦତ୍ତାଂ ବା ଯୋ ହରେତ ବସୁନ୍ଧରାଂ । ସେ ଷଷ୍ଟ୍ୟାଂ କୃମିର୍ଭୂତ୍ୱା ପଚ୍ୟତେ ପିତୃଭିଃ ସହ । ଆଦିତ୍ୟୋ ବରୁଣୋ ବିଷ୍ଣୁ ବ୍ରହ୍ମା ସୋମୋ ହୁତାଶନଃ । ଶୂଳପାଣିସ୍ତୁ ଭଗବାନଭିନନ୍ଦନ୍ତି ଭୂମିଦଂ । ସାମାନ୍ୟୋଽୟଂ ଧର୍ମସେତୁର୍ନୃପାଣାଂ କାଲେ କାଲେ ପାଲନୀୟୋ ଭବଦ୍ଭିଃ । ସର୍ବାନେତାନ୍ ଭାବିନୋ ଭୂପତୀନ୍ଦ୍ରାନ୍ ଭୂୟୋଭୂୟୋ ଯାଚତେ ରାମଭଦ୍ରଃ । ଇତି କମଲ-ଦଲାମ୍ବୁବିନ୍ଦୁଲୋଲାଂ ଶ୍ରିୟମନୁଚିନ୍ତ୍ୟ ମନୁଷ୍ୟ ଜୀବିତାନ୍ ଚ । ସକଲମିଦମୁଦାହୃତାନ୍‌ଚ ବୁଦ୍ଧ୍ୱା ନହି ପୁରୁଷୈଃ ପରକୀର୍ତ୍ତୟୋ ବିଲୋପ୍ୟାଃ । ଯେନାତ୍ୟନ୍ତସୁରା-ସୁରାଧିପଗୁରୁଃ ପ୍ରଜ୍ଞାଭିମନୈର୍ଜିତୋରାଜ୍ଞୀ ରୋପିତ ରାଜ୍ୟଭାରମତୁଲଂ ଯଷ୍ଟା-ବହଲ୍ଲୀଲୟା । ଯସ୍ୟାସୀନ୍ନୟ ବିନୟମଦ୍ୱୟମପି ପ୍ରେୟାନ୍ ସଖା ସର୍ବଦା । ସ ଶ୍ରେୟାନ୍ ଧୃତସନ୍ଧିବିଗ୍ରହପଦଃ ଶ୍ରୀସିଙ୍ଘଦତ୍ତକୃତୀ ॥ ନାମ୍ନା ମଙ୍ଗଲ ଦତ୍ତେନ କାୟସ୍ଥେନ ସ—V—ଅଲେଖି ଶାସନଂ—ସ ଯାବଚ୍ଚନ୍ଦ୍ରାର୍କତାରକାଃ ॥ ପରମ ମାହେଶ୍ୱର ପରମ ଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ସୋମକୁଲତିଲକ ତ୍ରିକଳିଙ୍ଗାଧିପତି ଶ୍ରୀଧର୍ମାର୍ଥଦେବସ୍ୟ ପ୍ରବର୍ଦ୍ଧମାନେ ବିଜୟରାଜ୍ୟେ ତୃତୀୟ ସମ୍ବତ୍ସରେ ମାର୍ଗଶିରମାସୀୟ ଶୁକ୍ଳପକ୍ଷେ ତିଥୌ ତୃତୀୟାୟାଂ ଯତ୍ରାଙ୍କେନାପି ସମ୍ବତ୍ ୩ ମାର୍ଗସୁଦିଃ । 'ବିଜ୍ଞାନ ମଧୁମସ୍ୟେନ ଉତ୍କୀର୍ଣ୍ଣଂ' ।

ଏହି ଶାସନ କେଉଁଠାରେ ଆବିଷ୍କାର ହୋଇଥିଲା, ତାର ସ୍ଥିରତା ନାହିଁ । ବୋଧହୁଏ ଏହା କଟକ ବା ତତ୍‌ସନ୍ନିହିତ କୌଣସି ସ୍ଥାନରେ ମିଳି-ଥିଲା । ଏହାର ପତ୍ର ତିନୋଟି ଗୋଟିଏ ମୋଟା ତମ୍ବା ମୁଦିଆ ଦ୍ୱାରା ବନ୍ଧା ହୋଇଥିଲା । ମୁଦିଆର ଶେଷ ଭାଗରେ ଗୋଟିଏ ମୋହର ଥିଲା । ଶାସନଟି କୁଟିଳାକ୍ଷରରେ ଲିଖିତ ହୋଇଥିଲା ।

ଦ୍ୱିତୀୟ ମହାଭବଗୁପ୍ତଦେବ ମହାନଦୀତୀରସ୍ଥ ଯଜାତିନଗରଠାରେ ଏହି ଶାସନ ଘୋଷଣା କରିଥିଲେ । ଯଜାତିନଗର ଯାଜପୁରର ନାମାନ୍ତର ହୋଇ

Digitized by srujanika@gmail.com

ନପାରେ । ଯାଜପୁର ବୈତରଣୀ କୂଳରେ ଅବସ୍ଥିତ, ମହାନଦୀ କୂଳରେ ନୁହେଁ ।

ମହାଭବଗୁପ୍ତଦେବ ମହାଶିବଗୁପ୍ତ ରାଜଦେବଙ୍କର ପୁତ୍ର ଥିଲେ । ସେ ବଶିଷ୍ଠ ଭଟ୍ଟଙ୍କର ପୁତ୍ର, ପରମେଶ୍ୱର ଭଟ୍ଟଙ୍କର ପୌତ୍ର । ସ୍ତ୍ରାଭସ୍ତିମଣ୍ଡଳସ୍ଥ କଶିଲ୍ଲି ନାମକ ଭଟ୍ଟଗ୍ରାମରୁ ଆଗତ ରାଣକଙ୍କୁ ଖଣ୍ଡସିମିନ୍ଦ୍ରିଲ୍ଲି ନାମକ ଗ୍ରାମ ଦାନ କରିଥିଲେ । ରାଣକ କୋଶଳ ଅନ୍ତ୍ୟପାତୀ ଦେବୀ ଭୋଗଖଣ୍ଡରେ ସିଙ୍ଗୋନାମକ ଗ୍ରାମରେ ବାସ କରୁଥିଲେ । ମହାରାଜାଧିରାଜ ଶ୍ରୀମାର୍ଥଦେବଙ୍କ ରାଜତ୍ୱର ତୃତୀୟ ବର୍ଷରେ ମାର୍ଗଶିର ଶୁକ୍ଳ ପକ୍ଷରେ ଏହି ଶାସନ ଘୋଷିତ ହୋଇଥିଲା ।

ଆମ୍ଭେମାନେ ନଅଗୋଟି ଶାସନ ଓ ଆଲୋଚନାକାରୀମାନଙ୍କର ତତ୍‌ସମ୍ବନ୍ଧୀୟ ମତାମତ ଉଦ୍ଧାର କରିଅଛୁଁ । ସେଥିରୁ ଓଡ଼ିଶାର ରାଜାମାନଙ୍କ ସମ୍ବନ୍ଧରେ ନିମ୍ନୋକ୍ତ ଇତିହାସ ଅନୁମିତ ହୋଇଅଛି ।

ମହାରାଜାଧିରାଜଗୁପ୍ତ ··· ସେମାନଙ୍କର ଅଧୀନ ଓଡ଼ିଶାର ରାଜା

୧ । ପ୍ରଥମ ମହାଭବଗୁପ୍ତଦେବ ··· ଜନମେଜୟଦେବ ।

୨ । ମହାଶିବଗୁପ୍ତ ଦେବ ··· ଯଯାତି ଦେବ ।

୩ । ଦ୍ୱିତୀୟ ମହାଭବଗୁପ୍ତ ଦେବ ··· ଶ୍ରୀମାର୍ଥ ଦେବ ।

ପରବର୍ତ୍ତୀ ଅଧ୍ୟାୟମାନଙ୍କରେ ଉପରୋକ୍ତ ଇତିହାସର ବିଶଦ ଆଲୋଚନା କରାଯିବ ।

—*—

Digitized by srujanika@gmail.com

# କେଶରୀବଂଶ

## ଦ୍ୱିତୀୟ ଅଧ୍ୟାୟ (ନୂତନ ଅନୁମାନ)

ପ୍ରଥମ ଅଧ୍ୟାୟରେ କେତେକ ତାମ୍ରଶାସନ ଓ ଶାସନ ପାଠକମାନଙ୍କର ତତ୍‌ସମ୍ବନ୍ଧୀୟ ମତାମତ ଉଦ୍ଧୃତ ହୋଇଅଛି । ଉକ୍ତ ମତର ସାରାଂଶ ମଧ୍ୟ ଅଧ୍ୟାୟର ଉପସଂହାରରେ ପ୍ରଦର୍ଶିତ ହୋଇଅଛି । ଶାସନ ପାଠକମାନଙ୍କ ମତରେ ଦୃଢ଼ତା-ବର୍ତ୍ତମାନ ଆଲୋଚନୀୟ ।

'ଛ' ଶାସନ ପାଠକ ବାବୁ ରଙ୍ଗଲାଲ କହନ୍ତି, ଗୁପ୍ତମାନଙ୍କୁ 'ମହାରାଜାଧିରାଜ' ଓ ଜନମେଜୟ ଓ ଯଯାତିଙ୍କୁ ଯଥାକ୍ରମେ କେବଳ 'ରାଜା' ଓ 'ମହାରାଜା' କୁହାଯାଉଥିବା ସ୍ଥଳେ ଶାସନକୁ ଜନମେଜୟ ଓ ଯଯାତି ତଥା କେଶରୀ ବଂଶୀୟ ରାଜାମାନେ ଗୁପ୍ତ ବଂଶୀୟ ରାଜାମାନଙ୍କ ଅଧୀନସ୍ଥ ଥିବା ସ୍ପଷ୍ଟ ପ୍ରତୀୟମାନ ହୁଏ । 'ଙ' ଶାସନ-ପାଠକ ଡାକ୍ତର ରାଜେନ୍ଦ୍ରଲାଲ ମଧ୍ୟ ରଙ୍ଗଲାଲଙ୍କ ମତର ସମର୍ଥନ କରିଅଛନ୍ତି । ସେ କହନ୍ତି ଗୁରୁ-ଲଘୁ ସମ୍ବନ୍ଧ ନଥିଲେ ଅସାମାନ୍ୟ ପରାକ୍ରମୀ ଯଯାତି କାହିଁକି ଶିବ ଗୁପ୍ତଙ୍କୁ 'ମହାରାଜାଧିରାଜ' ବୋଲି ସମ୍ବୋଧନ କରିଥାନ୍ତେ ? ତାଙ୍କ ପ୍ରଣୀତ ଓଡ଼ିଶାର 'ଆଣ୍ଟିକୁଇଟି' ପୁସ୍ତକରେ ମଧ୍ୟ ସେ ଏହି ମତ ପ୍ରକାଶ କରିଛନ୍ତି ।

ଏକ ପକ୍ଷରେ 'ମହାରାଜାଧିରାଜ' ଉପାଧି ଓ ଅନ୍ୟ ପକ୍ଷରେ ଏହାର ସମ୍ପୂର୍ଣ୍ଣ ଅଭାବ ଥିଲେ ଉକ୍ତବିଧ ଅନୁମାନ ଯୁକ୍ତି-ସଙ୍ଗତ ହୁଅନ୍ତା; ମାତ୍ର 'ଜ' ଶାସନରେ ଯଯାତି ଓ 'ଝ' ଶାସନରେ ଭୀମାର୍ଥ 'ମହାରାଜାଧିରାଜ' ଉପାଧି ସହିତ ବର୍ଣ୍ଣିତ ହୋଇଅଛନ୍ତି । 'କ' ଓ 'ଖ' ଶାସନରେ ଜନମେଜୟଙ୍କୁ ମହାରାଜାଧିରାଜ କୁହାଯାଇଅଛି । ଅତଏବ କେବଳ 'ମହାରାଜାଧିରାଜ' ଉପାଧିର ଅସ୍ତିତ୍ୱ ବା ନାସ୍ତିତ୍ୱ ଦୃଷ୍ଟିରେ ଜନମେଜୟ, ଯଯାତି ଓ ଭୀମାର୍ଥ-ମାନଙ୍କୁ ଗୁପ୍ତ ବଂଶୀୟ ରାଜାମାନଙ୍କର ଅଧୀନସ୍ଥ ବୋଲି କୁହାଯାଇ ନ ପାରେ ।

'ମହାରାଜାଧିରାଜ' ଉପାଧି ବ୍ୟତୀତ 'ପରମମାହେଶ୍ୱର', 'ପରମ ଭଟ୍ଟାରକ','ପରମେଶ୍ୱର','ସୋମକୁଳତିଲକ' ଓ 'ତ୍ରିକଳିଙ୍ଗାଧିପତି' ଉପାଧିମାନ

Digitized by srujanika@gmail.com

ଶାସନରେ ଦେଖାଯାଏ । ଜନମେଜୟ, ଯଯାତି ଓ ଭୀମାର୍ଥ ଯଥାକ୍ରମେ ମହାଭବଗୁପ୍ତ, ମହାଶିବ ଗୁପ୍ତ ଓ ଦ୍ୱିତୀୟ ମହାଭବଗୁପ୍ତଙ୍କ ସହିତ ଉଲ୍ଲେଖିତ ହୋଇଆସିଛନ୍ତି । କିନ୍ତୁ ସେମାନଙ୍କ ପ୍ରତି ଉପରୋକ୍ତ ସବୁଗୁଡ଼ାକ ଉପାଧି ପ୍ରଯୁକ୍ତ ହୋଇଅଛି । ଯଦି ସେମାନଙ୍କ ମଧ୍ୟରୁ ପ୍ରଥମୋକ୍ତ ତିନିଜଣ ସାମନ୍ତ ରଜା ଓ ଶେଷୋକ୍ତ ତିନିଜଣ ମହାରାଜାଧିରାଜ ହୋଇଥାନ୍ତେ ତାହାହେଲେ ଉପରୋକ୍ତ ଉପାଧିମାନ କେବେହେଁ ଅବାଧଭାବରେ ସମସ୍ତଙ୍କ ପ୍ରତି ବ୍ୟବହୃତ ହୋଇ ନ ଥାନ୍ତା । ବାବୁ ରଙ୍ଗଲାଲ ମନେ କରନ୍ତି ଯେ, ଉପରୋକ୍ତ ଉପାଧିମାନ କେବଳ ଗୁପ୍ତ ବଂଶୀୟ ରାଜାମାନଙ୍କ ପ୍ରତି ବ୍ୟବହୃତ ହେଉଥିଲା । ମାତ୍ର ବାସ୍ତବରେ ତାହା ହୋଇନାହିଁ ।

'ଝ' ଶାସନର ଶେଷ ଭାଗରେ ଜନମେଜୟଙ୍କ ନାମରେ ଏକ ବନ୍ଦନା (Eulogium) ଅଛି । 'ଛ' ଶାସନରେ ଲେଖକ ଯଯାତିଙ୍କର ବଂଶ ପରିଚୟ ଦେବାକୁ ଯାଇ ବନ୍ଦନାସୂଚକ ଦୁଇ ଶ୍ଲୋକ ବ୍ୟବହାର କରିଅଛନ୍ତି । ଅଧିରାଜଙ୍କୁ ଉପେକ୍ଷା କରି ସାମନ୍ତରାଜା ଏପରି ଭାବରେ ନିଜର ନାମ ଘୋଷଣା କରିବା କଦାପି ସମ୍ଭବ ବା ସ୍ୱାଭାବିକ ନୁହେଁ । କେହି ମନେ କରିପାରନ୍ତି, ଗୁପ୍ତ ବଂଶୀୟ ରାଜାମାନେ କେଶରୀବଂଶୀୟମାନଙ୍କୁ ବଶୀଭୂତ କରି ସେମାନଙ୍କୁ ସମସ୍ତ ଅଧିକାର ଛାଡ଼ିଦେଇ ସ୍ୱକୀୟ ରାଜଧାନୀକୁ ଫେରିଯିବା ହେତୁ ଶେଷୋକ୍ତ ରାଜାମାନେ ଶାସନରେ ଆପଣାର ନାମ ସ୍ୱେଚ୍ଛାନୁସାରେ ଘୋଷଣା କରୁଥିଲେ । ତାହା ଯଦି ହୋଇଥାଏ, ତାହାହେଲେ ଶାସନରେ ଗୁପ୍ତମାନଙ୍କର ନାମୋଲ୍ଲେଖର ଆବଶ୍ୟକତା କଣ ଥିଲା ?

କୌଣସି କୌଣସି ଶାସ୍ତ୍ରରେ ଅଛି ଯେ, କେବଳ ମହାରାଜାଧିରାଜଙ୍କ ବ୍ୟତୀତ ଆନ୍ୟ କାହାରି ଭୂମିଦାନ କରିବା ଅଧିକାର ନାହିଁ । ଶାସନ ପାଠକମାନେ ଏହି ଶାସ୍ତ୍ରୀୟ ବିଧାନ ଦ୍ୱାରା ଅଯଥା ଚାଳିତ ହୋଇ ଶାସନର ଦୁଇଟି ଭିନ୍ନ ନାମ ଦେଖି ହଠାତ୍ ଜଣକୁ ମହାରାଜାଧିରାଜ ଓ ଅନ୍ୟଜଣକୁ ଅଧୀନସ୍ଥ ସାମନ୍ତ ରାଜା ବୋଲି ଅନୁମାନ କରିଅଛନ୍ତି । କିନ୍ତୁ ବାସ୍ତବରେ ଶାସ୍ତ୍ରର ଏହି ବିଧାନ ସର୍ବଦା ଅନୁସୃତ ହୋଇନାହିଁ । ଡାକ୍ତର ଫ୍ଲିଟ୍ କହନ୍ତି—ଏହି ବିଧାନର ଅନୁସରଣ କରି କୌଣସି ରାଜା ନିଜର ଉପରିସ୍ଥ ଅଧିରାଜଙ୍କ ନାମରେ ଶାସନ ଘୋଷଣା କରିଥିବାର ଗୋଟିଏ ମାତ୍ର ସତ୍ୟ ଉଦାହରଣ ଦେଖାଯାଏ ନାହିଁ । ସୁତରାଂ ଶାସନରେ ଦୁଇଟି ବିଭିନ୍ନ ନାମର ଉଲ୍ଲେଖ କେଶରୀବଂଶୀୟ ରାଜାମାନଙ୍କର ସାମନ୍ତତ୍ୱର ପ୍ରମାଣ ହୋଇନପାରେ ।

ଅତଏବ କେଶରୀ ବଂଶୀୟ ପ୍ରାଥମିକ ରାଜାମାନେ ସ୍ୱାଧୀନ ରାଜା ଥିଲେ । ସେମାନେ ଗୁପ୍ତବଂଶୀୟ ରାଜାମାନଙ୍କର ଅଧୀନସ୍ଥ ସାମନ୍ତରାଜା ନଥିଲେ । ବରଂ

Digitized by srujanika@gmail.com

ସେମାନେ ତ୍ରିକଳିଙ୍ଗର ମହାରାଜାଧିରାଜ ଥିଲେ । ଏତଦ୍‌କମାତ୍ର ଅନୁମିତ ହୁଏ ଯେ ଏହି ବଂଶୀୟ ପରବର୍ତ୍ତୀ କେତେକ ରାଜା ନିଜବଂଶର ପ୍ରାଥମିକ ଗୌରବକୁ ଅକ୍ଷୁଣ୍ଣ ରଖିପାରି ନଥିଲେ । ସେ ଯାହାହେଉ, ଏହି ବଂଶର ପ୍ରାଥମିକ ଗୌରବ ଓ ସ୍ୱାଧୀନତା ସମ୍ବନ୍ଧରେ ଅନ୍ୟଦିଗରୁ ବ ପ୍ରମାଣ ମିଳିପାରେ, ତାହା ବର୍ତ୍ତମାନ ଦେଖାଯାଉ ।

ଭାରତ ଇତିହାସରେ ଗୁପ୍ତବଂଶକୁ ଦୁଇଭାଗରେ ବିଭକ୍ତ କରାଯାଇଅଛି— ମହାରାଜାଧିରାଜ ଗୁପ୍ତ (Imperial Guptas) ଏବଂ ପରବର୍ତ୍ତୀ ଗୁପ୍ତ (Later Guptas) ।

ପରବର୍ତ୍ତୀ ଗୁପ୍ତମାନେ ୫୩୫ ଖ୍ରୀଷ୍ଟାବ୍ଦ ଠାରୁ ୭୨୯ ଖ୍ରୀଷ୍ଟାବ୍ଦ ଯାଏ ଭାରତରେ ଶାସନ କରିଥିଲେ । ଏହି ବଂଶରେ ଏଗାର ଜଣ ରାଜା ଥିଲେ । ଏମାନେ କ୍ଷୁଦ୍ର ରାଜ୍ୟଖଣ୍ଡର ଅଧିକାରୀ ଥିଲେ । ବର୍ମା ଉପାଧିଧାରୀ ଅନ୍ୟଏକ ରାଜବଂଶ ସହିତ ଭାଗୀ ହୋଇ ଏମାନେ ମଗଧରେ ରାଜତ୍ୱ କରୁଥିଲେ । ✱ ମାତ୍ର ଓଡ଼ିଶାର ଦେଶୀୟ ଇତିହାସରୁ ଜଣାଯାଏ ଯେ, ଯଯାତି କେଶରୀଙ୍କ ରାଜତ୍ୱ ୫୨୬ ଖ୍ରୀଷ୍ଟାବ୍ଦରେ ସମାପ୍ତ ହୋଇଥିଲା । ଶାସନୋକ୍ତ ଯଯାତି ଏହି ଯଯାତି କେଶରୀ ଅଟନ୍ତି । ଏହାଙ୍କ ଛଡ଼ା ଦ୍ୱିତୀୟ ଯଯାତି କେଶରୀ ଓଡ଼ିଶାର ସିଂହାସନ ଅଳଂକୃତ କରିନାହାନ୍ତି । ଏହି ଯଯାତି କେଶରୀବଂଶର ସ୍ଥାପୟିତା ବୋଲି ଦେଶୀୟ ଉପାଦାନରୁ ପ୍ରକାଶ । ତାହାହେଲେ ଯଯାତି ଓ ତାଙ୍କର ପୂର୍ବବର୍ତ୍ତୀ ଜନମେଜୟଙ୍କ ରାଜତ୍ୱକାଳ ପରବର୍ତ୍ତୀ ଗୁପ୍ତମାନଙ୍କ (Later Guptas) ଶାସନକାଳ ମଧ୍ୟରେ ପଡ଼ୁନାହିଁ । ସୁତରାଂ ଶାସନୋକ୍ତ ଜନମେଜୟ ଓ ଯଯାତି ପରବର୍ତ୍ତୀ ଗୁପ୍ତମାନଙ୍କର ଅଧୀନସ୍ଥ ନୁହନ୍ତି, କିମ୍ବା ମହାଭବଗୁପ୍ତ ଓ ମହାଶିବ-ଗୁପ୍ତ ପରବର୍ତ୍ତୀ ଗୁପ୍ତବଂଶର କୌଣସି ରାଜା ନୁହନ୍ତି ।

ଉପରୋକ୍ତ ମତେ ରାଜତ୍ୱକାଳର ଅମିଳନ ଥିଲେହେଁ ଯଯାତି ପରବର୍ତ୍ତୀ ଗୁପ୍ତବଂଶୀୟ କୌଣସି ରାଜାଙ୍କର ଅଧୀନସ୍ଥ ବୋଲି ବିଶ୍ୱାସ ହୁଅନ୍ତା ନାହିଁ । ଯବନମାନଙ୍କର ଉଚ୍ଛେଦ ସାଧନକାରୀ ଯଯାତି, ଉତ୍କଳ ଖଣ୍ଡରେ ବ୍ରାହ୍ମଣ୍ୟ ଧର୍ମର ପୁନରୁଦ୍ଧାର କର୍ତ୍ତା ଯଯାତି, କେଶରୀପ୍ରଥମ କେଶରୀବଂଶର ସ୍ଥାପୟିତା ଯଯାତି, ମନୋମୁଗ୍ଧକର ଭୁବନେଶ୍ୱରର ନିର୍ଦ୍ଦେଶକର୍ତ୍ତା ଯଯାତି, ବର୍ଣ୍ଣପ୍ରଶଂସ୍ୟ

✱ V. A Smith's Early History of India Ed III, PP 312 and 327.

କୀର୍ତ୍ତିସ୍ତମ୍ଭର ଆରମ୍ଭକାରୀ ଯଯାତି, ଉତ୍କଳ ବିଜୟ ସ୍ମାରକ ବିରଜ-କ୍ଷେତ୍ରର (ବିରେଜା କ୍ଷେତ୍ର) ପ୍ରତିଷ୍ଠାତା ଯଯାତି ଯେ ସାମନ୍ୟ ଭୂମିଖଣ୍ଡର ଅଧିକାରୀ ଅନ୍ୟର ଭାଗୀ ଗୁପ୍ତବଂଶର ଆଜ୍ଞାବହ ଥିଲେ, ତାହା କିଏ ବିଶ୍ୱାସ କରିପାରେ ?

ଦେଶୀୟ ଇତିହାସ ଲେଖକ ଯେଉଁ ଜନମେଜୟଙ୍କ ନାମୋଲ୍ଲେଖ କରିଅଛନ୍ତି, ତାଙ୍କର ଲକ୍ଷ୍ୟ ଯଦି ଯଯାତିଙ୍କ ପିତା ହୋଇଥାନ୍ତି, ତାହାହେଲେ ଦେଶୀୟ ଇତିହାସ ଅବଶ୍ୟ ଭ୍ରାନ୍ତ । ମାତ୍ର 'କେଶରୀବଂଶ'ରେ ଜନମେଜୟ ନାମଧାରୀ ଏକାଧିକ ରାଜା ଥିବା ଅସମ୍ଭବ କି ? ରାଜବଂଶରେ ଗୋଟିଏ ନାମର ଏକାଧିକବାର ପ୍ରୟୋଗ ପ୍ରାୟ ଦେଖାଯାଏ । ଗୁପ୍ତବଂଶରେ କେତେକ ନାମ ଏକାଧିକବାର ବ୍ୟବହୃତ ହୋଇଅଛି । ଅଦ୍ୟାବଧି ମଧ୍ୟ ଓଡ଼ିଶା ରାଜବଂଶରେ ନାମ ସ୍ୱରପୁରୁଷ ପରେ ଫେରୁଅଛି । ଏ ସମସ୍ତପ୍ରତି ଦୃକ୍‌ପାତ କଲେ ଦେଶୀୟ ଇତିହାସ ଓ ଉପସ୍ଥିତ ଶାସନମାନଙ୍କ ମଧ୍ୟରେ କୌଣସି ଆସାମଞ୍ଜସ୍ୟ ଦେଖାଯାଏ ନାହିଁ ।

କେଶରୀବଂଶର ପୂର୍ବେ ଯବନମାନଙ୍କ ଦ୍ୱାରା ଏକାଧିକବାର ଓଡ଼ିଶା ଆକ୍ରମଣ ଦେଶୀୟ ଇତିହାସରେ ବର୍ଣ୍ଣିତ ହୋଇଅଛି । ଡାକ୍ତର ଫ୍ଲିଟ୍ ଏହି ଯବନମାନଙ୍କୁ ଗୁପ୍ତ ଅଥବା ପଠାଣ ବୋଲି ମନେକରନ୍ତି । କିନ୍ତୁ ଗୁପ୍ତ ଅଥବା ପଠାଣ ଦେଶୀୟ ଲେଖକଙ୍କ 'ଯବନ' ଶବ୍ଦର ଲକ୍ଷ୍ୟ କି ? ଗୁପ୍ତମାନେ ଓଡ଼ିଶା ଅଧିକାର କରି କେବେ ୧୪୬ ବର୍ଷକାଳ ଓଡ଼ିଶାରେ ରାଜତ୍ୱ କରି ନ ଥିଲେ । ପକ୍ଷାନ୍ତରେ ଦେଶୀୟ ଇତିହାସରେ ଯବନମାନେ କେଶରୀବଂଶର ପୂର୍ବରୁ ୧୪୬ ବର୍ଷକାଳ ଓଡ଼ିଶାରେ ରାଜତ୍ୱ କରିଥିଲେ । ପୁନଶ୍ଚ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ପ୍ରାୟ ମଧ୍ୟଭାଗ ପର୍ଯ୍ୟନ୍ତ କୌଣସି ପଠାଣ ସେନାପତି ଓଡ଼ିଶାରେ ପଦକ୍ଷେପ କରି ନଥିଲେ । ଏପରି ସ୍ଥଳରେ ପଠାଣ ଅଧିକାରକୁ ଯଦି କେଶରୀବଂଶର ପୂର୍ବରେ ସ୍ଥାନ ଦିଆଯାଇଥାଏ, ତାହାହେଲେ ଦେଶୀୟ ଇତିହାସରେ ସତ୍ୟର ଅପଚୟ ଛଡ଼ା ଆଉ କିଛି ହେଲପରି ବୋଧହୁଏ ନାହିଁ । ଅତଏବ ଦେଶୀୟ ଇତିହାସ ଲିଖିତ ଯବନମାନଙ୍କୁ ଗୁପ୍ତ ଅଥବା ପଠାଣ ବୋଲି ମନେକରି ଦେଶୀୟ ଇତିହାସକୁ ଅବିଶ୍ୱାସ କରିବା ଡାକ୍ତର ଫ୍ଲିଟ୍‌ଙ୍କ ପକ୍ଷରେ ସ୍ୱାଭାବିକ ।

କିନ୍ତୁ ଦେଶୀୟ ଇତିହାସର ଯବନମାନେ ଗୁପ୍ତ ଅଥବା ପଠାଣ ନୁହନ୍ତି । ଦେଶୀୟ ଇତିହାସ ବର୍ଣ୍ଣିତ ଯବନମାନଙ୍କର ପରିଚୟ ଯଥାସ୍ଥାନରେ ପ୍ରଦତ୍ତ ହେବ । ଏଠାରେ ଏତିକମାତ୍ର ବକ୍ତବ୍ୟ ଯେ ଫ୍ଲିଟ୍‌ଙ୍କ ଅବିଶ୍ୱାସର ଏହି କାରଣଟି ସମ୍ପୂର୍ଣ୍ଣ ଅମୂଳକ ।

Digitized by srujanika@gmail.com

ଦେଶୀୟ ଲେଖକ ଗୁଣନାମ ବା ଶାସ୍ତ୍ରୀୟନାମ ଓ କାଳ୍ପନିକ ରାଜତ୍ୱକାଳର ସାହାଯ୍ୟରେ ଶତାବ୍ଦୀ ପୂରଣ କରିଥିବା ସମ୍ବନ୍ଧରେ ଡାକ୍ତର ଫ୍ଲିଟ୍ ଆଉ ଗୋଟିଏ କାରଣ ଦର୍ଶାଇ ଅଛନ୍ତି । ସେ କହନ୍ତି, ପଦ୍ମ କେଶରୀ, ଗନ୍ଧର୍ବ କେଶରୀ, କାଳୀକେଶରୀ, ମଧୁସୂଦନ କେଶରୀ ଓ ତ୍ରିପୁରା କେଶରୀ ପ୍ରଭୃତି ନାମ କାଳ୍ପନିକ । ସେସବୁ କାହିଁକି କାଳ୍ପନିକ ହେବ, ବୁଝାଯାଉ ନାହିଁ । ବୋଧହୁଏ ଉତ୍କଳରେ ପଦ୍ମଚରଣ, କାଳୀଚରଣ, ମଧୁସୂଦନ, ତ୍ରିପୁରାରି ପ୍ରଭୃତି ନାମର ପ୍ରଚଳନ ଫ୍ଲିଟ୍‌ଙ୍କୁ ଜଣାନଥିଲା ।

ପୁନଶ୍ଚ ଫ୍ଲିଟ୍ କହନ୍ତି, କେଶରୀବଂଶର ନରସିଂହ, କୂର୍ମ, ମତ୍ସ୍ୟ, ବରାହ, ବାମନ ଓ ପରଶୁ ପ୍ରଭୃତି ନାମ ସତ୍ୟ ନୁହେଁ, ଶତାବ୍ଦୀ ପୂରଣ ଉଦ୍ଦେଶ୍ୟରେ ଲେଖକ ବିଷ୍ଣୁଙ୍କର ଅବତାର ନାମଗୁଡ଼ିକୁ ଅବଲମ୍ବନ କରି ଏସବୁକୁ ସ୍ୱେଚ୍ଛାରେ ଲେଖିଦେଇଅଛନ୍ତି । ବିଷ୍ଣୁଙ୍କର ଏକାଧିକ ଅବତାରର ନାମ ଏକସ୍ଥାନରେ ସନ୍ନିବେଶିତ ହେବା ଉପରୋକ୍ତ ସନ୍ଦେହର କାରଣ । ମାତ୍ର ଦେଶ ପ୍ରଚଳିତ ତଦାନୀନ୍ତନ ରୀତିନୀତି ଦୃଷ୍ଟିରେ ଚିନ୍ତାକଲେ ତଦ୍ରୂପ ସନ୍ଦେହ ଅମୂଳକ ବୋଧହୁଏ । ପୂର୍ବେ କଥିତ ହୋଇଅଛି ଯେ, ଦେବଦେବୀଙ୍କର ସହଜ, ସୁଶ୍ରାବ୍ୟ ନାମାନୁସାରେ ନାମକରଣ କରିବା ପ୍ରଥା ଓଡ଼ିଶାରେ କ୍ରମେ ପ୍ରଚଳିତ ହୋଇଥିଲା । ଆଜିକାଲି ମଧ୍ୟ ଏହି ପ୍ରଥା ସଚରାଚର ଦେଖାଯାଏ । କେବଳ ସେତିକି ନୁହେଁ । ଅନେକ ଏକ ନିର୍ଦ୍ଦିଷ୍ଟ କ୍ରମରେ ନାମକରଣ କରିଥାନ୍ତି । କେହି ବିଷ୍ଣୁଙ୍କର ବିଭିନ୍ନ ନାମକୁ ପ୍ରୟୋଗ କରିଥାନ୍ତି । ଯେଉଁସବୁ ଦେବତା ଏକ ସ୍ଥାନରେ ପୂଜିତ ହୁଅନ୍ତି ବା ଯାହାଙ୍କର ନାମ ଶାସ୍ତ୍ରରେ ଏକ ସଙ୍ଗରେ କଥିତ ହୋଇଥାଏ, କେହି କେହି ସେମାନଙ୍କର ନାମ ଦିଅନ୍ତି । ପିତା ଗୋଟିଏ ପୁତ୍ରର ନାମ ବଳଭଦ୍ର ବା ଜଗନ୍ନାଥ ଦେଇଥିଲେ ଅନ୍ୟଟିକୁ ଜଗନ୍ନାଥ ବା ବଳଭଦ୍ର ନାମ ଦେବାକୁ ପ୍ରବୃତ୍ତ ହୁଏ । ଏହିପରି ନିର୍ଦ୍ଦିଷ୍ଟ କ୍ରମାନୁସାରେ ନାମଦେବାକୁ ହେଲେ କୂର୍ମ ଓ ମତ୍ସ୍ୟ ପରି ଗୋଟିଏ ଦୁଇଟି ଶ୍ରୁତିକଠୋର ନାମ ବ୍ୟବହୃତ ହେବା ଅସ୍ୱାଭାବିକ ନୁହେଁ । ରାଜବଂଶରେ ଏପରି ହେବା ନିମ୍ନୋକ୍ତ କାରଣରୁ ବେଶୀ ସ୍ୱାଭାବିକ ।

କେହି କେହି କହିପାରନ୍ତି, ଗୋଟି ଗୋଟି କରି ଏତେଗୁଡ଼ିଏ ଅବତାର ନାମକୁ ସଙ୍ଗତ ଭାବରେ ବ୍ୟବହାର କରିବା ଜଣକ ପକ୍ଷରେ ସମ୍ଭବ ହୋଇପାରେ; କାରଣ ଜଣେ ଏକ ନିର୍ଦ୍ଦିଷ୍ଟକ୍ରମ ଚକ୍ଷୁ ଅଗ୍ରରେ ରଖି ତାଙ୍କର ସାନ୍ତାନିକ ନାମକରଣ କରିପାରନ୍ତି । କିନ୍ତୁ ଗୋଟିଏ ବଂଶରେ ଏକାଧିକ ପୁରୁଷଯାଏ ଏତାଦୃଶ ସଙ୍ଗତ ବ୍ୟବହାର ସମ୍ଭବ ନୁହେଁ । ଯେହେତୁ ଜଣେ ଲୋକ ଅନେକ ପୁରୁଷଯାଏ ନାମକରଣ କରିନଥାଏ । ପ୍ରଥମ ନାମକାରୀ କୌଣସି କ୍ରମ ସ୍ଥିର

Digitized by srujanika@gmail.com

କରିଥିଲେ, ତାଙ୍କ ମୃତ୍ୟୁପରେ ପରବର୍ତ୍ତୀ ସମୟରେ ସେହି କ୍ରମର ବ୍ୟତିକ୍ରମ ଘଟିବା ସ୍ୱାଭାବିକ । ଅତଏବ କେଶରୀବଂଶରେ ଏତେଗୁଡ଼ିଏ ଅବତାର ନାମ ଯେ, ଅନେକ ପୁରୁଷ ଯାଏ ନିର୍ଦ୍ଦିଷ୍ଟ କ୍ରମରେ ବ୍ୟବହୃତ ହୋଇଅଛି । ସେଥିରୁ ଦେଶୀୟ ଲେଖକର କପୋଲ କଳ୍ପନା ଛଡ଼ା ଆଉ କିଛି ଅନୁମିତ ହୁଏ ନାହିଁ । ଏହା ଅବଶ୍ୟ ସନ୍ଦେହର କାରଣ । କିନ୍ତୁ ଦେଶୀୟ ପ୍ରଥାନଭିଜ୍ଞ ବ୍ୟକ୍ତିମାନେ ଏପରି ସନ୍ଦେହ କରିପାରନ୍ତି । ଓଡ଼ିଶାରେ ରାଜସଭାରେ ପଣ୍ଡିତମାନେ ରାଜବଂଶ ପାଇଁ ନାମ ସ୍ଥିର କରନ୍ତି । ଏହି ପ୍ରଥା ଅଦ୍ୟାବଧି ରାଜବଂଶରେ ପରିଦୃଷ୍ଟ ହୁଏ । ପଣ୍ଡିତମାନେ ନବାଗତ କୁମାରଙ୍କର ନାମକରଣ କଲାବେଳେ ପୂର୍ବ-ପୁରୁଷମାନଙ୍କ ନାମ ପ୍ରତି ଲକ୍ଷ୍ୟ ରଖିଥାନ୍ତି । ପୂର୍ବ ନାମ ସବୁର ଯଦି କୌଣସି ନିର୍ଦ୍ଦିଷ୍ଟ କ୍ରମ ଜଣାପଡ଼େ, ତାହାହେଲେ ପଣ୍ଡିତମାନେ ସେହି କ୍ରମକୁ ସହଜରେ ଛାଡ଼ିପାରନ୍ତି ନାହିଁ । ଅତଏବ ଅବତାର ନାମ ହେଉ ବା ଅନ୍ୟକୌଣସି ସ୍ୱାମୀ ନାମ ହେଉ, ଗୋଟିଏ ଦିଓଟି ଥରେ ଅନୁସୃତ ହେଲେ ସେଥିରୁ ଅନ୍ତତଃ କେତେଗୁଡ଼ିଏ ବ୍ୟବହୃତ ନହେବାଯାଏ ନୂତନ ନାମଧାରୀ ପ୍ରଚଳିତ କ୍ରମକୁ ଛାଡ଼ିପାରନ୍ତି ନାହିଁ । ଓଡ଼ିଶାର ଏହି ପ୍ରଥା ବୋଧହୁଏ କେଶରୀବଂଶରେ ଏକାଧିକ ଅବତାର ନାମର ହେତୁ ।

କେଶରୀ ବଂଶର ଅବତାର ନାମ ଦେଶୀୟ ଲେଖକର କଳ୍ପନା ପ୍ରସୂତ ନୁହେଁ । ସେପରି ହୋଇଥିଲେ, ଲେଖକ ଆଶିବୁଝି ଅବତାରର ଠିକ୍ କ୍ରମ ଅନୁସାରେ ସବୁ ନାମଗୁଡ଼ିକ ଲେଖିଯାଇଥାନ୍ତେ—ଗୋଟିଏ ସୁଦ୍ଧା ଛାଡ଼ି ନଥାନ୍ତେ କିମ୍ବା ଅବତାର କ୍ରମରୁ ଆଦୌ ବ୍ୟତିକ୍ରମ ଘଟିନଥାନ୍ତା । କିନ୍ତୁ ଦେଶୀୟ ଇତିହାସରେ ତଦ୍ରୂପ ଦେଖାଯାଏ ନାହିଁ । ଶାସ୍ତ୍ରରୁ ଜଣାଯାଏ ଯେ, ନିମ୍ନୋକ୍ତ କ୍ରମରେ ବିଷ୍ଣୁଙ୍କର ଅବତାର ହୋଇଥିଲା । (୧) ମତ୍ସ୍ୟ, (୨) କଚ୍ଛପ, (୩) ବରାହ, (୪) ନୃସିଂହ, (୫) ବାମନ, (୬) ପରଶୁରାମ, (୭) ରାମ, (୮) ହଳଧର (ବଳରାମ), (୯) ବୌଦ୍ଧ ଓ (୧୦) କଳ୍କି ।

ମାତ୍ର ଦେଶୀୟ ଇତିହାସରେ ସବୁଗୁଡ଼ିକ ଅବତାର ନାମ ନାହିଁ, ଅଧି ମଧ୍ୟ ତହିଁରେ ଅବତାରକ୍ରମର ନିମ୍ନୋକ୍ତ ବ୍ୟତିକ୍ରମ ଦେଖାଯାଏ । (୧ ନୃସିଂହ କେଶରୀ, (୨) କୂର୍ମ କେଶରୀ, (୩) ମତ୍ସ୍ୟ କେଶରୀ, (୪) ବରାହ କେଶରୀ, (୫ ବାମନ କେଶରୀ, (୬) ପରଶୁ କେଶରୀ ।

ପୂର୍ବେ କୁହାଯାଇଅଛି ଯେ ସଭାସ୍ଥ ପଣ୍ଡିତମାନେ ଓଡ଼ିଶାରେ ରାଜବଂଶ ପାଇଁ ନାମ ସ୍ଥିର କରନ୍ତି । ଏହି ପ୍ରଥାର ମୂଳରେ ରାଜ୍ୟଶାସନର ଏକ ମହାମନ୍ତ୍ର ନିହିତ ଅଛି । ରାଜା ପିତାମାତାଙ୍କର ଅଧୀନ ନୁହନ୍ତି, ଏପରିକି

Digitized by srujanika@gmail.com

ମନୋଜ୍ଞ ନାମଟିଏ ଦେବାକୁ ପିତାମାତାଙ୍କର ଅଧିକାର ନାହିଁ । ସେ ପିତା-ମାତାଙ୍କର ସନ୍ତାନ ନୁହନ୍ତି । ସେ ପ୍ରଜାମାନଙ୍କର ଭବିଷ୍ୟତ ରାଜା । ସେ ପ୍ରଜାମାନଙ୍କ ପାଇଁ ଜନ୍ମ ଗ୍ରହଣ କରିଥାନ୍ତି ଓ ତାଙ୍କରି ପାଇଁ ରାଜତ୍ୱ କରନ୍ତି । ସୁତରାଂ ତାଙ୍କ ଦେହ ଓ କାର୍ଯ୍ୟରେ ପ୍ରଜାମାନଙ୍କ ଅଧିକାର । ଅତଏବ କେଉଁ ନାମରେ ସେ ଦେହଧାରଣ କରି କାର୍ଯ୍ୟ କରିବେ, ତାହା ପ୍ରଜାମାନେ ସ୍ଥିର କରନ୍ତି । କିନ୍ତୁ ସମସ୍ତ ପ୍ରଜାଙ୍କୁ ଏକତ୍ର ନକରି ସେମାନଙ୍କ ମଧ୍ୟରେ ଯେଉଁମାନେ ମାନ୍ୟଗଣ୍ୟ, ସେହିମାନଙ୍କ ଉପରେ ଏହି ଭାର ଅର୍ପିତ ହୋଇଥାଏ ।

ଲଲାଟେନ୍ଦୁଙ୍କର ଅନ୍ୟ ଏକ ନାମ 'ଅଲାବୁ କେଶରୀ' । ଫ୍ଲିଟ୍ କହନ୍ତି 'ଅଲାବୁ' କୌଣସି ମୁସଲମାନ ନାମର ଅନୁକରଣ । ତେବେ ଦେଶୀୟ ଇତିହାସ ପ୍ରଦତ୍ତ କେଶରୀବଂଶର ଶାସନକାଳ ଯଦି ସତ୍ୟ ହୁଏ, ତାହାହେଲେ ଏହି ମୁସଲମାନ ନାମ ଆସିଲା କେଉଁଠାରୁ ? କିନ୍ତୁ ଅଲାବୁ ମୁସଲମାନି ନାମର ଅନୁକରଣ କାହିଁକି ? ଏ ଗୋଟିଏ ସଂସ୍କୃତ ଶବ୍ଦ । ଏହାର ଓଡ଼ିଆ ଅର୍ଥ 'ଲାଉ' । ଲାଉ ଓଡ଼ିଶାରେ ସୁପରିଚିତ । ଏପରିକି ପିଲାଏ ଜଣକ ପିଠିରେ ଆଉ ଜଣକୁ ବସାଇ 'ଲାଉନବ', 'ଲାଉନବ' ଖେଳନ୍ତି । ମଧ୍ୟ ଓଡ଼ିଶାରେ ଲାଉ କରିବାର ଅର୍ଥ ପିଠିରେ ବସାଇବା । ଅଦ୍ୟାବଧି ଭୁବନେଶ୍ୱର ଅଞ୍ଚଳରେ କେହି କେହି କହନ୍ତି, ଲଲାଟେନ୍ଦୁ ପ୍ରତ୍ୟହ ଲିଙ୍ଗରାଜଙ୍କ ଦର୍ଶନ ପାଇଁ ମନୁଷ୍ୟ ପୃଷ୍ଠରେ ଖଣ୍ଡଗିରିଠାରୁ ଆସୁଥିଲେ । ଏହି କିମ୍ବଦନ୍ତୀର କୌଣସି କାରଣ ଅବଶ୍ୟ ଅଛି । ବୋଧହୁଏ ମନୁଷ୍ୟ ପୃଷ୍ଠରେ ଆସୁଥିବା ହେତୁ ଲୋକେ ତାଙ୍କୁ ଲାଉ ବା ସଂସ୍କୃତ 'ଅଲାବୁ' ନାମ ଦେଇଥିଲେ ।

ଜେ. ଏଫ୍. ଫ୍ଲିଟ୍, ଜନମେଜୟ ଓ ଯଯାତିଙ୍କୁ ସ୍ୱାଧୀନ ରାଜା ବୋଲି ସ୍ୱୀକାର କଲେ ମଧ୍ୟ କେଶରୀବଂଶର ସ୍ଥାପନ କାଳ ସମ୍ବନ୍ଧରେ ସମ୍ପୂର୍ଣ୍ଣ ଭ୍ରାନ୍ତ ଧାରଣା ପୋଷଣ କରିଅଛନ୍ତି । ପକ୍ଷାନ୍ତରେ, ରାଜେନ୍ଦ୍ରଲାଲ, ରଙ୍ଗଲାଲ ଓ ସ୍ୱର୍ଗୀୟ ପ୍ୟାରୀମୋହନ ଦେଶୀୟ ଇତିହାସ କଥିତ ସ୍ଥାପନ କାଳକୁ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଜନମେଜୟ ଓ ଯଯାତିଙ୍କୁ ପରବର୍ତ୍ତୀ ଗୁପ୍ତବଂଶର ମନେ କରିଅଛନ୍ତି । ଉଲ୍ଲିଖିତ ଉଭୟବିଧ ମତର ସାରବତ୍ତା ଆଲୋଚିତ ହୋଇଅଛି । ବର୍ତ୍ତମାନ ଦେଶୀୟ ଇତିହାସର ଅନ୍ୟଜଣେ ସମାଲୋଚକଙ୍କ ମତ ଦ୍ରଷ୍ଟବ୍ୟ ।

ମନମୋହନ ଗାଙ୍ଗୁଲି ଦେଶୀୟ ଇତିହାସ ପ୍ରଦତ୍ତ ବଂଶାବଳୀକୁ ବିଶ୍ୱାସ ନ କରି ଡାକ୍ତର ଫ୍ଲିଟ୍‌ଙ୍କ ସଙ୍ଗେ ଅନେକାଂଶରେ ଏକମତ ହୋଇଅଛନ୍ତି । ସେ କହନ୍ତି, ମାଦଳାପାଞ୍ଜୀରେ ଲିଖିତ ଅଛି ଯେ, ବିକ୍ରମାଦିତ୍ୟଙ୍କ ପରେ ଛଅଜଣ

Digitized by srujanika@gmail.com

ରାଜା ଓଡ଼ିଶାରେ ରାଜତ୍ୱ କରିଥିଲେ । ହର୍ଷ ବିକ୍ରମାଦିତ୍ୟ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର ପ୍ରାୟ ମଧ୍ୟଭାଗରେ ରାଜତ୍ୱ କରିଥିବା ସୁବିଦିତ । ଅତଏବ ତାହାଙ୍କର ପରବର୍ତ୍ତୀ ପ୍ରତ୍ୟେକ ରାଜା ଯଦି ହାରାହାରି ଚଉଦବର୍ଷ ଲେଖାଏଁ ରାଜତ୍ୱ କରିଥାନ୍ତି, ତାହାହେଲେ ସେମାନଙ୍କର ଶାସନ ପ୍ରାୟ ନବମ ଶତାବ୍ଦୀର ପ୍ରଥମ ଭାଗରେ ସମାପ୍ତ ହୋଇଥିବ । ତତ୍ପରେ ଯବନମାନେ ୧୪୬ବର୍ଷ କାଳ ଓଡ଼ିଶା ଅଧିକାର କରିଥିବା ବିଷୟ ମାଦଳାପାଞ୍ଜିରେ ବର୍ଣ୍ଣିତ ଅଛି । ସୁତରାଂ ଯଯାତିଙ୍କର ଓଡ଼ିଶା ବିଜୟ ପ୍ରାୟ ଖ୍ରୀଷ୍ଟୀୟ ନବମ ଶତାବ୍ଦୀର ଶେଷ ଭାଗରେ ଘଟିଥିବ । ଗାଙ୍ଗୁଲି ମହାଶୟ କିନ୍ତୁ ଏତେଦୂର ଯିବାକୁ ଇଚ୍ଛା ନକରି ଯଯାତିଙ୍କୁ ଅଷ୍ଟମ ଶତାବ୍ଦୀର ମଧ୍ୟ ଓ ନବମ ଶତାବ୍ଦୀର ପ୍ରାରମ୍ଭ ମଧ୍ୟରେ ସ୍ଥାନ ଦେଇଛନ୍ତି ।

ଗାଙ୍ଗୁଲି ମହାଶୟଙ୍କର ଅନୁମାନ ସମ୍ପୂର୍ଣ୍ଣ ଅମୂଳକ । ସେ ଯେଉଁ ବିକ୍ରମାଦିତ୍ୟଙ୍କ ନାମ ଉଲ୍ଲେଖ କରିଅଛନ୍ତି, ସେହି ବିକ୍ରମାଦିତ୍ୟ ଖ୍ରୀଷ୍ଟୀୟ ଷଷ୍ଠ ସପ୍ତମ ଶତାବ୍ଦୀର ବିକ୍ରମାଦିତ୍ୟ ନୁହନ୍ତି । ସେହି ବିକ୍ରମାଦିତ୍ୟ ଭାରତ ଇତିହାସର ଅନ୍ୟ ଜଣେ ବିକ୍ରମାଦିତ୍ୟ ଅଟନ୍ତି । କେହି କେହି କହନ୍ତି ସେହି ବିକ୍ରମାଦିତ୍ୟଙ୍କର ଭାଇ ଶକାଦିତ୍ୟ, କେହି ଅବା କହନ୍ତି ଶକାଦିତ୍ୟ ବିକ୍ରମାଦିତ୍ୟଙ୍କର ନାମାନ୍ତର । ଅଧୁନା ଯେଉଁ ଶକାବ୍ଦ ପ୍ରଚଳିତ ଅଛି, ତାହା ସେହି ବିକ୍ରମାଦିତ୍ୟ ବା ଶକାଦିତ୍ୟଙ୍କର ଜୀବନର କୌଣସି ବିଶିଷ୍ଟ ବର୍ଷରେ ଆରବ୍ଧ । ସେହି ବିକ୍ରମାଦିତ୍ୟ ବା ଶକାଦିତ୍ୟ ଭାରତର ଜଣେ ମଣ୍ଡଳେଶ୍ୱର ରାଜା ଥିଲାପରି ପ୍ରତୀୟମାନ ହୁଏ । ତାଙ୍କର ରାଜତ୍ୱ ୭୮ ଖ୍ରୀଷ୍ଟାବ୍ଦର ସମସାମୟିକ—ଯେହେତୁ ୭୮ ଖ୍ରୀଷ୍ଟାବ୍ଦ ଶକାବ୍ଦର ଆରମ୍ଭ ବର୍ଷ ଅଟେ । ଦେଶୀୟ ଇତିହାସ ଲେଖକ ଯଥାର୍ଥରେ ସେହି ବିକ୍ରମାଦିତ୍ୟ ବା ଶକାଦିତ୍ୟଙ୍କୁ ଉତ୍କଳ ରାଜବଂଶ ମଧ୍ୟରେ ସ୍ଥାନ ଦେଇ ଖ୍ରୀଷ୍ଟାବ୍ଦକୁ ତାଙ୍କର ସମସାମୟିକ କରିଅଛନ୍ତି । ସେ ସେହି ସମୟରୁ ଅର୍ଥାତ୍ ୭୮ ଖ୍ରୀଷ୍ଟାବ୍ଦଠାରୁ ବୌଦ୍ଧ ଉତ୍କଳର ଶେଷ ରାଜବଂଶକୁ ସ୍ଥାନ ଦେଇଅଛନ୍ତି । ଏହିଠାରେ ଦେଶୀୟ ଇତିହାସରେ ସାମାନ୍ୟ ମତଦ୍ୱୈଧ ଦେଖାଯାଏ । କେହି ନିମ୍ନପ୍ରକାର ଶାସନକ୍ରମ ଦିଅନ୍ତି ।

କାମାର୍ଣ୍ଣବ ଦେବ ଖ୍ରୀ: ଅ: ୭୮—୧୪୩—୬୫ ବର୍ଷ

ହାଟକେଶ୍ୱର ଦେବ ଖ୍ରୀ: ଅ: ୧୪୩—୧୯୪—୫୧ ବର୍ଷ

ବୀରଭୂବନ ଦେବ ବା ତ୍ରିଭୁବନ ଦେବ ଖ୍ରୀ ଅ:

୧୯୪—୨୩୭—୪୩ ବର୍ଷ

ନିର୍ମ୍ମଳ ଦେବ ଖ୍ରୀ. ଅ. ୨୩୭—୨୮୨—୪୫ ବର୍ଷ

ଭୀମ ଦେବ ଖ୍ରୀ. ଅ. ୨୮୨—୩୧୯—୩୭ ବର୍ଷ

Digitized by srujanika@gmail.com

ଶୋଭନ ଦେବ ଖ୍ରୀ. ଅ. ୩୦୯—୩୧୩—୪ ବର୍ଷ
ଚନ୍ଦ୍ର ଦେବ ଖ୍ରୀ. ଅ. ୩୧୩—୩୧୮—୫ ବର୍ଷ
——————
୧୫୦ ବର୍ଷ

କୌଣସି କୌଣସି ଲେଖକ ଉପରୋକ୍ତ କାମାର୍ଣ୍ଣବ ଓ ଚନ୍ଦ୍ରଦେବଙ୍କ ନାମ ଉଲ୍ଲେଖ କରନ୍ତି ନାହିଁ । ମାତ୍ର ସମସ୍ତେ ୩୧୮ ଖ୍ରୀଷ୍ଟାବ୍ଦରେ ଉପରୋକ୍ତ ବଂଶ ବିଲୁପ୍ତ ହୋଇଥିଲା ବୋଲି କହନ୍ତି । ତିବ୍ବତ ଦେଶର ପ୍ରାଚୀନ ଗ୍ରନ୍ଥରୁ ଜଣାଯାଏ ଯେ, ଖ୍ରୀଷ୍ଟାବ୍ଦ ୭୮ ଓ ୧୪୫ ମଧ୍ୟରେ ଚନ୍ଦ୍ରପାଳିତ ନାମରେ ଉତ୍କଳରେ ଜଣେ ବୌଦ୍ଧରାଜା ଥିଲେ । ଉପରୋକ୍ତ ବ୍ରାହ୍ମଣ ଧର୍ମାବଲମ୍ବୀ ରାଜବଂଶର ପ୍ରଥମ ରାଜା କାମାର୍ଣ୍ଣବ ଚନ୍ଦ୍ରପାଳିତଙ୍କର ଅବଶ୍ୟ ସମସାମୟିକ । ଚନ୍ଦ୍ରପାଳିତ ବୋଧହୁଏ ବୌଦ୍ଧ ଉତ୍କଳର ଭୂଞା ରାଜବଂଶର ଶେଷ ରାଜା । କାମାର୍ଣ୍ଣବ ଚନ୍ଦ୍ରପାଳିତଙ୍କର ଅଧୀନସ୍ଥ ଅବା ସମସାମୟିକ ଖଣ୍ଡାଂଶ ରାଜା ଥିବା ହେତୁ ଶେଷୋକ୍ତ ଲେଖକ ତାହାଙ୍କୁ ହେୟଜ୍ଞାନ କରି ପରିତ୍ୟାଗ କରିଥିବେ । ଚନ୍ଦ୍ରଦେବ ପରବର୍ତ୍ତୀ ଯବନମାନଙ୍କ ଦ୍ୱାରା ବାରମ୍ବାର ବଳିତ ହୋଇଥିବା ହେତୁ ଶେଷୋକ୍ତ ଲେଖକ, ତାହାଙ୍କର ଉଲ୍ଲେଖ କରିନଥିବେ । କିନ୍ତୁ କେହି ଶାସନକାଳ ପରିମାଣକୁ ଗୋପନ କରିପାରି ନାହାନ୍ତି । ଶେଷୋକ୍ତ ଲେଖକ ଚନ୍ଦ୍ରଦେବଙ୍କର ୫ବର୍ଷକୁ ଶୋଭନଙ୍କ ରାଜତ୍ୱକାଳ ସଙ୍ଗେ ଯୋଗ କରି ତାହାଙ୍କୁ ୯ବର୍ଷର ରାଜତ୍ୱ ଦେଇ-ଅଛନ୍ତି ଓ କାମାର୍ଣ୍ଣବଙ୍କ ଶାସନକାଳରେ ପୂରଣ ଅନ୍ୟ ପ୍ରକାରେ କରିଅଛନ୍ତି । କୌଣସି ନାମ ପରିତ୍ୟକ୍ତ ହୋଇଥିଲେହେଁ ରାଜତ୍ୱକାଳ ସମ୍ବନ୍ଧରେ ଉପରୋକ୍ତ ଉଭୟ ଶ୍ରେଣୀର ଲେଖକଙ୍କ ମଧ୍ୟରେ ଯେଉଁ ଐକ୍ୟ ଦେଖାଯାଏ, ତଦ୍ୱାରା ଦେଶୀୟ ଇତିହାସର ସତ୍ୟତା ପ୍ରତିପାଦିତ ହୁଏ ।

ଶକାବ୍ଦର ପ୍ରଥମ ବର୍ଷ ଅର୍ଥାତ ୭୮ + ଉପରୋକ୍ତ ରାଜବଂଶର ରାଜତ୍ୱକାଳ ୨୫୦ ବର୍ଷ + ଯବନମାନଙ୍କର ରାଜତ୍ୱକାଳ ୧୪୬ ବର୍ଷ = ୪୭୪ ଖ୍ରୀଷ୍ଟାବ୍ଦ ଯଯାତି-କେଶରୀଙ୍କ ରାଜତ୍ୱର ପ୍ରଥମ ବର୍ଷ ।

ତାହାହେଲେ କଳ୍ପିତବର୍ଷ ୭୮ ଖ୍ରୀଷ୍ଟାବ୍ଦ ସଙ୍ଗେ ଦେଶୀୟ ଇତିହାସକୁ ମିଳାଇ ଦେଖିଲେ ଯଯାତିଙ୍କର ପ୍ରଥମ ବର୍ଷ ୪୭୪ ଖ୍ରୀଷ୍ଟାବ୍ଦ ଦେଶୀୟ ଇତିହାସ ସହିତ ମିଳି ଯାଉଅଛି । ଏପରି ସ୍ଥଳେ ରାଙ୍ଗୁଲିଙ୍କ ଅନୁମାନ ସମ୍ପୂର୍ଣ୍ଣ ଦୁର୍ବୋଧ ବୋଧହୁଏ । ସମ୍ଭବ, ସେ ଦେଶୀୟ ଇତିହାସ କଥିତ ବିକ୍ରମାଦିତ୍ୟଙ୍କୁ ଚିହ୍ନି ନପାରି ତାହାଙ୍କୁ ସପ୍ତମ ଶତାବ୍ଦୀରେ ସ୍ଥାନ ଦେଇ ଭ୍ରମରେ ପଡ଼ିଅଛନ୍ତି ।

Digitized by srujanika@gmail.com

ଦେଶୀୟ ଇତିହାସ ଲିଖିତ 'ଯବନ' ଶବ୍ଦ କେତେକ ଲେଖକଙ୍କର ଭ୍ରମ ଜନ୍ମାଇଅଛି । ମାତ୍ର ଆଲୋଚିତ ବିଷୟ ସମ୍ପର୍କରେ ମୁସଲମାନ ଅର୍ଥରେ 'ଯବନ' ଶବ୍ଦ ପ୍ରଯୁକ୍ତ ହୋଇନାହିଁ । ପରବର୍ତ୍ତୀ ଅଧ୍ୟାୟରେ ଏ ବିଷୟର ସମୁଚିତ ଆଲୋଚନା ହେବ ।

କେଶରୀବଂଶର ପ୍ରାଥମିକ ରାଜାମାନେ ପରବର୍ତ୍ତୀ ଗୁପ୍ତମାନଙ୍କର (Later Guptas) ଅଧୀନସ୍ଥ ନୁହନ୍ତି । କେବଳ ଏହି ବଂଶର ଶେଷ ରାଜାମାନେ କୌଣସି କୌଣସି ପ୍ରବଳ ପ୍ରତିବାସୀଙ୍କର ବଶବର୍ତ୍ତୀ ହୋଇଥିବା ସମ୍ଭବ । କିନ୍ତୁ କେଶରୀମାନେ 'ମହାରାଜାଧିରାଜ ଗୁପ୍ତ' ବଂଶର ଅଧୀନସ୍ଥ କି ?

ଦେଶୀୟ ଇତିହାସ ମତରେ ୩୧୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ଯବନ ରାଜତ୍ୱ ଆରମ୍ଭ ହୋଇଥିଲା । ପ୍ରଥମ ଚନ୍ଦ୍ରଗୁପ୍ତ ୩୨୦ ଖ୍ରୀଷ୍ଟାବ୍ଦରେ ଗୁପ୍ତସାମ୍ରାଜ୍ୟ ସ୍ଥାପନ କରି ୩୩୦ ଖ୍ରୀଷ୍ଟାବ୍ଦ ଯାଏ ଶାସନ କରିଥିଲେ । ସେ 'ମହାରାଜାଧିରାଜ' ଗୁପ୍ତବଂଶଙ୍କର ପ୍ରଥମ ରାଜା ଓ ତାହାଙ୍କର ପ୍ରଥମ ବର୍ଷ ଅର୍ଥାତ୍ ୩୨୦ ଖ୍ରୀଷ୍ଟାବ୍ଦ ଗୁପ୍ତ ସମ୍ବତ୍ସରର ପ୍ରଥମ ବର୍ଷ । କିନ୍ତୁ ତାଙ୍କ ଦ୍ୱାରା ଓଡ଼ିଶା ଆକ୍ରମଣର କୌଣସି ପ୍ରମାଣ ନାହିଁ । ତତ୍ପରେ ମହାରାଜାଧିରାଜ ସମୁଦ୍ରଗୁପ୍ତ ୩୩୦ ଖ୍ରୀ. ଅ. ଠାରୁ ୩୭୫ ଖ୍ରୀ:ଅ: ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏହି ରାଜା ବହୁଦେଶ ଜୟ କରିଥିଲେ । ସେଥିପାଇଁ ଏହାଙ୍କୁ ଭାରତବର୍ଷର ନେପୋଲିଅନ୍ (Indian Nepolion) କୁହାଯାଏ । ସମୁଦ୍ର ଗୁପ୍ତ ଦକ୍ଷିଣ ପ୍ରଦେଶ ଜୟ କରିବାକୁ ଯାଇ ମହାନଦୀର ଉପତ୍ୟକାରେ ଦକ୍ଷିଣ କୋଶଳର ରାଜା ମହେନ୍ଦ୍ରଙ୍କୁ ପରାସ୍ତ କରିଥିଲେ । 'ଦକ୍ଷିଣ କୋଶଳ' ନାମ ସେ ସମୟରେ ଆଧୁନିକ ଛତିଶଗଡ଼ ମଧ୍ୟରେ ସୀମାବଦ୍ଧ ଥିଲା । ବର୍ତ୍ତମାନ ଓଡ଼ିଶାରେ ଯେଉଁ ବିଭାଗ କରଦରାଜ୍ୟ ସ୍ୱରୂପ ପରିଗଣିତ, ସେ ସ୍ଥାନର ବ୍ୟାଘ୍ରରାଜ ପ୍ରମୁଖ ଅନେକ ରାଜ ତାହାଙ୍କର ଅଧୀନତା ସ୍ୱୀକାର କରିଥିଲେ । ତଦନନ୍ତର ସମୁଦ୍ରଗୁପ୍ତ ପୂର୍ବ ଉପକୂଳ ଦେଇ ଯାଇ କଳିଙ୍ଗର ପ୍ରାଚୀନ ରାଜଧାନୀ ପିଷ୍ଟପୁରର ଶାସନକର୍ତ୍ତାଙ୍କୁ ପରାସ୍ତ କରିଥିଲେ । ଗଞ୍ଜାମର ମହେନ୍ଦ୍ରଗିରି ଓ କଟୁର ପ୍ରଭୃତି ପାର୍ବତ୍ୟ ଦୁର୍ଗମାନ ତାଙ୍କର ହସ୍ତଗତ ହୋଇଥିଲା । ସମୁଦ୍ରଗୁପ୍ତଙ୍କର କଳିଙ୍ଗ ବିଜୟ ସମ୍ବନ୍ଧରେ ଏତିକମାନ ତଦାନୀନ୍ତନ ଏଲହାବାଦ ଅନୁଶାସନରୁ ଜଣାଯାଏ । ସ୍ମିଥ୍ କହନ୍ତି, ସମୁଦ୍ରଗୁପ୍ତଙ୍କ ବିଦେଶ ବିଜୟ କାର୍ଯ୍ୟ ପ୍ରାୟ ୩୪୦ ଖ୍ରୀଷ୍ଟାବ୍ଦର ପୂର୍ବରୁ ସମାପ୍ତ ହୋଇଥିଲା । ତାହାହେଲେ ତାହାଙ୍କର ବିଦେଶ ବିଜୟ କୌଣସି ଉତ୍କଳରେ କେଶରୀ ରାଜବଂଶର ସମସାମୟିକ କିମ୍ବା 'ଯବନ' ରାଜତ୍ୱର ପ୍ରାଥମିକ ଅବସ୍ଥାର ସମକାଳୀନ । ସମୁଦ୍ରଗୁପ୍ତ କିନ୍ତୁ ବିଜିତ ରାଜ୍ୟମାନଙ୍କୁ ସ୍ୱସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିନଥିଲେ । ସେ ବିଜିତ ରାଜାମାନଙ୍କ

Digitized by srujanika@gmail.com

ଠାରୁ ଧନସମ୍ପତ୍ତି ଗ୍ରହଣ କରି ପ୍ରତ୍ୟାବର୍ତ୍ତନ କରିଥିଲେ । ସୁତରାଂ କଳିଙ୍ଗର କୌଣସି କୌଣସି ଅଂଶ ଜୟ କରିଥିଲେ ମଧ୍ୟ ସେ ସେଠାରେ କେବେ ଅଧିରାଜ ହୋଇନଥିଲେ ।

ସମୁଦ୍ରଗୁପ୍ତଙ୍କ ପରେ ଦ୍ୱିତୀୟ ଚନ୍ଦ୍ରଗୁପ୍ତ ୩୭୫ ଖ୍ରୀଷ୍ଟାବ୍ଦଠାରୁ ୪୧୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏହାଙ୍କ ସମୟରେ ଚୀନ ପରିବ୍ରାଜକ ଫାହିୟାନ୍ ଭାରତରେ ଭ୍ରମଣ କରିଥିଲେ । କଳିଙ୍ଗର ମାର୍ଗ ଦସ୍ୟୁମାନଙ୍କ ହେତୁ ବଡ଼ ବିପଦସଙ୍କୁଳ ଥିବାରୁ ଫାହିୟାନ୍ କଳିଙ୍ଗ ମଧ୍ୟରେ ପ୍ରବେଶ କରିନଥିଲେ । ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କର କଳିଙ୍ଗରେ ଅଧିକାର ଥିଲେ ଫାହିୟାନ୍ ଅବାଧ ଭାବରେ ଗୁପ୍ତସାମ୍ରାଜ୍ୟ ମଧ୍ୟରେ ଭ୍ରମଣ କରି ପାରିଥାନ୍ତେ । ଆଉ ମଧ୍ୟ ତଦ୍ରୂପ ହୋଇଥିଲେ, କଳିଙ୍ଗ ଦକ୍ଷିଣାଞ୍ଚଳର ଅନ୍ୟାନ୍ୟ ସ୍ଥାନ ପରି ବିପଦସଙ୍କୁଳ ହୋଇ ନଥାନ୍ତା ।

ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କ ପରେ ପ୍ରଥମ କୁମାର ଗୁପ୍ତ ୪୧୩ ଖ୍ରୀଷ୍ଟାବ୍ଦ ଠାରୁ ୪୫୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଶାସନ କରିଥିଲେ । ରାଜତ୍ୱର ପ୍ରଥମାବସ୍ଥାରେ ସେ କୌଣସି କୌଣସି ବିଦେଶ ଜୟ କରି ଅଶ୍ୱମେଧ ଯଜ୍ଞ କରିଥିଲେ । କିନ୍ତୁ ସେ କେଉଁ ଦେଶ ଜୟ କରିଥିଲେ ଓ ବିଜିତ ଦେଶକୁ ସ୍ୱୀୟ ସମ୍ରାଜ୍ୟର ଅନ୍ତର୍ଭୁକ୍ତ କରିଥିଲେ କି ନା ଏହାର କୌଣସି ପ୍ରମାଣ ନାହିଁ । ଆଉ ମଧ୍ୟ କୁମାର ଗୁପ୍ତଙ୍କ ଦ୍ୱାରା ଏକ କଳିଙ୍ଗ ବିଜୟ କଳ୍ପନା କରି ତାହାକୁ ଓଡ଼ିଶାରେ ଯବନ ବିଜୟ ବୋଲି ଗ୍ରହଣ କରିବା ଅସମ୍ଭବ । ସେ ବିଷୟ ପରବର୍ତ୍ତୀ ଆଲୋଚନାରୁ ଜଣାଯିବ । ପୁଣି, ବିଦେଶରେ ରାଜତ୍ୱ କରିବା ଦୂରେ ଥାଉ, ୪୫୦ ଖ୍ରୀଷ୍ଟାବ୍ଦରେ ହୂନ୍‌ମାନେ ଗୁପ୍ତ ସାମ୍ରାଜ୍ୟ ଆକ୍ରମଣ କରିଥିଲେ । ଫଳତଃ ଏହି ସମୟରୁ ଗୁପ୍ତ କ୍ଷମତା କ୍ରମଶଃ ହ୍ରାସ ହେବାକୁ ଲାଗିଲା । ଖ୍ରୀଷ୍ଟାବ୍ଦ ୪୫୦ ପୂର୍ବରୁ କୁମାରଙ୍କର ବିଦେଶ ବିଜୟ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଥିଲା । ଯଯାତି କେଶରୀ ୪୭୦ ଖ୍ରୀଷ୍ଟାବ୍ଦରେ ରାଜା ହୋଇଥିଲେ । ଯଯାତିଙ୍କର ପୂର୍ବବର୍ତ୍ତୀ ଜନମେଜୟ ରାଜତ୍ୱର ଏକତ୍ରିଂଶ ବର୍ଷରେ କେତେଗୁଡ଼ିଏ ତାମ୍ରଶାସନ ପ୍ରଦାନ କରିଥିଲେ । ଜନମେଜୟଙ୍କ ଯଦି ଏକତ୍ରିଂଶ ବର୍ଷର ରାଜତ୍ୱକାଳ ଦିଆଯାଏ, ତାହାହେଲେ ସେ ୪୭୪—୩ = ୪୭୧ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କରିଥିବେ । ଏହି ୪୭୧ ଖ୍ରୀଷ୍ଟାବ୍ଦର ସେ ରାଜା ହୋଇଥାଇପାରନ୍ତି, କଦାପି ପରେ ନୁହେଁ । ସୁତରାଂ କେହି କହି ପାରନ୍ତି, କୁମାରଗୁପ୍ତ କଳିଙ୍ଗର କୌଣସି କୌଣସି ସୀମାନ୍ତ ପ୍ରଦେଶରେ ଯବନ-ମାନଙ୍କୁ ପରାସ୍ତ କରି ଜନମେଜୟଙ୍କୁ ସେ ସ୍ଥାନର ଶାସନକର୍ତ୍ତା ନିଯୁକ୍ତ କରି-ଥିଲେ । ଭାରତ ଇତିହାସରେ ଏଭଳି ଅନୁମାନର କୌଣସି କାରଣ ନଥିଲେ ହେଁ ତାହା ଯୁକ୍ତିସଙ୍ଗତ ବୋଧହୁଏ ।

Digitized by srujanika@gmail.com

କୁମାରଙ୍କ ପରେ ସ୍କନ୍ଦଗୁପ୍ତ ୪୫୫ ଖ୍ରୀଷ୍ଟାବ୍ଦ ଠାରୁ ୪୮୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଜନମେଜୟ ଏହାଙ୍କ ସମୟରେ ମଧ୍ୟ ରାଜତ୍ୱ କରିଥିଲେ । କାରଣ ସେ ୪୭୪ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏହି ସ୍କନ୍ଦଗୁପ୍ତଙ୍କ ରାଜତ୍ୱବେଳେ ହୁନ୍ ଆକ୍ରମଣ ବଳବତ୍ତର ହୋଇଥିଲା, ଏପରିକି ଗୁପ୍ତ ସାମ୍ରାଜ୍ୟର ପ୍ରଚଳିତ ମୁଦ୍ରାରେ ସୁନାରୁପାର ପରିମାଣ କମାଇଦେବାକୁ ବାଧ୍ୟ ହୋଇଥିଲେ । ସେ ତାହାଙ୍କର ସମସ୍ତ ଶକ୍ତି ବହିଃଶତ୍ରୁ ପ୍ରତି ପ୍ରୟୋଗ କରିଥିଲେ । ଏପରି ସ୍ଥଳରେ ଜନମେଜୟ ଆଜୀବନ ତାହାଙ୍କର ଅଧୀନତା ସ୍ୱୀକାର କରି ରହିବା ଅସମ୍ଭବ । ସେ ସ୍ୱୀୟ ରାଜତ୍ୱର ପ୍ରଥମାବସ୍ଥାରେ କୁମାରଙ୍କର ଅଧୀନସ୍ଥ ଥାଇ ପାରନ୍ତି; କିନ୍ତୁ ୪୬୦ ଖ୍ରୀଷ୍ଟାବ୍ଦରେ ହୁନ୍ ଆକ୍ରମଣ ହେତୁ ଗୁପ୍ତ-ମାନଙ୍କ କ୍ଷମତା ଦୁର୍ବଳ ହେବାପରେ ସେ ଗୁପ୍ତମାନଙ୍କର ଅଧୀନତା ସ୍ୱୀକାର କରି ସେହିମାନଙ୍କ ନାମରେ ଶାସନ ପ୍ରଚାର କରିବା ଅସ୍ୱାଭାବିକ ଅଟେ । ପୁଣି ସ୍ୱୀୟ ରାଜତ୍ୱର ତୃତୀୟ ବର୍ଷର ଶାସନରେ ଅର୍ଥାତ୍ ସିଂହାସନ ଆରୋହଣର ଅତି ଅଳ୍ପସମୟ ପରେ ସେ ନିଜକୁ ମହାରାଜାଧିରାଜ ବୋଲି କହିଅଛନ୍ତି । ସୁତରାଂ ରାଜ୍ୟାରମ୍ଭ ବେଳେ କୁମାରଙ୍କର ଅଧୀନସ୍ଥ ଥିଲେହେଁ ଅତ୍ୟଳ୍ପ କାଳ ପରେ ସେ ସ୍ୱାଧୀନତା ପ୍ରଚାର କରିଥିବା ସ୍ପଷ୍ଟ ଅନୁମିତ ହୁଏ ।

ଜନମେଜୟ କ୍ଷମତାର ସ୍ୱଳ୍ପତା ହେତୁ ଅଥବା କୃତଜ୍ଞତା ନିବନ୍ଧନ ଗୁପ୍ତମାନଙ୍କ ଠାରୁ ସ୍ୱାଧୀନତା ଘୋଷଣା କରିନଥାଇ ପାରନ୍ତି । କିନ୍ତୁ ପ୍ରବଳ ପରାକ୍ରମ ଯଯାତି ଯବନମାନଙ୍କର ଉଚ୍ଛେଦ ସାଧନ କରି ସମଗ୍ର ଓଡ଼ିଶାକୁ ଆୟତ୍ତାଧୀନ କଲାପରେ ମଧ୍ୟ ହୁନ୍ ଆକ୍ରମଣ ହେତୁ ଦୁର୍ବଳ ଗୁପ୍ତମାନଙ୍କର ଅଧୀନତା ସ୍ୱୀକାର କରି ରହିବା ଆହୁରି ଅସମ୍ଭବ । ସେ ୪୭୪ ଖ୍ରୀଷ୍ଟାବ୍ଦରେ କେଶରୀବଂଶ ସ୍ଥାପନ କଲାବେଳେ ଗୁପ୍ତବଂଶର ଦୁରବସ୍ଥା ସୀମା ସ୍ପର୍ଶ କରିଥିଲା । ଗୁପ୍ତ ସାମ୍ରାଜ୍ୟର ପରିସର କ୍ରମଶଃ ସଙ୍କୁଚିତ ହୋଇ ଆସୁଥିଲା । ଏପରି ସ୍ଥଳରେ ଯଯାତି ଗୁପ୍ତମାନଙ୍କର ଅଧୀନସ୍ଥ ବୋଲି ସ୍ୱୀକାର କରି ରହିବା ଅତ୍ୟନ୍ତ ଅସ୍ୱା-ଭାବିକ । ସାମ୍ରାଜ୍ୟ ଦୁର୍ବଳ ହେଲେ ଅଧସ୍ତନ ରାଜାମାନେ ଅଧୀନତା ସ୍ୱୀକାର କରି ରହିବା ପ୍ରାଚୀନ ଭାରତର ଇତିହାସରେ ଦେଖାଯାଏ ନାହିଁ । କୌଣସି ରାଜବଂଶ ବଳିଷ୍ଠ ହେଲେ ସେ ଅନ୍ୟାନ୍ୟମାନଙ୍କୁ ଆପଣା ଅଧୀନରେ ରଖି ପାରନ୍ତି; କିନ୍ତୁ ଅଧୀନସ୍ଥ ରାଜାମାନେ ସବୁବେଳେ ସ୍ୱାଧୀନ ହେବାକୁ ସୁବିଧା ଖୋଜୁଥାନ୍ତି । ଅଧିରାଜଙ୍କର ଦୁର୍ବଳତାର ସାମାନ୍ୟ ସୂଚନା ପାଇବା ମାତ୍ରକେ, ସେମାନେ ନିଜ ନିଜର ସ୍ୱାଧୀନତା ଘୋଷଣା କରନ୍ତି । ସୁତରାଂ ୪୬୦ ଖ୍ରୀଷ୍ଟାବ୍ଦ ପରେ ଜନମେଜୟ ଗୁପ୍ତମାନଙ୍କୁ ମହାରାଜାଧିରାଜ ବୋଲି ସ୍ୱୀକାର କରିବା ଅସ୍ୱାଭାବିକ । ୪୭୪ ଖ୍ରୀଷ୍ଟାବ୍ଦ ପରେ ଯଯାତି ମଧ୍ୟ ସେହିପରି କରିବା ଆହୁରି ଅସ୍ୱାଭାବିକ ।

Digitized by srujanika@gmail.com

ଜନମେଜୟ ଓ ଯଯାତି ଉଭୟଙ୍କର ଶାସନ ଏକପ୍ରକାର । ଉଭୟଙ୍କ ଶାସନରେ ମହାରାଜାଧିରାଜ ଉପାଧି ଅଛି । ଏହି ଉପାଧି ଉପରେ ନିର୍ଭର କରି ଯଦି ଜନମେଜୟଙ୍କୁ ସାମାନ୍ୟ ଶାସନକର୍ତ୍ତା କୁହାଯାଏ, ତାହାହେଲେ ଯଯାତିଙ୍କୁ ସେହି ସ୍ଥାନ ନ ଦେବାର କୌଣସି କାରଣ ନାହିଁ । କିନ୍ତୁ ଉଲ୍ଲିଖିତ କାରଣରେ ଯଯାତିଙ୍କୁ ସାମାନ୍ୟ ଶାସନକର୍ତ୍ତା କୁହାଯାଇନପାରେ । ପୁଣି, ଯଯାତିଙ୍କ ବଂଶଧର ଧର୍ମାର୍ଥିକ ଶାସନରେ 'ମହାରାଜାଧିରାଜ' ଉପାଧି ଅଛି । ଧର୍ମାର୍ଥ ୫୨୭ ଖ୍ରୀଷ୍ଟାବ୍ଦର ପରେ ରାଜତ୍ୱ କରିଥିଲେ । ତେତେବେଳକୁ ମହାରାଜାଧିରାଜ ଗୁପ୍ତବଂଶର କ୍ଷମତାଲୁପ୍ତ ପ୍ରାପ୍ତ ହୋଇଥିଲା । ତେବେ ତେତେବେଳେ ଧର୍ମାର୍ଥଙ୍କ ଶାସନରେ 'ମହାରାଜାଧିରାଜ' ଉପାଧି ଆସିଲା କାହୁଁ ? ଅତଏବ ଶାସନର ମହାରାଜାଧିରାଜ ଉପାଧି ଗୁପ୍ତମାନଙ୍କ ଅର୍ଥରେ ବ୍ୟବହୃତ ହୋଇନାହିଁ ; କିମ୍ବା ଯଯାତି ପ୍ରଭୃତି ମହାରାଜାଧିରାଜ ଗୁପ୍ତବଂଶୀୟ କୌଣସି ରାଜାଙ୍କର ଅଧୀନସ୍ଥ ନ ଥିଲେ ।

ଶାସନଲିଖିତ ମହାଭବଗୁପ୍ତ ଓ ମହାଶିବଗୁପ୍ତ ଉପାଧି ଦୁଇଟି ଗୁପ୍ତ-ରାଜାମାନଙ୍କ ଅର୍ଥରେ ବ୍ୟବହୃତ ହୋଇନାହିଁ । ଗୁପ୍ତବଂଶରେ ଏ ପ୍ରକାର ଉପାଧିର ବ୍ୟବହାର ଦେଖାଯାଏ ନାହିଁ ।

ପୂର୍ବେ କୁହାଯାଇ ଅଛି ଯେ, ୩୨୦ ଖ୍ରୀଷ୍ଟାବ୍ଦ ଗୁପ୍ତ ସମ୍ବତ୍ସରର ପ୍ରଥମବର୍ଷ ଅଟେ । ଗୁପ୍ତବଂଶର ସମସ୍ତ ଶାସନ ଓ ଅନୁଶାସନମାନ ଏହି ସମ୍ବତ୍ସରରେ ଚିହ୍ନିତ ହୋଇଛି । କିନ୍ତୁ ଆଲୋଚିତ ଶାସନରେ ଗୁପ୍ତ-ସମ୍ବତ୍ସରର ଉଲ୍ଲେଖ ନାହିଁ । ଦାତାଙ୍କ ରାଜତ୍ୱର କେଉଁବର୍ଷରେ ଶାସନ ପ୍ରଦତ୍ତ ହୋଇଥିଲା, କେବଳ ତାହାହିଁ ଅଛି । ଯଦି ଜନମେଜୟ, ଯଯାତି ଓ ଧର୍ମାର୍ଥ ଗୁପ୍ତମାନଙ୍କର ଅଧୀନସ୍ଥ ହୋଇଥାନ୍ତେ, ଅଥବା ଯଦି ଶାସନଲିଖିତ 'ମହାରାଜାଧିରାଜ' ଉପାଧି ଗୁପ୍ତମାନଙ୍କୁ ଲକ୍ଷ୍ୟ କରିଥାନ୍ତା, ତାହାହେଲେ ଗୁପ୍ତ ସମ୍ବତ୍ସର ଅନୁସାରେ ଶାସନ ସବୁ ନିଶ୍ଚୟ ଚିହ୍ନିତ ହୋଇଥାନ୍ତା ।

ଜନମେଜୟ ଓ ଯଯାତି ପ୍ରଭୃତିଙ୍କର ସ୍ୱାଧୀନତା ପ୍ରମାଣିତ ହୋଇଅଛି । ସେମାନେ ମହାରାଜାଧିରାଜ ଗୁପ୍ତ ବା ପରବର୍ତ୍ତୀ ଗୁପ୍ତମାନଙ୍କର **Imperial Guptas** ଓ **Later Guptas** ଅଧୀନସ୍ଥ ନ ଥିଲେ । ଆଉ ମଧ୍ୟ ତେତେବେଳେ

Digitized by srujanika@gmail.com

ଭାରତରେ କେଶରୀବଂଶର ଅଧିରାଜ ହେବାଭଳି ଗୁପ୍ତମାନଙ୍କ ବ୍ୟତୀତ ଅନ୍ୟ କୌଣସି ରାଜବଂଶ ନ ଥିଲେ । ଶାସନୋକ୍ତ 'ମହାରାଜାଧିରାଜ' 'ମହାଭବଗୁପ୍ତ' ଓ 'ମହାଶିବଗୁପ୍ତ' ଶବ୍ଦ ଯଯାତି ପ୍ରଭୃତି ରାଜାମାନଙ୍କର ଉପାଧି ଥିବା ଅନୁମେୟ । ଦେଶୀୟ ଇତିହାସ ଲେଖକ କେଶରୀବଂଶୀୟ ରାଜାମାନଙ୍କର ଯେଉଁନାମ ଲେଖି ଅଛନ୍ତି, ସେ ସବୁକୁ କାଳ୍ପନିକ ବୋଲି ଅବିଶ୍ୱାସ କରିବାର କୌଣସି କାରଣ ନାହିଁ । ଉକ୍ତ ଇତିହାସ କେଶରୀବଂଶର ଯେଉଁ କାଳ ନିର୍ଦ୍ଦେଶ କରିଅଛନ୍ତି, ତାହାର ସତ୍ୟାସତ୍ୟ ପରବର୍ତ୍ତୀ ଅଧ୍ୟାୟରେ ଆଲୋଚିତ ହେବ । ବର୍ତ୍ତମାନ ଉପରୋକ୍ତ ସମସ୍ତ ଆଲୋଚନାର ଫଳରେ କେଶରୀବଂଶର ପ୍ରାଥମିକ ତିନିଜଣ ରାଜାଙ୍କ ସମ୍ବନ୍ଧରେ ନିମ୍ନୋକ୍ତ ଅନୁମାନ କରାଯାଇପାରେ ।



Digitized by srujanika@gmail.com

## ସୋମକୁଳୋଦ୍ଭବ ସ୍ୱାଧୀନ କେଶରୀବଂଶ.

| ସାଧାରଣ ଉପାଧି | ରାଜତ୍ୱ କାଳ | ଦେଶୀୟ ନାମ | ଶାସନୋକ୍ତ ନାମ | ବ୍ୟକ୍ତିଗତ ଉପାଧି | ଶାସନର ଚିହ୍ନ | ଶାସନର ବର୍ଷ |
| --- | --- | --- | --- | --- | --- | --- |
| ପରମମାହେଶ୍ୱର ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ସୋମକୁଳତିଳକ ତ୍ରିକଳିଙ୍ଗାଧିପତି | ୪୪୨ ଖ୍ରୀ:ଅ: -୪୭୫ ଖ୍ରୀ:ଅ: (ଜନମେଜୟଙ୍କ ୩୨ ବର୍ଷର ରାଜତ୍ୱ ଦେଇ) | | ଜନମେଜୟ | ମହାଭବଗୁପ୍ତ = ଈଶ୍ୱର ରକ୍ଷିତ | କ— ଖ— ଗ— ଘ, ଙ, ଚ— | ରାଜତ୍ୱର ୩ୟ ବର୍ଷ ୬ଷ୍ଠ ବର୍ଷ ୮ମ ବର୍ଷ ୩୧ଶ ବର୍ଷ |
| | ୪୭୪ ଖ୍ରୀ.ଅ. -୫୨୭ ଖ୍ରୀ. ଅ. | ଯଯାତି (କେଶରୀ | ଯଯାତି | ମହାଶିବଗୁପ୍ତ ଶିବ ରକ୍ଷିତ | ଛ— ଜ— | ୯ମ ବର୍ଷ =୪୮୨ ଖ୍ରୀ.ଅ. ୧୫ଶ ବର୍ଷ =୪୮୮ ଖ୍ରୀ.ଅ. |
| | ୫୨୭ ଖ୍ରୀ.ଅ. -୫୮୩ ଖ୍ରୀ.ଅ. | ସୂର୍ଯ୍ୟ କେଶରୀ | ଭୀମାର୍ଥଦେବ | ମହାଭବଗୁପ୍ତ = ଈଶ୍ୱର ରକ୍ଷିତ | ଝ— | ୩ୟ ବର୍ଷ =୫୨୮ ଖ୍ରୀ.ଅ. |

Digitized by srujanika@gmail.com

# BIRAJA

Readers might have been aware of Biraja, the celebrated goddess of this name for whom Jajpur in the district of Cuttack (Orissa) is famous. For Biraja, Jajpur is known as Biraja Kshetra in the Puranas. What this Biraja is and when and why she was first installed are questions that deserve the earnest attention of every student of history.

Biraja which literally means *without impurity* is more an epithet than a proper name. Though at present, Biraja is known to her votaries as Goddess Durga, we do not come across this name in the Hindu Pantheon as applied to Durga till the medialve times which began approximately in the 8th century A. D. Even then we find in the Tantric literature this name applied indiscriminately to Durga or to some of her attendants. Can it then mean that when in the medialve times Tantric faith bacame uppermost, Sakti or Durga was installed at Jajpur with the name Biraja ? But circumstances would not warrant this conclusion and there can absolutely be no motive for devising a new name for Durga out of an epithet as if there were paucity of names for her. We would rather be led to believe from reasons set forth below that long before the beginning of the mediaeval times the Brahmins of Jajpur installed the image of Savitri and eulogised her as Biraja, as Savitri of the Vedas was free from impurity.

Popular legends give Biraja a mysterious orgin as in the case of all ancient institutions of India. She is said to

Digitized by srujanika@gmail.com

have sprung up from the sacrificial fire kindled by Brahma under the auspices of Jajati Kesari. We cannot ask our readers to accept literally for truth this story of her origin. But the association of her first installation with Brahminical sacrifices supports her character as Savitri and tends to assign her inauguration to a time when Vedic sacrifices were the most popular functions in society.

We learn from Indian history that Brahminism was revived in India under the Imperial Guptas in the 4th century A. D. and by the beginning of the medieval times it had been thoroughly re-established in place of Jainism and Budhism. Orissa or Kalinga which far from being a *terra-in-cognita* was one of the countries conquered by Samudra Gupta could not remain free from the general religious up-heaval in India. We shall not therefore be quite out of the mark if we suppose the origin of Biraja or Savitri to synchronise with the 4th or 5th century A. D. when the cult of Brahminical sacrifices re-gained hold over Indian society. In this connection we may draw attention to the popular theory that Jajati Kesari with whom the origin of Biraja and glory of Jajpur are associated lived and reigned in the 5th century A. D.

Notwithstanding the above circumstance with regard to the original character of Biraja, we are met with certain intrinsic evidence of significant facts. On the last day of the black fortnight of each Magh, the birth day ceremony of Biraja Debi is celebrated. On this day Biraja is adored and adorned as Savitri and offerings are made to her with the chanting of Savitri Mantra though Durga mantra is made use of on other days of the year. In Jajpur this birth-day is known as Savitri Amabasya unlike other parts of Orissa where Savitri Brata is held on the 15th day of Jyestha in commemoration of the story of Savitri and Satyaban of the Mahabharata. What does this preference of Savitri Mantra and Savitri's attire on the day of Biraja's birth indicate ? Does it not clearly signify that she was

Digitized by srujanika@gmail.com

Savitri at first though she was represented as Durga afterwards ?

It is said that in the 5th century A. D. Jajati Kesari brought ten thousand Brahmins from Kanouj to Orissa and perfomed ten horse sacrifices with their assistance.

It is beyond doubt that once Jajpur was famous for its sacrifices and erudite Brahmins, and this must have been so in the period of renaissance of Brahminism. The numerous Brahmin villages that still catch the eye on all sides are reminiscent of the past glory of Jajpur which is an abberviation of name "Jajnapūra". The following conventional form of blessing which is peculiarly used by the Brahmins of Jajpur or Jajnapura bears testimony to our remarks.

Savitri and Gayatri are the essence of the Vedas. The Vedic conception is that they are females, the former being the wife of Brahma the guardian and propagator of the Vedas and Ve dics rites. According to Sastric inju-nctions Brahma is invoked as Hota and Savitri is given the foremost place of worship. A Brahmin is made to act as Brahma whose existence is only spiritual. It is but natural to suppose that when the cult of sacrifices came to be universally recognised and followed in society, the Brahmins of Jajpur installed the image of Biraja Savitri to receive sacrificial worship and offerings.

A car festival of Biraja Devi is held on each Dashara day. Some suppose the car-festivals of India to be imitation of Buddhist rite while others ascribe their existence to pre-Buddhist age. Whatever that may be the fact remains that priests and monarchs advocating Brahminism in the Renaissance period adopted some of the rites and ceremonies of their antagonistic faiths in order to effect their complete overthrow by skilful incorporation. If any where the car-festival was an adoptation of pre-existing Buddhist rite, it was pur-

Digitized by srujanika@gmail.com

posely arranged in a way to signify the change in the domain of religious thoughts. In the preliminary ceremony to purity Biraja's car its wooden horses are conceived as the Vedas and its wheels as the sun and the moon. Biraja marches in this car to destroy the demon. If Biraja drawn by the Vedas be Durga then who can be the demon to be destroyed by her for do we not know that the demons of the Puranas are rather advocates of the Vedas. We believe the march of Biraja in the car drawn by the Vedas was meant to signify the victory of Biraja Savitri, the essence of the Vedas, over antagonistic faiths.

As we have indicated above, Jajpur or Jajnapura of the early days was a great seat of the intelligent oligarchy of India. It moved with the times, receiving in its bosom each renovation or innovation that came over the land. With the growing popularity of Shakti Puja it became a chief Shakti Pitha and the sacrificial Homa gave way to the invocation of Shakti. The Brahmins who well knew that images were but emblems of Gods anb Goddesses for the convenience of masses probably thought of worshipping Savitri as Shakti or Durga.Nevertheless their Indian conservatism retained to be exhibited some characteristics of Biraja's originality at least on one day of the year i. e. on Magh Amabasya day. Stories and eulogiums soon grew up around Biraja, similar to or consistant with the Puranic incidents of Durga. A lions figure seems to have been subsequently sculptured on tne separate piece of stone forming the seat of the image,in order to represent her as sinha-vahini.Now Biraja is known to .the world as Durga and not Savitri. We would earnestly ask all persons taking interest in research works to study Biraja and see how original conceptions have been adopted to changes in thoughts and ideas in subsequent years.



Digitized by srujanika@gmail.com